# ଅମୃତ ଅନୁଭବ

(ଦିବ୍ୟ ଅନୁଭୂତି ଓ ଅନୁଭବରେ ଶ୍ରୀଜଗନ୍ନାଥ)

## ଅଷ୍ଟମ ଅର୍ଘ୍ୟ



ସଂପାଦନା ଓ ସଂକଳନ

**ଶ୍ରୀକାଂତ ମହାଂତି**



# ଅମୃତ ଅନୁଭବ
## (ଅଷ୍ଟମ ଅର୍ଘ୍ୟ)

ସଂପାଦନା ଓ ସଂକଳନ : **ଶ୍ରୀକାଂତ ମହାଂତି**

ପ୍ରକାଶନ : **ବିଚିତ୍ରା**

ପ୍ରକାଶନ କାଳ : **ଜାନୁଆରୀ ୨୦୧୬**

ଦିଗ୍‌ଦର୍ଶନ : **ଜୟଶ୍ରୀ ମହାନ୍ତି**

ପ୍ରସାରଣ : **ନଟବର ରାଉଳ**

ପରିଚାଳନା : **ଇଂ. ସ୍ୱରାଜ୍ୟ କେଶରୀ ନାୟକ**

ପ୍ରଚ୍ଛଦ : **ଇତେଶ ଦାସ**

ଅକ୍ଷର : **ଲକ୍ଷ୍ମୀ କମ୍ୟୁନିକେଶନ**
ଗଡ଼ନ୍ତି ଛକ, ପୁରୀ

ମୁଦ୍ରଣ : **ନୀଳାଦ୍ରି ପ୍ରିଣ୍ଟର୍ସ**
ମହୋଦଧି ମାର୍କେଟ, ପୁରୀ

ସଂପର୍କ : **ଅନୁରାଗ**
ମାର୍କଣ୍ଡେଶ୍ୱର ସାହି, ପୁରୀ - ୭୫୨୦୦୧
ଫୋନ : ୦୬୭୫୨-୨୫୨୪୪୧
ମୋବାଇଲ : ୯୨୩୮୮୭୯୭୮
ଫ୍ୟାକ୍ସ : ୦୬୭୫୨-୨୩୧୯୯୧

E-mail :
srikantmohanty55@gmail.com
amrutanubhav55@gmail.com

ମୂଲ୍ୟ : **୧୨୫ ଟଙ୍କା ମାତ୍ର**

# ଭକ୍ତି ନୈବେଦ୍ୟ



ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ପବିତ୍ର ପାଦପଦ୍ମରେ ସମର୍ପିତ

"ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳକମଳେ ରତ୍ନସିଂହାସନସ୍ଥମ୍
ସର୍ବାଳଙ୍କାରଯୁକ୍ତଂ ନବଘନରୁଚିରଂ ସଂଯୁତଂ ଚାଗ୍ରଜେନ ।
ଭଦ୍ରାୟା ବାମଭାଗେ ରଥଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ରବନ୍ଦ୍ୟମ୍
ବେଦାନାଂ ସାରମୀଶଂ ସ୍ୱଜନପରିବୃତଂ ବ୍ରହ୍ମଦାରୁଂ ଭଜେଽହମ୍ ।।"

- ମହାପୁରୁଷ ବିଦ୍ୟା : ୯/୩୨

ଶଙ୍ଖାକାର ନୀଳାଦ୍ରି କ୍ଷେତ୍ର ମଧ୍ୟରେ, ଶତଦଳ କମଳ ବିଶିଷ୍ଟ ରତ୍ନ ସିଂହାସନରେ, ସୁଭଦ୍ରାଙ୍କ ବାମ ଭାଗରେ, ଅଗ୍ରଜ ବଳଭଦ୍ର ଓ ଅନ୍ୟ ସ୍ୱଜନଙ୍କ ଦ୍ୱାରା ପରିବୃତ ହୋଇ, ସର୍ବ ଅଳଙ୍କାର ଯୁକ୍ତ ଓ ସୁଦର୍ଶନଙ୍କ ସଂଯୁତ ହୋଇ ନବଘନ ରୁଚିର ଯିଏ ଉପବିଷ୍ଟ, ବ୍ରହ୍ମା, ରୁଦ୍ର ଓ ଇନ୍ଦ୍ରଙ୍କ ଦ୍ୱାରା ବନ୍ଦିତ ତଥା ବେଦ ସକଳର ସାର ସେହି ବ୍ରହ୍ମଦାରୁଙ୍କୁ ଭଜନ କରୁଅଛି ।।

ସର୍ବେ ଭବନ୍ତୁ ସୁଖିନଃ, ସର୍ବେ ସନ୍ତୁ ନିରାମୟାଃ,
ସର୍ବେ ଭଦ୍ରାଣି ପଶ୍ୟନ୍ତୁ, ମା କଶ୍ଚିଦ୍ ଦୁଃଖଭାଗ୍ ଭବେତ୍ ।।

ଚରଣାଶ୍ରିତ

ଶ୍ରୀକାନ୍ତ

(ବୁଲୁ)

# ସଂପାଦକୀୟ



ସଂପାଦକୀୟରେ 'ଅମୃତ ଅନୁଭବ' ସଂକ୍ରାନ୍ତରେ କିଛି କହିବା ପାଇଁ ଚାହିଁଲେ ମଧ୍ୟ ତାହା ପୂର୍ବବର୍ତ୍ତୀ ସଂକଳନର ସଂପାଦକୀୟର ପୁନରାବୃତ୍ତି ପରି ଲାଗିପାରେ । ଏଣୁ ଏଥର ସଂପାଦକୀୟ ଏକ ଭିନ୍ନ ରକମର ଏବଂ ତା' ହେଉଛି ଜଣେ କର୍କଟ ରୋଗ ପୀଡ଼ିତାଙ୍କ ଅମୃତ ଅନୁଭବ ।

ଘଟଣାଟି ଏହିପରି - କର୍କଟ ରୋଗରେ ଅତିଶୟ ଜର୍ଜରିତ ହେବା ପରେ ଜଣେ ମହିଳା ବ୍ୟାକୁଳ କଣ୍ଠରେ ନିବେଦନ କଲେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ 'ମୋତେ ଭଲ କରିଦିଅ ପ୍ରଭୁ, ନଚେତ୍ ତୁମ ନିକଟକୁ ନେଇଯାଅ ।'

ରାତିସାରା ନିଦ ନଥିଲା । ଯନ୍ତ୍ରଣା ହିଁ ଥିଲା ସେଇ ସବୁ ମୁହୂର୍ତ୍ତର ଅପ୍ରିୟ ସହଚର ଓ ସାଥୀ । ରାତିସାରା ଜଗନ୍ନାଥ...ଜଗନ୍ନାଥ... ଜଗନ୍ନାଥ । ଆଖି ପଡ଼ିଯାଇଛି । ବ୍ରାହ୍ମ ମୁହୂର୍ତ୍ତ । ଭକ୍ତ ଅଚାନକ ଅବଚେତନ ମନରେ ଦେଖୁଛନ୍ତି ଗବାକ୍ଷର ଶୀର୍ଷରୁ ବିଚ୍ଛୁରିତ କିଛି ସ୍ୱର୍ଣ୍ଣାଭ କିରଣ । ତା'ରି ଭିତରେ ଦୃଶ୍ୟମାନ ମହାପ୍ରଭୁ ଶ୍ରୀଜଗନ୍ନାଥ - ଅବ୍ୟକ୍ତ, ଅଚିନ୍ତ୍ୟ । ବ୍ୟକ୍ତ କଲେ 'ହେ ଭକ୍ତ ! ତୁ ଚିନ୍ତା କରନା, ବ୍ୟସ୍ତ ହୁଅନା, ଲୁହ ଗଡ଼ାନା, ମୁଁ ଅଛି । ସବୁ ଠିକ୍ ହୋଇଯିବ ।'

ହଠାତ୍ ଭକ୍ତର ନିଦ ଭାଙ୍ଗିଗଲା । ଆନନ୍ଦରେ ଅନ୍ତଃସ୍ଥଳ ଉଦ୍‌ବେଳିତ ହେଲା । କ୍ରମଶଃ ରୋଗମୁକ୍ତ ହୋଇ ଉଠିଲେ ସେ । ନୈବେଦ୍ୟରେ ଲେଖି ହେଇଗଲା 'ଯାତନା କୁଇରେ ଆଶ୍ୱାସନା ବାରି ।' ଭକ୍ତର ସେଇ ତମସା ତିମିର ଆଶାର ଆଲୋକ ମହାପ୍ରଭୁ ଶ୍ରୀଜଗନ୍ନାଥ ଜଗତବାସୀଙ୍କୁ ଏଇମିତି ସହାୟତା ଦିଅନ୍ତୁ ।

ଏଥରର 'ଅମୃତ ଅନୁଭବ' ଏଇମିତି କିଛି ଆଲେଖ୍ୟର ସମାହାର ।

ସମସ୍ତ ଲେଖକ-ଲେଖିକାଙ୍କୁ ଏହି ଅବସରରେ ଶୁଭେଚ୍ଛା ଓ ସାଧୁବାଦ ଜଣାଇବା ସହ 'ଅମୃତ ଅନୁଭବ' ଚଳିତ ଭାଗର ପ୍ରକାଶନରେ ସହଭାଗିତା ପାଇଁ ଦୁଇ ଜାମାତା ଲିଟନ ଓ ଚନ୍ଦନ ଏବଂ ଅନୁଜ ପ୍ରତିମ ଜଗନ୍ନାଥ ମହାନ୍ତି ଓ ନିରଞ୍ଜନ ଆଚାର୍ଯ୍ୟଙ୍କୁ ଆନ୍ତରିକ ଧନ୍ୟବାଦ ଜଣାଉଛି । ଯେଉଁ ସତୀର୍ଥ ବନ୍ଧୁମାନେ ଏ ଯାତ୍ରାପଥରେ ସାମିଲ ହୋଇ ଶ୍ରୀଜଗନ୍ନାଥ ଚେତନାକୁ ପରିବ୍ୟାପ୍ତ କରିବାପାଇଁ ସହଯୋଗର ହାତ ବଢ଼ାଇ

ଆସିଛନ୍ତି, ସେମାନଙ୍କୁ ମୋର ଅନେକ ଅନେକ କୃତଜ୍ଞତା । ଦୀର୍ଘ ସାତ ବର୍ଷ ଧରି ଏଭଳି ଏକ ସଂକଳନର ପ୍ରକାଶନ କେବଳ ତାଙ୍କରି କରୁଣା ଯୋଗୁ ହିଁ ସମ୍ଭବ ହୋଇପାରିଛି ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଚରଣକମଳରେ କୋଟି କୋଟି ପ୍ରଣାମ ଜଣାଇ ସେମାନଙ୍କର ମଙ୍ଗଳ ବିଧାନ ପାଇଁ ଆଶିଷ ଭିକ୍ଷା କରୁଛି । ଶ୍ରୀଜଗନ୍ନାଥ ସେମାନଙ୍କର ଚଲାପଥକୁ ସଦା କୁସୁମିତ କରୁଥା'ନ୍ତୁ । ତାଙ୍କରି କରୁଣା ସେମାନଙ୍କ ଜୀବନକୁ ସିକ୍ତ କରୁ । ତାଙ୍କରି ବାହୁଛାୟା ତଳେ ରହିବାର ସୌଭାଗ୍ୟ ସେମାନଙ୍କୁ ମିଳୁଥାଉ ଓ ତାଙ୍କ କୃପାକଟାକ୍ଷ ସର୍ବଦା ସେମାନଙ୍କ ଉପରେ ରହିଥାଉ । ସେ ସେମାନଙ୍କର ନୟନ ପଥଗାମୀ ହୋଇ ରହିଥା'ନ୍ତୁ । ଶ୍ରୀଜଗନ୍ନାଥମୟ ହେଉ ସଭିଙ୍କର ପ୍ରତିଟି ମୁହୂର୍ତ୍ତ ।

।। ଜୟ ଜଗନ୍ନାଥ ।।

ଶ୍ରୀକ୍ଷେତ୍ର ପୁରୀ

କାର୍ତ୍ତିକ ପୂର୍ଣ୍ଣିମା - ୨୦୧୫

ଶ୍ରୀମିତ କୀର୍ତି

# ଅମୃତ ସୋପାନ

⊙⊙

# ମୋ ଜୀବନର ଏକ ବିସ୍ମୟକର ଘଟଣା

## ଶାନ୍ତନୁ କୁମାର ଆଚାର୍ଯ୍ୟ

୧୯୭୭ର ଘଟଣା । ସେତେବେଳେ ମୁଁ ମୋ ଉପନ୍ୟାସ 'ଶକୁନ୍ତଳା' ଲେଖାରେ ନିମଗ୍ନିତ । ଚାକିରିରୁ ଲମ୍ବା ଛୁଟିନେଇ ଘରେ ରହି ମୁଁ ଦିନକୁ ପ୍ରାୟ ବାର-ତେର ଘଣ୍ଟା ପଢ଼ିବା ଓ ଲେଖିବାରେ ନିଜକୁ ନିୟୋଜିତ କରିଥାଏ । ସେତେବେଳେ ସକାଳ ଓଳିଟା ଯାଏ ଭାଗବତ ପଢ଼ାରେ । ଜଗନ୍ନାଥ ଦାସଙ୍କ ଭାଗବତ ସାମଗ୍ରିକ ଭାବେ ଅଧ୍ୟୟନ କରିବା ଥିଲା 'ଶକୁନ୍ତଳା' ଉପନ୍ୟାସ ପାଇଁ ଅନ୍ୟତମ ଆବଶ୍ୟକୀୟ ଉପାଦାନ । ଏହାର ତାତ୍ପର୍ଯ୍ୟ ଏ ଉପନ୍ୟାସର ପାଠକ ଅନୁଭବ କରିପାରିବେ ।

ସେ ଯାହା ହେଉ ମୁଁ ଏହିଭଳି ଏକ ସ୍ୱାଧ୍ୟାୟ ମୂଳକ ପରିବେଶ ଭିତରେ ମାସ ମାସ ବୁଡ଼ିରହି ସରକାରୀ ଚାକିରିରେ ପାଇଥିବା ଗଞ୍ଜଣା ଜନିତ ଦୁଃଖ ଓ ପଛୁଆ ନାତର ପ୍ରତିକ୍ରିୟାରୁ ନିଜକୁ ନିବୃତ୍ତ ରଖିଥିବା ସମୟରେ ଘଟିଲା ସେ ଅଭାବିତ ଘଟଣା ।

ସେଦିନ ଦିନସାରା ଲେଖା ଭିତରେ ବୁଡ଼ି ରହିଥିଲାବେଳେ ମୋ ବଡ଼ଝିଅ ବୁଲ୍‌ବୁଲ୍ (ପ୍ରଜେଶ ନନ୍ଦିନୀ-ବର୍ତ୍ତମାନ ଆମେରିକାରେ ଇଲେକ୍‌ଟ୍ରିକାଲ ଇଞ୍ଜିନିୟର) ମତେ କେତେଥର ଡାକି ସତର୍କ କରିଦେଇସାରିଥାଏ, 'ନନା ! କାଲି ଫର୍ମ ଫିଲ୍‌ଅପ୍ ହେବ । ମୋର ପରୀକ୍ଷା ଫିସ୍ ଇତ୍ୟାଦି ଦାଖଲ ହେବ । କାଲି ଶେଷ ତାରିଖ । ଦୁଇଶହ ଟଙ୍କା ଦରକାର ।' ସେ ସେବର୍ଷ ରମାଦେବୀ କଲେଜରେ ତା'ର ବି.ଏ. (ଅନର୍ସ) ଫାଇନାଲ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଏ । ୧୯୭୭ ଫେବୃୟାରୀ ମାସ । ଶୀତଋତୁ ତଥାପି ଶେଷ ହୋଇନଥାଏ । ମନେ ପଡୁଛି ମୁଁ ଖଣ୍ଡେ ସ୍ୱେଟର ପିନ୍ଧି ସକାଳୁ ବସିଥାଏ ମୋ ଲେଖା ଟେବୁଲ ପାଖରେ । ଦିନ ପ୍ରାୟ ଦୁଇଟା ହେଲାଣି । ଘରେ ସ୍ତ୍ରୀ ନଥା'ନ୍ତି । ସେ ସବା ସାନ ଦଶବର୍ଷର ଝିଅ ଜୁଲିକୁ (ଏ ଝିଅ ବର୍ତ୍ତମାନ ଆମେରିକାର ସଲଟ୍‌ଲେକ୍ ସିଟି, ୟୁଟାଃ ବିଶ୍ୱବିଦ୍ୟାଳୟ ସଂଲଗ୍ନ ଏକ ଫାର୍ମାସ୍ୟୁଟିକାଲ୍ କମ୍ପାନୀରେ ବୈଜ୍ଞାନିକ-ଗବେଷକ) ସାଙ୍ଗରେ ନେଇ କଟକ ଯାଇଥା'ନ୍ତି ତାଙ୍କ ପିତାମାତାଙ୍କୁ ଭେଟିବାକୁ । ରାତିରେ ସେମାନେ ଫେରିବାର ନଥାଏ । ତେଣୁ ଘରେ ବୁଲ୍‌ବୁଲ୍ ଓ ମଝିଆ ଝିଅ ସୁଲୁ (ନିବେଦିତା- ସେ ବର୍ତ୍ତମାନ ଆମେରିକାର ଜଣେ ମନସ୍ତତ୍ତ୍ୱବିତ୍ ଓ ଏକ ଡାକ୍ତରଖାନାରେ କାଉନ୍‌ସେଲର) । ଦୁଇ ଝିଅ ମୋର ହେପାଜତ କରିବାକୁ ଘରେ ଥା'ନ୍ତି । ମୁଁ ସେମାନଙ୍କ ତାଡ଼ନାରେ ଦିନ ଦୁଇଟାବେଳେ କ'ଣ ଗଣ୍ଡିଏ ଖାଇଦେଇ ପୁଣି ବସିପଡ଼ିଥାଏ ମୋ ଲେଖା ଟେବୁଲ ପାଖରେ ।

ସଂଧ୍ୟା ପାଞ୍ଚଟାରେ ବୁଲ୍‌ବୁଲ୍ ପୁଣି ଡାକିଲା, 'ନନା ! କାଲି ମୋର ପରୀକ୍ଷା ଫିସ୍ ଦାଖଲ, ଶୁଣିଲ ତ ? କାଲି ଶେଷ ତାରିଖ । ତୁମେ ପରା କହୁଥିଲ କୋଉ ସାଙ୍ଗ ଘରକୁ ଯାଇ ଟଙ୍କା ଧାର ଆଣିବ ? ସଂଧ୍ୟା ତ ହେଲାଣି । ଲେଖା ବନ୍ଦ ଥାଉ । ସାଙ୍ଗ ପାଖରୁ ଆସିଲେ ପୁଣି ଲେଖି ବସିବ ।'

ଝିଅର ଡାଗିଦା ପାଇ ଧ୍ୟାନ ଭାଙ୍ଗିଗଲା । କଲମରେ କ୍ୟାପ୍ ଚଢ଼େଇ ଉଠିଲି । ପୋଷାକ ବଦଳେଇ ଘରୁ ବାହାରି ପଡ଼ିଲି ।

ସେତେବେଳେ ଶହୀଦ ନଗରରେ ଏତେ ଘରଦ୍ୱାର ନଥାଏ । ମୋ ଘରଠୁ ଡାକେ ଦୂରରେ, ପୂର୍ବ ଦିଗରେ, ବମିଖାଲ ଗାଁ । ଏପଟେ ପଶ୍ଚିମରେ ଡାକେ ଦୂରରେ ଶହୀଦ ନଗର ଭିତରେ, ଜଣେ ଦୁଇଜଣ ପଡ଼ୋଶୀ ଭଦ୍ରଲୋକଙ୍କ ଘର । ସେମାନେ ରହୁଥା'ନ୍ତି ନୂଆ ଘର ନିର୍ମାଣ କରି ଶହୀଦ ନଗରରେ । ମୋର ନିକଟତମ ପଡ଼ୋଶୀ ଜଣେ ଭଦ୍ରଲୋକଙ୍କୁ ମୁଁ ବିଶେଷ ଭଲକରି ଚିହ୍ନିବି ନଥାଏ । ତଥାପି ଆଶା କରିଥାଏ ସେ ଭଦ୍ରଲୋକଙ୍କୁ ଅନୁରୋଧ କଲେ ଟଙ୍କା ଦୁଇଶହ ସାମୟିକ ଭାବେ ଧାର ମିଳିଯାଇପାରେ । ଯେତେବେଳେ ମୁଁ ଜଣେ କ୍ଲାସ୍ ୱାନ୍ ସରକାରୀ ଚାକିରିଆ । ମୋ ନିଜ ଘରେ ମୁଁ ରହୁଥାଏ ଓ ଘର ସାମନା ଗ୍ୟାରେଜ୍‌ରେ ନିଜ କାର୍ ଥୁଆହୋଇଚି । ମତେ ଟଙ୍କା ଦୁଇଶହ ଆଜି ସଂଧ୍ୟାରେ ମିଳିଯିବନି କି ? ଏଇ ଦୃଢ଼ତା ନେଇ ସେଦିନ ସଂଧ୍ୟାରେ ମୁଁ ଘରୁ ବାହାରିଗଲି, କିନ୍ତୁ ସେତେବେଳକୁ ମୋ ସଂପର୍କରେ ମୋ ପଡ଼ୋଶୀ ମାନେ ନିଶ୍ଚୟ ଖବର ପାଇସାରିଥାଆନ୍ତି ଯେ, ମୁଁ ସରକାରୀ ଚାକିରିରୁ ଛ'ମାସ ହେଲା ଛୁଟିରେ ଅଛି । ମତେ ଦରମା ମିଳେନା । ମୁଁ ଗଲା ଛ'ମାସ କାଳ ଏମିତି ଧାର ଉଧାରରେ ଚଳୁଥାଏ ।

ସେଦିନ ସଂଧ୍ୟାରେ ପ୍ରାୟ ସାତ ଆଠଜଣ ପାଖ ଓ ଦୂର ପଡ଼ିଶାଙ୍କ ଘର ବୁଲିବୁଲି ଶେଷରେ ନିରାଶ ହୋଇ ରାତି ନଅଟାକୁ ଘରକୁ ଫେରିଲି । ମୋ ମୁହଁ ଦେଖି ଦୁଇ ଝିଅ ଜାଣିନେଲେ ମୋ ମନର ଅବସ୍ଥା । ତଥାପି ମଝିଆ ମୁହଁ ଖୋଲି ପଚାରିଲା, 'କ'ଣ ଟଙ୍କା ମିଳିଲା ନାଇଁ ନନା ? ନାରୀର ଏକ୍‌ଜାମିନେସନ୍ ଫି କାଲି କେମିତି ଦିଆଯିବ ତା'ହେଲେ ?'

'ସେ କଥା କାଲି ସକାଳେ ବୁଝିବି- ତମେ ତମ କାମ କର । ପଢ଼ାପଢ଼ିରେ ଲାଗ ।' ଏତିକି ଆଶ୍ୱାସନା ଦେଇସାରି ମୁଁ ପୁଣି ମୋ ଲେଖା ଟେବୁଲ ପାଖରେ ବସିପଡ଼ିଲି । ରାତି ଡେରି ହେବାକୁ ଲାଗିଲା । ସେଇ ଡେରି ରାତିରେ ଖିଆପିଆ କରିବା ଆମର ଅଭ୍ୟାସ । ବାପ ଝିଅ ତିନିହେଁ ଖିଆପିଆ ସାରି ଶୋଇବାକୁ ଗଲୁ । ମୁଁ ମୋ ରୁମ୍‌ରେ ଖଟ ଉପରେ ଲୋଟିପଡ଼ିଲା ବେଳକୁ ହଠାତ୍ ମୋ ମୁହଁ ସାମ୍ନା କାନ୍ଥରେ ଟଙ୍ଗା ହେଇଥିବା ଗୋଟାଏ କ୍ୟାଲେଣ୍ଡର ଉପରେ ଆଖି ଲାଖିଗଲା । ସେଥିରେ ଜଗନ୍ନାଥ,

ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ରଙ୍ଗିନ ଚିତ୍ର ଥାଏ । ସେଇ ଚିତ୍ର ଚାରିଟା ମୋ ମୁହଁ ସାମ୍ନା କାନ୍ଥ ଉପରୁ ଜଳଜଳ କରି ଅନାଇ ରହିଥା'ନ୍ତି । ଆଉ ସେମାନଙ୍କ ଭିତରୁ ସବୁଠୁ ବଡ଼ଆଖିଆ ଜଗନ୍ନାଥଙ୍କ ଆଖି ଦୁଇଟା ସିଧା ମୋ ଆଖିରେ ଆଖି ମିଳେଇ ସତେକି ମତେ ଥଟ୍ଟାକଲା ପରି ନାଲି ନାଲି ଓଠ ଦୁଇଟାକୁ ନେଫେଡ଼ିଦେଲା ଟିକିଏ । ସେ ମୋଟା ମୋଟା ନାଲି ଓଠ ଆଉ ସେ ଢେଗା ଢେଗା ଆଖି ଦି'ଟାକୁ ଆଉ ଟିକିଏ ସମୟ ଅନେଇଲା ମାତ୍ରେ ମୋ ଦେହରେ ସତେକି ନିଆଁ ସଞ୍ଚରି ଗଲା । ମୁହଁ ଉପରକୁ ଟାଣି ନେଉଥିବା କମ୍ବଳଟିକୁ ଫୋପାଡ଼ିଦେଇ ମୁଁ ଉଠି ବସିଲି ଆଉ ଚିତ୍କାର କଲି - 'ଆରେ ! ତୁ ମତେ ଥଟ୍ଟା କରୁଚୁ ? ମତେ ଆଜି ବାର ଦୁଆର କରେଇଦେଲୁ ? ଆରେ ମତେ କ'ଣ ତୋ ବେଠିଆ କରି ପାଇଚୁକି ? ମତେ କୋଡ଼ିଏ ବର୍ଷ ଧରି ବେଠି ଖଟେଇ ଖଟେଇ ତୋ' କାମ କରେଇ ନେଇ ସାରି ଆଜି ମୋ ସାଙ୍ଗେ ଦିଲ୍ଲଗୀ ଖେଳିଲୁ ? ଆରେ କୋଡ଼ିଏ ବର୍ଷ ହେଲା ତୋ' ରାଇଜର ମାତୃଭାଷାକୁ ବଞ୍ଚେଇବା ପାଇଁ ତୁ ମତେ ଏ କାମରେ ମୁକରିର୍ କରିନଥିଲୁ ? ଆରେ ତୋ' କାମରେ ମତେ ଲଗେଇବା ଦିନୁ କେବେ ମୁହୂର୍ତ୍ତେ ହେଲେ ବି ଦେଖିଛୁ ମୁଁ ହେଳା କରିବାର କି ଠକିବାର ? ମୋର କୋଡ଼ିଏ ବର୍ଷର ନିରଳସ କାମର ମୂଲ ବାବଦ ମୁଁ ତତେ ମାଗିଥିଲି ଆଜି ଟଙ୍କା ଦୁଇଶହଟା - ସାମାନ୍ୟ ଦୁଇଶହଟା ଟଙ୍କା, କିନ୍ତୁ ସେତିକିକୁ ବି ମୋ' ମୁଣ୍ଡର ଭାଉ ପଡ଼ିଲା ନାହିଁ ତୋ' ଆଖିରେ ? ମତେ ତୁ ଲୋକହସା କରେଇଦେଲୁ । ମୋ ପିଲାଙ୍କ ଆଖିରେ ବି ମତେ ଅଯୋଗ୍ୟ ପ୍ରମାଣିତ କରିଦେଲୁ ଆଉ ଏଇଲେ ମୋ ସାଙ୍ଗେ ଦିଲ୍ଲଗୀ କରିବାକୁ ଏମିତି ମୁରୁକି ହସା ମାରୁଚୁ ତୋ' ମାଙ୍କଡ଼ ମୁହଁରେ ?'

ଏହା ପରେ ମୋ ପାଟିରେ ଆଉ ବାଡ଼ବତା ରହିଲା ନାହିଁ । ଅନେକ ଅବର୍ଜିଆ ଶବ୍ଦରେ ଗାଳି ବର୍ଷି ଦେଇଗଲି ସେଇ କ୍ୟାଲେଣ୍ଡର ଛବିଟା ଉପରେ । କେତେ ସମୟ ସେମିତି ମନଭରି ଗାଳି ବୃଷ୍ଟି କଲାପରେ କମ୍ବଳଟାକୁ ପୁଣିଥରେ ମୁହଁ ଉପରକୁ ଟାଣିନେଇ ଶୋଇବାକୁ ଚେଷ୍ଟା କଲି, କିନ୍ତୁ କ'ଣ ପାଇଁ କେଜାଣି ମୁଁ କିଛି ସମୟ ଚୁପ୍‌ଚାପ୍ ପଡ଼ିରହିବା ପରେ ମୁହଁ ଉପରୁ କମ୍ବଳ ବାହାର କରି ଆଉ ଥରେ ଉଠି ବସିଲି । କ୍ୟାଲେଣ୍ଡର ଭିତରୁ ସେ ମୁହଁଗୁଡ଼ିକ ସେମିତି ମୋ ଆଖିରେ ଆଖି ମିଳେଇ ଅନେଇ ଥା'ନ୍ତି, କିନ୍ତୁ ସେମାନଙ୍କ ଆଖିରେ ପୂର୍ବର ହସ ଆଉ ନଥାଏ । ଆଖିଗୁଡ଼ାକ ଦିଶୁଥାଏ ବିଷର୍ଣ୍ଣ । ସତେକି ଗାଳିଟା ଖୁବ୍ ବାଧିଚି ସେମାନଙ୍କୁ । ବିଶେଷତଃ ଜଗନ୍ନାଥଙ୍କ ମୁହଁଟା ଦିଶୁଥାଏ ବେଶୀ କାନ୍ଦ କାନ୍ଦ ।

ସେ କାନ୍ଦ କାନ୍ଦ ମୁହଁଟାକୁ ଦେଖି ମୋ ମନରେ ଟିକେ ଅନୁଶୋଚନା ଆସିଲା । ତଥାପି ମନର ରିହ ମରୁନଥାଏ । କହିଲି, 'ହଉ ଠିକ୍ ଅଛି । ତଥାପି ସମୟ ଅଛି । ତୋ' ସହିତ ମୋର ସଂପର୍କର ଡୋରି ତଥାପି କଟିନାହିଁରେ ଠାକୁର । ଶୁଣ ! ତଥାପି

ସମୟ ଅଛି, କିନ୍ତୁ ଗୋଟାଏ ସର୍ତ୍ତରେ । ସର୍ତ୍ତଟା ହେଲା, କାଲି ବଡ଼ିଭୋରରୁ ତୁ ମୋ ଘର କବାଟ ବାଡ଼େଇବୁ । ମୁଁ କବାଟ ଖୋଲିବାମାତ୍ରେ ମୋ ହାତକୁ ଟଙ୍କା ଦୁଇଶହ ଯଦି ବଢ଼େଇ ଦବୁ ତେବେ ମୁଁ ଜାଣିବି ତୋର ମୋର ସଂପର୍କ ଅତୁଟ ରହିଚି ପୂର୍ବପରି । ନହେଲେ ମୁଁ ତୋ'ପାଇଁ ତୁ ମୋ ପାଇଁ ମଲେଣି ବୋଲି ଜାଣିନେବୁ ।'

ଏତିକି କହି ମୁଁ ପୁଣି କମ୍ବଳ ତଳେ ଶୋଇଗଲି । ସେ ରାତିରେ ମତେ ନିଘୋଡ଼ ନିଦ ବି ହେଲା । ରାତିପାହି ସକାଳ ନ ହେଉଣୁ ଆମ ଘରର ସାମ୍ନା କବାଟର କଲିଂବେଲ୍ ବାଜିଲା । କେତେବାର ବାଜିଚି ମତେ ଜଣାନାହିଁ । ପାଖ ରୁମ୍‌ରୁ ବୁଲ୍‌ବୁଲ୍ ଡାକିଲା, 'ନନା । କିଏ କଲିଂବେଲ୍ ବଜାଉଛନ୍ତି ଦେଖିଲ ।'

ମୋ ନିଦ ଭାଙ୍ଗିଗଲା । କବାଟ ଖୋଲି ଦେଖିଲି, ଜଣେ ଧୋବଫରଫର ଖଦଡ଼ ଧୋତି ପଞ୍ଜାବୀ ପିନ୍ଧା ଭଦ୍ରଲୋକ ହାତରେ ଗୋଟାଏ ବ୍ରିଫ୍‌କେଶ୍ ଧରି ଠିଆ ହୋଇଚନ୍ତି । ଆଶ୍ଚର୍ଯ୍ୟ ହେଲି- ରାତି ତଥାପି ପୂରା ପାହି ନଥାଏ । ଘର ସାମ୍ନା ଗେଟ୍ ଆରପାଖେ ଗୋଟାଏ ଜିପ୍ ଠିଆ ହୋଇଥାଏ । ଜିପ୍‌ର ଇଞ୍ଜିନ୍ ତଥାପି ଚାଲୁଥାଏ । ହୁଏତ ଭଦ୍ରଲୋକ ଖୁବ୍ ତରବରରେ କୌଣସି ଗୁରୁତ୍ୱପୂର୍ଣ୍ଣ କାମରେ ଆସିଚନ୍ତି ମୋ ପାଖକୁ, କିନ୍ତୁ ତାଙ୍କୁ କିଛି ପଚାରିବା ଆଗରୁ ସେ ସିଧା ପଶିଆସିଲେ ବୈଠକଖାନା ଘର ଭିତରକୁ । ବ୍ରିଫ୍‌କେଶ୍‌ଟାକୁ ସେଣ୍ଟର ଟେବୁଲ ଉପରେ ରଖି ସେ ତତ୍‌କ୍ଷଣାତ୍ ତାକୁ ମୋ ସାମନାରେ ଖୋଲିଦେଲେ । ଦେଖିଲି ନୂଆ ଚକଚକିଆ ବ୍ୟାଙ୍କନୋଟ୍‌ର ବଣ୍ଡିଲଗୁଡ଼ାକ ଖୁନ୍ଦି ହେଇଚି ସେ ବ୍ରିଫ୍‌କେଶ୍‌ଟାରେ । ଆଖି ଝଲସିଗଲା । ଏତେଗୁଡ଼ାଏ ଟଙ୍କାକୁ ନେଇ ଏ ଭଦ୍ରଲୋକ ଆମ ଘରକୁ ଏ ଜାଙ୍ଗୁଲୁ ଜାଙ୍ଗୁଲୁ ଭୋର୍ ସମୟରେ କ'ଣ ପାଇଁ ଆସିଚନ୍ତି ?'

କିଛି ପଚାରିବା ପୂର୍ବରୁ ଭଦ୍ରଲୋକ ଗୋଟାଏ ମୋଟା ବିଡ଼ା ନୂଆ ଶହେଟଙ୍କିଆ ନୋଟ୍ ଟାଣି ଆଣିଲେ । ନୋଟ୍ ବିଡ଼ାର ଷ୍ଟାପ୍ଲ କଣ୍ଟା ଫିଟେଇ ସେଥିରୁ ଗଣିଗଣି ଯୋଡ଼ିଏ ନୋଟ୍ ବାହାର କରି ମୋ ହାତକୁ ବଢ଼େଇଦେଲେ । ତା'ପରେ ବାକିତକ ନୋଟ୍ ବ୍ରିଫ୍‌କେଶ୍‌ରେ ରଖିଦେଇ କଭର ବନ୍ଦ କଲେ । ପରେ ପରେ ସେ ଉଠିପଡ଼ିଲେ । ବ୍ରିଫ୍‌କେଶ୍ ଉଠେଇ ବାହାରିଲେ ଚାଲିଯିବାକୁ । ସେ ପର୍ଯ୍ୟନ୍ତ ମୁଁ ବୁଝିପାରିନଥାଏ ସେ ଅଭାବିତ ଘଟଣାର ତାତ୍ପର୍ଯ୍ୟ । ସେ ଚାଲିଯିବା ପୂର୍ବରୁ ମୁହଁ ଖୋଲି କେବଳ କହିଲେ - 'ଏ ଅପଦାର୍ଥ ସରକାର ଆପଣଙ୍କୁ ଏମିତି ଘରେ ରଖିଛି - ଆମେ ଜାଣୁ ସବୁ କଥା । ଚିନ୍ତା କରନ୍ତୁ ନାଇଁ । ଆଉ ପନ୍ଦର ଦିନ ପରେ ଆମେ ଆସିବୁ । ଆପଣଙ୍କ ସମସ୍ୟା ଆମ ସରକାର ଦୂର କରିଦେବ । କେବଳ ଆମପାଇଁ ଜନସାଧାରଣଙ୍କୁ ଯାଇ ପଦେ ମୁହଁ ଖୋଲି କୁହନ୍ତୁ ।'

ମୁଁ ପଚାରିଲି, 'କିନ୍ତୁ ଜଣେ ସରକାରୀ ଚାକିରିଆ ଭାବେ ମୁଁ କେମିତି ଆପଣଙ୍କ ଦଳ ପାଇଁ ପ୍ରଚାର କରିପାରିବି ? ଏ ଟଙ୍କା ତେବେ କ'ଣ ନିର୍ବାଚନ ପ୍ରଚାର ପାଇଁ ଉଦ୍ଦିଷ୍ଟ ? ମୁଁ ତ ସେ କାମ କରିପାରିବି ନାଇଁ ଆଦୌ ।' ସେ ଭଦ୍ରଲୋକ ହସିଲେ ।

କହିଲେ, 'ଏ ସବୁ ଟଙ୍କା ଯାହା ଦେଖୁଚନ୍ତି ସେ ସବୁ ଲୋକଙ୍କ ଠାରୁ ଭିକ୍ଷାକରି ଅଣାଯାଇଚି । ଜେଲରୁ ଫେରି ଆମ ଦଳର ନେତାମାନେ ନ ହେଲେ କୋଉଠୁ ପାଆନ୍ତେ ଧନ, ନିର୍ବାଚନ ଖର୍ଚ୍ଚ ତୁଲାଇବାକୁ ? ଜୟପ୍ରକାଶ ଜୀ ଘୋଷଣା କରିଛନ୍ତି, 'ଆମକୁ ଟଙ୍କା ଦିଅ ଓ ଭୋଟ ବି ଦିଅ, ଆମେ ତୁମଠାରୁ ଅପହୃତ ଗଣତନ୍ତ୍ରକୁ ପୁଣି ଫେରାଇ ଆଣିବୁ ।' ବର୍ତ୍ତମାନ ଲୋକଙ୍କ ଠାରୁ ମିଳିଥିବା ଏ ଦାନକୁ ପୁଣି ଲୋକଙ୍କୁ ବାଣ୍ଟିଦିଆଯିବ । ଆପଣଙ୍କ ଘର ବାଟେ ଯାଉଥିଲି । ଭାବିଲି - ଏଇଠୁ ଆରମ୍ଭ ହଉ ! ଆଚ୍ଛା ମୁଁ ଚାଲିଲି ।' ଭଦ୍ରଲୋକ ସିଧା ତାଙ୍କ ପାଇଁ ଅପେକ୍ଷାରତ ଜିପ୍‌ରେ ବସିଲେ - ଚାଲିଗଲେ ।

ସେ ଚାଲିଯିବା ପରେ ଯାଇ ଉପସ୍ଥିତ ବୁଦ୍ଧି ଫେରିଆସିଲା । ମନେ ପଡ଼ିଲା - କାଲି ରାତିରେ ମୁଁ ଜଗନ୍ନାଥଙ୍କୁ ଯାହାସବୁ କହିଥିଲି । ଶହେଟଙ୍କିଆ ନୋଟ୍ ଦୁଇଟାକୁ ହାତରେ ଧରି ମୁଁ ବିମୂଢ଼ ଅବସ୍ଥାରେ କେତେ ସମୟ ଠିଆହୋଇ ରହିଲି । ଭାବିପାରୁନଥାଏ ଯେ ଏମିତି ପୁଣି ହୁଏ ବୋଲି । ମୁଁ କାଲି ରାତିରେ ଠାକୁରଙ୍କୁ କଣ୍ଟ ଦେଇଥିଲି - ମୁଁ ଉଠିବା ଆଗରୁ ତୁମେ ଆସି ମୋ ଦୁଆର ବାଡ଼େଇ ଟଙ୍କା ଦୁଇଶହ ଦେଇଯିବ, ତା'ହେଲେ ବୁଝିବି ତୁମର ମୋର ସଂପର୍କ ପୂର୍ବପରି ରହିଚି ଅତୁଟ । ମୋର ଅଳି ତେବେ ଶୁଣାଗଲା ଠାକୁରଙ୍କୁ । ରୋମ ଟାଙ୍କୁରି ଉଠିଲା । କ୍ୟାଲେଣ୍ଡର ପାଖକୁ ଦଉଡ଼ିଯାଇ ଅନେଇ ରହିଲି ସେ ଚିତ୍ର ଚାରିଟାକୁ । ଛବିମାନେ କ'ଣ କଥା ଶୁଣନ୍ତି ? କଥାର ଉତ୍ତର ମଧ୍ୟ ଦେଇପାରନ୍ତି । ଟିକିଏ ବେଳ ପରେ ଶୁଣିଲି - 'ନନା ! କିଏ ଆସିଥିଲେ କି ?' ହସିଲି । କହିଲି, 'ଜଗନ୍ନାଥ' । ତା' ପରୀକ୍ଷା ଫି ଦୁଇଶହ ଟଙ୍କା ତା ହାତକୁ ଧରେଇଦେଲି ।

ସେ ଘଟଣାର ପନ୍ଦର ଦିନ ପରେ ୧୯୭୭ ମାର୍ଚ୍ଚ ୧୬ରେ ଦେଶରେ ଷଷ୍ଠ ସାଧାରଣ ନିର୍ବାଚନ ହେଲା । ସେ ନିର୍ବାଚନରେ ଇନ୍ଦିରା ଗାନ୍ଧୀ ଓ ତାଙ୍କ ଦଳ ପରାଜିତ ହୋଇଗଲେ । କଂଗ୍ରେସ ହାରିଯିବା ପରେ ଦେଶର ରାଜନୈତିକ ପରିସ୍ଥିତି ସଂପୂର୍ଣ୍ଣ ବଦଳିଗଲା । ଜନତାଦଳ ଆସିଲେ ସଦଳବଳେ କ୍ଷମତାକୁ କେନ୍ଦ୍ରରେ । ମୋରାରଜୀ ଦେଶାଇ ପ୍ରଧାନମନ୍ତ୍ରୀ ହେଲେ । କେନ୍ଦ୍ର ମନ୍ତ୍ରିମଣ୍ଡଳରେ ବିଜୁ ପଟ୍ଟନାୟକ ଯୋଗଦେଲେ । ତିନି ମାସ ପରେ, ଜୁନ୍ ଦଶରେ, ଓଡ଼ିଶା ବିଧାନସଭାର ସାନି ନିର୍ବାଚନ ହେଲା । ଏ ନିର୍ବାଚନରେ ଜନତା ଦଳ ୧୪୭ ଆସନରୁ ୧୧୦ ଆସନରେ ଜିତି ସରକାର ଗଠନ କଲା । ମୁଖ୍ୟମନ୍ତ୍ରୀ ହେଲେ ନୀଳମଣି ରାଉତରାୟ । ତା'ପରେ ମୋ ଚାକିରିରେ ଉଠିଥିବା ଝଡ଼ତୋଫାନ ଅନ୍ତତଃ କିଛି ବର୍ଷ ପାଇଁ ଚାଲିଗଲା ।


୭/୮, ଶହୀଦ ନଗର

ଭୁବନେଶ୍ୱର - ୭୫୧୦୦୭

ଭ୍ରାମ୍ୟଭାଷ : ୯୩୩୮୨୧୯୦୯୦




# ସେ ତ ଭକତ ଭାବରେ ବନ୍ଧା

## ଦାଶରଥି ନାଥ

ଶ୍ରୀଜଗନ୍ନାଥଙ୍କ ଭଳି ଠାକୁର ସମଗ୍ର ବିଶ୍ୱରେ ଅନନ୍ୟ ଓ ଅଦ୍ୱିତୀୟ । ତାଙ୍କ ସ୍ୱରୂପ ଅଚିନ୍ତ୍ୟ, ଅବ୍ୟକ୍ତ ଓ ରହସ୍ୟମୟ । ପଣ୍ଡିତ ଓ ଦାର୍ଶନିକମାନେ ତାଙ୍କୁ ଅନନ୍ତ, ଅକ୍ଷୟ, ଅବ୍ୟୟ, ଅବିନଶ୍ୱର, ପୁଣି ସାକାର ଓ ନିରାକାର ଭାବରେ ଚିତ୍ରଣ କରିଛନ୍ତି । ତାଙ୍କ ବିଷୟରେ ଯେତେ ଚିନ୍ତା କଲେ ସେ ନୂତନରୁ ନୂତନ ଭାବରେ ଅନୁଭୂତ ହୁଅନ୍ତି ।

ଜଗତର ନାଥ ଶ୍ରୀଜଗନ୍ନାଥ । ସାରା ଜଗତର ସକଳ ଧର୍ମଧାରା ତାଙ୍କରି ଠାରେ ବିଲୀନ ହୋଇଛି । ସେ କୌଣସି ଗୋଟିଏ ସମ୍ପ୍ରଦାୟର ଉପାସ୍ୟ ଦେବତା ନୁହନ୍ତି । ଜଗନ୍ନାଥ ହେଉଛନ୍ତି ଶବରର ଦାରୁଦେବତା, ଜୈନଙ୍କର ତ୍ରିତତ୍ତ୍ୱ, ବୌଦ୍ଧଙ୍କର ତ୍ରିରତ୍ନ, ତାନ୍ତ୍ରିକମାନଙ୍କର ଦକ୍ଷିଣକାଳୀ, ଗାଣପତ୍ୟମାନଙ୍କର ଗଣପତି, ଶୈବମାନଙ୍କର ଭୈରବ, ବୈଷ୍ଣବମାନଙ୍କର ଶ୍ରୀକୃଷ୍ଣ ଏବଂ ରାମାନନ୍ଦୀଙ୍କର ଶ୍ରୀରାମ । ସମସ୍ତଙ୍କର ଆରାଧ୍ୟ । ସେ କେବଳ ଓଡ଼ିଶାର ନୁହନ୍ତି, ସାରା ଜଗତର ।

ଜଗନ୍ନାଥୈକ ପ୍ରାଣ ଓଡ଼ିଆଟି ଭାବରେ ମୋ ଭିତରେ ମଧ୍ୟ ଜଗନ୍ନାଥଙ୍କୁ ନେଇ ଅନେକ ଉତ୍କଣ୍ଠା । ଜଗନ୍ନାଥଙ୍କ ଦର୍ଶନ କରିଛି ଖୁବ ପାଖରୁ, ରତ୍ନବେଦୀ ଉପରେ, ପୁଣି ଦୂରରୁ ବଡ଼ଦାଣ୍ଡର ଧୂଳି ଧୂସରିତ ଭକ୍ତମାନଙ୍କ ମଧ୍ୟରୁ । ସବୁଠି ସେହି ଚକାଆଖି ହିଁ ମୋତେ ସମ୍ମୋହିତ କରିଛି । କେତେଥର ତାଙ୍କୁ ବାଳଗୋପାଳ ଭାବରେ ଦେଖିବାର ଇଚ୍ଛା ହୋଇଛି । କିନ୍ତୁ ପାରିନି । ଭାବିଛି ଯେ କାହିଁ ଦାସିଆ ବାଉରୀର ଭାଗ୍ୟ-ହାତ ବଢ଼ାଇ ବାରି ନଡ଼ିଆକୁ ନେଇଯିବେ କଳାଠାକୁର । ନା, ଭକ୍ତ ସାଲବେଗ ପରି ଭାଗ୍ୟ ! ପୁଣି ମନକୁ ଆସେ ପୁରାଣର କଥା । ମହାରାଷ୍ଟ୍ରର ଗଣପତି ଭଟ୍ଟଙ୍କ କଥା ।

ଏକଦା ଗଣପତି ଭଟ୍ଟ ଶ୍ରୀକ୍ଷେତ୍ର ଆସିଥିଲେ । ସେ ଶୁଣିଥିଲେ ଯେ ଜଗନ୍ନାଥଙ୍କୁ ଯେ ଯେଉଁ ରୂପରେ ଯେଉଳି ଭାବରେ ଡାକନ୍ତି ସେ ସେଉଳି ରୂପରେ ଦେଖା ଦିଅନ୍ତି । ସେ ମନ୍ଦିର ଯାଇ ଜଗନ୍ନାଥଙ୍କୁ ଗରୁଡ଼ ପଛରେ ଥାଇ ଦର୍ଶନ କରୁ କରୁ ଭାବିଲେ, 'କାହିଁ ନା ତ ! ଏ ତ ମୋ ଇଷ୍ଟ ଦେବତା ସିଦ୍ଧି ବିନାୟକ ନୁହନ୍ତି ।' ଦୁଃଖରେ ଭାଙ୍ଗିପଡ଼ିଲେ ସେ । ବ୍ୟର୍ଥ ମନୋରଥରେ ମନ୍ଦିର ବାହାରକୁ ବାହାରି ଆସି ବିଶ୍ରାମ ନେଉଥା'ନ୍ତି । ଆଖିରୁ ଝରିପଡୁଥାଏ ଅବିରତ ଲୁହଧାର । ଭକ୍ତର ବିକଳ ସହିପାରିଲେନି ଭଗବାନ । ଶାସ୍ତ୍ରରେ ଉଲ୍ଲେଖ ଅଛି, 'ଅହଂଭକ୍ତ ପରାଧୀନ...' ଅର୍ଥାତ ଭଗବାନ ହେଉଛନ୍ତି ଭକ୍ତର ଅଧୀନ । ରାତିରେ ଗଣପତିଙ୍କୁ ସ୍ୱପ୍ନାଦେଶ ହେଲା, ପ୍ରଭୁ କହୁଛନ୍ତି, 'ରେ ଭକ୍ତ ! ତୁ ମୋ ପାଖକୁ ଫେରିଆ । ମୁଁ ତୋତେ ଦର୍ଶନ ଦେବି ।' ରାତି ପାହି ଆସିଲାଣି । ଗଣପତି

ଭଟ୍ଟ ପୁଣି ଚାଲିଲେ ଶ୍ରୀମନ୍ଦିର । ରତ୍ନ ସିଂହାସନ ଉପରେ ଏ କ'ଣ ? ଗୋଟିଏ କଳାହାତୀ, ଅନ୍ୟଟି ଧଳାହାତୀ । ସେ ଭାବିଲେ, ମୋର ଶତଜନ୍ମର ତପସ୍ୟା ଫଳିଲା, ନିସ୍ତରିଲି ନିସ୍ତରିଲି ବୋଲି କହି ସେ ଗଡ଼ିଗଲେ । ଆନନ୍ଦାତିଶଯ୍ୟରେ ତାଙ୍କ କଣ୍ଠରୁ ନିର୍ଗତ ହେଲା ଅମୃତ ଶ୍ଳୋକ -

'ତ୍ୱମେବ ବକ୍ରତୁଣ୍ଡଶ୍ଚ ତ୍ୱମେବ ଗଣନାୟକ
ଶୁକ୍ଳ କୃଷ୍ଣ ସ୍ୱରୂପେଣ ଦ୍ୱିରଦ ଦ୍ୱୟ ମେ ବ ଚ ।'

ଅର୍ଥାତ୍ ହେ ଜଗନ୍ନାଥ, ତୁମେ ସ୍ୱୟଂ ସିଦ୍ଧିବିନାୟକ ଗଣପତି । ଝରଝର ଝରିଗଲା ଆଖିରୁ ଲୁହର ଧାର । ଭକ୍ତିରେ ଗଡ଼ିଗଲେ ସେ । ତଳେ ପଡ଼ି ପୁଣି ଉଠି ଦେଖିଲେ, ଜଗନ୍ନାଥ ପ୍ରଭୁ ପାଶାଙ୍କୁଶ ପୁସ୍ତକ ଓ ଅମୃତ ଲଡୁ ଧାରଣ ପୂର୍ବକ ରକ୍ତବର୍ଣ୍ଣ ଗଣେଶ ରୂପ ଧାରଣ କରିଛନ୍ତି । ଏପରି ଅଲୌକିକ ରୂପ ଦେଖି ପ୍ରସନ୍ନ ମନରେ ଗଣପତି ଭଟ୍ଟ ଫେରିଗଲେ ମହାରାଷ୍ଟ୍ର । ସେହି ଦିନରୁ 'ସେ ତ ଗଣେଶ ବେଶ, ଦେଖି ଭକତର ମନ ତୋଷ' - ଏଇ ସ୍ତୁତିକୁ ମନେ ପକାଇବା ପାଇଁ ପ୍ରତିବର୍ଷ ଜ୍ୟୈଷ୍ଠ ମାସ ସ୍ନାନ ପୂର୍ଣ୍ଣମୀରେ ଶ୍ରୀଜୀଉଙ୍କର ହାତୀବେଶ ହୁଏ ।

ସଂସାର ଗଢ଼ିବା ଭିତରେ, ପିଲାଛୁଆଙ୍କୁ ମଣିଷ କରିବା ମଧ୍ୟରେ କେତେବେଳେ ବୟସର ଅପରାହ୍ନରେ ପହଞ୍ଚିଲି ଜଣାନାହିଁ । ଅବସର ନେବା ପାଖେଇ ଆସୁଥାଏ । କର୍ମମୟ ଜୀବନ ମଧ୍ୟରେ ପୂଜାପାଠ ଓ କୃଷ୍ଣ ଉପାସନାରେ ସମୟ କଟିଯାଏ । ଷ୍ଟିଲପ୍ଲାଣ୍ଟରେ ଚାକିରି କରୁଥାଏ । ଚାରିପୁଅ ଜଣଙ୍କ ପରେ ଜଣେ ଆର୍.ଇ.ସି (ବର୍ତ୍ତମାନର ଏନ୍.ଆଇ.ଟି)ରେ ପ୍ରଥମ ଥର ଏଣ୍ଟ୍ରାନ୍ସ ଦେଇ ନାମ ଲେଖାନ୍ତି । ବିନା ଟ୍ୟୁସନ୍‌ରେ ପିଲାମାନଙ୍କ ସଫଳତାରେ ମୁଣ୍ଡ ଆପେ ନଇଁଯାଏ ସେହି ଜଗନ୍ନାଥଙ୍କ ପାଦପଦ୍ମରେ । ସବୁ ସେଇ ବାଳଗୋପାଳର ଇଚ୍ଛା । ସେତେବେଳେ (ଆଜିକୁ ତିରିଶ ବର୍ଷ ତଳେ) ଇଞ୍ଜିନିୟରିଂ ପଢ଼ିବାପାଇଁ ସିଟ୍ ପାଇବା କାଠିକର ପାଠ ଥିଲା । ଏବେ ତ ପ୍ରାଇଭେଟ୍ କଲେଜ ଅସଂଖ୍ୟ । କିନ୍ତୁ ସେତେବେଳେ ଏତେ ସହଜ ନଥିଲା । ସାନ ପୁଅ ମେଡ଼ିକାଲ ପାଇ ସେଠୁ ଛାଡ଼ି ଆସି କଟକରେ ପାଠ ପଢ଼ିଲା । ଯା'ହେଉ, ସବୁ ଲୀଳାମୟଙ୍କ ଲୀଳା ଭାବେ । ପିଲାମାନେ ବଡ଼ ହେଲେ, ଚାକିରି କଲେ, ସମାଜରେ ପ୍ରତିଷ୍ଠିତ ହେଲେ । ଝିଅ ଦୁଇଟି ମଧ୍ୟ ପଢ଼ା ସାରି ଚାକିରି କଲେ । ବିବାହ କରି ଘର ସଂସାର କଲେ ।

ଓଡ଼ିଆରେ କଥା ଅଛି, ବାର ମାସରେ ତେର ପର୍ବ । ଶ୍ରୀଜଗନ୍ନାଥଙ୍କ ଲୀଳା ଅପାର । କେତେ ଯେ ଯାନିଯାତ ବର୍ଷ ତମାମ ଲାଗିଥାଏ । ସାଧାରଣ ମନୁଷ୍ୟର ସେସବୁ ବୋଧଗମ୍ୟ ନୁହେଁ । ମଥୁରାର ବନ୍ଦୀଘରେ ଜନ୍ମ ହେବାଠାରୁ ଗୋପଲୀଳା,

ମଥୁରା ଲୀଳା ଓ ଦ୍ୱାରିକା ଲୀଳା ଭଳି ଅନେକ ଲୀଳା ସେ କରିଛନ୍ତି । ସେହି ଲୀଳାମୟ ବାଳଗୋପାଳ ରୂପରେ କେବେ ଦେଖା ଦେବେ ? ଏଭଳି ଚିନ୍ତା ମନକୁ ଆସେ । ଭକ୍ତ ଓ ଭଗବାନଙ୍କ ମଧ୍ୟରେ ନିବିଡ଼ ସମ୍ପର୍କ । ଭକ୍ତ ଜାଣିପାରେ ନାହିଁ । କିନ୍ତୁ ଭଗବାନ ସବୁ ଜାଣନ୍ତି । ଏପରିକି ଭକ୍ତ ହୃଦୟର ଟିକିନିଖି କଥା ।

ଦିନେ ରାତିରେ ଖାଇପିଇ ଶୋଇବାକୁ ଗଲି । ପିଲାମାନେ ତ ସବୁ ବାହାରେ । ଚାକିରି କରି ଘର ସଂସାର କଲେଣି । ଘରେ ସ୍ୱାମୀ ସ୍ତ୍ରୀ ଆମେ ଦି'ଜଣ । ଶୋଇଛି, ସ୍ୱପ୍ନ ଦେଖିଲି । କାନ ପାଖରେ କେହି ଡାକୁଛି ଯେମିତି - 'ଆ, ନାଥିଆ ଆ । ହୋଲି ଖେଳିବା ପରା ! ଧଡ଼ପଡ଼ ଉଠି ଅବିର ଧରି ହୋଲି ଖେଳିବାକୁ ବାହାରି ଯାଉଛି । ବାଟରେ ଚାରି ପାଞ୍ଚ ବର୍ଷର ବାଳକଟିଏ । ମୁଣ୍ଡରେ ମୟୂରପୁଚ୍ଛ । କିଛି ରଙ୍ଗ କି ଅବିର ତା' ଦେହରେ ନାହିଁ । ମୁଁ ତାକୁ ଟିପି ଟିପି ଅବିର ଲଗାଇଦେଉଛି ।' ରାତି ପାହି ଆସିଲାଣି । ସ୍ତ୍ରୀଙ୍କୁ ଉଠାଇ ସ୍ୱପ୍ନ ବୃତ୍ତାନ୍ତ ଶୁଣାଇଲି । ସେ ବହେ ହସିଲେ । ହଁ, ତମକୁ ଗୋପାଳ ସ୍ୱପ୍ନରେ ଦେଖା ଦେଲେ । ତମେ ତ ତାଙ୍କର ବଡ଼ପଣ୍ଡା ନା ! କିଛି ନକହି ଚୁପ୍ ରହିଲି ।

୧୯୯୨ ମସିହାର କଥା । ହୋଲି ପର୍ବ ହୋଇଥାଏ । ରାଉରକେଲା ଗୋଟିଏ ମିନି ଇଣ୍ଡିଆ ବୋଲି ଲୋକେ କହନ୍ତି । କାରଣ ଏଠି ବିଭିନ୍ନ ଭାଷା, ଧର୍ମ, ଜାତିର ଲୋକ ବସବାସ କରନ୍ତି । ସମସ୍ତଙ୍କର ପର୍ବ ସମସ୍ତେ ଆନନ୍ଦ ଉତ୍ସାହର ସହ ପାଳନ କରନ୍ତି । କମ୍ପାନୀ କ୍ୱାଟର ଧାଡ଼ି ଧାଡ଼ି ହୋଇ ରହିଛି । ପ୍ରତିବର୍ଷ ହୋଲି ପର୍ବ ପଡ଼ୋଶୀଙ୍କ ସହ ଆନନ୍ଦରେ ଖେଳିଥାଏ । ପିଲାମାନଙ୍କ ମଧ୍ୟରେ କି ଉତ୍ସାହ, କି ଆନନ୍ଦ ! ସକାଳୁ ସମସ୍ତେ ପିଚକାରୀ ଧରି ରଙ୍ଗିନ ପାଣି ପରସ୍ପର ଉପରକୁ ଛାଟି ଆନନ୍ଦରେ ବିଭୋର । ବିଭିନ୍ନ ରଙ୍ଗ ଆଉ ପାଣିରେ ସମସ୍ତଙ୍କ ମୁହଁ ରଙ୍ଗିନ । ବୟସ୍କମାନେ ଟିକେ ଡେରିରେ ଖେଳିବାକୁ ବାହାରନ୍ତି ।

ପଡ଼ୋଶୀ ପଟ୍ଟନାୟକ ବାବୁଙ୍କ ସହ ମିଶି ହୋଲି ଖେଳିବାକୁ ବାହାରିଲି । ଛଅ ନମ୍ବର ସେକ୍ଟରରେ ପଡ଼ୋଶୀ, ଚିହ୍ନାଜଣା, ସହକର୍ମୀ ସମସ୍ତଙ୍କ ଘର ବୁଲିବୁଲି ହୋଲି ଖେଳିଲୁ । ବାରଟା ପାଖାପାଖି ଘରକୁ ଫେରୁଛୁ । ଦୁଇ ଧାଡ଼ି ଘର ମଝିରେ ଚଉଡ଼ା ପିଚୁ ରାସ୍ତା । ଆମେ ଦି'ଜଣ ରାସ୍ତାର ବାମ କଡ଼େ ହାଲିଆ ହୋଇ ଫେରୁଥାଉ । ହଠାତ୍ ଦେଖିଲୁ, ଆମ ଆଗପଟୁ ଡଉଲଡ଼ାଉଲ ପିଲାଟିଏ ବେଶ୍ ସଫାସୁତୁରା ହୋଇ ଆସୁଛି । ପ୍ରାୟ ଚାରିପାଞ୍ଚ ବର୍ଷର ପିଲାଟି । ସାଙ୍ଗରେ କେହି ନାହିଁ । ପିଲାଟି ଦେହରେ ଟୋପେ ଅବିର କି ରଙ୍ଗପାଣି ଲାଗିନାହିଁ । ଆମେ ଖୁସିରେ ତା ପାଖକୁ ରଙ୍ଗ ଲଗାଇବାକୁ

ଯିବାରୁ ସେ ଦୁଇହାତ ହଲାଇ କହିଲା, 'ନା, ନା, ମୋତେ ବେଶୀ ରଙ୍ଗ ଲଗାଅ ନାହିଁ। ମୋ ମା' ନାହାନ୍ତି । ମୋତେ କିଏ ଗାଧୋଇ ଦେବ ?' କହିଲି, ଆମେ ତୋତେ ବେଶୀ ରଙ୍ଗ ଲଗାଇବୁ ନାହିଁ। କେବଳ ଗୋଟେ ଟିପା ଅବିର କପାଳରେ ଲଗାଇ ଦେବୁ । ଆଜି ପରା ହୋଲି । ରଙ୍ଗକୁ ମନା କରନ୍ତିନି । ସୁନାପିଲା ଭଳି ଧୀରେ ଆସି ପାଖରେ ଛିଡ଼ା ହେଲା ପିଲାଟି । ମୁଁ ହଳଦୀ ରଙ୍ଗର ଟିପା ଲଗାଇଦେଲି, ପଟ୍ଟନାୟକ ବାବୁ ନୀଳ ରଙ୍ଗ ଲଗାଇଦେଲେ । ପିଲାଟି ଧୀରେ ଧୀରେ ଚାଲିଲା । ଆମେ ଚାରିହାତ ଆଗକୁ ଯାଇଛୁ କି ନାହିଁ ପଟ୍ଟନାୟକ ବାବୁଙ୍କୁ କହିଲି, ଦେଖନ୍ତୁ ତ ! ପିଲାଟିକୁ ହୋଲିରେ ଏକୁଟିଆ ଛାଡ଼ି ବାପା ମା' ନିଶ୍ଚିନ୍ତରେ ଘରେ ବସିଛନ୍ତି । କିଛି ଅସୁବିଧା ହେଲେ ? କ'ଣ ଭାବି ହଠାତ୍ ପଛକୁ ବୁଲି ଦେଖେ ତ ପିଲାଟି ନାହିଁ। ଲମ୍ବା ରାସ୍ତା ପଛକୁ ଲମ୍ବିଯାଇଛି କେତେ ଦୂର । ଏତେ ଛୋଟ ପିଲା, ଏତେ ଶୀଘ୍ର କୁଆଡ଼େ ଗଲା । ଭାବିପାରିଲି ନାହିଁ । ମନର ଚିନ୍ତା ମନରେ ମାରି ଫେରି ଆସିଲି ଘରକୁ ।

ସେଦିନ ହୋଲି ଖେଳ ଖୁବ ମଜାରେ କଟିଗଲା । ଘରକୁ ଆସି ଗାଧୋଇପାଧୋଇ ପତ୍ନୀଙ୍କ ସହ ଭୋଜନ କଲି । କିଛିଦିନ ପୂର୍ବରୁ ଶୁଣିଥିଲି ଯେ ଆଠ ନମ୍ବର ସେକ୍ଟରରେ ଜଣେ ବ୍ୟକ୍ତିଙ୍କ ଷୋହଳ ବର୍ଷର ଝିଅ ଦେହରେ ବାଳଗୋପାଳ ଆବିର୍ଭାବ ହେଉଛନ୍ତି । ସଂଧ୍ୟାପୂଜା ସାରି ପଟ୍ଟନାୟକ ବାବୁଙ୍କ ସହ ତାଙ୍କ ଘରକୁ ଗଲି । କିଛି ଭକ୍ତ ରୁଣ୍ଡ ହୋଇଥା'ନ୍ତି । ଆମେ ମଧ୍ୟ ଅପେକ୍ଷା କଲୁ । କିଛିକ୍ଷଣ ପରେ ମୋ ପାଳି ପଡ଼ିଲା । ଭିତର ଘରେ ଏକ ଚେୟାରରେ ସେ ଝିଅ ବସିଥା'ନ୍ତି । ମୁଁ ଯେମିତି ଭିତରକୁ ଯାଇଛି, ସେ ଉଠିପଡ଼ି କହିଲେ, 'ନା, ନା, ମୋତେ ବେଶୀ ରଙ୍ଗ ଲଗାଅ ନାହିଁ। ମୋ ମା' ନାହାନ୍ତି । ମୋତେ କିଏ ଗାଧୋଇ ଦେବ ?' ଅବିକଳ ରାସ୍ତାରେ ଭେଟିଥିବା ସେ ବାଳକ କହିଲା ପରି ଗୁଳୁଗୁଳୁ ଭାଷାରେ କହିଲେ । ମୁଁ ସ୍ତବ୍ଧ ହୋଇଗଲି । ଏ କେମିତି ଜାଣିଲେ ? ମୋ ସହ ଘଟିଥିବା ଘଟଣାର ସାକ୍ଷୀ ତ କେବଳ ପଟ୍ଟନାୟକ ବାବୁ । ସେ ତ ବାହାରେ ବସିଛନ୍ତି ! ଜାଣିଲ । ଏ ସବୁ ଗୋପାଳଙ୍କ ଇଚ୍ଛା । ଇଚ୍ଛାମୟଙ୍କ ଇଚ୍ଛା ଆଗରେ ମଣିଷର କ'ଣ ବା ଶକ୍ତି ? ମୁଣ୍ଡିଆ ମାରି ବାହାରି ଆସିଲି । ଆଖିରୁ ଝରିଯାଉଥାଏ ଅମାନିଆ ଆନନ୍ଦର ଅଶ୍ରୁ । ବାହାରେ ଆସି ଶୁଣିଲି ସେ ଝିଅର ମା' ଦୁଇଦିନ ଆଗରୁ କୌଣସି କାମରେ ପୁରୀ ଯାଇଛନ୍ତି । ବୁଝିଲି, ଏ ସବୁ ଗୋପାଳର ଫନ୍ଦି । ଗୋଟିଏ କଥା ବାରମ୍ବାର ମନକୁ ଆସୁଥାଏ । ବାଳଗୋପାଳ ମୋତେ ଦେଖା ଦେଲେ । ଆଉ ମୁଁ ଜାଣିପାରିଲି ନାହିଁ ! ସାରା ଜୀବନ ଯେଉଁ ଠାକୁରଙ୍କୁ ପୂଜି ଆସୁଥିଲି ସେ ଆଜି ଏତେ ବଡ଼ ହୋଲି ପରା ଦିନରେ ଦେଖା ଦେଲେ । ଆଉ ମୁଁ ଚିହ୍ନିପାରିଲି ନାହିଁ ! ହେଉ । ଯାହା ଭାଗ୍ୟ !

ଘରକୁ ଫେରି ପତ୍ନୀଙ୍କୁ ଆଉ ଏ କଥା କହିଲି ନାହିଁ । ପୁଣି ସେ ଥଟ୍ଟା କରିବେ । ଥାଉ । ମୋ ଭିତରର ଅଧୀରପଣ ମୋ ଭିତରେ ଥାଉ । ମୋ ବାଳଗୋପାଳଙ୍କୁ ଯେ ମୁଁ ସ୍ୱଚକ୍ଷୁରେ ଦେଖିଲି, ଏଇଟା ମୋ ପାଇଁ ପରମ ସୌଭାଗ୍ୟ ।

କିଏ କହେ, କଳାଠାକୁର ଖାଲି ତାଙ୍କ ପଣ୍ଡା ପଢ଼ିଆରୀମାନଙ୍କୁ ସ୍ୱପ୍ନାଦେଶ ଦିଅନ୍ତି କି ଗଜପତିଙ୍କୁ ସ୍ୱପ୍ନାଦେଶ ହୁଏ ବୋଲି ? ସେ ତ ଭକତ ଭାବରେ ବନ୍ଧା । ଭକ୍ତଟି ପୂର୍ଣ୍ଣପ୍ରାଣରେ ସମର୍ପଣ କରିଦେଲେ କଳାଠାକୁର ତ ତା'ର ହୋଇଯା'ନ୍ତି । ଆଖିରୁ ଝରିଆସିଲା ଆନନ୍ଦର ଦୁଇଧାର ଲୁହ । ସତରେ ! ଏତେ ଦିନର ତପସ୍ୟା କ'ଣ ସଫଳ ହେଲା ? ବାଳଗୋପାଳ ଆସି ମୋ ସହ ହୋଲି ଖେଳିଲେ ! ଏ ଦିବ୍ୟ ଅନୁଭୂତି କାହା ସହ ବାଣ୍ଟିନେବି ? ମନର ଅକୁହା କଥା ମନରେ ରଖିନେଲି । ଆଜିର ଏ ଆଧୁନିକ ଯୁଗରେ କେଉଁ ବ୍ୟକ୍ତି ବା ବିଶ୍ୱାସ କରିବ ମୋ କଥା ? କିନ୍ତୁ ଏ ତ ଭାବର କଥା । ବିଶ୍ୱାସର କଥା । 'ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର ।' କଥାଟି ନିରାଟ ସତ । ସେହି ଅବ୍ୟକ୍ତ, ଅକ୍ଷୟ, ଅଚିନ୍ତନୀୟଙ୍କ ଲୀଳା କିଏ ବା କଳନା କରିପାରିବ ? ମୁଁ ତ ଛାର ମଣିଷଟିଏ । ମହାଯୋଗୀ ଋଷିମାନେ ମଧ୍ୟ ତାଙ୍କର ଆଦି ଅନ୍ତ ପାଇପାରିନାହାନ୍ତି । ହୃଦ ମନ୍ଦିରରେ ତାଙ୍କରି ପ୍ରତିମୂର୍ତ୍ତି ସ୍ଥାପନା କରିଛି । ସାରା ଜୀବନ ତାଙ୍କୁ ହିଁ ପୂଜି ଆସିଛି । ଆଜି ଯାହା ବି ପାଇଛି ସବୁ ସେଇ ଜଗତନାଥଙ୍କ ଆଶିଷ । ଏଣୁ ତାଙ୍କରି ଆଶୀର୍ବାଦ କାମନା କରି ସାରା ଜୀବନ କଟାଇବା ଆଶାରେ ସେହି ପାଦପଦ୍ମରେ ମୁଣ୍ଡ ନୁଆଁଇଲି ।

ଏମ୍ ୱାନ-୪୬
ତାମ୍ରିତ କଲୋନୀ, ଅନୁଗୋଳ-୭୫୯୧୨୨
ଭ୍ରାମ୍ୟଭାଷ : ୯୪୩୭୩୪୮୯୨୮



# ଦାରୁଦେବତା

## ଗିରିଜା ଶଙ୍କର ଶର୍ମା

**କିଛି** ନାସ୍ତିକ ଭଗବତ୍ ସତ୍ତାର ଅସ୍ତିତ୍ୱ ଉପରେ ସଦାସର୍ବଦା ପ୍ରଶ୍ନ ଉଠେଇ ଥାଆନ୍ତି । କୌଣସି ପ୍ରକାରର ତର୍କ ତାଙ୍କୁ ସନ୍ତୁଷ୍ଟ କରିବାର ସାମର୍ଥ୍ୟ ରଖେନା, ଯେପରି ଚେଇଁ ଶୋଇଥିବା ବ୍ୟକ୍ତିକୁ ନିଦ୍ରାରୁ କ୍ଷାନ୍ତ କରିବା ପ୍ରୟାସ ଅପଚେଷ୍ଟାରେ ପରିଣତ ହୋଇଥାଏ । ସେଇମାନଙ୍କ ପାଇଁ ବୋଧହୁଏ ଅନୁଭୂତିରେ ଜଗନ୍ନାଥ ପରି ଅନୁଭୂତି ବର୍ଣ୍ଣନା କିଛିକାଂଶରେ ଫଳପ୍ରଦ ହୋଇପାରେ ।

ପ୍ରାୟ ଦଶ ବର୍ଷ ତଳର କଥା । ମୋ ସହଧର୍ମିଣୀ ରେଣୁଙ୍କର ଶ୍ରୀକ୍ଷେତ୍ର ପୁରୀ ବଦଳି ହୋଇଥାଏ । ଆମେ ସମସ୍ତେ ପୁରୀ ବଦଳିକୁ ଜଗନ୍ନାଥଙ୍କ ଆଶୀର୍ବାଦ ବୋଲି ଧରିନେଇ ପରମ ଆନନ୍ଦିତ ଥାଉ । ଯଥାଶୀଘ୍ର ଶ୍ରୀକ୍ଷେତ୍ରରେ ଯାଇ ପହଞ୍ଚିଗଲୁ । ରେଣୁ କାର୍ଯ୍ୟକ୍ଷେତ୍ରରେ ଯୋଗଦାନ କଲେ । ଆମ ପରିବାର କହିଲେ, ଆମେ ଦୁଇ ଓ ଆମର ଗୋଟିଏ ଝିଅ । ପୁରୀ ଯିବାର ଆକର୍ଷଣ ଆମ ପାଇଁ ଦୁଇ ପ୍ରକାରର । ପ୍ରଥମରେ ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀଙ୍କ ବିଗ୍ରହ ଦର୍ଶନ । ଯେବେ ଚାହିଁଲେ ସେବେ । ଯେଉଁ ସମୟରେ ଚାହିଁଲେ, ସେଇ ସମୟରେ ହୋଇପାରିବ । କେତେବଡ଼ ଆଶା ପୂରଣ ନ ହୋଇଛି ସତରେ ଏବଂ ଦ୍ୱିତୀୟ କାରଣ ଟିକିଏ ଗୌଣ ହେଲେ ମଧ୍ୟ ମହୋଦଧି ଦର୍ଶନ ଓ ସ୍ନାନର ଇଚ୍ଛା ।

ଦୁଇଦିନ ପୁରୀରେ ରହିବା ପରେ ମୁଁ ଓ ଝିଅ ପରସ୍ପର କାର୍ଯ୍ୟକ୍ଷେତ୍ରକୁ ଫେରି ଆସିଲୁ । ଝିଅ ଶୈଳବାଳା ମହିଳା ମହାବିଦ୍ୟାଳୟର ଛାତ୍ରୀ, ତାକୁ ସେଠି ଛାଡ଼ି ମୁଁ ସମ୍ବଲପୁର ଫେରି ଆସିଲି । ରେଣୁ ପୁରୀରେ ରହିଲେ । ସେ ଭାରି ଧର୍ମପରାୟଣା, ଜଗନ୍ନାଥଙ୍କର ପରମ ଭକ୍ତ ମଧ୍ୟ । ପ୍ରତ୍ୟହ ସ୍ନାନ ପରେ ପ୍ରାୟ ଘଣ୍ଟେ ନିରୋଳାରେ ବସି ଭଗବାନଙ୍କ ଧ୍ୟାନ ଶ୍ଳୋକାଦିରେ ବିତାନ୍ତି । ତାଙ୍କ ପୂଜା କୋଠରୀରେ ଜଗନ୍ନାଥଙ୍କ ଚିତ୍ର ବିଗ୍ରହ ଓ ଅନ୍ୟ ଦେବଦେବୀ ପୂଜିତ ହୁଅନ୍ତି । ପୂଜିତ ହେଉଥିବା ଜଗନ୍ନାଥଙ୍କ ଚିତ୍ର ବିଗ୍ରହ ବକ୍ରାକାର ଫ୍ରେମ ମଧ୍ୟରେ ଥିବାରୁ ଅର୍ପିତ ପୁଷ୍ପ ଅନେକ ସମୟରେ ନିମ୍ନ ଭାଗକୁ ଖସିଆସେ । ସେ ମନେ ମନେ ଭାବିଲେ ଚଉଡ଼ା ଫ୍ରେମବାଲା ଫଟୋଚିତ୍ର ରଖାଗଲେ ସେଠାରୁ ଫୁଲ ଖସିବ ନାହିଁ ।

ନିଜର କାର୍ଯ୍ୟବ୍ୟସ୍ତତା ଯୋଗୁଁ ହେଉ ବା ଅନ୍ୟ କୌଣସି କାରଣବଶତଃ ଜଗନ୍ନାଥଙ୍କର ଚଉଡ଼ା ଫ୍ରେମ୍‌ବାଲା ଫଟୋଚିତ୍ର କିଣିପାରି ନଥା'ନ୍ତି ରେଣୁ । ଏ ସ୍ଥିତିରେ ବେଶ କିଛିଦିନ କଟିଯାଇଛି । ହଠାତ୍ ଦିନେ ତାଙ୍କର ଭୁବନେଶ୍ୱରକୁ ବଦଳି ଆଦେଶ

ଆସିଲା । ପୁରୀକୁ ବଦଳି ହୋଇ ଆସିବାର ଏ ପର୍ଯ୍ୟନ୍ତ ଛଅ ମାସ ମଧ୍ୟ ହୋଇନାହିଁ, ଭୁବନେଶ୍ୱର ବଦଳି ହେବାର କାରଣ କ'ଣ ? ଅନୁସନ୍ଧାନ ପରେ ଜଣାପଡ଼ିଲା ଯେ, ଅନ୍ୟ ଜଣେ ଅଫିସରଙ୍କୁ ଅନୁକମ୍ପା ଦେଖାଇ ପୁରୀ ଅଣାଯାଇଛି ତାଙ୍କ ବଦଳରେ । ମନ ଭାରି ଦୁଃଖ ହେଲା । ପୁରୀ ପରି କ୍ଷେତ୍ରରେ ଯାହା ଜଗତର ନାଥଙ୍କ ନିବାସ ସ୍ଥଳ ସେଠାରେ ମଧ୍ୟ ଏ ପ୍ରକାରର ଅନ୍ୟାୟ ଚାଲିଛି । ହଠାତ୍ ବିଦ୍ରୋହରେ ମନ ଭରିଗଲା । ଜଗନ୍ନାଥଙ୍କୁ ଭଲ ମନ୍ଦ ଦି'ପଦ କହି ଆତ୍ମସନ୍ତୁଷ୍ଟି ହେଲା ପରେ ତାଙ୍କର ବିଗ୍ରହ କିଣିବା ଇଚ୍ଛାକୁ ଇତିଶ୍ରୀ କରାଗଲା ।

ରେଣୁଙ୍କ ପଦବୀରେ ଭୁବନେଶ୍ୱରରେ ଯେଉଁ ଅଧିକାରୀ ରହନ୍ତି ତାଙ୍କର ପ୍ରତି ସପ୍ତାହରେ ତିନି ଦିନ ଭୁବନେଶ୍ୱର, ଦୁଇ ଦିନ ଖୋର୍ଦ୍ଧା ଓ ଦିନେ ବାଣପୁରରେ କାମ କରିବାକୁ ହୁଏ । ସରକାରୀ କ୍ୱାଟର୍ସ ଖୋର୍ଦ୍ଧାରେ ଅବସ୍ଥିତ । ରେଣୁ ଖୋର୍ଦ୍ଧାରେ ତାଙ୍କ ସରକାରୀ ବାସଭବନରେ ରହନ୍ତି । ଭୁବନେଶ୍ୱର ଓ ବାଣପୁର ଯିବା ଆସିବା କରନ୍ତି ସେଠାକାର କାମ ପାଇଁ । ଖୋର୍ଦ୍ଧା ପାଖ ଦଧିମାଛ ଗାଡ଼ିଆରୁ ଥରେ ଶ୍ରୀଜୀଉଙ୍କ ନବକଳେବର ପାଇଁ ଦାରୁ ସଂଗ୍ରହ ହୋଇଥିଲା । ସେହିଦିନ ଠାରୁ ଖୋର୍ଦ୍ଧାରୁ 'ଦାରୁଦେବତା' ନାମକ ଏକ ବାର୍ଷିକ ମୁଖପତ୍ର ଜଗନ୍ନାଥଙ୍କ ସଂପର୍କରେ ଲେଖାମାନ ସଂକଳିତ ହୋଇ ପ୍ରକାଶିତ ହୁଏ । ରେଣୁ ଯଦ୍ୟପି ନିୟମିତ ଲେଖାଲେଖି କରନ୍ତି ନାହିଁ, ତଥାପି ଉଦ୍ୟୋକ୍ତାଙ୍କ ବିଶେଷ ଅନୁରୋଧରେ ସେ ଗୋଟିଏ ଲେଖା 'ଦାରୁଦେବତା' ପାଇଁ ଦେଇଥିଲେ । ଏ ଭିତରେ 'ଦାରୁଦେବତା' ପ୍ରକାଶ ପାଇ ସାରିଛି ଓ ତା'ର ଗୋଟିଏ ପ୍ରତିଲିପି ରେଣୁଙ୍କୁ ଉଦ୍ୟୋକ୍ତାମାନେ ଦେଇଛନ୍ତି ।

ସେଦିନ ରେଣୁଙ୍କ କାମ ଭୁବନେଶ୍ୱର ଅଫିସରେ ଥାଏ । ସେ 'ଦାରୁଦେବତା' ବହିଟି ନେଇକରି ଯାଇଥା'ନ୍ତି, ଯଦି ସମୟ ମିଳେ ପଢ଼ିବେ । ଖରାବେଳ ପାଖାପାଖି ସାଢ଼େ ତିନିଟା ହେବ । ସେ 'ଦାରୁଦେବତା' ବହି ପଢ଼ିବାରେ ତଲ୍ଲୀନ । ଏହି ସମୟରେ ତାଙ୍କ ପ୍ରକୋଷ୍ଠ କବାଟ ଟିକିଏ ଫାଙ୍କ କରି କେହି ଜଣେ କହିଲେ, ମା' ଜଗନ୍ନାଥଙ୍କ ଫଟୋ ନେବେ ? ରେଣୁ ଆଗନ୍ତୁକଙ୍କୁ ଭିତରକୁ ଆସିବାକୁ କହିଲେ । ଆଗନ୍ତୁକ ଜଣକ ଉତ୍ତର ଷାଠିଏ ବର୍ଷର ସୌମ୍ୟ ଦର୍ଶନ ବୃଦ୍ଧ ଜଣେ । ହାତରେ ତାଙ୍କର ବେଶ୍ ବଡ଼ ସାଇଜ୍‌ର ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହ ଥାଇ ବାକ୍ସ ଆକୃତିର ସୁଦର୍ଶନ ଫ୍ରେମଯୁକ୍ତ ବିଗ୍ରହ । ହଠାତ୍ ରେଣୁଙ୍କର ଭାବାନ୍ତର ହେଲା । ପୁରୀରୁ ଅସମୟରେ ବଦଳି ଆଦେଶ ପାଇ ଜଗନ୍ନାଥଙ୍କ ଉପରେ ଅଭିମାନ କରି ଆଜି ପର୍ଯ୍ୟନ୍ତ ଜଗନ୍ନାଥଙ୍କ ଫଟୋଚିତ୍ର ନ କିଣି ରହିଥିବା ତାଙ୍କ ଅଭିମାନୀ ହୃଦୟରୁ ଅଭିମାନର ବାଦଲ ଅପସରି

ଗଲା । ସେ ଦେଖିଲେ ସ୍ୱୟଂ ଜଗନ୍ନାଥ ନିଜେ ତାଙ୍କ ପାଖକୁ ଆସିବା ପାଇଁ ଆଗ୍ରହ ପ୍ରକାଶ କରିଛନ୍ତି ।

ରେଣୁ ଆଗନ୍ତୁକ ବିକ୍ରେତାଙ୍କୁ ପଚାରିଲେ, ଆପଣ ଅଫିସ ପରି ସ୍ଥାନକୁ ଜଗନ୍ନାଥଙ୍କ ବିଗ୍ରହ ବିକ୍ରି ଉଦ୍ଦେଶ୍ୟରେ କେମିତି ଆସିଲେ ? ସେ କହିଲେ - ଏ ପ୍ରକାରର ବିଗ୍ରହ ସେ ତିଆରି କରି ବିକ୍ରି କରନ୍ତି । କେହି ଜଣେ ତାଙ୍କୁ ଅନୁରୋଧ କରିଥିଲେ ଗୋଟିଏ ଆଣିଦେବା ପାଇଁ । ଯେହେତୁ ତାଙ୍କୁ ସେ ଭେଟି ପାରିଲେ ନାହିଁ, ତେଣୁ କାଳେ ଅନ୍ୟ କ୍ରେତା ମିଳିଯିବେ ଭାବି ସେ ଅଫିସ୍‌କୁ ଆସିଥିଲେ ।

ରେଣୁ ତତ୍‌କ୍ଷଣାତ୍ ସେ ବିଗ୍ରହ କିଣିଲେ । ଆଗନ୍ତୁକଙ୍କ ପ୍ରସ୍ଥାନ ପରେ ଭଲ ଭାବରେ ବିଗ୍ରହକୁ ଚାହିଁ ଭଗବାନଙ୍କ ଠାରେ ଗଭୀର କୃତଜ୍ଞତା ଜ୍ଞାପନ କଲେ । ସେହିଦିନ ଠାରୁ ସେ ବିଗ୍ରହ ତାଙ୍କ ପୂଜା ଘରେ ପୂଜିତ ହୋଇ ଆସୁଛନ୍ତି ।

ଆଜି ପର୍ଯ୍ୟନ୍ତ ରେଣୁ ଏକଥା କହିଥା'ନ୍ତି ଯେ, 'ଦାରୁଦେବତା' ପଢ଼ିବା ସମୟରେ ନିଜ ଅଫିସ୍ ପରି ଗୋଟିଏ ସ୍ଥାନରେ ସେ ଦାରୁଦେବତାଙ୍କ ପ୍ରତ୍ୟକ୍ଷ ଦର୍ଶନ ଲାଭ କରିଛନ୍ତି ।

ପୂର୍ବତନ ଅଧକ୍ଷ, ଲଜପତ ରାୟ ଆଇନ ମହାବିଦ୍ୟାଳୟ
ସୋନାପାଲି, ଧନକଉଡ଼ା
ସମ୍ବଲପୁର - ୭୬୮୦୦୬
ଭ୍ରାମ୍ୟଭାଷ : ୯୪୩୭୦୮୮୬୦୨



# ଲୀଳାମୟଙ୍କର ଅପାର ଲୀଳା

## ବିଷ୍ଣୁ ପଟ୍ଟନାୟକ

ଶ୍ରୀଜଗନ୍ନାଥଙ୍କ ଅଲୌକିକତା ଆପଣ କିଛି ଅନୁଭବ କରିଛନ୍ତି କି ?

ଏପରି ଏକ ପ୍ରଶ୍ନରେ ମୁଁ କି ଉତ୍ତର ଦେବି କିଛି ଭାବି ପାରିଲିନି । ଯିଏ ଲୀଳାମୟ, ତାଙ୍କର ପ୍ରତିଟି ଲୀଳା ତ ଅଲୌକିକତାରେ ଭରପୁର । ତାକୁ ପ୍ରକାଶ କରିବାର ସାମର୍ଥ୍ୟ କାହା ପାଖରେ ଅଛି ? ସେ ଅନୁଭବୀର ଅନୁଭବ । କେବଳ ନୀରବରେ ଆଖିର ପରଦାରେ ଉଦ୍‌ଭାସିତ । ସମସ୍ତ ଚିନ୍ତା ଚେତନାର ଉର୍ଦ୍ଧ୍ୱରେ ତ ସିଏ । ତାଙ୍କୁ ଭାବି ହୁଏ, ହେଲେ ବ୍ୟକ୍ତ କରି ହୁଏନା, ବୁଝିବାର ପ୍ରୟାସ କରାଯାଇପାରେ, ହେଲେ ସଂପୂର୍ଣ୍ଣ ବୁଝି ହୁଏନା । କେବଳ ତାଙ୍କର ଲୀଳାରେ ସାମିଲ ହୋଇ ଆନନ୍ଦ ଅନୁଭବ କରିହୁଏ, ହେଲେ ସେ ଲୀଳାକୁ ବୁଝିବାର ଜ୍ଞାନ ତ ନଥାଏ । ସେଇ ଦୁଇ ଆଖିରେ ଆଖି ଥାପି ନେଇ ଏଇ ଜୀବନ ରୂପକ ବ୍ୟାଟେରୀକୁ ରି-ଚାର୍ଜ କରାଯାଇପାରେ, ଶାନ୍ତି ଅନୁଭବ କରାଯାଇପାରେ, ହେଲେ ସେ ଆଖି ଦୁଇଟିକୁ ମାପି ହୁଏନା, ବୁଝି ହୁଏନା । ସବୁଥର ଲାଗେ ନୂଆ ନୂଆ ।

ଛୋଟ 'ହୁଁ' ଟିଏ ମାରି ଦେଲି ସିନା, ହେଲେ ତାକୁ ଲେଖିବି କେମିତି ? ସମସ୍ତ ଲୀଳା ତ ଅଲୌକିକ । ତଥାପି ଚେଷ୍ଟା କରିବାର ପ୍ରୟାସ କରି କଲମ ଧରିଲି ।

ଅନେକ ଦିନ ତଳର କଥା । ଶ୍ରୀଜଗନ୍ନାଥଙ୍କୁ ସୁମରଣା କରି ଜୀବନର ବାଟ ଚାଲୁ ଚାଲୁ ପହଞ୍ଚିଗଲି ଇନ୍ଦ୍ରାବତୀ ଯୋଜନାର ଖାତିଗୁଡ଼ା ଠାରେ । ନବରଙ୍ଗପୁର ଠାରୁ ପ୍ରାୟ ଚାଳିଶ କିଲୋମିଟର ଦୂର । ମୋର ଜଣେ ବନ୍ଧୁ ଇଂ. ବିପିନ ଚୌଧୁରୀ ହଠାତ୍ ଦିନେ ପ୍ରସ୍ତାବ ଦେଲେ, ଆମେ ଏ ବର୍ଷ ଏଠାରେ ରଥଯାତ୍ରା କରିବା । ସେତେବେଳକୁ କେବଳ ଶିବ ମନ୍ଦିରଟିଏ ସେଠାରେ ହେଇଥାଏ । ଶ୍ରୀଜଗନ୍ନାଥଙ୍କ ମନ୍ଦିର ନଥିବା ବେଳେ ଆମେ ସେଠାରେ କିପରି ରଥଯାତ୍ରା କରିବା, ମୁଁ କିଛି ବୁଝିପାରିଲି ନାହିଁ । ବନ୍ଧୁ କହିଲେ, ଦେଖ ମୋ ଘରେ ଦାରୁମୂର୍ତ୍ତି ଅଛନ୍ତି, ତାଙ୍କୁ ରଥରେ ବସେଇବା ଏବଂ ତୁମ ଘର ଯାଏ ଆଣିବା, ତୁମ ଘର ଠାରେ ଗୁଣ୍ଡିଚା ମନ୍ଦିର କରି ଠାକୁରଙ୍କୁ ବସେଇବା । ନଅଦିନ ପରେ ପୁଣି ଠାକୁରଙ୍କୁ ଆମ ଘରଯାଏ ନେବା । ଏଇମିତି ଏଥର ଆମେ ରଥଯାତ୍ରା ପାଳିବା ।

ଏଇକଥା ମତେ ସେତେବେଳେ ପିଲା ଖେଳ ପରି ମନେ ହେଲା । ପ୍ରତିବର୍ଷ ରଥଯାତ୍ରା ବେଳକୁ ଆମେ ପୁରୀ ଯାଉଥାଉ । ମୁଁ ତେଣୁ ହଠାତ୍ ହଁ କରି ପାରିଲିନି । ହଉ କହି ଚାଲି ଆସିଥିଲି । ହେଲେ ଏଇ ପିଲା ଖେଳ ଘର କଥାରୁ ସେଠାରେ ଦିନେ

ବିଶାଳ ଜଗନ୍ନାଥ ମନ୍ଦିର ଗଢ଼ି ଉଠିବ, ଏଇ କଳ୍ପନା ମୋର ନଥିଲା । ଇନ୍ଦ୍ରାବତୀ ଯୋଜନା ସହିତ ସଂପର୍କିତ ଅନେକ ହୁଏତ ଏଇ ମନ୍ଦିର ପଛରେ ଥିବା ଠାକୁରଙ୍କର ଅଲୌକିକତା ଅନୁଭବ କରି ନଥିବେ ।

ମଣିଷ ଚାହିଁଲେ ମନ୍ଦିର ତିଆରି ହୋଇଯାଏନା, ମଣିଷ ଯାହା ଚାହେଁ, ତାହା ହୁଏତ କରି ପାରେନା, ଟଙ୍କା, ପଇସାରେ ସବୁ କିଛି ହୋଇପାରେନା । କେବଳ 'ସିଏ' ହିଁ ଚାହିଁଲେ ଯାହା କିଛି ହୁଏ । ଏଇ କଥାକୁ ମୁଁ ସେତେବେଳେ ଅନୁଭବ କରିଛି ।

ଏଇ ପିଲାଳିଆ ରଥଯାତ୍ରା କରିବାର ଇଚ୍ଛାରୁ ସ୍ଥିର କରାଗଲା, ପୁରୀରୁ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିଟିଏ ନିର୍ମାଣ କରି ଆଣିବା । ତା'ପରେ ସ୍ଥିର କରାଗଲା, ପାହାଡ଼ ଉପରେ ଥିବା ଶିବ ମନ୍ଦିର ପାଖରେ ଅସ୍ଥାୟୀ ରୂପେ ଶ୍ରୀଜଗନ୍ନାଥଙ୍କ ମନ୍ଦିରଟିଏ କରିବା । ମୂର୍ତ୍ତି ପାଇଁ ବରାଦ ଦିଆଗଲା । ସମସ୍ତେ ଲାଗି ପଡ଼ିଲେ ମନ୍ଦିର ନିର୍ମାଣ କାର୍ଯ୍ୟରେ । ପଣ୍ଡିତ ସଦାଶିବ ରଥଶର୍ମାଙ୍କ ସହିତ ଯୋଗାଯୋଗ କରାଯାଇ ପରାମର୍ଶ ନିଆଗଲା । ଯୋଜନାର ଅଧିକାରୀ ମାନଙ୍କୁ ସାମିଲ କରାଗଲା । ସେତେବେଳର ଯୋଜନା ମୁଖ୍ୟ ଇଂ. ଦାମୋଦର ସାହୁ ପ୍ରଥମେ ଅମଙ୍ଗ ହେଉଥିଲେ ମଧ୍ୟ ପରବର୍ତ୍ତୀ ସମୟରେ ଅକୁଣ୍ଠ ସହଯୋଗ କଲେ । ମହାନୁଭବ ରଥଶର୍ମା ମହାଶୟ ଆମ ଉତ୍ସାହକୁ ବହୁଗୁଣିତ କରିଦେଲେ । ଏସବୁ କାର୍ଯ୍ୟ ରଥଯାତ୍ରା ପୂର୍ବରୁ ସରିବାର ଥାଏ । ସମସ୍ତେ ବହୁ ଉତ୍ସାହର ସହିତ ଲାଗି ପଡ଼ିଥା'ନ୍ତି । ଜଣେ ବନ୍ଧୁ 'ଅଧିକାରୀ ବାବୁ'ଙ୍କୁ ସ୍ଥାନୀୟ ବ୍ରାହ୍ମଣମାନଙ୍କୁ ନିମନ୍ତ୍ରଣ କରିବାର ଦାୟିତ୍ୱ ଦିଆଗଲା । ବ୍ରାହ୍ମଣ ନିମନ୍ତ୍ରଣ କରିବାକୁ ଯିବାବେଳେ ସେ ଜୟପୁରରୁ ଖବର ଦେଲେ ଶ୍ରୀ ମହାପ୍ରଭୁଙ୍କର ଚତୁର୍ଦ୍ଧାମୂର୍ତ୍ତି ନିର୍ମିତ ହୋଇ କୌଣସି କାରଣରୁ ପ୍ରତିଷ୍ଠା ହୋଇ ନପାରି ପଡ଼ି ରହିଛନ୍ତି । ଯଦି ଆମେ ଚାହୁଁ ତେବେ ସେମାନେ ଆମକୁ ସେଇ ବିଗ୍ରହ ସବୁ ଦେଇଦେବେ । ସେତେବେଳକୁ ପୁରୀରେ ଜଗନ୍ନାଥଙ୍କର ମୂର୍ତ୍ତି ନିର୍ମାଣ ସରିଥାଏ । ଏଇକଥା ଶୁଣିବା ମାତ୍ରେ ମୋ ମନରେ ମୂର୍ତ୍ତିଗୁଡ଼ିକ ନେଇ ଆସିବାକୁ ଇଚ୍ଛା ହେଲା । ମୋ ବନ୍ଧୁ ବିପିନ ଚୌଧୁରୀ ସମ୍ମତି ଦେଲେ । ଆମେ ଦୁହେଁ କାହାକୁ କିଛି ନ ପଚାରି ତାଙ୍କୁ ଆଣିବାକୁ ଜଣେଇ ଦେଲୁ । ସେତେବେଳର ନିର୍ବାହୀଯନ୍ତ୍ରୀ ଇଂ. କିଶୋର ମିଶ୍ର ମୂର୍ତ୍ତିସବୁ ଅଣେଇବାର ଦାୟିତ୍ୱ ନେଲେ । ମୂର୍ତ୍ତିସବୁ ଆସିଗଲା ପରେ ଯୋଜନା ମୁଖ୍ୟଙ୍କୁ ସବୁକଥା ଅବଗତ କରାଗଲା । ସେ ପରାମର୍ଶ ଦେଲେ ପଣ୍ଡିତ ରଥଶର୍ମାଙ୍କ ସହିତ ଯୋଗାଯୋଗ କରିବାକୁ । କାରଣ ଆମର ଗୋଟିଏ ବିଗ୍ରହ ପ୍ରତିଷ୍ଠା ହେବା କଥା ଥିଲା । ଇଏ ଚତୁର୍ଦ୍ଧାମୂର୍ତ୍ତି ପୁଣି ବହୁ ପୁରାତନ ମୂର୍ତ୍ତି । ରଙ୍ଗ ପୁଟି ଇତ୍ୟାଦିର ଆବଶ୍ୟକତା ଥିଲା । ଏଣୁ ମୁଁ ସଙ୍ଗେ ସଙ୍ଗେ ସୁଦୂର ଇନ୍ଦ୍ରାବତୀରୁ ପୁରୀ ଯାଇ ରଥଶର୍ମା

ମହାଶୟଙ୍କୁ ସାକ୍ଷାତ କଲି । ସେତେବେଳକୁ ସେ ମହାଶୟ ତାଙ୍କ ବାସଗୃହରେ ଠାକୁରଙ୍କ ସକାଳ ପୂଜା କରୁଥା'ନ୍ତି । ମୁଁ ସିଂହାସନ ତଳେ ତାଙ୍କୁ ଯୋଡ଼ ହସ୍ତରେ ଅପେକ୍ଷା କରିଥାଏ । ମନରେ ଅନେକ ଶଙ୍କା, କାଳେ ପଣ୍ଡିତ ମହାଶୟ ବିଗିଡ଼ି ଯିବେ । ପୂଜା ସରିଲା, ରଥଶର୍ମା ମହାଶୟ ତଳକୁ ଆସି ମତେ କୁଶଳ ସମାଚାର ପଚାରିଲେ । ଶଙ୍କାଗ୍ରସ୍ତ ମନରେ ମୁଁ ତାଙ୍କୁ ସବୁ କଥା ଜଣେଇଲି । ହେଲେ ଆଶ୍ଚର୍ଯ୍ୟ କଥା, ସେ ବିଗିଡ଼ିବେ କ'ଣ ? ମତେ କୁଣ୍ଢେଇ ଅଶ୍ରୁପୂର୍ଣ୍ଣ ନୟନରେ ସେ ଯାହା କହିଲେ ଆଜି ବି ସ୍ମରଣ ମାତ୍ରେ ମୋ ଶରୀର ରୋମାଞ୍ଚିତ ହେଇଯାଏ । ତାଙ୍କର ସେଇ ଭାବ ଅନୁଭବ କରିବାର କଥା । ସେ କହିଲେ, ବିଷ୍ଣୁ ବାବୁ, ଆପଣ ଯେତେବେଳେ ପ୍ରଥମେ ଆସି ମତେ ଦେଖା କରିଥିଲେ, କହିଥିଲେ ଜଗନ୍ନାଥ ମନ୍ଦିରଟିଏ ଇନ୍ଦ୍ରାବତୀରେ କରିବାକୁ ସ୍ଥିର କରିଛନ୍ତି, ଏଇବର୍ଷ ପ୍ରତିଷ୍ଠା କରି ରଥଯାତ୍ରା କରିବେ । ମୁଁ ଆପଣଙ୍କ ଭାବାବେଗ ଦେଖି ରାଜି ହୋଇଥିଲି । ହେଲେ ଗୋଟିଏ ମୂର୍ତ୍ତି ହୋଇଥିଲେ ତାକୁ ଜଗନ୍ନାଥ ମନ୍ଦିର କୁହାଯାଇନଥା'ନ୍ତା । ତାହା ପତିତପାବନ କିମ୍ବା ଦଧିବାମନ ମନ୍ଦିର ହୋଇଥା'ନ୍ତା । ଯେତେବେଳେ ଜଗନ୍ନାଥ ନିଜେ ଚତୁର୍ଦ୍ଧାମୂର୍ତ୍ତି ହେଇ ପୂଜା ପାଇବାକୁ ଚାହୁଁଛନ୍ତି ଆପଣ କିଏ ? ମୁଁ କିଏ ? ତାହା ଶ୍ରୀଜଗନ୍ନାଥ ମନ୍ଦିର ହିଁ ହେବ । ମୁଁ ଆପଣଙ୍କୁ ଯାହା ଯାହା କହିଥିଲି ସେତିକି ଆଉ ଗୋଟିଏ ଗୁଆ ବି ଦରକାର ନାହିଁ । ଆପଣମାନେ କାର୍ଯ୍ୟରେ ଲାଗି ପଡ଼ନ୍ତୁ, ଶ୍ରୀଜଗନ୍ନାଥ ଆପଣଙ୍କୁ ସାହାଯ୍ୟ କରିବେ । ଏଇ କେଇ ପଦ କଥା ମୋର ସମସ୍ତ ଶଙ୍କା ଦୂର କଲା ।

ଇନ୍ଦ୍ରାବତୀରେ ଶ୍ରୀଜଗନ୍ନାଥଙ୍କ ଅସ୍ଥାୟୀ ମନ୍ଦିର ନିର୍ମାଣ କରାଯାଇ ବିଅଁ ପ୍ରତିଷ୍ଠା କଲେ ନିଜେ ପଣ୍ଡିତ ରଥଶର୍ମା । ସେଇବର୍ଷ ଆମମାନଙ୍କର ସଂକଳ୍ପିତ ପ୍ରଥମ ରଥଯାତ୍ରା କରାଯାଇ ଠାକୁର ଆସିଲେ ଆମ ଘର ପାଖକୁ ଯେଉଁଠି ତିଆରି ହେଲା ଗୁଣ୍ଡିଚା ମନ୍ଦିର । ସେଇବର୍ଷ ଇନ୍ଦ୍ରାବତୀରେ ଆମେ ରଥଯାତ୍ରା ପ୍ରସ୍ତୁତିରେ ବ୍ୟସ୍ତ ଥାଉ । ବଡ଼ ସୁରୁଖୁରୁରେ ରଥଯାତ୍ରା ହେଲା । ଲୋକମାନଙ୍କ ମନରେ କି ଅପୂର୍ବ ଉନ୍ମାଦନା । ହେଲେ କୌଣସି କାରଣରୁ ଶ୍ରୀଜଗନ୍ନାଥ ମହାପ୍ରଭୁ ପୁରୀରେ ରଥକୁ ପହଣ୍ଡି ବିଜେ କଲେ ନାହିଁ । ରେଡ଼ିଓରେ ପଣ୍ଡିତ ରଥଶର୍ମା କହୁଥା'ନ୍ତି, ଆଜି ମହାପ୍ରଭୁ ଶ୍ରୀକ୍ଷେତ୍ରରୁ ସୁଦୂର ଇନ୍ଦ୍ରାବତୀ ଯୋଜନାର ଖାତିଗୁଡ଼ାକୁ ଯାଇଛନ୍ତି । ସେଠାରେ ଭକ୍ତମାନେ ପ୍ରଥମ କରି ତାଙ୍କର ରଥଯାତ୍ରା କରୁଛନ୍ତି । ସେତେବେଳେ ଉପସ୍ଥିତ ଯେଉଁମାନେ ଏଇକଥା ରେଡ଼ିଓରୁ ଶୁଣିଥିଲେ ସମସ୍ତେ ଭାବବିହ୍ୱଳ ହୋଇ ଯାଇଥିଲେ । ହରିବୋଲ, ହୁଳହୁଳି 'ଜୟ

ଜଗନ୍ନାଥ' ଧ୍ୱନିରେ ଇନ୍ଦ୍ରାବତୀ ଦାଣ୍ଡ ପୁରୀ ବଡ଼ଦାଣ୍ଡ ପରି ଲାଗିଥିଲା । ଅନେକଙ୍କ ଚକ୍ଷୁରୁ ଅଶ୍ରୁ ଝରି ଯାଇଥିଲା ।

ତା'ର ଅନେକ ବର୍ଷ ପରେ ସ୍ଥାୟୀ ମନ୍ଦିର ତିଆରି ହୋଇ ଠାକୁର ପାହାଡ଼ ଉପରୁ ତଳକୁ ଆସିଲେ । ଭବ୍ୟ ବିଶାଳ ମନ୍ଦିର ନିର୍ମିତ ହେଲା । ସେତେବେଳକୁ ପଣ୍ଡିତ ରଥଶର୍ମା ସ୍ୱର୍ଗାରୋହଣ କରିଥିଲେ । ଆମେ ସବୁ ସେ ସ୍ଥାନରୁ ସ୍ଥାନାନ୍ତରିତ ହୋଇଥିଲୁ । ହେଲେ ତାଙ୍କରି ସୁପୁତ୍ର ପଣ୍ଡିତ ସୂର୍ଯ୍ୟ ନାରାୟଣ ରଥଶର୍ମା ନୂତନ ମନ୍ଦିର ପ୍ରତିଷ୍ଠା କଲେ । ଆମେ ବି ସେତେବେଳେ ଯାଇଥିଲୁ । ସେଇ ବିଶାଳ ମନ୍ଦିରକୁ ଦେଖି ଠାକୁରଙ୍କର ଅଲୌକିକ ଲୀଳା ସ୍ମରଣ କରି ଦୁଇ ଟୋପା ଅଶ୍ରୁ ତର୍ପଣ ପୂର୍ବକ ନୀରବରେ କହୁଥିଲି 'ଜୟ ଜଗନ୍ନାଥ' ।


ଅର୍ଥ ସେବା ଅଧିକାରୀ
ଡି ୭/୪, ରେଣ୍ଟାଲ କଲୋନୀ
ସି.ଆର୍.ପି.ଏଫ୍., ଭୁବନେଶ୍ୱର - ୧୫
ଭ୍ରାମ୍ୟଭାଷ : ୯୭୭୬୨୩୮୨୨୮




# ଭାବ ବିନୋଦିଆ ଶ୍ରୀଜଗନ୍ନାଥ

## ଶତ୍ରୁଘ୍ନ ମହାଲିକ

ପୁଅ ବାହାଘର ସରିଯାଇଥାଏ । ଟିକିଏ କହି ରଖେ, ପୁଅ ବୋହୂ ଛତିଶଗଡ଼ର ରାଜଧାନୀ ରାୟପୁରରେ ଚାକିରି କରନ୍ତି । ରାୟପୁର ସରକାରୀ ହସ୍‌ପିଟାଲର ଉଭୟ ଡାକ୍ତର ଓ ଡାକ୍ତରାଣୀ । ବୋହୂ ମୋର ରାୟପୁର ବାସିନ୍ଦା । ଭୌଗୋଳିକ ସ୍ଥିତି ଅନୁଯାୟୀ ଏ ଅଞ୍ଚଳ ସମୁଦ୍ର ଠାରୁ ବହୁ ଦୂରରେ । ତେଣୁ ବୋହୂର ଏକମାତ୍ର ଜିଦ୍ ସେ ପୁରୀର ସମୁଦ୍ର ବେଳାଭୂମି ବୁଲିବ ଓ ଜଗନ୍ନାଥଙ୍କୁ ଦର୍ଶନ କରିବ । ଛୁଟିର ମିଆଦ ପୂରି ଆସୁଥିବାରୁ ମୋତେ ହଠାତ୍ ପୁରୀ ପରିଭ୍ରମଣର ବ୍ୟବସ୍ଥା କରିବାକୁ ପଡ଼ିଲା ।

ଫେବୃଆରୀ ମାସ ୧୦ ତାରିଖ । ପୂର୍ବ ନିର୍ଦ୍ଧାରିତ ବ୍ୟବସ୍ଥାନୁଯାୟୀ ଗାଡ଼ି ଡ୍ରାଇଭର ଠିକ୍ ସକାଳ ୬ଟାରେ ଗାଡ଼ି ଲଗାଇଲା । ପୂର୍ବରୁ ଆମ ପରିବାର ଯଥା - ବାପା-ବୋଉ, ପୁଅ-ବୋହୂ, ବଡ଼ ଝିଅ ଓ କ୍ୱାଇଁ, ମଝିଆ ଝିଅ ଓ ସାନ ପ୍ରାୟ ସମସ୍ତେ ପ୍ରସ୍ତୁତ ହୋଇ ସାରିଥିଲୁ । ତେଣୁ ଗାଡ଼ି ପହଞ୍ଚିବା ମାତ୍ରେ ସମସ୍ତେ ଗାଡ଼ିରେ ବସିଲୁ । ପ୍ରାୟ ୬.୩୦ରେ ଗାଡ଼ି ଛାଡ଼ିଲା ବିଦେଇପୁରରୁ । କଥା ହୋଇଥିଲା, ଗାଡ଼ି ରହିବ ପାଣିକୋଇଲିରେ । ସେଠି ମା' ତାରିଣୀଙ୍କ ଉଦ୍ଦେଶ୍ୟରେ ନଡ଼ିଆ ଦେବାକୁ ହେବ, ଯାହାକି ପ୍ରାୟତଃ ସବୁ ଯାତ୍ରୀ କରିଥା'ନ୍ତି ଆଉ ସେଠାରେ ଜଳଖିଆ ବି କରିବାକୁ ହେବ ।

ଗାଡ଼ି ଅଟକିଲା ପାଣିକୋଇଲି ଠାରେ । ଜଳଖିଆ ଖାଇବାକୁ ଯିବା ପୂର୍ବରୁ ମୁଁ ନିର୍ଦ୍ଦିଷ୍ଟ ଦୋକାନକୁ ଯାଇ ନଡ଼ିଆଟିଏ ଆଣିଲି । ସେ ନଡ଼ିଆରେ ଦୋକାନୀ ନାଲି ରଙ୍ଗର କପଡ଼ାଟାଏ ଗୁଡ଼ାଇ ଦେଇଥିଲା । ତା'ଉପରେ ଟଙ୍କାଟିଏ ଭିଡ଼ିଦେଇ ଉଦ୍ଦିଷ୍ଟ ସ୍ଥାନରେ ନଡ଼ିଆଟିକୁ ଦେଇ ଆସିଲି । ତା'ପରେ କ୍ୟାଣ୍ଟିନରେ ଜଳଖିଆ କଲୁ ଏବଂ ପାନଫୁଲ ଧରି ଗାଡ଼ିରେ ବସିଲୁ । ଗାଡ଼ି ଚାଲିଲା ପୁରୀ ଅଭିମୁଖେ ।

ବୋହୂଟି ଅଣଓଡ଼ିଆ ହୋଇଥିବା ଦୃଷ୍ଟିରୁ ବାଟସାରା ସମସ୍ତଙ୍କୁ ବ୍ୟସ୍ତ କରାଇ ପକାଉଥିଲା ପ୍ରଶ୍ନ ପରେ ପ୍ରଶ୍ନ ପଚାରି । ଓ କ୍ୟା ହେ ? ପୁରୀ କିତ୍‌ନା ଦୂର ହେ ? ଓଃ ! ଇତ୍‌ନାବଡ଼ ରିଭର ? ମୋ ଝିଅମାନେ ତା' ସହିତ ଖଣ୍ଡି ହିନ୍ଦୀରେ କଥା ହେଉଥା'ନ୍ତି । ତେବେ ଯାହାହେଉ ପ୍ରାୟ ସମୟ ୧୧.୩୦ ହେବ ଆମ୍ଭେ ପହଞ୍ଚିଗଲୁ ପୁରୀରେ ।

ଡ୍ରାଇଭର ପଚାରିଲା, ଆଗ କେଉଁଠିକି ଯିବା ସାର୍ ? ମୁଁ କହିଲି, ଆଗ ମହୋଦଧିରେ ସ୍ନାନ, ତା'ପରେ ଦେବ ଦର୍ଶନ । ମୋ କଥା ଅନୁସାରେ ଡ୍ରାଇଭର ଚାଲିଲା ବେଳାଭୂମି ଆଡ଼କୁ ।

ବେଳାଭୂମିରେ ପହଞ୍ଚି ପାର୍କିଂ ସ୍ଥଳରେ ଗାଡ଼ି ରଖିବା ପାଇଁ ଚାଲିଗଲା ଡ୍ରାଇଭର ଆମ୍ଭଙ୍କୁ ଓହ୍ଲାଇ ଦେଇ । ବିଶାଳ ଜନଗହଳି ଭିତରେ ବିସ୍ତୀର୍ଣ୍ଣ ବାଲୁକା ରାଶିକୁ ଅତିକ୍ରମ କରି କରି ଚାଲୁଥାଉ ସମୁଦ୍ରର ଲହଡ଼ି ମାଡ଼ି ଆସୁଥିବା ଯାଏ । ଛିଡ଼ା ହେଲୁ । ଉପଭୋଗ କଲୁ ବିଶାଳ ସମୁଦ୍ର ଓ ତା' ଦେହରେ ସୃଷ୍ଟି ହେଉଥିବା ଉତ୍ତାଳ ତରଙ୍ଗକୁ । ଏହା ଭିତରେ କେତେ ଥର ଯେ ସମୁଦ୍ର ଲହଡ଼ି ଆମ୍ଭମାନଙ୍କର ପାଦ ଧୋଇ ଦେଇ ଗଲାଣି, ତା'ର ହିସାବ ନଥିଲା କାହାରି ପାଖରେ ।

ବିଶାଳ ସମୁଦ୍ର, ଲହଡ଼ି ଭାଙ୍ଗୁଥିବା ଅଗଣିତ ଯାତ୍ରୀଙ୍କର ଭିଡ଼, ସମୁଦ୍ରର ସାଇଁ ସାଇଁ ଗର୍ଜନ, ଫେରିବାଲା ମାନଙ୍କର ଅହେତୁକ ଭିଡ଼ ଇତ୍ୟାଦିର ଦୃଶ୍ୟ ଦେଖି ପ୍ରୀତି (ମୋ ବୋହୂ) ଆତ୍ମହରା ହୋଇ ପଡ଼ିଥିଲା । ବାସ୍ତବରେ ଏ କ୍ଷେତ୍ର, ପୁରୀ ବେଳାଭୂମି, ପୃଥିବୀର ଏକ ବିରଳ ସ୍ଥାନ । ଏ ବେଳାଭୂମିର ବାଲୁକା ରାଶି ଉପରେ ଯିଏ ପାଦ ଥାପିଛି, ତା ଜୀବନ ସାର୍ଥକ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମୟ ଅତିକ୍ରାନ୍ତ ହେଉଥିବା ଦୃଷ୍ଟିରୁ ଅଧିକ ସମୟ ଏଠି ବିତାଇବାକୁ ଇଚ୍ଛାଥିଲେ ବି ଆମେ ଛାଡ଼ିଲୁ ବେଳାଭୂମିକୁ । ଚାଲିଲୁ ଗାଡ଼ି ପାଖକୁ । ଗାଡ଼ିରେ ସମସ୍ତେ ବସି ସାରିବା ପରେ ଗାଡ଼ି ଚାଲିଲା ବଡ଼ଦାଣ୍ଡ ଅଭିମୁଖେ ।

ପହଞ୍ଚିଲୁ ବଡ଼ଦାଣ୍ଡରେ । ମନ୍ଦିର ଠାରୁ ବେଶ୍ କିଛି ଦୂରରେ ରହିଲା ଆମ ଗାଡ଼ି । ଚାଲି ଚାଲି ଆସି ପହଞ୍ଚିଲୁ ସିଂହଦ୍ୱାର ନିକଟରେ । ଗୋଡ଼ ହାତ ଧୋଇ ଏକ ପବିତ୍ର ମନ ନେଇ ପ୍ରବେଶ କଲୁ ମନ୍ଦିର ଭିତରେ । ବାଇଶି ପାହାଚ ଅତିକ୍ରମ କରି କରି ଚାଲିଥାଉ ଦର୍ଶନ କରିବୁ ଜଗତର ନାଥ ଜଗନ୍ନାଥଙ୍କୁ । ବିରାଟ ଜନସମୁଦ୍ର ଭିତରେ ଦରାଣ୍ଡି ହେଉଥାଉ, କେଉଁ ବାଟ ଦେଇ ପ୍ରବେଶ କଲେ ସୁବିଧାରେ ଠାକୁରଙ୍କୁ ଦର୍ଶନ କରିବୁ । ହେଲେ ଆମକୁ ଅସ୍ତ ବ୍ୟସ୍ତ କରି ପକାଇଲେ ପଣ୍ଡାମାନେ । 'ଆସ ଆମ ସାଥୀରେ ଆସ । ଆମେ ତୁମକୁ ଜଗନ୍ନାଥ ଦର୍ଶନ କରାଇଦେବୁ । ଚାଲ ଆଗ ରସିଦ୍ କାଟ । ଭୋଗ ଆଣ' ଇତ୍ୟାଦି ।

ମୋ ଯୁବକ ସମୟର କଥାକୁ ମନେ ପକାଇ, କ୍ୱାଇଁ ସମର ଓ ପୁଅ ଦୁଃଖଙ୍କ ଦାୟିତ୍ୱରେ ପରିବାରବର୍ଗଙ୍କୁ ଛାଡ଼ି ମୁଁ ଏକାକୀ ଚାଲିଗଲି ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ । କାରଣ ମୋର ବୟସ ଓ ରୋଗ ବୈରାଗ ପାଇଁ ଅତିମାତ୍ରାରେ ବ୍ୟଗ୍ର ଓ ବ୍ୟସ୍ତ ହୋଇ ପଡୁଥିଲି ମନଭରି ଟିକିଏ ଜଗନ୍ନାଥଙ୍କୁ ଦର୍ଶନ କରିବି । ପଣ୍ଡାଙ୍କ ଉପରେ ମୋର ବିଶେଷ ଆସ୍ଥା ନଥିଲା ।

ବିରାଟ ଜନଗହଳି ଭିତରେ ପେଲି ଠେଲି ଜଗନ୍ନାଥଙ୍କୁ ଦର୍ଶନ କରିବା ସମ୍ଭବ ହୋଇପାରିଲାନି ମୋ ଦ୍ୱାରା । ପ୍ରାୟ ଏକ ଘଣ୍ଟା କାଳ ବହୁ ଚେଷ୍ଟା କରି ଯେତେବେଳେ ନିରାଶ ହୋଇପଡ଼ିଲି, ଦୁଃଖରେ ମୋ ଆଖି ଛଳ ଛଳ ହୋଇଗଲା । ଏକ ଅହେତୁକ ଦୁଶ୍ଚିନ୍ତା ବସା ବାନ୍ଧିବାକୁ ଲାଗିଲା ମୋ ମନରେ । ଭଗବାନ ମୋତେ ଦର୍ଶନ ଦେଉନାହାନ୍ତି ମାନେ ଏ ସଂସାରରେ ମୋର ରହିବାର ଆଉ ବେଶୀ ଦିନ ନାହିଁ ।

୨୦୦୮ ମସିହାରେ ଠାକୁର ମୋ ଉପରେ ଲଗାଇଥିଲେ ସମନ। ଭାବିଥିଲି ଏଥର ଶ୍ରୀକ୍ଷେତ୍ରକୁ ଆସିଛି ମାନେ ବଡ଼ ଠାକୁରଙ୍କ ଠାରୁ ମଞ୍ଜୁର କରିନେବି ଏ ସଂସାରରେ ଆଉ ବେଶ୍ କିଛିଦିନ ଚଳିଯିବା ପାଇଁ। ହେଲେ ଠାକୁର ମୋ ପ୍ରତି ବିମୁଖ । ମୋ ଉପରେ ପ୍ରସନ୍ନ ଥିଲେ ନିଶ୍ଚୟ କୌଣସି ଉପାୟରେ ମୋତେ ଦର୍ଶନ ଦେଇଥା'ନ୍ତେ। ମୋର ଆଉ ବେଶୀ ଦିନ ନାହିଁ। ଏହିଭଳି ଏକ ଭାରାକ୍ରାନ୍ତ ମନ ନେଇ, ଆଖିର ଲୁହକୁ ପୋଛି ଦେଇ ଶେଷ ଚେଷ୍ଟା କଲି। ସର୍ବଶେଷରେ ଛିଡ଼ା ହୋଇଥିବା ଲୋକମାନଙ୍କ କାନ୍ଧରେ ହାତ ରଖି ଡେଇଁ ଡେଇଁ ଦେଖିବାକୁ ଚେଷ୍ଟା କରୁଥିବା ବେଳେ ହଠାତ୍ ମୋ ପୁଅ ଦୁଃଖ କହିଲା, 'ବାପା, ଆପଣ କ'ଣ ଏ ପର୍ଯ୍ୟନ୍ତ ଜଗନ୍ନାଥଙ୍କୁ ଦର୍ଶନ କରିନାହାନ୍ତି ? ମୋ ପାଟିରୁ ପଦଟିଏ ବାହାରିଲା ନାହିଁ। ମୁଣ୍ଡ ହଲାଇ ନା' କହିଲି। ମୋ ମନର ଉଦ୍‌ବେଳନକୁ ଲକ୍ଷ୍ୟ କରି, ହଠାତ୍ ମୋତେ ଟେକି ଧରି କହିଲା, 'ବାପା, ହେଇ ଦେଖନ୍ତୁ ଚକାଆଖିକୁ।' ମୋତେ ଟେକି ଧରିଥିବା ବେଳେ, ଦୁଇହାତ ଯୋଡ଼ି ପ୍ରଣାମ କଲି। କହିଲି, ହେ ଜଗନ୍ନାଥ ତରିଗଲି ମୁଁ।

ମୋତେ ତଳେ ଛିଡ଼ା କରାଇ ଦେବାପରେ ମୋର ସେ ସୁପୁତ୍ର ମୁଣ୍ଡରେ ହାତରଖି ତା' ଉପରେ ମନଇଚ୍ଛା ଆଶୀର୍ବାଦ ଢାଳିଦେଲି। ବାପାରେ, ତୋର କୋଟି ପରମାୟୁ ହେଉ। ତୁ ଆଜି ତୋ ବାପର ଋଣ ସୁଝିଦେଲୁ ଦୁଃଖ। ମୋତେ ଜଗନ୍ନାଥଙ୍କୁ ଦର୍ଶନ କରାଇ ଦେଇ ମୋ ଜୀବନକୁ ଧନ୍ୟ କରିଦେଲୁ। 'ହଉ ବାପା, ବୁଲୁଥା'ନ୍ତୁ, ମୁଁ ଦେଖେ ସେମାନେ କୁଆଡ଼େ ଗଲେ।' ପୁଅ ଚାଲିଯିବା ପରେ ଭାବିଲି, 'ଆରେ ପରିବାର ବର୍ଗ କେହି ନାହାନ୍ତି, ଅଥଚ ପୁଅଟା ଏକା ଏକା ଏଠିକୁ ଆସିଲା କାହିଁକି ? କେମିତି ଜାଣିଲା ଯେ ମୁଁ ଏଠି ଅଛି ବୋଲି ? ଏ କାଳିଆ ମୋ ଅନ୍ତରର ବ୍ୟଥାକୁ ବୁଝି ତାକୁ ଅଣେଇଛି ଅବା ନିଜେ ମୋ ପୁଅ ରୂପରେ ମୋତେ ବଡ଼ଠାକୁରଙ୍କୁ ଦେଖାଇ ମୋ ଭାରାକ୍ରାନ୍ତ ମନକୁ ଶାନ୍ତ କରାଇଛି। ଏ ମୋ ପୁଅ ନୁହଁ, ଜଗନ୍ନାଥ।

ମୁଁ ଆଜି ଅନୁଭବ କରୁଛି ବଡ଼ ଠାକୁର ଏ ବଡ଼ ଦେଉଳର ରତ୍ନ ସିଂହାସନ ଉପରେ ନୀରବ ନିଶ୍ଚଳ ଭାବରେ ବସି ରହିଥିଲେ ହେଁ ଦୁନିଆ ଯାକର ସବୁକିଛି ତାଙ୍କ ନଜରରେ ରହିଛି। ଠିକ୍ ଏମିତି ଆମ ହାଇସ୍କୁଲ ପିଲାଏ ପୁରୀ ପରିଭ୍ରମଣରେ ଆସି ଜଗନ୍ନାଥଙ୍କୁ ଦର୍ଶନ କରୁଥିବା ବେଳେ ନବମ ଶ୍ରେଣୀରେ ପଢୁଥିବା ମୋ ସାନଝିଅ ଝୁନୁ ମୋ ଭଳି ଜଗନ୍ନାଥଙ୍କୁ ଦେଖିବା ପାଇଁ ଅତି ବ୍ୟଗ୍ର ଓ ବ୍ୟସ୍ତ ହୋଇ ଲୋକଙ୍କ କାନ୍ଧରେ ହାତରଖି ଡେଉଁଥିବାର ଦୃଶ୍ୟ ମୋ ଆଖିରେ ପଡ଼ିଥିଲା। ଆଉ ମୁଁ ତାକୁ ଟେକି ଦେଇ ଜଗନ୍ନାଥଙ୍କୁ ଦେଖାଇ ଦେଇଥିଲି।

ଭଗବାନ କି ରୂପରେ କି ପ୍ରକାରେ ଭକ୍ତର ଇଚ୍ଛା ପୂର୍ଣ୍ଣ କରନ୍ତି, ତାହା ମଣିଷକୁ ଅଗୋଚର ହେଲେବି ଭୁକ୍ତଭୋଗୀ ତାହା ଅନେକାଂଶରେ ଉପଲବ୍ଧି କରିଥାଏ।

ବିଦେଇପୁର, ଭଦ୍ରକ-୭୫୬୧୬୪
ଭ୍ରାମ୍ୟଭାଷ : ୯୯୩୮୩୦୨୬୭୩



# କାଳିଆର ଅଦୃଶ୍ୟ ହାତ

## ମୀନକେତନ ମିଶ୍ର

ମନ ଦର୍ପଣରେ ସେ ଦିନର ଅଭୁଲା ସ୍ମୃତି ଆଜି ବି ଭାସି ଉଠିଲା ବେଳକୁ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ ମଥା ନଇଁଯାଏ ଆପଣା ଛାଏଁ । ସେ ମହାବାହୁ, ସର୍ବବ୍ୟାପକ, ପଞ୍ଚଭୂତରେ ପରିବ୍ୟାପ୍ତ । ସେ ଜଗତର ଆଧାର । ଭକତର ଜୀବନ, ସ୍ପନ୍ଦନ ଏବଂ ସର୍ବୋପରି ମାନ ଉଦ୍ଧାରଣ ଆରତ ତାରଣ ।

ଏଠାରେ ଅଙ୍ଗେନିଭା ଘଟଣାଟିଏ ଉପସ୍ଥାପନା କରୁଛି । ମୋତେ ସେତେବେଳେ ପ୍ରାୟ ନଅ କି ଦଶ ବର୍ଷ ହୋଇଥିବ । ଆମର ଅଳ୍ପ ଚାଷ ଜମି ଥିଲା । ସେହି ଜମିରେ ଧାନ ଅମଳ କରି ସାରିବା ପରେ ଖରାଟିଆ ବାଇଗଣ ଚାଷ ହୋଇଥାଏ । ବାଇଗଣ ଗଛ ମାନଙ୍କରେ ପାଣି ଯୋଗାଇବା ପାଇଁ ଏକ ଛୋଟ ଅସ୍ଥାୟୀ କୂଅ ଥାଏ । ଜ୍ୟେଷ୍ଠ ମାସର ଶନିବାର ଦ୍ୱିପ୍ରହର ସମୟ । ଟାଣ ଖରା । ମୁଁ ଏବଂ ମୋର ଜଣେ ସାଙ୍ଗ ଯିଏ କି ମୋ ଠାରୁ ବୟସରେ ଛୋଟ ଥିଲା, ଆମେ ଦୁହେଁ ବାହାରିଲୁ ବାଇଗଣ ଚାଷ ଦେଖିବାପାଇଁ । ଚାଷର ଚାରିପଟେ ଥରେ ବୁଲି ଆସିଲା ପରେ କୂଅ ନିକଟରେ ପହଞ୍ଚିଲୁ । ପାଣିକୁ ଦେଖି ଗାଧୋଇବା ପାଇଁ ଇଚ୍ଛା ହେଲା । ସ୍ନାନ ପାଇଁ ଦୁହେଁ ଦୁହିଁଙ୍କର ମନ କଥା ପ୍ରକାଶ କଲୁ ଏବଂ ଦୁହେଁ ଏକା ସାଥିରେ ହାତ ଧରାଧରି ହୋଇ କୂଅ ଭିତରକୁ ଡେଇଁ ପଡ଼ିଲୁ ଓ ଗ୍ରୀଷ୍ମକାଳୀନ ଦିନ ଦ୍ୱିପ୍ରହରରେ ସ୍ନାନ କରିବାର ଆନନ୍ଦ ଉପଭୋଗ କଲୁ ।

ପଶ୍ଚିମ ଓଡ଼ିଶାର ସୁନ୍ଦରଗଡ଼ ଜିଲ୍ଲାର ଏକ ଅଖ୍ୟାତ ପଲ୍ଲୀ, ଆମ ଗାଁ ଅବନକେଲା । ଆମ ଗାଁର ପଦତ୍ରୁମି ବହିଯାଉଛି ମହାନଦୀର ପ୍ରଧାନ ଉପନଦୀ 'ଇବ୍ ନଦୀ' । ନଈ କୂଳରେ ଆମ ଗାଁଟି ଥିବାରୁ ଗ୍ରାମର ପ୍ରାୟ ସମସ୍ତେ ପହଁରା ବିଦ୍ୟା ଜାଣନ୍ତି । ଆମେ ବି ସନ୍ତରଣ ବିଦ୍ୟାରେ ଧୁରନ୍ଧର ନଥିଲେ ବି କାମଚଳା ପହଁରା ଜାଣିଥିଲୁ । ତେଣୁ ସ୍ନାନ କରିବାରେ ଅସୁବିଧା ନଥିଲା ।

ମନ ଭରି ସ୍ନାନ କରି ସାରିବା ପରେ ଦୁହେଁ ବାହାରକୁ ବାହାରିବା ପାଇଁ ଇଚ୍ଛା ପ୍ରକାଶ କଲୁ । କୂଅଟି ଇଟା, ପଥର ବା ସିମେଣ୍ଟରେ ତିଆରି ହୋଇନଥିଲା । କେବଳ ମାଟିକୁ ଖୋଳାଯାଇ ତିଆରି ହୋଇଥିଲା ଅସ୍ଥାୟୀ କୂଅଟି । ପ୍ରଥମେ ହସି ହସି ମହା ଆନନ୍ଦରେ ବାହାରିବା ପାଇଁ ଇଚ୍ଛା କଲୁ । କିନ୍ତୁ କିଏ ଜାଣିଥିଲା ସୁଖ ପରେ ଦୁଃଖ ଥାଏ ଓ ହସ ପରେ କାନ୍ଦ ।

ଇଚ୍ଛା ଆମର ଚେଷ୍ଟାରେ ପରିଣତ ହେଲା । ଏବେ ଆମେ ଆପ୍ରାଣ ଚେଷ୍ଟା କଲୁ କୂଅ ଭିତରୁ ବାହାରକୁ ବାହାରିବା ପାଇଁ । ମୋର ସାଙ୍ଗ ଜଣକ ଆଦିବାସୀ ସଂପ୍ରଦାୟର ଥିଲା ଏବଂ ସେ ଟିକିଏ ମୋଟା ଓ ଓଜନରେ ମଧ୍ୟ ମୋ ଠାରୁ ବେଶୀ ଥିଲା । ଆମେ ସ୍ୱତନ୍ତ୍ର ରୂପେ ଯେତେବେଳେ ବାହାରି ପାରିଲୁନି, ସେତେବେଳେ ଅନ୍ୟକୁ ସାହାଯ୍ୟ କରି ଉପରକୁ ଉଠିବାକୁ ଚେଷ୍ଟା କଲୁ । ସିଏ ଯେତେବେଳେ ମୋତେ ଉପରକୁ ଉଠାଏ, ସେତେବେଳେ ମୋର ହାତ କୂଅ ଉପରକୁ ପାଏନି ଓ ଯେତେବେଳେ ମୁଁ ତାକୁ ଉପରକୁ ଉଠାଏ, ତା'ର ଓଜନ ବେଶୀ ଥିବାରୁ ମୁଁ ତଳକୁ ଚାଲିଯାଏ । ଏବେ ବି ସେଇ ଘଟଣାକୁ ସ୍ମରଣ କଲେ ଆସନ୍ନ ମୃତ୍ୟୁକୁ ସେଦିନ ଆମେ ଦୁହେଁ ଯେମିତି ସାମ୍ନା କରିଥିଲୁ, ସେଇ ଦୃଶ୍ୟ କଳ୍ପନା ନେତ୍ର ସାମ୍ନାରେ ଜଳ ଜଳ ହୋଇ ଭାସିଯାଏ । ଦେହ ଭୟରେ ଶିହରି ଉଠେ ।

ଏଇଠି କହିବା ଉଚିତ ହେବ ଯେ, କୂଅରେ ଯେତିକି ପାଣି ଥିଲା, ତଳକୁ ପାଦ ପାଉ ନଥିଲା କି ଉପରକୁ ହାତ ମାନ୍ଦ ନଥିଲା । ଏପରି ପରିସ୍ଥିତିରେ କୂଅ ଭିତରେ ପହଁରିବା ଛଡ଼ା ଅନ୍ୟ ଉପାୟ ନ ଥିଲା । ଯେତେବେଳେ ପହଁରି ପହଁରି ଥକିଗଲୁ ଏବଂ ନିଜ ଚେଷ୍ଟା ସବୁ ବିଫଳ ହେଲା, ସେତେବେଳେ ଅନ୍ୟମାନଙ୍କର ସାହାଯ୍ୟ ଲୋଡ଼ିଲୁ । କାଳେ କିଏ ପାଖରେ ଥିବ ବା ରାସ୍ତା ଦେଇ କେହି ଯାଉଥିବ । ଚିତ୍କାର କଲୁ ଅନେକ ଜୋର୍‌ରେ । 'ଯଦି କିଏ ପାଖରେ ଅଛ ତା'ହେଲେ ଆସି ଆମ ଦୁଇ ଜଣଙ୍କୁ ଉଦ୍ଧାର କର । ଆମେ କୂଅ ଭିତରେ ମୃତ୍ୟୁକୁ ସାମ୍ନା କରୁଛୁ ।' କିନ୍ତୁ ସବୁ ଚିତ୍କାର ବେକାର, କେହି ଶୁଣିଲେନି । ଭାବିଲି ମୃତ୍ୟୁ ଅନିର୍ବାର୍ଯ୍ୟ ।

ମନେ ପଡ଼ିଗଲେ ଚକାନୟନ ।

ଛୋଟ ସମୟରୁ ଭଜନ, ଜଣାଣ ଶୁଣିବାର ଏକ ଦୁର୍ବାର ଆକର୍ଷଣ ଥିଲା ମୋର । ମୁଁ ଅନେକ ଗୀତ ମୁଖସ୍ଥ ବି କରିଥିଲି । ବେଳେ ବେଳେ ଗାଉଥିଲି ମଧ୍ୟ । ଗୀତ ମାଧ୍ୟମରେ ଏତିକି ଜାଣିଥିଲି, ଜଗନ୍ନାଥ ମହାପ୍ରଭୁ ମହାବାହୁ, ସର୍ବବ୍ୟାପକ, ସର୍ବଦ୍ରଷ୍ଟା, ଶରଣ ରକ୍ଷକ ଓ ଆରତ ତାରଣ । ସେ ଦ୍ରୌପଦୀଙ୍କ ଆକୁଳ ନିବେଦନକୁ ରକ୍ଷା କରି ଲକ୍ଷେ ଯୋଜନରୁ କୋଟି ବସ୍ତ୍ର ଦେଇ କୁରୁସଭା ତଳେ ମହାସତୀର ମାନ ରକ୍ଷା କରିଥିଲେ । ଗଭୀର ଜଳରେ ଗଜର ଆର୍ତ୍ତ ଡାକ ଶ୍ରବଣ କରି କୁମ୍ଭୀର କବଳରୁ ଉଦ୍ଧାର କରିଥିଲେ । ମୃଗୁଣୀର ପ୍ରାର୍ଥନା ଶୁଣି ବ୍ୟାଧ କବଳରୁ ରକ୍ଷା କରିଥିଲେ । ମୋତେ ବି ଉଦ୍ଧାର କରିବେ ନିଶ୍ଚୟ । ଏହା ଭାବି ଆତ୍ମସର୍ମପଣ ମୁଦ୍ରାରେ କୂଅ ଭିତରୁ ଦୁଇ ହାତ ଉପରକୁ ଟେକି ଦେଲି । କ୍ରନ୍ଦନରତ ଅଶ୍ରୁଳ ନୟନରେ ଆଖି ବୁଜି ଆକୁଳ

କଣ୍ଠରେ କହିଲି, 'ହେ ଜଗନ୍ନାଥ, ହେ ଚକାନୟନ, ହେ ମହାବାହୁ, ଦୁଇଟି ଜୀବନ ସଲିଳ ସମାଧି ନେବାକୁ ଯାଉଛି, ଏଇ ଆସନ୍ନ ମୃତ୍ୟୁରୂପକ ମହାବିପଦରୁ ଉଦ୍ଧାର କର ପ୍ରଭୁ ।'

ଅତି ଆଶ୍ଚର୍ଯ୍ୟର କଥା । କେହି ଜଣେ ମୋର ହାତକୁ ଧରି ଉପରକୁ ଟାଣି ନେବାର ଏକ ଅମୃତ ଅନୁଭବ ଆସ୍ୱାଦନ କଲି । ଆଖି ଖୋଲିଲା ବେଳକୁ ଦେଖିଲି ମୁଁ କୂଅର ବାହାରେ ଅଛି । ଦେହ ରୋମାଞ୍ଚିତ ହୋଇ ଉଠିଲା । ଚାରିଆଡ଼େ ଅନାଇଲି । କେହି ନାହିଁ । ଭାବିଲି ଜୀବନଟା ବଞ୍ଚିଗଲା । ତା'ପରେ ମୋର ସାଙ୍ଗର ହାତକୁ ଧରି ଉପରକୁ ଟାଣି ଆଣିଲି । ଘରକୁ ଆସି ଘଟିଥିବା ଘଟଣା ସବୁ ପ୍ରକାଶ କଲି । ସମସ୍ତେ କହିଲେ, ଜଗନ୍ନାଥ ମହାପ୍ରଭୁ ତୁମ ଦୁଇ ଜଣକୁ ଉଦ୍ଧାର କଲେ ।

ସେ ଦିନର ଦେଇ ଅଦୃଶ୍ୟ ହାତ ସ୍ପର୍ଶର ଅପୂର୍ବ ଅମୃତ ଅନୁଭବ ଆଜିବି ଅଭୁଲା ସ୍ମୃତି ହୋଇ ବଞ୍ଚି ରହିଛି ମୋର ମାନସ ପଟରେ । ମନେ ମନେ ସ୍ଥିର କଲି, ଯେଉଁ ଜଗନ୍ନାଥ ମୋତେ ମୃତ୍ୟୁ ମୁଖରୁ ଉଦ୍ଧାର କରିଛନ୍ତି, ଏଇ ଜୀବନକୁ ତାଙ୍କ ପାଦପଦ୍ମରେ ସମର୍ପଣ କରିଦେବି । ସେ ମୋର ପିତା, ମାତା, ଇଷ୍ଟ, ଗୁରୁ ଓ ରକ୍ଷକ ।

ମୋର ଜୀବନ ଏକ ସମର୍ପିତ ଜୀବନ, ଜଗନ୍ନାଥଙ୍କ ପାଦପଦ୍ମରେ ।

ଅବନକେଲା, ପୋ. - ରେମଣ୍ଡା
ଭାୟା - କୁଣ୍ଡୁକେଲା, ଜି. - ସୁନ୍ଦରଗଡ଼-୧୯
ଭ୍ରାମ୍ୟଭାଷ : ୯୭୭୭୫୧୫୧୬୨



# ମୋ ଅନୁଭୂତିରେ ଶ୍ରୀଜଗନ୍ନାଥ

## ଆଭାକାନ୍ତ ମହାନ୍ତି

ବଡ଼ ଦେଉଳର ରତ୍ନବେଦୀ ଆରୂଢ଼ ଜଗନ୍ନାଥଙ୍କୁ ମୁଁ ଦେଖି ନଥାଏ ସେତେବେଳକୁ । କେମିତି ଦେଖିବି ଯେ ? ସପ୍ତମ ଶ୍ରେଣୀ ଅଧାରୁ ତ ଗାଁ ସ୍କୁଲ ଛାଡ଼ି କଳାହାଣ୍ଡି ଗଲି ବାପାଙ୍କ ପାଖକୁ ଆଉ ସେଇଠି ପଢ଼ିଲି ମାଟ୍ରିକ୍ ଯାଏ ଚାରି ବର୍ଷ । ବାପାଙ୍କର ଗେହ୍ଲା ଥିଲି । କୁଆଡ଼େ ଗାଁରେ ଦୁଷ୍ଟାମି କରୁଥିଲି ଯେ ବୋଉ ଭାଇ ନୟାନ୍ତ ହୋଇ ପଡୁଥିଲେ । ଅତିଷ୍ଠ ହୋଇ ବାପାଙ୍କ ପରାମର୍ଶରେ ତାଙ୍କ ପାଖକୁ ପଠାଇ ଦେଲା ବୋଉ । ମାଟ୍ରିକ୍ ପରେ ଫେରି ଆସି ଭୁବନେଶ୍ୱରରେ ରହି ପଢୁଥାଏ ଆଉ ବାୟୁସେନା ପାଇଁ ପରୀକ୍ଷା ଦେଇ ପାସ୍ କରିଥାଏ ।

ଏତିକିବେଳେ ଶୁଣିଲି ଗାଆଁରେ ଆମର ଜଣେ ବାବାଜୀ ଆସି ଡେରା ପକାଇଛନ୍ତି ସରସ୍ୱତୀ ହାଟରେ । ସରସ୍ୱତୀ ହାଟକୁ ଲାଗି ଗୋବରୀ ନଈ ବହିଯାଇଛି । ସବୁବେଳେ ପେଟ ଖଙ୍କା କରି ପଡ଼ିଥାଏ କେବଳ ବର୍ଷା ଦିନେ ଟିକେ ଫୁଲେଇ ହୁଏ ଯାହା । ଯା' ହେଉ ନଈ ପଠାଲଗା ଗୋଚରରେ ବାବା ସତ୍‌ସଙ୍ଗ କରୁଥା'ନ୍ତି ସବୁଦିନେ । ମୋ ବାପାଙ୍କ ପରି ଅନେକ ଲୋକ ଜୁଟନ୍ତି, ଶୁଣନ୍ତି ଆଉ ପ୍ରଭାବିତ ବି ହୁଅନ୍ତି । ଧୀରେ ଧୀରେ ଗୋଟିଏ ଆଶ୍ରମ କରିବା କଥା ଉଠି ଆଠ-ଦଶ ଗାଆଁ ଲୋକଙ୍କ ଭିତରେ ଏକ ପ୍ରକାର ଲହର ଖେଳିଗଲା । ଏମିତି କି ମୋରି ବୟସର ସାଙ୍ଗମାନେ ମିଶି ୩୦-୩୨ ଜଣ ହାତରେ ହାତ ବଢ଼େଇ ଦେଲେ । ଚାଲିଲା ଚାନ୍ଦା ଭେଦା । କିଏ ଗଛ ଦେଲା ତ କିଏ ବାଉଁଶ କିଏ ଛଣ ତ କିଏ ପଟ, ରାତିଦିନ ଚାଲିଲା କାମ । ସମସ୍ତେ ଖୁସ୍ । ବାବା ଧୀରେ ଧୀରେ ତାଙ୍କ ଇଚ୍ଛାର କାୟା ବିସ୍ତାରୁ ଥାଆନ୍ତି । ଘର ପାଇଁ ଆସିଥିବା ନିମ୍ବ ଗଛରୁ ଗଡ଼ କଟା ହୋଇ ପଡ଼ିଥାଏ । ବାବା କହିଲେ, ଏଠି ଠାକୁର ସ୍ଥାପନା କରିବା । ସବୁଠୁ ସବୁ ଯୋଗାଡ଼ ହେଲା । ସନିଆ ଅଜାକୁ କୁହାହେଲା ମୂର୍ତ୍ତି ତିଆରି କରିବାକୁ, ହେଲେ ସେ କହିଲା କରିବି ଯେ ଜଣେ ଡ୍ରଇଁ ଜାଣିଲା ବାଲା ଦରକାର ବଡେଇବାକୁ ଆଉ ଅଣସରରେ ସାହାଯ୍ୟ କରିବ । ଏ ସବୁ ପାଇଁ ମୋ ସାଙ୍ଗମାନେ ହାଡ଼ି, ବାପରେ ବାପ ଏତେଦିନ କିଏ ରହିବରେ ବାବା ? କେଇ ଜଣ ଭିତିରିଆ ମୋ ନାଁ ବାବାଙ୍କୁ କହିଲେ । ବାବା ସେଦିନ ସତ୍‌ସଙ୍ଗ କଲେ - ମୁଁ ଗାଁକୁ ଯାଇଥାଏ ସେ ସତ୍‌ସଙ୍ଗକୁ ବି ଯାଇଥିଲି । କଥା ପ୍ରସଙ୍ଗରେ ବାବା କହିଲେ, ଗାଁରେ ଏତେ ଆୟୋଜନ ହେଉଛି ସମସ୍ତଙ୍କ ଅବଦାନ ରହିଲା ହେଲେ ଗୋଟିଏ ପିଲାର କିଛି ନାହିଁ । ଜଣେ ପଚାରିଲା କାହାର ? ବାବା କହିଲେ ପରମାନନ୍ଦ ବାବୁଙ୍କ ମଝିଆଁ ପୁଅର । ମୁଁ ଶୁଣିଲି । ଫୁଟାଣିଆ

ତ ଥିଲି, କହିଲି ହଉ ହେଲା ଯୋଉ କାମରେ ସବୁ ପିଲା ହାରିଯିବେ ସେଟା ମତେ କହିଲେ କରିଦେବି । ବାସ୍ କଙ୍କଡ଼ାକୁ ଗୋଳି ପାଣି ପରି ବାବା ତାଙ୍କ ସମସ୍ୟା କହିଲେ ମୁଁ ହଁ ମାରିଦେଲି ।

ଚାଲିଲା କାମ, ପୂଜା ପାଠ କ'ଣ ସବୁ ହେଲା ପରେ ଅଣସର ଘରେ ପଶିଲୁ । ଚାରିଗଡ଼ ଛେଲି କରି ସାଇଜ୍‌ରେ ଠିଆ କରି ରଖିଦେଲୁ ପ୍ରଥମ ଦିନ । ଅଜା କହିଲା ରାତି ବେଶୀ ହେଲାଣି କାଲି କରିବା । ଶୋଇପଡ଼ିଲୁ ।

ଜାଙ୍ଗୁଲୁ ଜାଙ୍ଗୁଲୁ ରାତିରୁ ଉଠି ଗାଧୋଇ ପଡ଼ିଲୁ । ଉଦୟ ସୂର୍ଯ୍ୟକିରଣ ଚାଳ ଫାଙ୍କରୁ ପଡୁଥିଲା କାଠ ଉପରେ । ମୋତେ ମଜା ଲାଗୁଥାଏ ଉଠିଗଲି କାଠ ଗୁଡ଼ାକ ଆଣିବି ଠିକଣା ଜାଗାକୁ । ଆରେ ଇଏ କ'ଣ ଯେଉଁ କାଠ ଜଗନ୍ନାଥ ମୂର୍ତ୍ତି ପାଇଁ ଚିହ୍ନଟ ସେଥିରେ ଛଅ ଇଞ୍ଚ ଚଉଡ଼ାରେ କଳାପଟି ଉପରୁ ତଳ ପଡ଼ିଛି । ସୁଭଦ୍ରା ମୂର୍ତ୍ତି କାଠର ହଳଦିଆ ପଟି । ମୁଁ ଅଜାକୁ କହିଲି, ହଇରେ ଅଜା ଡାଲମାରେ ହଳଦୀ ପକେଇ ଏ କାଠରେ ହାତ ପୋଛି ଦେଲୁନା କ'ଣ ? ତେବେ ଏ କଳା କେଉଁଠୁ ଆସିଲା ? ସେ ଦେଖିଲା କହିଲା ରହିଥା, ବାବାଙ୍କୁ ଦେଖାଇବା । ବାବା ଆସିଲେ ତାଙ୍କୁ ଦେଖାଇଲୁ ସେ ଖୁସି ହେବା ପରି ଜଣାପଡ଼ିଲା । କହିଲେ, ତୁମେ କାମରେ ଲାଗ - ସବୁ ତା'ରି ଇଚ୍ଛା ।

ସେମାନଙ୍କ ଅପେକ୍ଷା ସିନା ମୁଁ କମ୍ ଜାଣିଲି ହେଲେ ଜଗନ୍ନାଥଙ୍କ ବିଷୟରେ ପଢ଼ିଛି ଅନେକ । ପୁରୀ ଛଡ଼ା ଅନ୍ୟ ସ୍ଥାନରେ ଦେଖିଛି । ମତେବି କେମିତି ଭାରି ନିଜର ନିଜର ଲାଗନ୍ତି । ଛପା ଅଛପା ତାଙ୍କୁ ଜଣେଇ ଦେଲେ ମନରେ କେମିତି କେମିତି ଟିକେ ଆଶ୍ୱସ୍ତି ଆସେ ସତରେ । ଛାଡ଼ ସେ ସବୁ । ଅନେକ ଦିନ ବିତିଲାଣି । ଆଜି ଗର୍ବଗଞ୍ଜନ ବସିଛନ୍ତି ୪୦-୪୫ ବର୍ଷର ବୁଢ଼ା ହୋଇ ବିଶ୍ୱାସ ବଢ଼େଇ ଚାଲିଛନ୍ତି । ସେ ଦିନର ଅନେକ ଖଣ୍ଡି ବୁଝା କଥା ଆଜି ବେଶ୍ ବୁଝି ଯାଉଛି । ନିଜ ଭାବନାରେ ନିମଗ୍ନ ମୁଁ ।

ଚାଲ, ଆଉ ଦିନକର କଥା । ଦେଖ ଭାଇ ଇଏ ମୋ କଥା ମୁଁ କହୁଛି ଏ ସବୁ ଆପଣଙ୍କୁ କେମିତି ଲାଗିବ କହି ପାରିବିନି । ଭୁଲ୍ ବୁଝିବେନି ଜମା ।

ପ୍ରାକ୍ ପ୍ରୌଢ଼ତାରେ ଚାକିରି ଛାଡ଼ିଲି ଆଉ ଆଠ ବର୍ଷ ଥାଉଁ ଥାଉଁ । ଭାବିଲି ବାହାରେ ରହି ଅନେକ ନିଜ ପଣ ହରାଉଛି ବୋଲି । ମାର୍ଚ୍ଚ ୨୦୦୬ ଆରମ୍ଭରୁ ଆସି କଟକରେ ରହି ସାହିତ୍ୟ ସଭାକୁ ଗଲି ବିଶେଷ କରି କବିତା ପାଠୋତ୍ସବରେ କବିତା ପଢ଼ିଲି । ଖୁବ୍ ଭଲ ଲାଗେ ନୂଆ ନୂଆ ଲେଖିବାର ପ୍ରେରଣା ପାଏ । ଯା'ହେଉ ୩୨

ବର୍ଷ ପରେ ସ୍ତ୍ରୀ ଛଡ଼ା ଅନ୍ୟମାନେ ଶୁଣି ବୁଝନ୍ତି ବହୁତ ଭଲ ଲାଗୁଥାଏ । ହଠାତ୍ ସେଇ ବର୍ଷ ନଭେମ୍ବର ମାସରେ ମୋର ପ୍ରଥମ ଶ୍ରୋତାର ବୃକ୍କ ଖରାପ ଜାଣିପାରିଲି । ଆକାଶ ମୁଣ୍ଡ ଉପରେ ଖସିପଡ଼ିଲା ପରି ଲାଗିଲା । ବିବ୍ରତର ଏ ଅନୁଭବ ଅଥୟ କଲା ଅସହାୟ କଲା । ନିଜର ସବୁ ପର ପରି ଲାଗିଲେ ସମସ୍ତେ ଅସମର୍ଥ ଲାଗିଲେ । ମାନସିକ ଚିନ୍ତା ଅବର୍ଣ୍ଣନୀୟ କ'ଣ କରିପାରିବି ଯେ ? କାହାକୁ କହିବି ? ଅନିଶ୍ଚିତ ହୋଇ ପଡ଼ିଲା ସତ୍‌ସଙ୍ଗ । ଏମିତି ତ ମୃତ୍ୟୁକୁ ଏତେ ଗହିରରେ କେହି ନିଅନ୍ତି ନାହିଁ କିନ୍ତୁ ସେ ସତ୍ୟ ଖୁବ୍ ଭୟଙ୍କର । ସେ ବେଳ ମନର ଭାଷା ଆଜିବି ଅବର୍ଣ୍ଣନୀୟ । ଶୋଇଲା ବେଳକୁ ଅଜଣା ଭୟ ଭୟଙ୍କର ରୂପ ଧରି ଡରାଉଥାଏ । ସବୁ ପର୍ଯ୍ୟାୟରେ ଅନ୍ୟମନସ୍କତା ଅଧୁରାପଣ ଶୁଭେଚ୍ଛୁ ମାନଙ୍କର କଥା ଏ କାନରେ ପଶି ସେ କାନରେ ବାହାରି ଯାଉଥାଏ । ଶାନ୍ତି ଯେମିତି ହଜାର ହଜାର ମାଇଲ୍ ଦୂରକୁ ଚାଲି ଯାଇଥାଏ ।

ଶେଷକୁ ଗର୍ଜନ କଲା ଅନ୍ତର୍ମନ ଅଭିମାନର ଚରମତାରେ । ନିଜର ଆଉ କିଏ ଅଛି ନିଉଛାଳୀ କରିବି କ୍ଷମା ମାଗିବି । କିଏ ଏ ଅସମ୍ଭବକୁ ସମ୍ଭବ କରିବ ? କାହା କାନ୍ଧରେ ମୁଣ୍ଡ ରଖି କାନ୍ଦି ପାରିବି ଅନ୍ତତଃ । କାହାକୁ ଜଣାଇ ପାରିବି ଅକୁହା ବେଦନାକୁ ? ଶେଷକୁ ସବୁ ଢାଳିଦେଲି ସେଇ କଳାଦିଅଁ ଚକାଆଖି ପାଦତଳେ । ସମର୍ପଣ କରିଦେଲି ମନର ଅସ୍ଥିରତାକୁ । ତୁ ବୁଝିବୁ, ବୁଝିବାକୁ ପଡ଼ିବ ତୋତେ । ମୋର ଆଉ କିଏ ଅଛି କି ? ଆଶ୍ୱସ୍ତ ହେଲି । ସାଂସାରିକ ପ୍ରତିକାର ଚାଲିଥାଏ ହେଲେ ମୁଁ ସୁଦୃଢ଼ । ବିଶ୍ୱାସ ଜମାଟ ବାନ୍ଧିଲା । ଟିକେ ଟିକେ ବଳ ଫେରି ପାଉଥାଏ । ମୁଁ ନିଶ୍ଚିନ୍ତ, ନ ହେଲେ ପୁଣି ଗାଳି ଦେବି ପୁଣି ଅଭିମାନ କରିବି । ମୁଁ ତ ତା'ନିଜର, ନିଶ୍ଚୟ ମାନ ରଖିବ ।

ସାତ ବର୍ଷ କଟିଲା । କେତେ ଆଉ ସମ୍ଭାଳିବ ଯେ ? ମୁଁ ତ ତା'ର ଏକାନୁହଁ ମୋର ସିନା ସିଏ ଏକା । ଦେଖ ସବୁ ଆଡ଼କୁ ବିଚାର କରିବା କଥା । ତା' କଥା ତ ଟିକେ ଭାବିବା ସବୁବେଳେ ତାକୁ ଦୋଷୀ କରିବା ଠିକ୍ ନୁହେଁ । ସେ ତ ଗୋଟେ ବିଶ୍ୱଧାରା ବନେଇ ଏତେ ବଡ଼ ବ୍ରହ୍ମାଣ୍ଡକୁ ଚଳାଉଛି ? କେତେ ଝିନ୍‌ଝଟ୍ ଘରଟିଏ ଚଳେଇବା ? ଏଥିରୁ ବୁଝ ।

ଚାଲ ସାଥୀହରା ହେଲି ୨୦୧୨ରେ । ହଁ, ସାମୟିକ ବିବ୍ରତ ହେଲି ଅଳ୍ପ ଅଭିମାନ କଲି ତା'ଉପରେ । ହାଡ଼ ମାଂସର ଜୀବନ ତ, ପ୍ରକୃତି ଯିବ କୁଆଡ଼େ ? ସାଥୀହରା ଦିନର ଏକ ଦିନ । ହଁ, ଏତେବେଳକୁ ତା'ପିଣ୍ଡିରୁ ତାକୁ ଅନେକ ଥର ଦେଖିଛି, ଢ଼ାଳି ଦେଇଛି ମୋ ସ୍ୱାର୍ଥ ଭାବ ତା' ପାଖରେ । ଖାଲିତ ଦେ, ଏଇଟା ଦେ, ସେଇଟା ଦେ, ସାହା ହୁଅ, ରକ୍ଷା କର, ଧେତ୍ ଅବିଚାର ମୋର ।

ଅବସୋସ ଥାଏ ଓଡ଼ିଶା ଆସିବାର ଆଠ ବର୍ଷ ହେଲାଣି ହେଲେ ତା' ରଥଯାତ୍ରା ରୂପ ସାକ୍ଷାତ ଦେଖିନି ବୋଲି । ପୁରୀ ଦୋଳମଣ୍ଡପ ସାହିର ଶଳା ଅନେକ ଥର କହିଛି ହେଲେ ଯାଇପାରିନି । ଭୁବନେଶ୍ୱରରୁ ପୁରୀ କେତେ ବାଟ ଯେ ? ଲୋକେ କ'ଣ କହନ୍ତି ଜଗନ୍ନାଥ ଡ଼ୋରି ଲାଗେ ବୋଲି ତେବେ ଡୋରି ଲଗାଇନି କାହିଁକି ଏତେ ଦିନ ଯାଏ ?

ରଥଯାତ୍ରା ଟିଭିରେ ଦେଖିଲି । ସଂଧ୍ୟାରେ ଖବର ଜାଣିଲି ରଥ ଅଧା ବାଟରେ ରହିଛି ପହଞ୍ଚି ପାରିନି ଗୁଣ୍ଡିଚା ଘରେ । ସେ ଜାଣେ ତା' କଥା । ମୋ ମନରେ ତ ଅଭିମାନ ନାହିଁ, ହଁ ଦିନ ଥିଲା ପ୍ରଚୁର ଥିଲା । ସଂଧ୍ୟାରେ ଏଣୁ ତେଣୁ ଭାବିଲା ବେଳକୁ ଲେଖି ବସିଲି -

'ଠାକୁର ହେ ମୋତେ ଠକି ଠୁଳାଇଲ ଠାକୁର ପଣକୁ ନିନ୍ଦା
ଗୋଛା ଗୋଛା ଗାଳି ଗରିମାର ଗପ ଲାଗୁଛି ଗୋଲକ ଧନ୍ଦା ।'

ବାସ୍ ଗହନ ନିଦ ଆସିଗଲା ଶୋଇ ପଡ଼ିଲି । ସମୟ ହେବ ବୋଧେ ରାତି ବାରଟା । ହଠାତ୍ କୁକୁର ଦି'ଟା ଭୁକିଲେ । ତନ୍ଦ୍ରାୟିତ ଭାବେ ଚୁପ୍ କରାଇବା ଉଦ୍ଦେଶ୍ୟରେ ଡାକିଲି 'ସେଲି', 'ଗୋଲୁ' ଶୋଇପଡ଼ । ଚୁପ୍ ରହ । ମୋ ଆବାଜ ଶୁଣି ସେ ଦୁହେଁ ଚୁପ୍ ହୋଇଗଲେ । ହେଲେ ଲାଗିଲା ଗେଟ୍‌ରେ କିଏ ଖଟ୍ ଖଟ୍ କଲା ଭଳି, ନିଦ ଆହୁରି ହାଲ୍‌କା ହେଲା । ଶୁଣିଲି ସାନ ଭାଇର ଆବାଜ 'ଭାଇ ଗେଟ୍ ଖୋଲ' । ଉଠିଲି କବାଟ ଖୋଲୁ ଖୋଲୁ ପଚାରିଲି ହଇରେ ବରୁଆ କ'ଣ ହେଲା ? ସେ କହିଲା, ଜଲ୍‌ଦି ପ୍ୟାଣ୍ଟ ସାର୍ଟ ପିନ୍ଧି ଆସ । କହିଲି କୁଆଡ଼େ, କ'ଣ ହେଲା ? ଜଲ୍‌ଦି ଆସ, ଡ଼େରି କରନା । ଉତ୍ତର ଏତିକି । ତରବରରେ ପ୍ୟାଣ୍ଟ ସାର୍ଟ ପିନ୍ଧି ଗେଟ୍ ବାହାରେ ଦେଖିଲି ୫ଟା ଗାଡ଼ି । ପୁଣି କହିଲି, କିରେ କଥା କ'ଣ ଆମ ପରିବାର ସହ ତା ପଡ଼ୋଶୀ ଝିଅର ପରିବାର ସମସ୍ତେ ଆସିଛନ୍ତି । ପଚାରିଲି, ଏତେ ରାତିରେ କୁଆଡ଼େ ଯିବା ? ଉତ୍ତର ପାଇଲି, ପୁରୀ ଯିବା । ସାନ ଭାଇଟା ସେମିତିଆ ସବୁ କଥାରେ ତୁରୁତୁରୁ । କହିଲା, ରଥ ଗୁଣ୍ଡିଚା ଘରେ ପହଞ୍ଚିନି ଭିଡ଼ ନଥିବ, ଦର୍ଶନ କରି ଆସିବା । ଆରେ ଇଏତ ମୋ ମନର କଥା । ହଉ ବାବା । ହୃଦୟଂ ଭିତରେ କିଏ କହିଲା ପ୍ରାୟ 'ତୋ ଲୀଳା ଅପାର' ।

ଗହନ ନିଦ କୁଆଡ଼େ ଗଲା ଜାଣିନି । ଗୁଣ୍ଡିଚା ମନ୍ଦିର ପାଖରେ ଗାଡ଼ିରୁ ଓହ୍ଲାଇଲୁ । ସମୁଦ୍ର ଯେମିତି ବାଛି କରି ସୁଆଦିଆ ପବନ ପଠେଇଛି ଆମକୁ ସ୍ୱାଗତ କରିବାକୁ । ବଡ଼ ଠାକୁରଙ୍କୁ ଦେଖି ମୁହାଁଇଲୁ ମନ୍ଦିର ମୁଖା । ବାଟରେ ସୁଭଦ୍ରାଙ୍କୁ ଭେଟିଲୁ । ବିଚାରୀ

କ'ଣ କରିବ ଯେ, ମନମୋଟିଆ ଭାଇ କଥା କେମିତି ଟାଳିବ ଯେ ଲାଗୁଥିଲା ଥଣ୍ଡା ପବନ ବାଜିବାରୁ ଘୁମେଇଲା ଭଳି । ଆଉଟି ଗଲି ଆଗକୁ ନନ୍ଦିଘୋଷ ଦେଖିଲି ଦୂରରୁ । ଦେଖିଲି ହାତ ଟେକି କାଳିଆ ହସି କହୁଛି ଯେମିତି 'କିରେ ମତେ ରଥ ଦିନ ରଥରେ ଦେଖିବାକୁ ମନ କରିଥିଲୁ ନା, ଏବେ ଦେଖ ମନଇଚ୍ଛା ।' ଚମତ୍କାର ଭାବ କେମିତି କହିବି ଯେ ? ମନ ଚାହୁଁଥିବା କଥା ଅଜଣା ଭାବେ ଯଦି ଏକାନ୍ତ ନିଜର କିଏ ଦେଇଦିଏ ଆଖି ଜକେଇ ଯାଏ ନା ? କ'ଣ  ମ ଆପଣଙ୍କୁ ପଚାରୁଛି ପରା ? କ'ଣ କହୁନାହାନ୍ତି ଠିକ୍ କି ଭୁଲ୍ ??

ହଁ, ସେଇଆ ହେଇଥିଲା ନା କ'ଣ । ମନକୁ ମନ ଅନେକ ମନକଥା କହିଲି ଶୁଣିଲା କି ନାହିଁ କହିପାରିବିନି । କାନ ତ ନାହିଁ ଶୁଣିବ କ'ଣ ଯେ ? କିନ୍ତୁ ତା'ହସରୁ ଜାଣିଲି ସବୁ ବୁଝି ଯାଇଛି ନିଶ୍ଚେ । ଆଉ ତା'ଦୃଷ୍ଟି କହୁଥିଲା ସେଇ ହିଁ ମୋର ଏକାନ୍ତ ମୁରବୀ, ସବୁ ସମ୍ଭାଳି ନେବ ।

ଛାଡ଼ ସେ କ'ଣ କରୁଛି କରୁ ନା, ସେ କାହା କଥାରେ ନା କାହା ବୋଲରେ ମନମୋଟିଆ ଯାହା କରୁଛି କରୁଥାଉ । ଆରେ ହଁ ସବୁ ଭଲ କରେ ବା, ଟିକେ ତ଼ଳେଇ କରି ବୁଝିଲେ ସବୁ ଠିକ୍ କଲା ପରି ଲାଗେ ଆଉ ଲାଗେ ସେଇ ହିଁ ସବୁଠାରୁ ଆପଣାର ସବୁବେଳେ ସବୁଠେଇ ।

ଏଇ ତ କଥା ଆଉ କ'ଣ କହିବି ଯେ ।

ଭାବକୁ ନିକଟ ଅଭାବକୁ ଦୂର ସେ ।

ନୂଆସାହି, ବିଡ଼ାନାସୀ, କଟକ-୧୪
ଭ୍ରାମ୍ୟଭାଷ : ୭୨୦୫୦୭୭୬୦୭



# ଜଗନ୍ନାଥ ନାମକୁ ସ୍ମରିଲି

## କୁଞ୍ଜବିହାରୀ ସାହୁ

ସେଦିନ ଥିଲା ଏପ୍ରିଲ ୧୧, ୨୦୦୫ । ବ୍ରହ୍ମପୁର ଏମ୍.କେ.ସି.ଜି ମେଡ଼ିକାଲ୍‌ରେ ତିନିଦିନ କୋମାରେ ରହି ବାପା ଆମମାନଙ୍କୁ ଏକା କରି ଚାଲିଗଲେ । ସମୟ ଥିଲା ଅପରାହ୍ନ ଘ.୩.୨୫ ମିନିଟ୍ । ଆଷାଢ଼ର ବାରିଧାରା ପରି ବୋଉର ଆଖିରେ ଲୁହ ଘନେଇ ଆସିଲା । ଛଳ ଛଳ ଆଖିରେ ମୋତେ କୁଣ୍ଢେଇ ପକାଇଲା ଗୋଟାପଣେ । ମୋ ଛାତିରେ ଭରି ଯାଇଥିଲା ଅକୁହା କୋହ । ଅସମ୍ଭାଳ ହୋଇପଡୁଥିଲି ଅପ୍ରତ୍ୟାଶିତ ଭାବେ । ସାନଭାଇ ମନୋଜ ବି କଇଁ କଇଁ କାନ୍ଦି ପକେଇଲା ଟିକି ପିଲାଟି ପରି । ମେଡ଼ିକାଲର ଆଭ୍ୟନ୍ତରୀଣ ପରିବେଶ ଶୋକଛାୟାରେ ଭରିଗଲା ଅକସ୍ମାତ । ନିଜକୁ ଆୟତ୍ତ କଲି । ଆବଶ୍ୟକୀୟ କାଗଜପତ୍ର ସଂଗ୍ରହ କରି ଭୁବନେଶ୍ୱର ଫେରିବାର ଆୟୋଜନ ହେଲା । କହିବା ବାହୁଲ୍ୟ ଯେ, ସେଦିନ ଯେ କୌଣସି ମତେ ଭୁବନେଶ୍ୱରକୁ ବାପାଙ୍କୁ ସ୍ଥାନାନ୍ତରିତ କରିବାର କାର୍ଯ୍ୟସୂଚୀ ଥିଲା । ମାତ୍ର ବାପାଙ୍କ ମର ଶରୀରକୁ ସାଥୀରେ ଧରି ଫେରିବାର ବିଧି ଥିଲା ବିଧାତାର ଖେଳ ।

ଗୋଧୂଳି ଇସାରା ଦେଲା ଭୁବନେଶ୍ୱର ବାହୁଡ଼ିବା ପାଇଁ ।

ଭଡ଼ା ଗାଡ଼ିରେ ଭୁବନେଶ୍ୱର ଫେରିଲି ବାପାଙ୍କୁ ଧରି । ସାଥୀରେ ବୋଉ, ସାନଭାଇ ମନୋଜ ଓ ଟୁକୁ (ସଂପର୍କୀୟ ଭଣଜା) । କିଛି ବାଟ ଅତିକ୍ରମ କରିବା ପରେ ସଞ୍ଜ ଓଢ଼ଣା ଢ଼ାଙ୍କିଦେଲା ଗାଡ଼ି ଉପରେ, କାଳେ କୌଣସି ଅସାମାଜିକ ଲୋକଙ୍କର ନଜର ପଡ଼ିଯିବ ବୋଲି । ଦୀର୍ଘପଥ ଯାତ୍ରାରେ ବୋଧ କରୁଥିଲି ବୋଉକୁ । ବାଟସାରା କେବଳ ଶ୍ରୀଜଗନ୍ନାଥଙ୍କୁ ନିବେଦନ-ଭଲରେ ପହଞ୍ଚିବା ପାଇଁ । ଗଛପତ୍ର ଚୁପ୍‌ଚାପ୍ ଦିଶୁଥିଲେ ଯେମିତି । ସ୍ୱୟଂ ଜଗନ୍ନାଥ ବିପଦର ବନ୍ଧୁ । ବାଟ ଦେଖେଇ ଦେଉଥିଲେ । ଆକାଶରେ ଜହ୍ନ ଆଲୁଅର ରୋଷଣି । ବିଛାଡ଼ି ହୋଇ ପଡୁଥିଲା ବାଟସାରା ।

ଭୁବନେଶ୍ୱରରେ ଗାଡ଼ି ପହଞ୍ଚିଲା ମଧ୍ୟରାତ୍ରି ବେଳକୁ । ବ୍ରେକ୍ ଦେଲା ଗାଡ଼ି ନୟାପଲ୍ଲୀ ବ୍ରିଟ୍ କଲୋନୀ ବାପାଙ୍କ ନାମିତ ବାସଭବନରେ । ହଠାତ୍ ବୋଉ କାନ୍ଦି ପକେଇଲା । କାନ୍ଦର ଶବ୍ଦ ବାରି ହୋଇଗଲା ଅଦିନ ଘଡ଼ଘଡ଼ି ପରି । ଓହ୍ଲେଇବାକୁ ରାଜି ହେଲାନି ସହଜରେ । କାଳେ କିଏ ତା' ଇହକାଳ ପରକାଳର ଦେବତାକୁ ପାଖରୁ ଛଡ଼େଇ ନେବ ! ମୁଁ ବି ଚମକିପଡ଼ିଲି ବୋଉର ଅକସ୍ମାତ କାନ୍ଦ ଶୁଣି । ନିଶ୍ଚିତ ଭାବେ ଛାତିର ଜମାଟ ବନ୍ଧା କୋହ ଲୁହ ହୋଇ ଆଖି କୋଣରୁ ଝରିଗଲା ଅବିଳମ୍ବେ । ବୋଲ ମାନୁ ନଥିଲା ଲୁହ ଟୋପା ।

ପୂର୍ବ ସୂଚନାନୁଯାୟୀ ବ୍ରିଟ୍ କଲୋନୀରେ ଗହଳି ଲାଗିଯାଇଥିଲା ବାପାଙ୍କର ଶୁଭାନୁଧ୍ୟାୟୀ ବନ୍ଧୁ ମାନଙ୍କର । ହୋମିଓପ୍ୟାଥି ଡାକ୍ତର ହିସାବରେ ବି ଖୁବ୍ ନାଁ ଥିଲା । ତେଣୁ ରୋଗରୁ ଉପଶମ ପାଇଥିବା ବ୍ୟକ୍ତି ବିଶେଷ ମଧ୍ୟ ଶେଷ ଦର୍ଶନ ପାଇଁ ଅପେକ୍ଷା କରିଥିଲେ । ଏତାଦୃଶ ସମାବେଶରୁ ଜଣାପଡୁଥିଲା ସେମାନଙ୍କର ନିଜର ଲୋକଟିଏ ଅନେକ ଦୂରକୁ ପଳେଇ ଯାଇଛନ୍ତି ।

ଘରେ ଆବଶ୍ୟକୀୟ କାର୍ଯ୍ୟକ୍ରମର ସମାପ୍ତି ପରେ କୋକେଇ ଉଠିଲା । ଅନ୍ତ୍ୟେଷ୍ଟି ଅବିର ବିଞ୍ଛି ହୋଇଗଲା ଘର ସାମ୍ନାରେ । କାନ୍ଦ ବୋବାଳିରେ ଲୁହ ଖସିଗଲା ଆଖି କୋଣରୁ ସମସ୍ତଙ୍କର । ବ୍ରହ୍ମପୁରରୁ ଆସିଥିବା ଗାଡ଼ିରେ ମୁଁ, ସାନଭାଇ ମନୋଜ, ସଂପର୍କୀୟ ଭଣଜା ଟୁକୁ ଏବଂ ଅନ୍ୟାନ୍ୟ ବନ୍ଧୁ ବାନ୍ଧବ ମାନେ ସ୍ୱର୍ଗଦ୍ୱାର (ପୁରୀ) ଅଭିମୁଖେ ବାହାରିଲୁ । ସାଇ ପଡ଼ୋଶୀ ମଧ୍ୟ ସେମାନଙ୍କର ବହୁମୂଲ୍ୟ ସମୟ ବିନିଯୋଗ କରି ଆପଣା ବ୍ୟବସ୍ଥାରେ ପୁରୀ ସ୍ୱର୍ଗଦ୍ୱାର ଆଡ଼େ ମୁହାଁଇଲେ । ବାପାଙ୍କ ଗୋଡ଼ ପାଖରେ ମୁଁ ଏବଂ ମୁଣ୍ଡ ପାଖରେ ମନୋଜ । ମୋ ତୁଣ୍ଡରେ କେବଳ ଜଗନ୍ନାଥଙ୍କ ନାମ -

'ଜଗନ୍ନାଥ ହୋ... କିଛି ମାଗୁନାହିଁ ତୋତେ
ଧନ ମାଗୁନାହିଁ ଜନ ମାଗୁନାହିଁ, ମାଗୁଛି ଶରଧାବାଲିରୁ ହାତେ ।'

ଏଠି ସତକଥା କହି ରଖେ ଯେ, ମୋର କର୍ମସ୍ଥଳୀ ପୁରୀ ଥିଲେ ମଧ୍ୟ ବିଭିନ୍ନ କାରଣବଶତଃ ବାପା-ବୋଉଙ୍କୁ ବେଶୀ ଦିନ ପୁରୀ ସହର ବୁଲେଇ ନେବାର ସୁଯୋଗ ପାଇପାରି ନଥିଲି । ଦୁଃଖ ଥିଲା ମୋର ଏବଂ ଅବସୋସ ଥିଲା ବି ବାପାଙ୍କର । ଅନ୍ୟ ପକ୍ଷରେ କହିଲେ, ଚାକିରିରୁ ଅବସର ପରେ ମାନସିକ କ୍ଲାନ୍ତିରୁ ନିଜକୁ ଦୂରେଇ ରଖିବା ପାଇଁ ବାପା ପୁରାଣ, ପୋଥି, ଧର୍ମ ସଂକ୍ରାନ୍ତୀୟ ପତ୍ରିକା ପଢୁଥିଲେ ଏବଂ ସହଯୋଗୀ ବନ୍ଧୁ ବାନ୍ଧବଙ୍କ ସହ ଏହି ସମ୍ବନ୍ଧୀୟ ଚର୍ଚ୍ଚା ରଖୁଥିଲେ । ଜଗନ୍ନାଥ ତାଙ୍କର ଅଭୀଷ୍ଟ ପୂରଣ କରୁଥା'ନ୍ତି ବୋଲି ଇଚ୍ଛା ଥିଲା ମନରେ । ମୁଁ ବି ପଢୁ ପଢୁ ଝୁଣ୍ଟିଥିଲି ଗୋଟିଏ କବିତା ଉପରେ ।

'ସବୁ ବନ୍ଧନ ଫିଟାଅ ହେ ପ୍ରଭୁ
ତୁମରି ବନ୍ଧନେ ରଖ
ତୋ ପ୍ରେମ ଦଉଡ଼ି ମୋ ଗଳାରେ ଭିଡ଼ି
ଟାଣିନିଅ ତୁମ ପାଖ ।'

ବୋଧହୁଏ, ଏଥିପାଇଁ ସ୍ୱର୍ଗଦ୍ୱାରର ଶେଷ ବିଛଣାରେ ଶୋଇବାକୁ ସ୍ଥିରୀକୃତ କରିଥିଲେ । ତେଣୁ ବାପାଙ୍କର ଇଚ୍ଛାକୁ ସମ୍ମାନ ଜଣେଇଲି । ବେଶୀ ଖୁସି ହୋଇଗଲି କାରଣ, ପୁରୀରେ ପ୍ରାୟ ୧୦ ବର୍ଷ ଧରି ମୋର କର୍ମମୟ ଜୀବନ କଟିଥିଲା । ଶରଧାବାଲି, ଗୁଣ୍ଡିଚା ମନ୍ଦିର, ଶ୍ରୀମନ୍ଦିର, ମହୋଦଧି, ଅବଢ଼ା ଏବଂ ସ୍ୱର୍ଗଦ୍ୱାରର ନିଆରା ବନ୍ଧନରେ ମୁଁ ଛନ୍ଦି ହୋଇଯାଇଥିଲି । ଅପରାହ୍ନରେ ସାଙ୍ଗସାଥୀମାନଙ୍କ ସହ ଅନେକ ଥର ସ୍ୱର୍ଗଦ୍ୱାର ବୁଲିବାକୁ ଯାଇଛି । ଅନୁଭବିଛି ଶ୍ମଶାନର ଆତ୍ମୀୟତା । ଜଳନ୍ତା ଜୁଇର ଭିନ୍ନ ଆବେଗ । କିନ୍ତୁ କିଏ ଜାଣିଥିଲା ଏହି ପବିତ୍ର ସ୍ୱର୍ଗଦ୍ୱାରରେ ବାପାଙ୍କ ଜୁଇ ଜଳିବ ବୋଲି ! ମୋର ଭାବନା ସ୍ୱୟଂ ଜଗନ୍ନାଥ ମନେ ରଖିଥିଲେ । ସେଥିପାଇଁ ତ ସିଏ ଜଗତର ନାଥ, ଅନ୍ତର୍ଯ୍ୟାମୀ ।

ଚନ୍ଦ୍ରାଲୋକରେ ଗାଡ଼ି ଆଗେଇଲା ବେଳକୁ ମଙ୍ଗଳପୁର ଛକରେ ଗୋଟିଏ ନାଗସାପ ଗାଡ଼ି ସାମ୍ନାରେ ଡାହାଣ ପଟରୁ ବାମ ପଟକୁ ଅତିକ୍ରମ କରି ଗଲା । ଯେହେତୁ ସେଦିନ ଥିଲା ସୋମବାର ରାତି, ଶ୍ରୀଲୋକନାଥ ବି ନାଗସାପ ରୂପରେ ବାପାଙ୍କୁ ଆଶୀର୍ବାଦ ଦେଇ ବାଟ କଢ଼େଇ ନେଲେ । ମୁଣ୍ଡିଆ ମାରିଲି ଶ୍ରୀଲୋକନାଥଙ୍କୁ । ଗାଡ଼ି ଭିତରେ ମୁଁ ବାପାଙ୍କୁ କାନ୍ଦି କାନ୍ଦି କ୍ଷମା ମାଗୁଥିଲି ଅଜାଣତରେ ହୋଇଥିବା ଭୁଲ୍ ପାଇଁ । ବଡ଼ ପୁଅ ଭାବେ ସମସ୍ତ ଦାୟିତ୍ୱ ମୁଣ୍ଡେଇବାରେ କାଳେ କେଉଁଠି ଭୁଲ୍ ହୋଇଯାଇଥିବ ବୋଲି । କାରଣ ଶେଷ ସମୟରେ ମୁଁ ବାପାଙ୍କ ସହ କଥା ପଦେ ହେଇପାରିଲିନି । ଡାକ୍ତରଖାନାରେ ତାଙ୍କ ମୁଣ୍ଡକୁ ମୋ କୋଳକୁ ଆଣିବା ପରେ ପ୍ରାଣବାୟୁ ଉଡ଼ିଯାଇଥିଲା । ଏୟା ଥିଲା ବିଧିର ଲୀଳା ।

ବୀରହରେକୃଷ୍ଣପୁର ଗାଁ ପାରି ହେଲା ପରେ ଶ୍ରୀଜଗନ୍ନାଥଙ୍କ ନୀଳଚକ୍ର, ପତିତପାବନ ବାନା ଦୃଶ୍ୟମାନ ହେଲା । କର୍ମମୟ ଜୀବନରେ ଭୁବନେଶ୍ୱରଠୁ ପୁରୀ ଯିବା ଆସିବା ସମୟରେ ଜଗନ୍ନାଥ ଦେଉଳ, ପତିତପାବନ ବାନା ଦେଖି ଖୁସି ହୋଇଯାଉଥିଲି । ଚକାଡ଼ୋଳାକୁ ମୁଣ୍ଡିଆ ମାରି ଧନ୍ୟ ମଣୁଥିଲି । କିଛି ସମୟରେ ବାଟମଙ୍ଗଳା, ଡାକ୍ତରଖାନା ଛକ ଉପଗତ ହେଲା । ଗାଡ଼ି ଆଗେଇଲା ସ୍ୱର୍ଗଦ୍ୱାର ଆଡ଼େ । ସେତେବେଳେ ମନେ ପଡ଼ିଯାଉଥିଲା -

‘ତୋ ଆଗରେ କିଛି ଲୋକ
ମୋ ଆଗରେ କିଛି ଲୋକ...
ତୁ ଗୁଣ୍ଡିଚାକୁ ଯିବୁ... ମୁଁ ସ୍ୱର୍ଗଦ୍ୱାର ଯିବି
ତୁ ଦିନେ ବାହୁଡ଼ିବୁ, ମୁଁ ଆଉ ବାହୁଡ଼ି ନ ଆସିବି...’

ଗାଡ଼ି ପହଞ୍ଚିଲା ସ୍ୱର୍ଗଦ୍ୱାର ଫାଟକରେ । ପୁରୀ କାର୍ଯ୍ୟାଳୟର ଶୁଭାକାଂକ୍ଷୀ ସହଯୋଗୀ ବନ୍ଧୁମାନେ ବାପାଙ୍କ ଶେଷଦର୍ଶନ ପାଇଁ ଯଥା ସମୟରେ ପହଞ୍ଚି ଯାଇଥିଲେ । ସବୁ ପ୍ରକାର ଆୟୋଜନ ଚାଲିଲା ଅନ୍ତ୍ୟେଷ୍ଟିକ୍ରିୟା ପାଇଁ । ବିଧି ମୁତାବକ ମୋତେ ଗାଧେଇବାକୁ ପଡ଼ିଲା ମହୋଦଧିରେ । ଖୁବ୍ ଡ଼ରିଯାଇଥିଲି ମନେ ମନେ । କାରଣ ପାଣିକୁ ମୋତେ ଦେଖିଲେ ଛାନିଆ ଲାଗେ । ଦିନବେଳା ସମୁଦ୍ରରେ ଗାଧୋଇଛି ସାଙ୍ଗସାଥୀ ମାନଙ୍କ ସହିତ । କେବଳ ଅଣ୍ଟା ପର୍ଯ୍ୟନ୍ତ । ମାତ୍ର ଏ ରାତିରେ ପୁଣି ମୁଣ୍ଡ ବୁଡ଼େଇ ଗାଧୋଇବା ମୋ ପାଇଁ ଦୁରୂହ ହେଲେ ହେଁ କର୍ତ୍ତବ୍ୟ ଆଗରେ ମୁଁ ବାଧ ହେଲି । ମନେ ମନେ ଶ୍ରୀଜଗନ୍ନାଥ ନାମକୁ ସ୍ମରୁଥିଲି । ଆରତ ନାଶନ ବାନାର ଉଡ଼ାଣକୁ ଅନୁଭବ କରୁଥିଲି ।

ପୁରୀରେ ଚାକିରି କରୁଥିବା ସମୟରେ ଅନେକ ସମୟରେ ଶ୍ରୀମନ୍ଦିର ଯାଇଛି । ବେଢ଼ା ବୁଲିଛି । କଳ୍ପବଟଠୁ ଆରମ୍ଭ କରି ଆନନ୍ଦ ବଜାର, ରୋଷଘର, ସ୍ନାନ ମଣ୍ଡପ ଦର୍ଶନ କରୁଥିଲି । ଭିଡ଼ ଭିତରେ ରତ୍ନ ସିଂହାସନ ପାଖକୁ ଯାଇଛି । ତୁଳସୀ ଧଣ୍ଡା ପାଇଛି । ତେଣୁ ଏଭଳି ଭକ୍ତିଭାବପୂର୍ଣ୍ଣ ପରିବେଶ ସହିତ ମିଶି ଯାଇଥିଲି ମୁଁ ଗୋଟାପଣେ ।

ବୁଡ଼ ମାରି ଗାଧୋଇଲା ବେଳେ ପାଣି ଭିତରୁ ଆଶ୍ୱାସନା ବାଣୀ ଶୁଭୁଥିଲା - 'କାହିଁକି ଡରୁଛୁ, ମହୋଦଧିର ଜଳ ପବିତ୍ର । ତୁ ତ ଅନେକ ଥର ଗାଧୋଇଛୁ । ଆଜି ମୁଣ୍ଡ ବୁଡ଼େଇ ଗାଧୋଇ ପକା । କିଛି ହେବନି । ତୋ ବାପା ସେଇଠି ତୋତେ ଅପେକ୍ଷା କରିଛନ୍ତି ।' ଏମିତି ଆଶ୍ୱାସନା କିଏ ଦେଲା କେଜାଣି, ମୁଁ ଗାଧୋଇଲି ବିଧି ମୁତାବକ । ବୋଧହୁଏ ବିପଦର ବନ୍ଧୁ, ଅସହାୟର ବନ୍ଧୁ ଜଗନ୍ନାଥ ମୋ ପାଖକୁ ଆସିଥିଲେ । ଗାଧୋଇ ସାରି ନମସ୍କାର ଜଣାଇଲି ଶ୍ରୀଜଗନ୍ନାଥଙ୍କୁ ।

ଯା'ପରେ ମୋ କର୍ତ୍ତବ୍ୟ ଆରମ୍ଭ ହୋଇଗଲା । ଅଶ୍ରୁ ସଜଳ ଆଖିରେ ମୁଖାଗ୍ନି ଦେଲି । ଚାରିପଟେ ଘୁରି ଆସିଲି । ଅଳ୍ପ ବାଟ ଦୂରରେ ଠିଆ ହୋଇ ରହିଲି । ପଛକୁ ଫେରି ଚାହିଁବାରେ ଆକଟ । କେବଳ ନୀରବ ଠାଣିରେ ବାପାଙ୍କ ଆତ୍ମାର ସଦ୍‌ଗତି ପାଇଁ ପ୍ରାର୍ଥନା କଲି । ବାପାଙ୍କ ମର ଶରୀର ପାଉଁଶ ହୋଇଗଲା କିଛି ସମୟ ପରେ । କାର୍ଯ୍ୟ ସଂପୂର୍ଣ୍ଣ ପରେ ଘରକୁ ବାହୁଡ଼ିବାର ଅବକାଶରେ ମୁକ୍ତିଦାତା ଜଗନ୍ନାଥଙ୍କୁ ବାପାଙ୍କ ନିମନ୍ତେ ଶ୍ରଦ୍ଧାଞ୍ଜଳିର କବିତାଟିଏ ହୃଦୟରେ ଲେଖିଦେଲି -

'ସରଗ ଦୁଆରୁ ବାହୁଡ଼ି ଯାଉଛି, ନୁଆଁଇ ଦେଲି ମୋ ମାଥ,<br>ତୁମରି ଆଶ୍ରାରେ ବାପାଙ୍କୁ ଛାଡ଼ିଲି, ରଖିବ ଜଗତନାଥ ।'

ଏଲ୍.ଆଇ.ଜି - ୧୫, ବ୍ରିଟ୍ କଲୋନୀ
ଭୁବନେଶ୍ୱର - ୭୫୧୦୧୨
ଦୂରଭାଷ : ୯୪୩୭୯୨୯୮୭୯



# ହେ ଲୀଳାମୟ, ଅପୂର୍ବ ତୁମର ଲୀଳା

ରମେଶ ମଙ୍ଗରାଜ

ବିଚିତ୍ର ତୁମର ଲୀଳା ମହାପ୍ରଭୁ
ବିଚିତ୍ର ତୁମର ଲୀଳା
ଦୀନ-ଜନବନ୍ଧୁ ଭକତ ବାନ୍ଧବ
ଧନ୍ୟ ପ୍ରଭୁ ଚକାଡ଼ୋଳା ।।

ଅନୁଭବର କଥା କେବଳ ଅନୁଭବୀକୁ ହିଁ ଜାଣେ । ତାହା ଭାଷାରେ ପ୍ରକାଶ କରି ହୁଏନା । ଅନୁଭବର ରୋମାଞ୍ଚ ପ୍ରତି ସ୍ପନ୍ଦନରେ ସୃଷ୍ଟି କରେ ଆଧ୍ୟାତ୍ମିକତାର ଅବ୍ୟକ୍ତ ଚେତନ । ତାହାହିଁ ଈଶ୍ୱରୀୟ କରୁଣା । ସେହିଭଳି ଦୁଇଟି ବ୍ୟକ୍ତିଗତ ଘଟଣାର ଅନୁଭୂତି ପ୍ରଭୁଙ୍କ କରୁଣାରୁ ଉଲ୍ଲେଖ କରୁଛି । ଗୋଟିଏ ଘଟଣା ପାଖକୁ ଟାଣି ନେବାର କରୁଣା, ଅନ୍ୟଟି ଦର୍ଶନରୁ ବଞ୍ଚିତ କରାଇବାର ଯନ୍ତ୍ରଣା ।

ପିଲାଦିନର କଥା । ମୁଁ ଏବଂ ମୋର ଜଣେ ସମବୟସ୍କ ସଂପର୍କୀୟ ଦାଦା ବିପିନ ପାଟଶାଣୀ ବେଶ୍ ଅନ୍ତରଙ୍ଗ ଥିଲୁ । ପିଲାବେଳେ ଆମେ ଗୋଟିଏ ଶିଶୁ ସାହିତ୍ୟ ସମିତି ଗଠନ କରିଥିଲୁ । ସେହି ପାଠାଗାର ଗୃହରେ ପଢ଼ାପଢ଼ି ସହ ରାତି କଟାଉଥିଲୁ । ଦିନେ ସଂଧ୍ୟାରେ କଥା ହେଲା ପୁରୀ ଯାଇ ଟିକେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ଆସିବା । କଥାଟି ପରିବାର ଲୋକେ ଯେପରି ଜାଣିବେ ନାହିଁ ଏବଂ ଆମ ଭିତରେ ଗୋପନୀୟ ରହିବ । ସେହି ଅନୁଯାୟୀ ପ୍ରସ୍ତୁତି ପର୍ବ ଆରମ୍ଭ ହେଲା । ଆମ ଗାଁ ବଡ଼ତୋଟା ଠାରୁ ଖୋର୍ଦ୍ଧା ରୋଡ଼ (ଜଟଣୀ) ଷ୍ଟେସନର ଦୂରତ୍ୱ ପ୍ରାୟ ୫ କି.ମି. ହେବ । ସେହିଦିନ ରାତିରେ ଷ୍ଟେସନରେ ପହଞ୍ଚି ତାଳଚେର-ପୁରୀ ପାସେଞ୍ଜର ଟ୍ରେନ୍ ଧରିଥିଲୁ । ଗାଡ଼ି ଜଟଣୀରୁ ରାତି ପ୍ରାୟ ୧୨ଟାରେ ଛାଡ଼ିଥିଲା । ପୁରୀରେ ପହଞ୍ଚିବା ବେଳକୁ ପାଖାପାଖି ରାତି ୨ଟା । ଭୋର ୪ଟା ପର୍ଯ୍ୟନ୍ତ ଷ୍ଟେସନରେ କଟାଇଥିଲୁ । ତା'ପରେ ନିତ୍ୟକର୍ମ ସାରି ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ନିମନ୍ତେ ବାହାରି ପଡ଼ିଲୁ । ଅତି ନିକଟରୁ ପ୍ରଭୁଙ୍କ ଦର୍ଶନଟି ଖୁବ୍ ସୁନ୍ଦର ଭାବେ ହେଲା । ତରତର ହୋଇ ଫେରି ଆସିଥିଲୁ ଷ୍ଟେସନକୁ । ସକାଳ ଗାଡ଼ିରେ ଫେରି ଘରେ ପହଞ୍ଚିଲା ବେଳକୁ ଦିନ ୮ଟା ବାଜି ଯାଇଥାଏ । ଆମେ ସବୁଦିନ ଭଳି ଯଥା ସମୟରେ ପଢ଼ାଘରୁ ବାହାରିଥିଲୁ । କାହାରି ସନ୍ଦେହର ଅବକାଶ ନଥିଲା । ଶ୍ରୀକ୍ଷେତ୍ର ଯାତ୍ରା କେବଳ ଆମ ଦୁଇଜଣଙ୍କ ସହ ମହାପ୍ରଭୁ ଜଗନ୍ନାଥଙ୍କ ଭିତରେ ହିଁ ଅଦ୍ୟାବଧି ସୀମିତ ରହିଯାଇଥିଲା । ପ୍ରକୃତରେ ପ୍ରଭୁ ଚାହିଁଲେ ହିଁ କରୁଣାର ଡ଼ୋରି ଲଗାଇ ତାଙ୍କ ପାଖକୁ ଟାଣି ନେଇଥା'ନ୍ତି । ଏହି ଅଙ୍ଗେଲିଭା ଘଟଣାଟି ନିଃଶ୍ୱାସରେ ଓ ବିଶ୍ୱାସରେ ଚିରଦିନ ରହିଥିବ ।

ଅନ୍ୟ ଏକ ଘଟଣା ଚାକିରି ସମୟର କଥା । ପୂଜା ଛୁଟିରେ ଇଚ୍ଛା ହେଲା, ପୁରୀ ଯାଇ ପ୍ରଭୁଙ୍କ ଦର୍ଶନ କରିବା ପାଇଁ । ପ୍ରସ୍ତୁତ ହୋଇ ଷ୍ଟେସନରେ ପହଞ୍ଚିଲି । ପୁରୀ ପାଇଁ ଟିକେଟଟିଏ କାଟି ଗାଡ଼ିକୁ ଅପେକ୍ଷା କରିଥାଏ । ସେଦିନ ଗାଡ଼ି ଆସିବାରେ ଦୁଇ ଘଣ୍ଟା ବିଳମ୍ବ ଥାଏ । ଦୀର୍ଘ ସମୟ ଅପେକ୍ଷା କରିବା ପରେ, ପୁରୀ ଯିବା କାର୍ଯ୍ୟକ୍ରମକୁ ବାତିଲ୍ କରି ଟିକେଟଟି ଫେରାଇ ଦେଇଥିଲି । ଠିକ୍ ପାଞ୍ଚ ମିନିଟ୍ ପରେ ଗାଡ଼ି ଆସି ଷ୍ଟେସନରେ ପହଞ୍ଚିଥିଲା । ମୁଁ କିନ୍ତୁ ପ୍ରଭୁଙ୍କ ଦର୍ଶନରୁ ବଞ୍ଚିତ ହୋଇଗଲି । ସେତେବେଳେ ନିଜକୁ ସାନ୍ତ୍ୱନା ଦେବାକୁ ମୋ ପାଖରେ ଭାଷା ନଥିଲା । ବୋଧହୁଏ ତାହାହିଁ ଥିଲା ପ୍ରଭୁଙ୍କର ଇଚ୍ଛା ।

ଆଜିର ଅବସରୋତ୍ତୀର୍ଣ୍ଣ ବୟସରେ ବର୍ଣ୍ଣିତ ଘଟଣା ଦୁଇଟି ମୋ ପାଇଁ ଅବିସ୍ମରଣୀୟ ହୋଇ ରହିଛି ।

ସେ ଲୀଳାମୟ - ଅପୂର୍ବ ତାଙ୍କର ଲୀଳା । ମହାପ୍ରଭୁଙ୍କ ଇଚ୍ଛା ବିନା ପତ୍ରଟିଏ ବି ହଲି ପାରେନା । କେତେବେଳେ ଡୋରି ଲଗାଇ ପାଖକୁ ଟାଣି ନେଇ ସୁନ୍ଦର ଦର୍ଶନଟିଏ ଦିଅନ୍ତି ତ କେବେ ମନ ଚିଡ଼ିବାକୁ ଦର୍ଶନରୁ ବଞ୍ଚିତ କରାନ୍ତି । ହେ ଭକ୍ତଜନ ବାନ୍ଧବ ଆପଣଙ୍କ ଇଚ୍ଛା ହିଁ ମୋ ପାଇଁ କୈବଲ୍ୟ ପସରା । ହେ ମହାବାହୁ ! ଆପଣଙ୍କ ଆଶିଷ ଝରିପଡୁ ସମଗ୍ର ଜଗତ ପାଇଁ ।

କବି ଓ କବିତା ଭବନ
ମହୁଲ, ଅଙ୍ଗାରପଡ଼ା
ଖୋର୍ଦ୍ଧା - ୭୫୨୦୫୪
ଭ୍ରାମ୍ୟଭାଷ : ୯୧୭୮୬୨୬୨୮୦



# ସେ ଦିନର କଥା

## ରମେଶ ଚନ୍ଦ୍ର ବହିରା

କୋଟି ବୈକୁଣ୍ଠର ମିଳନସ୍ଥଳୀ ଶ୍ରୀକ୍ଷେତ୍ର ଧାମ । ଯେଉଁ ଧାମର ପୀଠାଧୀଶ ଜଗତର ନାଥ ଶ୍ରୀଜଗନ୍ନାଥ । ଯିଏ କି ସଚରାଚର ଜୀବଜଗତଠୁଁ ଆରମ୍ଭ କରି ନିର୍ଜୀବ ବା ଜଡ଼ ସବୁଥିରେ ବିଦ୍ୟମାନ । ଯାହାଙ୍କର ସ୍ୱରୂପ ନିରାକାର । ଯାହାଙ୍କର ଲୀଳା ଅତୀବ ହୃଦୟସ୍ପର୍ଶୀ ତଥା ଭାବଗର୍ଭକ । ସେ ଯୁଗେ ଯୁଗେ ଭକ୍ତଙ୍କର ଦୁଃଖ ମୋଚନ କରି ଯାଚି ଦେଇଛନ୍ତି ଅସରନ୍ତି ସୁଖ । ତାଙ୍କର ଗୁଣ ବର୍ଣ୍ଣନା କରିବା ସାଧାରଣ ମଣିଷ ପାଖରେ ଦୁରୂହ ବ୍ୟାପାର । ସେ ଦୟାଳୁ, ସେ ସର୍ବ ଅନ୍ତର୍ଯ୍ୟାମୀ, ଜଗତର ସ୍ୱାମୀ, ବିଶ୍ୱପିତା । ସେ କଳ୍ପନାର ଊର୍ଦ୍ଧ୍ୱରେ, ସେ ତତ୍ତ୍ୱର ଶୀର୍ଷରେ, ସେ ଭାବନାର କେନ୍ଦ୍ରରେ ବିରାଜମାନ କରିଥା'ନ୍ତି । ତାଙ୍କରି ଆଜ୍ଞାରେ ପବନ ବହେ । ତାଙ୍କରି ଆଦେଶରେ ସକାଳ ଆସେ । ତାଙ୍କରି ଇଚ୍ଛାରୁ ଏଇ ଜଗତ ।

ସେ ଶବରୀ ଠାରୁ ଅଇଁଠା କୋଳି ଖାଇଛନ୍ତି । ସେ ସୁଦାମା ପରି ବନ୍ଧୁଠୁ ଖୁଦଭଜା ଖାଇଛନ୍ତି । ଦାସିଆ ବାଉରୀର ନଡ଼ିଆକୁ ହାତ ବଢ଼ାଇ ନେଇଛନ୍ତି । କେବେ ମାଗି ଖାଇଛନ୍ତି ତ କେବେ ଯାଚି ଦେଇଛନ୍ତି । ଭକ୍ତର ମଙ୍ଗଳ ପାଇଁ ସେ ଯାତନା ସହିଛନ୍ତି । ଭକ୍ତର ବିପଦବେଳେ ସ୍ମରଣମାତ୍ରକେ ଉଭା ହୋଇ ବିପଦ ଖଣ୍ଡନ କରିଛନ୍ତି । ସେଇ ଜଗନ୍ନାଥ ମୋ ଅନୁଭୂତିର ଠାକୁର, ମୋ ଅନୁଭବର ଚଳନ୍ତି ଦେବତା ।

ମୋର ବ୍ୟକ୍ତିଗତ ଜୀବନ ଠାରୁ ପାରିବାରିକ ଜୀବନ ଓ ସାମାଜିକ ଜୀବନ କ୍ଷେତ୍ରରେ ଯେତେବେଳେ କିଛି ବିଭ୍ରାଟ ଦେଖାଦେଇଛି, ତାଙ୍କରି ଦୟାରେ ନିଶ୍ଚିନ୍ତ ଭାବରେ ସମସ୍ୟାର ରୂପ ଲଘୁ ପାଲଟିଛି । ପ୍ରଶମିତ ହୋଇଛି ବିଭ୍ରାଟର ବିଭତ୍ସତା ।

ପିଲାବେଳଠୁ ଆଜିଯାଏ ମୁଁ ପ୍ରତ୍ୟକ୍ଷ ଭାବରେ ତାଙ୍କୁ ଅନୁଭବ କରିଛି । ଯଦି କେବେ ମୁଁ ଜାଣତରେ ବା ଅଜାଣତରେ କାହାରିକୁ ଠକିଛି ତା'ର ପ୍ରକାରାନ୍ତରେ ମୁଁ ଠକାମିର ଶିକାର ହୋଇଛି । ବେଳେ ବେଳେ ମୋ ଜୀବନରେ ସମସ୍ୟାଗୁଡ଼ିକ ଭୟଙ୍କର ରୂପ ଧରି ଆସିଛି ସତ ମାତ୍ର ତାଙ୍କ ଦୟାରୁ ହଟିଯାଇଛି ବିନା କ୍ଷତିରେ ।

ଅନୁଭବୀ ହିଁ ଜାଣେ ଅନୁଭବର କଥା । ବାସ୍ତବରେ ତାଙ୍କୁ ନେଇ ଅନୁଭୂତି ଅତୀବ ଚମତ୍କାର । ସାକ୍ଷାତ୍ ଉଭା ହୁଅନ୍ତି ପ୍ରଭୁ । ଭକ୍ତ ପାଇଁ ସେ ପରମ ଦୟାଳୁ ।

ତାଙ୍କୁ ଆଉ ତାଙ୍କର କୃପାବାରିକୁ ଜୀବନର ଘଟଣା ପ୍ରବାହରେ ଅନେକ ଥର ମୁଁ ଅନୁଭବ କରିଛି । ସେଇ ଅନୁଭୂତିରୁ ପଦଟିଏ ବର୍ଣ୍ଣନା କରିବାକୁ ଚେଷ୍ଟା କରୁଛି ।

ମୋ ବଡ଼ଭାଇ ବିଭାଘର ସମୟର ଘଟଣା । ରାତି ୧୦ଟାରେ ବିଭାଘର ହେବା କଥା, ବୋହୂ ଆସି ୮ଟା ସମୟରେ ପହଞ୍ଚିଗଲା । ଆମ ଘରେ ସମସ୍ତେ ତରବର ହୋଇ ଭାଇର ବାତୁଅ କର୍ମ ସାରି ବିଭାଘର ପାଇଁ ପ୍ରସ୍ତୁତ ହେଲେ । ମାତ୍ର ବ୍ରାହ୍ମଣ (ପୁରୋହିତ) ଙ୍କର ଦେଖା ନାହିଁ । ବାପା ବ୍ୟତିବ୍ୟସ୍ତ ହେଉଥା'ନ୍ତି । ସେତେବେଳେ ତ ଫୋନର ଏତେଟା ସୁବିଧା ନଥିଲା । ଜବାବ ଅନୁଯାୟୀ ବ୍ରାହ୍ମଣ ରାତି ୮ଟା ବେଳେ ପହଞ୍ଚିବା କଥା । ଚାହୁଁ ଚାହୁଁ ରାତି ୧ଟା ବାଜିଲା, ମାତ୍ର ବ୍ରାହ୍ମଣ ଆସିଲେ ନାହିଁ । ସମସ୍ତଙ୍କର ଅପେକ୍ଷା ଏକ ଭୀଷଣ କଳହର ରୂପ ନେଲା । ସମସ୍ତେ ବାପାଙ୍କୁ ପାଟି କଲେ, କାରଣ ବାପା ହିଁ ପୁରୋହିତଙ୍କୁ ଠିକ୍ କରିବା ସହ ଚିଠା କରିଛନ୍ତି ।

ବାପା ଶେଷରେ ନିରୁପାୟ ହେବା ଦେଖି ମୁଁ ଆଉ ଧୈର୍ଯ୍ୟ ଧରି ପାରିଲି ନାହିଁ । ରାଗରେ ଘରୁ ସାଇକେଲ ଧରି ଏକା ଏକା ଚାଲିଲି ପୁରୋହିତଙ୍କୁ ଆଣିବାକୁ । ମୁଁ ସେତେବେଳେ ୧୦ମ ଶ୍ରେଣୀରେ ପଢୁଥାଏ । ପନ୍ଦର ବର୍ଷ ବୟସ, ମୁଁ ରାଗରେ ଘରୁ ଦୁଇ କି.ମି. ବାଟ ଜୋର୍‌ରେ ସାଇକେଲ ଚଳାଇ ପଳେଇ ଗଲି ମାତ୍ର ଚାରିଆଡ଼ ଶୂନ୍‌ଶାନ ଆଉ ନିଛାଟିଆ ରାତିରେ ମୋର ସାହସ ଧୀରେ ଧୀରେ କମିବାକୁ ଲାଗିଲା । ମୁଁ ଅଟକିଗଲି ଗୋଟିଏ ଛକ ମୁଣ୍ଡରେ । ସେଇଠି ମୋର ଭୟ ଦ୍ୱିଗୁଣିତ ହୋଇଗଲା । ଆଗକୁ ଗଲେ ଭୟ ପଛକୁ ଗଲେ ବି ଭୟ । ମୁଁ ପୂରା ଛାନିଆଁ ହୋଇଗଲି । କ'ଣ କରିବି ମୋତେ ବୁଦ୍ଧିବାଟ ଦିଶିଲା ନାହିଁ । ସେଇ ଛକ ମୁଣ୍ଡରେ ଠିଆ ହେବାକୁ ବି ଭୟ ଲାଗୁଥାଏ । ଏଣେ ମୁଣ୍ଡରେ ଭାଇ ବିଭାଘର ସମୟ ଗଡ଼ିଯିବାର ଚିନ୍ତା । ଏମିତି କିଛି ସମୟ ଚିନ୍ତା କଲି ।

ପଛକୁ ଫେରିଲେ ମନେ ପଡ଼ିଯାଉଥାଏ ମଶାଣି କଥା ଆଉ ଆଗକୁ ଗଲେ ସେଇ ସାହାଡ଼ାବୁଦା କଥା । ଯେଉଁ ବୁଦାରେ ଅପୂଜା ଦେବୀ ରହୁଛନ୍ତି । ସେ ଅନେକ ଲୋକଙ୍କୁ ପଛରୁ ଡାକନ୍ତି ଯିଏ ଆସେ ସିଏ ଆଉ ଫେରେନା । ଯାହାକି ମତେ ମୋ ବୁଢ଼ୀ ମା' ଅନେକ ଥର କହିଥାଏ । ଶେଷରେ ସିଦ୍ଧାନ୍ତ ନେଲି ମୁଁ ନିଶ୍ଚିନ୍ତ ବିପଦରେ ଫସିଗଲିଣି । ଯାହାହେବ ମଲେ ମରିବି କିନ୍ତୁ ଆଗକୁ ଯିବି । ସେଇ ଜଗନ୍ନାଥଙ୍କୁ ବାରମ୍ବାର ଚିନ୍ତା କଲି । ତାଙ୍କର ଜଣାଣ ଗାନ କରି ଆଗକୁ ଆଗକୁ ଧୀରେ ଧୀରେ ସାଇକେଲ ଚଲାଇଲି । ଗାଆଁ ମୁଣ୍ଡର ଶେଷ ଗଳି ଭିତରୁ ହଠାତ୍ ଜଣେ ସାଇକେଲ ଧରି ରାସ୍ତା ଉପରକୁ ଉଠିଲେ । ମୁଁ ଦୂରରୁ ଦେଖିସାରିବା ପରେ ଖୁବ୍ ଜୋର୍‌ରେ ସାଇକେଲ ନେଇ ତାଙ୍କ ପାଖକୁ ଲାଗିଗଲି । ଆପଣ ନହରଣା ଯିବେ କି ? ଉତ୍ତରରେ ସେ ହଁ ବୋଲି କହିଲେ । ବାସ୍ ଏଇ ପଦିଏ କଥା । ତା'ପରେ ସେ ମଧ୍ୟମ ଗତିରେ ସାଇକେଲ ଚଲାଇ ଆଗେଇ

ଚାଲିଲେ । ମୁଁ ବି ତାଙ୍କ ପିଛା କଲି । ତଥାପି ମନରେ ଟିକେ ଟିକେ ସନ୍ଦେହ ହେଉଥାଏ ତାଙ୍କୁ ନେଇ । ତା'ପରେ ନହରଣା ଛକରେ ପହଞ୍ଚିଗଲି । ସେ ଅନ୍ୟ ରାସ୍ତାରେ ଚାଲିଗଲେ । ମୁଁ ସେଇ ପାଖ ଗାଁ ବାଲିପାଟଣା ଯାଇ ନନାଙ୍କୁ ସାକ୍ଷାତ୍ କଲି ଓ ନନାଙ୍କୁ ସାଙ୍ଗରେ ଧରି ଆସିଲି । ପ୍ରକୃତରେ ସେଦିନର ଅବସ୍ଥା, ସେଇ ମୁହୂର୍ତ୍ତ ଆଜି ବି ମନେପଡ଼ିଲେ ଦେହରେ ଶିହରଣ ଖେଳିଯାଏ । ମନରେ ପ୍ରଶ୍ନ ଉଠେ ସେଇ ସାଇକେଲ ଚଲାଳି, ମଣିଷ ଥିଲେ ନାଁ ଜଗନ୍ନାଥ ମହାପ୍ରଭୁ । ସେ ଯଦି ସେଦିନ ଦେଖା ଦେଇ ନଥା'ନ୍ତେ ବୋଧହୁଏ ମୁଁ ଆଜି ଏଇ ଦୁଇ ପଦ ଲେଖିବାର ସୌଭାଗ୍ୟ ପାଇନଥା'ନ୍ତି ।

କି ବିସ୍ମୟ ତାଙ୍କ ଲୀଳାରେ । ଦ୍ରୌପଦୀର ଲଜ୍ଜା ନିବାରଣ କଲାପରି, ଗଜରାଜକୁ ଉଦ୍ଧାର କଲା ଭଳି ସେ ଭକ୍ତ ନିକଟରେ ଉଭା ହୋଇଯା'ନ୍ତି । ଯେମିତି ସେଦିନ ସେ ସାଇକେଲ ଧରି ଆସିଲେ । ସେ ଦିନର ନିଛାଟିଆ ରାତିର ମୁହୂର୍ତ୍ତ ମୃତ୍ୟୁ ପର୍ଯ୍ୟନ୍ତ ମୋର ମନେ ରହିଥିବ ।

ଧନୁହର ବେଲାରୀ
ମରିଚପୁର, ଜଗତସିଂହପୁର - ୭୫୪୧୧୯
ଭ୍ରାମ୍ୟଭାଷ : ୯୪୩୮୫୪୨୧୫୮



# ଜଗନ୍ନାଥ ସବୁ ଜାଣନ୍ତି, ସବୁ ବୁଝନ୍ତି

## ଡ. ଶ୍ରୀହରି ପଣ୍ଡା

୧୯୮୬ ମସିହା ରଥଯାତ୍ରା ସମୟ । ତାରିଖ ଠିକ୍ ମନେ ନାହିଁ । ସେତେବେଳେ ମୋର ବୟସ ହୋଇଥାଏ ପନ୍ଦର କି ଷୋହଳ ବର୍ଷ । ଆଜିକୁ ଅନେକ ଦିନ ତଳର ସେ କଥା, ଝାପ୍‌ସା ମନେ ପଡୁଛି । ଯୁକ୍ତ ୨ ଶ୍ରେଣୀର ପ୍ରଥମ ବର୍ଷ ପାଠ ସରି ଯାଇଥାଏ, ଦ୍ୱିତୀୟ ବର୍ଷର ପାଠପଢ଼ା ଆରମ୍ଭ ହୋଇ ନଥାଏ । ପୁରୀରେ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ଅନୁଷ୍ଠିତ ହେବାକୁ ଯାଉଥାଏ । ଇଚ୍ଛା ହେଲା ପୁରୀକୁ ଯିବାପାଇଁ ମାତ୍ର ରଥଯାତ୍ରା ଦେଖିବାକୁ ନୁହେଁ ବରଂ ପଥଯାତ୍ରା କରିବା ପାଇଁ । ପ୍ରଥମବର୍ଷ ପାଠ ପଢୁଥିବା ବେଳେ ପାଠରେ ମନ ନଦେଇ ରହସ୍ୟ ଉପନ୍ୟାସ ପଢ଼ିବାରେ ବେଶୀ ମନ ଦେଇଥାଏ, ଏଣୁ ତା'ର ପ୍ରଭାବ ସେତେବେଳକୁ ମୋ ଉପରେ ପଡ଼ି ସାରିଥାଏ । ମୋ ମନକୁ ଅପରାଧିକ ପ୍ରବୃତ୍ତି କବଳିତ କରି ସାରିଥାଏ । ଘରେ ବଡ଼ ପରିବାର ଥିବାରୁ ଏଠାରେ ସେ ସବୁ ଚାଲିବ ନାହିଁ ବୋଲି ଜାଣି ଏବଂ ପୁରୀରେ ବହୁ ଜନସମାଗମ ହୁଏ ଶୁଣିଥିବାରୁ ମୋର ଉଦ୍ଦେଶ୍ୟ ଚରିତାର୍ଥ କରିବା ଲକ୍ଷ୍ୟ ନେଇ ପୁରୀ ଅଭିମୁଖେ ବାହାରି ପଡ଼ିଲି । ସେ ପର୍ଯ୍ୟନ୍ତ ମୁଁ ପୁରୀ ବୋଧହୁଏ ଥରେ ଯାଇଥିଲି ବାପା ମାଆଙ୍କ ସାଥୀରେ । ଘର ଛାଡ଼ିବା ବେଳେ ସାଙ୍ଗରେ ଆମ ଗାଁରୁ ଆଉ ଜଣେ ସାଙ୍ଗ (ଯିଏକି ଜଣେ ଛୋଟକାଟିଆ ଚୋର)କୁ ନେଇ ଯାଇଥାଏ । ଉଦ୍ଦେଶ୍ୟ ପକେଟମାର କରିବା ଏବଂ ବହୁ ସମ୍ପତ୍ତି ଠୁଳ କରି ବଡ଼ଲୋକ ହେବା । ସାଧାରଣତଃ ଏହି ବୟସରେ ବଡ଼ଲୋକ ହେବାର ମୋହ ପ୍ରବଳ ଥାଏ, ଫଳରେ ମନୁଷ୍ୟ ହିତାହିତ ଜ୍ଞାନ ଜାଣିପାରେ ନାହିଁ । ମୋର ଅବସ୍ଥା ବି ସେୟା, ଲୋଭ ନଦୀର ସ୍ରୋତରେ ମୁଁ ଆଗକୁ ଭାସି ଚାଲେ ।

ରଥଯାତ୍ରାର ଦୁଇଦିନ ପୂର୍ବରୁ ଘରୁ ବାହାରି ଯାଇ ନିକଟସ୍ଥ ବସ୍‌ଷ୍ଟପ୍‌ରୁ ବସ୍ ଧରିଲୁ । ପୁରୀକୁ ସିଧାସଳଖ ବସ୍ ନ ଥିବାରୁ ଭୁବନେଶ୍ୱର ଯାଇ ସେଠାରୁ ପୁରୀକୁ ଯିବାକୁ ହେବ । ବସ୍‌ରେ ଚଢ଼ି ଭୁବନେଶ୍ୱର ଅଭିମୁଖେ ଚାଲିଲୁ । ବସ ଭୁବନେଶ୍ୱରରେ ପହଞ୍ଚିଲା ବେଳକୁ ସଂଧ୍ୟା ହୋଇଗଲାଣି । ବସ୍‌ଷ୍ଟାଣ୍ଡରୁ ପୁରୀକୁ ଯିବା ପାଇଁ କିଛି ଅସୁବିଧା ହେଲାନାହିଁ । ପୁରୀରେ ପ୍ରାୟ ରାତି ଆଠଟା ସମୟରେ ପହଞ୍ଚି ସିଧା ସମୁଦ୍ର କୂଳକୁ ଚାଲିଲୁ । ପାଖରେ ବେଶୀ ନ ହେଲେବି କିଛି ଟଙ୍କା ଘରୁ ଛାଡ଼ି ଚାଲିଯିବା ବେଳେ ନେଇଥିଲି । ସମୁଦ୍ର କୂଳରେ ପହଞ୍ଚି ସମୁଦ୍ରର ବିଶାଳତାରେ ଅଭିଭୂତ ହେଲୁ । ସମୁଦ୍ର ଭିତରେ ପାଣି ଲହଡ଼ି ମାରୁଥିବା ବେଳେ ବାହାରେ ଜନ ସମୁଦ୍ର ଲହଡ଼ି ମାରୁଥା'ନ୍ତି । ତାହାରି ଭିତରେ ଆମେ ଦୁଇଜଣ ସମୁଦ୍ର ବାଲି ଉପରେ ବସିଗଲୁ । କିଛି ସମୟ

ବସିବା ପରେ ମୋ ସାଥିରେ ଯାଇଥିବା ପିଲାଟି ଟହଲ ମାରିବାକୁ ସେଠାରୁ ଚାଲିଯିବାରୁ ମୁଁ ଏକାକୀ ବସି ରହିଲି । ସେ ଚାଲିଯିବା ପରେ ସେହି ଜନ ସମୁଦ୍ର ଭିତରେ ମୋତେ କାହିଁକି ବଡ଼ ଏକାଏକା ଲାଗିଲା । ଘରକଥା ବହୁତ ମନେ ପଡ଼ିଲା, ଏ ପର୍ଯ୍ୟନ୍ତ ଘରକଥା ମନେ ନଥିଲା । ବର୍ତ୍ତମାନ ଘରକଥା ମନେ ପଡ଼ିବାରୁ ବ୍ୟସ୍ତ ଲାଗିଲା । ଶୁଣିଥିଲି ପୁରୀରେ କୁଆଡ଼େ ଘରକଥା ମନେ ପଡ଼େ ନାହିଁ । ମାତ୍ର ମୋ ପାଖରେ ତାହାର ବ୍ୟତିକ୍ରମ ଦେଖା ଦେଉଥିଲା । ଯେତେ ଭୁଲିବାକୁ ଚେଷ୍ଟା କରୁଥିଲି ସେତେ ବେଶୀ ହିଁ ଘର କଥା ମନେ ପଡୁଥିଲା ।

ବୁଲା ବିକାଳୀ ମାନଙ୍କର ଡାକରେ ଚେତା ଆସିଲା । ଏ ପର୍ଯ୍ୟନ୍ତ ମୁଁ ନିଜକୁ ଘର କଥାରେ ହଜାଇ ଦେଇଥିଲି, ସେତିକି ବେଳକୁ ସାଙ୍ଗରେ ଯାଇଥିବା ପିଲାଟି ମଧ୍ୟ ଫେରି ଆସିଥିଲା । ଦୁହେଁ ମିଶି କିଛି ଖାଇଦେଇ ପୁନର୍ବାର ସମୁଦ୍ର କୂଳକୁ ଫେରି ଆସିଲୁ । ଧୀରେ ଧୀରେ କୂଳକୁ ଜନଗହଳି ଭାଙ୍ଗିବାକୁ ଲାଗିଲା । କିଛି ସମୟ ପରେ କାଁ ଭାଁ ଲୋକଙ୍କୁ ଛାଡ଼ି ଦେଲେ ପ୍ରାୟ ଲୋକ ନଥିଲେ । ଆମେ ଏ ପର୍ଯ୍ୟନ୍ତ କେଉଁଠି ରହିବୁ ଠିକ୍ କରି ନଥିଲୁ । ରାତି ବଢ଼ିବା ସହିତ ଦୋକାନ ସବୁ ବନ୍ଦ ହୋଇଗଲା । ଚଳଚଞ୍ଚଳ ସମୁଦ୍ର ବେଳାରୁ ଯେମିତି ଜୀବନ ଚାଲିଗଲା । ସମୁଦ୍ର ତା'ର ଚିରାଚରିତ ଗର୍ଜନ କରି ଚାଲିଥିବା ବେଳେ ଜୀବନର ବାସ୍ତବତାକୁ ଜଣାଇ ସ୍ୱର୍ଗଦ୍ୱାରରୁ 'ହରିବୋଲ' ଓ 'ରାମନାମ ସତ୍ୟ ହେ'ର ଶବ୍ଦ ଭାସି ଆସୁଥାଏ । ତାହାରି ଭିତରେ ଆମେ ଲକ୍ଷ୍ୟ କଲୁ ଯେ କିଛି ଲୋକ ସେହି ସମୁଦ୍ର ବାଲିରେ ଶୋଇଲେଣି । ଆମକୁ ଲାଗିଲା, ସତେ ଯେପରି ସମୁଦ୍ର ତା'କୋଳରେ ବାଲିର ଶେଯପାରି ଶୋଇବାକୁ ନିମନ୍ତ୍ରଣ କରୁଥିଲା । ଦିନ ସାରାର ଯନ୍ତ୍ରଣା ପରେ ବାଲିର ବିଛଣା ଏବଂ ସମୁଦ୍ର କୂଳର ପବନ କିଛି କମ୍ ନଥିଲା । ଟିକିଏ ବିଶ୍ରାମ ନେଉ ନେଉ ଆଖିକୁ ନିଦ ଆସିଯିବାରୁ ଶୋଇ ପଡ଼ିଲୁ । ହଠାତ୍ ଆଷାଢ଼ ମାସିଆ ମେଘ ତା'ର ପ୍ରଭାବ ପକାଇ ଆମ ନିଦ୍ରାରେ ବ୍ୟାଘାତ ସୃଷ୍ଟିକରି ଆମକୁ ସେଠାରୁ ବିତାଡ଼ିତ କଲା । ସାମାନ୍ୟ ଓଦା ହେଲେ ମଧ୍ୟ ନିଜକୁ ରକ୍ଷା କରି ନେଇ ନିକଟସ୍ଥ ଦୋକାନ ବାରଣ୍ଡାକୁ ଚଢ଼ିଗଲୁ । ସୌଭାଗ୍ୟକୁ ଦୋକାନ ପିଣ୍ଡାରେ ଗୋଟିଏ ଭଙ୍ଗାଖଟ ଥିଲା, ସେଥିରେ ଦୁଇଜଣ ଶୋଇବାକୁ ସ୍ଥାନ ନଥିବାରୁ ମୁଁ ଏକା ଶୋଇବାର ପ୍ରୟାସ କଲି । ମଶା ମାନଙ୍କର ପ୍ରବଳ ଆକ୍ରମଣ ସତ୍ତ୍ୱେ ସେଠାରେ ରାତି କାଟିଲୁ ।

ରାତି ପାହିବାକୁ ଆହୁରି ଅନେକ ସମୟ ଅଛି, ମାତ୍ର ଦୋକାନୀ ଆସି ଆମକୁ ସେଠାରୁ ହଟାଇ ଦେଇ ତା' ଦୋକାନ ଖୋଲିବାର ନିତ୍ୟକର୍ମରେ ଲାଗିଗଲା । ଧୀରେ ଧୀରେ ସମୁଦ୍ରକୁ ଲୋକମାନଙ୍କର ଆଗମନ ଆରମ୍ଭ ହେଲା । ଏଣୁ ଆମେ ସମୁଦ୍ର

କୂଳକୁ ଯାଇ ଯେଉଁ କାମପାଇଁ (ଚୋରିକରି ବଡ଼ ଲୋକ ହେବାର) ଘର ଛାଡ଼ିଥିଲୁ ସେହି କାମ କରିବାକୁ ଚେଷ୍ଟାକଲୁ । ମୋର ଏ ବିଷୟରେ ସାଧାରଣ ଜ୍ଞାନ ନଥିବାରୁ ମୁଁ ନ ଯାଇ ସମୁଦ୍ର କୂଳରେ ବସି ରହିଲି । ଏକୁଟିଆ ବସିଲେ ନାନା ଦୁଶ୍ଚିନ୍ତା ମନକୁ ଆସେ । ମନଟା ବାରମ୍ବାର ମନେ ପକାଇ ଦେଇ ମୋତେ ଦୁର୍ବଳ କରି ଦେଉଥାଏ । ମାଆର ମୁହଁଟା ଆଖି ଆଗରେ ନାଚି ଯାଉଥାଏ, ହଠାତ୍ ମୋ ଅଜାଣତରେ ପାଟିରୁ ମାଆ ବୋଲି ଅସ୍ପଷ୍ଟ ଶବ୍ଦଟିଏ ବାହାରି ଆସି ସମୁଦ୍ରର ଗର୍ଜନ ଭିତରେ ହଜିଗଲା । ବୁଲାବିକାଳୀ ପିଲାଟିଏ ଆସି ହାତରେ କିଛି ଶଙ୍ଖ ଚାବିରିଙ୍ଗ୍ ଧରି ମୋର ଧ୍ୟାନଭଙ୍ଗ କଲା । ତା'ର ସେହି ସୁନ୍ଦର ଚାବିରିଙ୍ଗରୁ କିଛି ଏବଂ ଘରେ ପୂଜିତ ହେଉଥିବା । ଶାଳଗ୍ରାମଙ୍କ ବିଗ୍ରହରେ ଜଳଲାଗି ନିମନ୍ତେ ଛୋଟ ଶଙ୍ଖଟିଏ କିଣି ନେବାରୁ ମନକୁ ମନ ପଚାରିଲି ଆରେ ମୁଁ ତ ଘରଛାଡ଼ି ଚାଲି ଆସିଛି । ଘରକୁ କେମିତି ପଠେଇବି ? ଆଗରୁ ଘରେ ଅନେକ ଥର ରୁଷିଛି, ନଖାଇ ଘରୁ ଚାଲିଯାଇ ଲୁଚିଛି, ହେଲେ ସବୁଥର ମାଆ ମୋତେ ଠାବ କରି ଘରକୁ ନେଇ ଯାଇଛି । ଆଜି ମାଆ ମୋ ଠାରୁ ଅନେକ ଦୂରରେ । ଏଠିକୁ କ'ଣ ସେ ଆସି ପାରିବ, ମୋତେ ଆଜି ବି ନେଇ ତା ପଣତକାନିରେ ଦେଇ ପାରିବ ? ଏହା ଭିତରେ ଆର ପିଲାଟି ପ୍ରାୟ ଘଣ୍ଟାଏ ବୁଲାବୁଲି କରି ଫେରି ଆସି କହିଲା ଏଠି କିଛି ହେବନାହିଁ, ଚାଲ୍ ଘରକୁ ପଳାଇବା । ମୁଁ ତାକୁ ଆଶ୍ୱାସନା ଦେଇ ରଥଯାତ୍ରା ଦିନକୁ (ଆସନ୍ତାକାଲିକୁ) ଅପେକ୍ଷା କରିବାକୁ କହି କିଛି ସମୟ ସେଠାରେ ବସି ସମୁଦ୍ରରେ ଲୋକ ମାନଙ୍କର ସ୍ନାନଦୃଶ୍ୟ ଉପଭୋଗ କଲୁ । ସେମାନଙ୍କର ସ୍ନାନ ଦେଖୁ ଦେଖୁ ଆମେ ମଧ ତାଙ୍କ ସହିତ ସାମିଲ ହୋଇ ମହାନନ୍ଦରେ ସ୍ନାନ କଲୁ । କିଛି ସମୟ ପରେ ସେଠାରୁ ଚାଲି ଆସି ଓଦାଲୁଗା ବଦଳାଇ କିଛି ଖାଇଦେଇ ବାଲିରେ ବସି ଆସନ୍ତାକାଲି ନିମନ୍ତେ ଯୋଜନା ପ୍ରସ୍ତୁତ କଲୁ । ଆପାତତଃ ଗୋଟିଏ ନିଷ୍ପତ୍ତି କରିବା ପରେ ମନ୍ଦିର ଦର୍ଶନ କରିବାକୁ ଆସିଲୁ । ମନ୍ଦିରକୁ ଯିବା ପୂର୍ବରୁ ନିଜପାଇଁ ଗୋଟିଏ ଆଶ୍ରୟ ସ୍ଥଳ ଦେଖି ସେଠାରେ ଆମ ଲୁଗାପଟା ରଖି ଶୁଦ୍ଧପୂତ ହୋଇ ମନ୍ଦିରରେ ପ୍ରବେଶ କଲୁ ।

ମନ୍ଦିରରେ ପ୍ରବେଶ କଲା ବେଳକୁ ମୋତେ ଜ୍ୱର ଆସି ଯାଇଥାଏ । ମନ୍ଦିରରେ ଦିଅଁ ଦର୍ଶନ କରି ବେଢ଼ା ପରିକ୍ରମା କରିବା ବେଳେ ମୋ ଆଖି ଦୁଇଟା ଆମ ଗାଁ ପାଖିଆ ଲୋକଙ୍କୁ ଅତି ବିକଳ ହୋଇ ଖୋଜୁଥିଲା । ଘରକୁ ଶଙ୍ଖ ପଠାଇବା ପାଇଁ କିମ୍ବା ନିଜର ସ୍ଥିତି ଜଣାଇବା ପାଇଁ ଅବଶ୍ୟ ସେକଥା କେବଳ ସେହି ବିବ୍ରତ ମନ ଜାଣିଥିଲା । ଦେହରେ ଖଇ ଫୁଟିଯିବାର ତାତି । ପାଟି ଶୁଖି ଯାଉଥାଏ, ବହୁ କଷ୍ଟରେ ଛେପ ଢ଼ୋକି ମୋ ସାଥିରେ ଥିବା ପିଲାଟିକୁ କହିଲି, ମୁଁ ଏଇଠି ବସିଛି । ତୁ ଯାଆ,

ଆମ ଗାଁ ପାଖିଆ ଲୋକ କେହି ଆସିଛନ୍ତିକି ଦେଖିବୁ ? ସେ ଚାଲିଗଲା ପରେ ମୁଁ ଉତ୍ତର ଦ୍ୱାରକୁ ଯିବା ବଟ କଡ଼ରେ ଥିବା ପାତାଳେଶ୍ୱର ମନ୍ଦିର କାନ୍ଥକୁ ଭିଡ଼ି ରହିଥିବା ପିଣ୍ଡିରେ ଟିକିଏ ବସି ନୀଳଚକ୍ରରେ ଉଡୁଥିବା ପତିତପାବନ ବାନାକୁ ଚାହିଁ ରହି ନିଜର ଭୁଲ୍ ପାଇଁ ଅନୁତାପ କରୁଥିଲି । ଆଖି ମାଡ଼ି ପଡୁଥାଏ, ଜିଭ ଭିତରକୁ ଟାଣିହୋଇ ଯାଉଥାଏ, କଷ୍ଟ ସମ୍ଭାଳି ହେଉ ନଥାଏ, ଅତ୍ୟଧିକ ଯନ୍ତ୍ରଣା ପାଇଁ ପାଟି ଖନି ବାଜୁଥାଏ । ସେହି ପାଟିରେ ପୁଣି ଅସ୍ପଷ୍ଟ ଭାବରେ ବାହାରି ଆସିଲା ମାଆ ! ମନକୁ ସେହି ଶବ୍ଦ ଶାନ୍ତି ଆଣିଦେଲା । ସତେ ଯେପରି ମାଆ ହାତର କୋମଳ ସ୍ପର୍ଶରେ ମୋ ଦେହର ତାତି ଚାଲି ଯାଉଥାଏ । ସେହିଠାରେ ବସୁ ବସୁ ସେହି ସ୍ଥାନରେ ଢୁଳାଇ ପଡ଼ିଲି ।

କାହାର ଡାକରେ ଆଖିମେଲି ଚାହିଁବାକୁ ଚେଷ୍ଟାକଲି । ଅସମ୍ଭବ ଯନ୍ତ୍ରଣାରେ ଆଖି ଫିଟାଇ ପାରୁ ନଥାଏ, ବହୁ କଷ୍ଟରେ ଅଳ୍ପ ଆଖି ମେଲି ଚାହେଁ ତ ଦେଖିଲି ଗୋଟିଏ ଅଠର କି କୋଡ଼ିଏ ବର୍ଷର ଯୁବକ ମୋତେ ଉଠାଇବାକୁ ଚେଷ୍ଟା କରୁଛି । ଦେହରେ ଧୋତି, କାନ୍ଧରେ ଧଳା ଉତ୍ତରୀୟ ସହିତ ଉପବୀତ ଧାରଣ କରିଛନ୍ତି । ଏତିକି ଜାଣିଲି ସେ ଜଗନ୍ନାଥଙ୍କର ଜଣେ ସେବକ । ତା' ଡାକରେ ଉଠି ବସି କହିଲି, ଦେହଟା ଭଲ ନ ଲାଗିବାରୁ ଟିକିଏ ଗଡ଼ି ପଡ଼ିଲି, ଆଉ ଶୋଇବିନି । ସେହି ଯୁବକ ଜଣଙ୍କ ମୋ ଦେହରେ ହାତ ମାରି ଦେଇ ଚମକି ପଡ଼ି କହିଲେ, ଆରେ ତମକୁ ତ ଭୀଷଣ ଜ୍ୱର ଅଛି, ଆସ ମୋ ସାଥିରେ । ସେ ଡାକରେ ଯେପରି ଯାଦୁ ଥିଲା । ମୁଁ କିଛି ନ ପଚାରି ତାଙ୍କର ଡାକରେ ସମ୍ମୋହିତ ହେବା ପରି ତାଙ୍କ ସହିତ ଚାଲିଲି । ସେ ଆଗରେ ଯାଉଥା'ନ୍ତି ପଛରେ ଯନ୍ତ୍ରବତ୍ ମୁଁ । ଚାଲିବାର ଶକ୍ତି ନଥିବା ମୋ ଶରୀରରେ ସତେ ଯେପରି ଶକ୍ତିର ସ୍ୱତଃ ସଞ୍ଚାର ହୋଇ ସାରିଥିଲା । ଝାପ୍‌ସା ମନେ ପଡୁଛି ରୋଷଘର ନିକଟ ଦେଇ ଆମେ ବୋଧେ ଯାଇଥିଲୁ । ଆମେ ଯାଇ ପ୍ରାୟ ମନ୍ଦିର ବେଢ଼ା ଭିତରେ ଗୋଟେ ଛୋଟ କୋଠରୀରେ ପହଞ୍ଚିବା ପରେ ସେ ମୋତେ କିଛି ଫଳ ଖାଇବାକୁ ଯାଚିଥିଲେ । ଖାଇବାକୁ ଇଚ୍ଛା ନଥିଲା, ଏଣୁ ଖାଇଲିନି । ସେଠାରେ ଆମେ ମନ୍ଦିର-ସ୍ୱର୍ଗଦ୍ୱାର ମାର୍ଗରେ ଥିବା ସେ ଗୋଟିଏ ଔଷଧ ଦୋକାନରୁ ଔଷଧ କିଣିଥିଲୁ । ମାତ୍ର ଗୋଟିଏ ଔଷଧ କିଣି ଖାଇବା ପରେ ପୁଣି ମନ୍ଦିରକୁ ମୁଖ୍ୟ ଦ୍ୱାରଦେଇ ପ୍ରବେଶ କଲୁ । ମୁଁ ଯେଉଁ ଜାଗାରୁ ଯାଇଥିଲି ସେଠାକୁ ଫେରି ଆସିବା ପରେ ସେ ମହାଶୟ ମନ୍ଦିର ଭିତରେ ହଜିଗଲେ । ହଜିଯିବା ପୂର୍ବରୁ ପଚାରିଥିଲେ, ତମ ସାଙ୍ଗରେ ଆଉ କିଏ ଆସିଛି ? ମୋ ପାଟିରୁ ସ୍ୱତଃ ବାହାରି ଆସିଥିଲା ନନା । ସେଇଠୁ ମୋ ମୋତେ କହିଗଲେ ତମ ନନା ଆସି ତମକୁ ନେଇଯିବ, ବ୍ୟସ୍ତହେବ ନାହିଁ । ଦେହ ମୋର ସଂପୂର୍ଣ୍ଣ ସୁସ୍ଥ ହୋଇ ଯାଇଥିଲା । ସେଠାରେ କିଛି ସମୟ ବସିବା ପରେ ଗାଁ ପଲାଟି ଫେରି ଆସି ଜଣାଇଲା ଚିହ୍ନା ଲୋକ କାହାରିକୁ ପାଇଲିନି । ଦିନଟି ସେହିପରି ମନ୍ଦିରରେ କଟିଗଲା । ଔଷଧ ପ୍ରଭାବରୁ

ଦେହରେ ଜ୍ୱର ନଥିଲେ ବି ଦୁର୍ବଳ ଲାଗୁଥିବାରୁ କିଛି ଖାଇବାକୁ ଇଚ୍ଛା ହେଉ ନଥିଲା । ଦିନ ସାରା ମନ୍ଦିରରେ ରହିଥିଲେ ବି ସେହି ସାହାଯ୍ୟକାରୀ ଯୁବକଙ୍କୁ ଆଉ ଦେଖିବାକୁ ପାଇ ନଥିଲି । ସଂଧ୍ୟାରେ ଆମ ଲୁଗାପଟା ରଖିଥିବା ସ୍ଥାନକୁ ଫେରି କିଛି ଖାଇଦେଇ ରାତ୍ରି କାଟିଲୁ ।

ତା'ପରଦିନ ସକାଳ । ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା । ସକାଳେ ଆମେ ଆମ ଲୁଗାପଟା ନେଇ ସମୁଦ୍ରକୁ ଯାଇ ଲହଡ଼ି ଭାଙ୍ଗି ମନ୍ଦିର ନିକଟକୁ ଫେରିଲୁ । ସେତେବେଳକୁ ଯେଉଁ ବଡ଼ ଲୋକ ହେବାର ଉଦ୍ଦେଶ୍ୟ ନେଇ ଯାଇଥିଲୁ ତାହା ସମାଧି ନେଇ ସାରିଥିଲା, ବରଂ ତା' ବଦଳରେ ଆମ ଆଖି ଗାଁ ପାଖିଆ କେହି ଲୋକଙ୍କ ଖୋଜୁଥିଲା, ଯେମିତିକି ସେ ଆମକୁ ପୁରୀରେ ଭେଟି ଘରକୁ ନେଇ ଆସିଛି ବୋଲି କହି ଆମ ଇଜ୍ଜତ ବଞ୍ଚାଇ ଦେବ । ସକାଳ ସମୟ ଲୋକ ସମାଗମ ଟିକିଏ କମ୍ । ମନ୍ଦିର ସମ୍ମୁଖରେ ରଥ ତିନୋଟି ସଜ୍ଜିତ ହୋଇ ଛିଡ଼ା ହୋଇଛନ୍ତି । ମନ୍ଦିରକୁ ପଶିବାକୁ କାହିଁକି କେଜାଣି ଇଚ୍ଛା ନଥିଲା । ମନ୍ଦିର ସମ୍ମୁଖରେ ଥିବା ସେହି ରଥର ତଳ ଅଖଦଣ୍ଡାରେ ଯାଇ ବସି ଲୋକ ମାନଙ୍କୁ ଦେଖୁଥାଏ, ସତ କହିବାକୁ ଗଲେ ଆମ ଗାଁ ପାଖିଆ ଚିହ୍ନା ଲୋକଙ୍କୁ ଖୋଜୁଥାଏ । ହଠାତ୍ କେହି ଜଣେ ମୋତେ ପଛପଟରୁ ଖୁବ୍ ଜୋର୍‌ରେ ଜାବୁଡ଼ି ଧରିଲା, ତା' ସହିତ କିଛି ପାଣି ମୋ ଉପରେ ପଡ଼ିଲା । କଡ଼କୁ ଆଖି ଫେରାଇ ଚାହେଁ ତ ମୋ ଭିଣୋଇ ଠିଆ ହୋଇଛନ୍ତି, ଆଉ ତା' ପାଖକୁ ଯିଏ ମୋତେ ଜାବୁଡ଼ି ଧରିଥିଲେ ସେ ମୋ ନନା, ଆଖିରୁ ତାଙ୍କର ଧାରଧାର ଲୁହ ବୋହି ଯାଉଛି । ସେ ଲୁହ ମୋ ଚମଡ଼ା ଭେଦି ହୃଦୟ ଭିତରକୁ ବୋହି ଯାଉଥିଲା । ରଥଯାତ୍ରା ଦିନ ପୁରୀ ଜନସମୁଦ୍ର ଭିତରେ ଯେ ମୋତେ ପାଇଯିବେ - ବୋଧେ ଏ ଆଶା ତାଙ୍କ ମନରେ ନଥିଲା । ମୁଁ ନିଜକୁ ବିଶ୍ୱାସ କରିପାରୁ ନଥିଲି । ଭୟ ଓ ଆନନ୍ଦରେ ତାଙ୍କୁ ଚାହିଁ ରହିଥିଲି ନିର୍ବାକ ହୋଇ । କେହି କିଛି କହି ପାରି ନଥିଲୁ, ତିନି ଜଣ ସେହି ରଥଚକ ନିକଟରେ ନିର୍ବାକ ହୋଇ ଛିଡ଼ା ହୋଇ ରହିଥିଲୁ । ସମସ୍ତ ପାପ ଯେମିତି ଆଖିରୁ ଅଶ୍ରୁ ହୋଇ ବହି ଯାଉଥିଲା । ଆଉ ଆମେ ସେହି ସର୍ବଶକ୍ତିମାନଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ପ୍ରଣାମ କରୁଥିଲୁ । ଉପରକୁ ମୁଣ୍ଡ ଉଠାଇବାରୁ ଆଖିରେ ପଡ଼ିଲା ପତିତପାବନ ବାନା ଫରଫର ହୋଇ ଉଡୁଛି, କାନରେ ବାଜୁଥିଲା, ନୀଳଚକ୍ରେ ହୋ ! ଦେଖ ଉଡୁଛି ବାନା... । ସେହି ସାହାଯ୍ୟକାରୀ ଯୁବକର କଥା ସତ୍ୟ ହେଲା, କୃତଜ୍ଞତାରେ ମୋ ଆଖି ଛଳଛଳ ହୋଇ ଯାଉଥିଲା । ସ୍ୱତଃ ପାଟିରୁ ବାହାରି ଯାଇଥିଲା, ଜଗନ୍ନାଥ ସବୁ ଜାଣନ୍ତି ! ସବୁ ବୁଝନ୍ତି ।

ଗୌଡ଼ଗାଁ, କପ୍ତିପଦା, ମୟୂରଭଞ୍ଜ
ଭ୍ରାମ୍ୟଭାଷ : ୯୮୫୩୯୪୮୪୫୮



# ମୋ ଅନୁଭୂତିରେ ମୋ ପ୍ରଭୁ

## ବାଇଧର ମାଝୀ

ମଣିଷ ବେଳେ ବେଳେ ନିଜଠାରୁ କେଇ ପାଦ ଆଗକୁ ଚାଲିଯାଏ । ଭୁଲିଯାଏ ତା'ର ଅସ୍ତିତ୍ୱ । ମନର ଅହମିକାକୁ ସାବ୍ୟସ୍ତ କରିବାପାଇଁ ମନେ ମନେ ଭାବି ନିଏ ସବୁ ହାତ ମୁଠାରେ । ଟଙ୍କା ଥିଲେ ସବୁଇଚ୍ଛା ଗୁଡ଼ାକ ଆପେ ଆପେ ପୂରଣ ହୋଇଯାଏ । ସେତେବେଳେ ଭୁଲିଯାଇଥାଏ ସେ ସେହି ଅଦୃଶ୍ୟ ଶକ୍ତିକୁ । ଯାହାଙ୍କ ପାଇଁ ସବୁ ସମ୍ଭବ ଅସମ୍ଭବ ବି ହୋଇପାରେ, ସବୁ ଅସମ୍ଭବ ବି ସମ୍ଭବ ହୋଇପାରେ । ସେମିତି ଏକ ଘଟଣା ଘଟିଛି ମୋ ଜୀବନରେ । ୧୯୯୫ ମସିହା ଜାନୁଆରୀ ୧୩ ତାରିଖ, ସକାଳେ ଚିନ୍ତାକଲି, ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରିବାପାଇଁ ଯୋଗ ହେବା ଏକ ଅନ୍ଧବିଶ୍ୱାସ ଓ ମନଗଢ଼ା କାହାଣୀ । ପାଖରେ ଟଙ୍କା ଥିଲେ ସବୁ ସମ୍ଭବ ହୋଇପାରିବ । ମୁଁ ଆଉ ବିଳମ୍ବ ନ କରି ଚାଲିଲି ପୁରୀ । କଟକରୁ ବସିଲି ପୁରୀ ବସ୍‌ରେ । ଠିକ୍ ଅଠରନଳା ପାଖରେ ବସ୍ ଅଟକିଗଲା । ପାଞ୍ଚ ମିନିଟ୍ ପରେ ଓହ୍ଲେଇଲି ତଳକୁ, କାହିଁକି ଅଟକିଲା ବୋଲି । ବୁଝୁ ବୁଝୁ ଷ୍ଟ୍ରାଇକ୍ ଚାଲିଛି କେନାଲକୁ ନେଇ । କିଛି ସମୟ ପରେ ଷ୍ଟ୍ରାଇକ୍ ଉଠିଯିବ । ମୁଁ ମନକୁ ବୁଝେଇଲି, ଯୋଗ ଫୋଗ ନିହାତି ବାଜେ କଥା । ନିଜ ଇଚ୍ଛାରେ ସବୁ ସମ୍ଭବ । ଘଣ୍ଟାଏ ଗଲା, ଦୁଇ ଘଣ୍ଟା ଗଲା, ଷ୍ଟ୍ରାଇକ୍ ଉଠିଲା ନାହିଁ । ରାତି ପାହିଲେ ମକର ସଂକ୍ରାନ୍ତି । ମା' କରୁଣାମୟୀ ଆରାଧ୍ୟ ଦେବୀ ସାହାଡ଼ାଶୁଣୀଙ୍କର ପୂଜା, ଯେମିତି ହେଲେ ମୋତେ ଘରକୁ ଫେରିବାକୁ ହେବ । ମୋତେ ମା'ଙ୍କର କଳସ ବୁଡ଼େଇବାକୁ ପଡ଼ିବ । ଚାହୁଁ ଚାହୁଁ ତିନିଟା ବାଜିଗଲା, ତଥାପି ଷ୍ଟ୍ରାଇକ୍ ଉଠିଲା ନାହିଁ । ସେଇଠୁ ମୁଁ ସ୍ଥିର କଲି, ଆଉ ପୁରୀ ଯିବା ଠିକ୍ ହେବନି । ଏଇଠୁ ଫେରିଯିବା ଠିକ୍ ହେବ । ମୁଁ ଆଉ ବିଳମ୍ବ ନ କରି ପୁରୀ-କଟକ ବସ୍‌ରେ ପଳେଇ ଆସିଲି ଘରକୁ । ଆସିବା ଭିତରେ ବସ୍‌ରେ ବସି ଚିନ୍ତା କଲି, ଆଉ କେଇ ପାଦ ଯାଇଥିଲେ କରିଥା'ନ୍ତି ପ୍ରଭୁଙ୍କ ଦର୍ଶନ । ଯାହାକି ମୋ ଭାଗ୍ୟରେ ନୋହିଲା । ସେହିଦିନ ଠାରୁ ମୋ ମନର ଥିବା ଅହଙ୍କାରକୁ ମୁଁ ବୁଝିପାରିଛି ଏବଂ ଜୀବନର ପ୍ରତିଟି ମୁହୂର୍ତ୍ତରେ ସେହି ଦିନଟି ମନେ ପଡ଼ିଯାଉଛି ।

ସଂପାଦକ, 'ଆଜ୍ଞା ନମସ୍କାର'
ପାଟୁଳି, ଯାଜପୁର ରୋଡ୍
ଯାଜପୁର-୭୫୫୦୧୯
ଭ୍ରାମ୍ୟଭାଷ : ୯୮୬୧୨୦୪୫୫୦



# ଅନୁଭୂତିରେ ଶ୍ରୀଜଗନ୍ନାଥ

## ଅନ୍ତର୍ଯ୍ୟାମୀ ନନ୍ଦ

**ଲୀ**ଳାମୟ ଜଗନ୍ନାଥଙ୍କର ଲୀଳା ବୁଝିବା ବଡ଼ କଷ୍ଟ । ସେ ଯେ ଜଗତର ନାଥ ଏବଂ ଅନାଥର ନାଥ କେବଳ ଅନୁଭବୀ ହିଁ କହିପାରିବ । ଯେ' ଅନୁଭବ କରିନାହିଁ କାଷ୍ଠପିତୁଳା ବୋଲି ମନରେ ଭାବେ, ସେହି ଅଜ୍ଞାନର ଅଜ୍ଞାନତାକୁ ଉପଲବ୍ଧି କରି କବିତାଟିଏ ଲେଖି ବସିଲି -

ଜଗନ୍ନାଥ କିଏ ଜାଣି ନାହିଁ ଯିଏ
ଭାବେ ସେ କାଷ୍ଠପିତୁଳା
ପରଂବ୍ରହ୍ମ କିଏ ନ ଜାଣିଛି ଯିଏ
ଚିହ୍ନେ ନା ସେ ଚକାଡ଼ୋଳା ।। ୦ ।।
ଯେ' ବିଶ୍ୱବ୍ୟାପକ ସେ ବିଶ୍ୱନାୟକ
ସିଏ ହିଁ ଶ୍ରୀଜଗନ୍ନାଥ
ଜଳ ସ୍ଥଳ ନଭ ଅନଳ ମରୁତ
ସର୍ବତ୍ର ସେ ବିରାଜିତ
ଜୀବର ଦେହରେ ରହି ଗୁପତରେ
କରୁଥାଏ ଲୀଳାଖେଳା ।। ୧ ।।
ନିଜ ରୂପ ଯିଏ ନିଜେ ଗଢ଼ି ଦିଏ
ତାକୁ ବା ଚିହ୍ନିବ କିଏ,
ସବୁଠାରେ ଥାଏ କେଉଁଠି ନ ଥାଏ
କାହାକୁ ଚିହ୍ନା ନ ଦିଏ ।
ତା'ପାଦେ ଶରଣ କରିଲେ ବରଣ
ନ ଥାଏ ସଂସାର ଜ୍ୱାଳା ।। ୨ ।।

ତାଙ୍କର ମହିମା ଅପାର । ଜୀବନକାଳ ମଧ୍ୟରେ ତାଙ୍କ ସହିତ ଓତପ୍ରୋତ ଭାବେ ଜଡ଼ିତ । ଭଲରେ, ମନ୍ଦରେ ସବୁବେଳେ ସବୁ ଜାଗାରେ ତାଙ୍କର ସେହି ଚକା ଚକା ଆଖି ମୋ ମନ ଆକାଶରେ ନାଚି ବୁଲୁଥାଏ । ଯେତେ ଦୂରରେ ଥିଲେ ବି ମୋ' ପାଖରେ ଅଛନ୍ତି ବୋଲି ଅନୁଭବ କରେ । ସେ ହିଁ ମୋର ଜୀବନର ଏକା ସାହା ଭରସା ଭାବି ପଦଟିଏ ଲେଖିଛି -

କାଳିଆ ତୁହି ମୋର ଜୀବନ ସଙ୍ଗାଳି
ଯେତେ ଦୂରେ ରହିଲେ ବି ନ ଯାଇ ଭୁଲି
ମୋ ଦୁଃଖରେ ଦୁଃଖୀ ମୋ ସୁଖରେ ସୁଖୀ
ହେଉ ବୋଲି ତୋ ପାଦେ କରେ ମୁଁ ଅଳି ।

ମହାପ୍ରଭୁ ଜଗନ୍ନାଥଙ୍କୁ ଦୁଃଖରେ ଅନେକ ଗୁହାରି କରିଛି । ବହୁବାର ଅଭିମାନ କରି ରାଗିଯାଇ ଗାଳି ମଧ୍ୟ ଦେଇଛି ।

ଦୁଃଖରେ ମର୍ମାହତ ହେଲେ କାନ୍ଦି କାନ୍ଦି ଦୁଇ ଆଖିରୁ ଲୁହ ଗଡ଼େଇ ଗଡ଼େଇ ଛୁଆମାନଙ୍କ ଭଳି ଶୋଇ ପଡ଼ିଛି । ପୁଣି ଉଠିପଡ଼ି ପଛ କଥା ଭୁଲି ଯାଇ ଦରଦିଆ ବନ୍ଧୁ ଭାବି ଅନ୍ତର ବେଦନା ମନର ଭାଷାରେ ପ୍ରକାଶ କରିବାକୁ ପଛେଇ ନାହିଁ । ମନର ଭାବକୁ କବିତା ମାଧ୍ୟମରେ ଜଣାଇଛି, ସେ ହେଲା -

କହି ହେଉନି କି ସହିବି ହେଉନି
ପରାଣ କାନ୍ଦୁଛି ମୋର,
ଦୁଃଖର ପସରା ବୋହି ପାରୁନାହିଁ
ଆହେ କାଳିଆ ଠାକୁର ।। ୦ ।।
ଜନମ କାଳରୁ ବାଞ୍ଛା କଳ୍ପତରୁ
ଦେଇଛ ବୋଲି ଆଶରା,
ପୟରେ ତୁମରି କରେ ମୁଁ ଗୁହାରି
ବଢ଼ିଲେ ଦୁଃଖର ଭାରା ।
ନ ଦେଲେ ବି ସୁଖ ହରିଛ ମୋ ଦୁଃଖ
ହଜାଇ ନୟନୁ ନୀର ।। ୧ ।।
ଏବେ କାହିଁ ପାଇଁ ନୀଳାଦ୍ରି ଗୋସେଇଁ
ସାଜିଛ ମୋ ବେଳେ ମୂକ,
ତୁମ ବିନା କେହି ଏ ସଂସାରେ ନାହିଁ
ହରିବାକୁ ମୋର ଦୁଃଖ ।
ହୃଦୟ ବିହାରୀ ଢାଳି କୃପା ବାରି
ଦୁଃଖ ମୋ କର ଅନ୍ତର ।। ୨ ।।

ମହାପ୍ରଭୁ ଜଗନ୍ନାଥ ହିଁ ମୋର ଜୀବନ ସର୍ବସ୍ୱ । ଯେତେବେଳେ ମୋତେ ପରୀକ୍ଷା କରି ବସନ୍ତି, ପରୀକ୍ଷାର ସମ୍ମୁଖୀନ ହୋଇ ଭାଙ୍ଗି ପଡ଼ିଛି, ସେତିକିବେଳେ ପ୍ରଭୁ ତୁମର

ତ ବହୁତ ନାମ, କେଉଁ ନାମ ଧରି ଡାକିଲେ ପ୍ରଭୁ ମୋର ଗୁହାରି ଶୁଣିବ ଏବଂ ଲେଖି ବସେ -

କେଉଁ ନାମ ଧରି ଡାକିଲେ ପ୍ରଭୁ ହେ
ଶୁଣିବ ମୋର ଗୁହାରି,
ତୁମେ ସର୍ବନାମ ଅଣାକାର ବ୍ରହ୍ମ
ତୁମେ ହିଁ ବିଶ୍ୱ ବିହାରୀ ।। ୦ ।।
ତୁମେ ନିରାକାର ତୁମେ ହିଁ ସାକାର
ତୁମେ ବ୍ରହ୍ମା ବିଷ୍ଣୁ ଶିବ,
ତୁମେ ବଳଭଦ୍ର ତୁମେ ହିଁ ସୁଭଦ୍ରା
ତୁମେ ହିଁ ନୀଳମାଧବ ।
ଦୁଃଖର ଦୁଆରେ ଡାକିଲେ ଆତୁରେ
ଶୁଣୁଥାଅ କାନ ଡେ଼ରି ।। ୧ ।।
ମୁଁ ଅଧମ ପ୍ରାଣୀ ଡାକି ଜାଣି ନାହିଁ
ମାୟା ଜାଲେ ଛନ୍ଦି ହୋଇ,
ଏତିକି ଜାଣିଛି ଶରଣ ପଶିଲେ
ନେଇ ଯାଅ ଆପଣେଇ ।
ଜୀବନ ନଉକା ବୁଡ଼ିଗଲା ବେଳେ
ରଖିବ ମୋତେ ଉଦ୍ଧରି ।। ୨ ।।

ଜଗନ୍ନାଥଙ୍କ ସମ୍ବନ୍ଧରେ ଅନୁଭୂତି ଜୀବନ କାଳ ମଧ୍ୟରେ ମୋର ଅନେକ ଅନୁଭୂତି ଅଛି । ସବୁ ଲେଖି ବସିଲେ ଇତିହାସ ହେବ । ସେଥିମଧ୍ୟରୁ କେତୋଟି ଅନୁଭୂତି ଏଥିରେ ଉତ୍‌ଥାପନ କଲି ।

ମୋର ବଡ଼ ପୁଅ ୧୯୯୦ ମସିହାରେ କଲେଜରେ ପଢୁଥିଲା ବେଳେ ଏନ୍.ଏଚ୍.ଫାଇଭ୍-ରୁ ଟ୍ରକ୍ ଡ୍ରାଇଭରଙ୍କ ଦ୍ୱାରା ହରଣଚାଳ ହୋଇଥିଲା । ଟ୍ରକ୍ ଡ୍ରାଇଭରମାନେ ତାକୁ ନିଶା ଔଷଧ ଶୁଙ୍ଘାଇ ଘେନି ପଳାଇଗଲେ । କଲିକତାରୁ ପ୍ରାୟ ୧୦୦ କି.ମି. ବାଟ ଗଲାପରେ ନଡିଆ ଜିଲ୍ଲାର କୌଣସି ଏକ ଢାବାରେ ଖାଇବା ପାଇଁ ଓହ୍ଲାଇଲେ । ସେତିକିବେଳେ ପୁଅ ଚେତା ପାଇ ଟ୍ରକ୍‌ରୁ ଖସି ପଳାଇ ଯାଇ ଏକ ଡାକ ବଙ୍ଗଳାରେ ଆଶ୍ରୟ ନେଲା । ବଙ୍ଗଳା ଚୌକିଦାର ପୁଅଠାରୁ ସମସ୍ତ ଖବର ଜାଣି ତାକୁ ବଙ୍ଗଳା ଘରେ ଲୁଚେଇ ରଖିଲା । ଡ୍ରାଇଭର ମାନେ ଖୋଜା ଖୋଜି କରି ନ ପାଇବାରୁ ପଳାଇଗଲେ । ତା'ପରେ ୭ ଦିନ ପରେ ଚୌକିଦାର ଦୟାପରବଶ ହୋଇ

କଲିକତାକୁ ଆଣି ବସ୍‌ରେ ବସାଇ ଦେଲା । ପୁଅ ନିରାପଦରେ ଘରେ ଆସି ରାତି ୯ଟା ବେଳେ ପହଞ୍ଚିଲା । ସେ ନିଖୋଜ ହେବା ଦିନଠାରୁ ମହାପ୍ରଭୁ ଜଗନ୍ନାଥଙ୍କୁ କେତେ ଯେ ଗୁହାରି କରିଛି ସେ କଥା ସେ ହିଁ ଜାଣନ୍ତି ।

ପୁନଶ୍ଚ ୧୯୯୦ ମସିହାରେ ବିଭିନ୍ନ ଜାଗାରେ ପାଞ୍ଚଟି ପୁଅଝିଅ ପଢୁଥିଲେ । ମୁଁ ଥିଲି ବାରିପଦାରେ । ପିଲାମାନଙ୍କର ପାଠପଢ଼ା ଖର୍ଚ୍ଚ, ନିଜର ଓ ପରିବାରର ଖର୍ଚ୍ଚରୁ ଟିକିଏ ଆସକ୍ତି ପାଇବା ପାଇଁ ଘର ପାଖକୁ ବଦଳି ହୋଇ ଆସିବା ପାଇଁ ଜିଲ୍ଲାପାଳଙ୍କ ନିକଟରେ ଆବେଦନ କଲି । ଯେତେ ଜଣ ଦରଖାସ୍ତ କରିଥିଲେ ସମସ୍ତଙ୍କର ସୁବିଧା ଜାଗାକୁ ବଦଳି ହେଲା, ମାତ୍ର ମୋର ହେଲା ନାହିଁ । ସେହି ସମୟରେ ବାରିପଦାରେ ରଥ ଟଣା ହେଉଥାଏ । ମନ ଦୁଃଖରେ ବଡ଼ଦାଣ୍ଡକୁ ଗଲି । ସେତେବେଳକୁ ତାଳଧ୍ୱଜ ଓ ଦେବଦଳନ ରଥ କିଛି ବାଟ ଟାଣିନେଇ ରଖିଥା'ନ୍ତି । ନନ୍ଦିଘୋଷ ରଥ ଟଣା ହେବ ଦେଖି ରଥ ପାଖକୁ ଗଲି ଏବଂ ଛଳ ଛଳ ନୟନରେ ମନର କୋହକୁ ଚାପି ରଖି କହିଲି, କାଳିଆ ତୁ ବଡ଼ ପକ୍ଷପାତୀ । ସବୁବେଳେ ସୁଖୀର ସୁଖ ଦେଖୁ । ଦୁଃଖୀର ମନ କଥା ଶୁଣିବାରେ ତୋତେ ଭାରି କଷ୍ଟ ହୁଏ ! ତୁ ମୋର ଭଗବାନ । ମୁଁ ତୋର ଭକ୍ତ । ଭକ୍ତ ହିସାବରେ ସବୁବେଳେ ହାରି ଗୁହାରି କରିଛି । ଯେତେ ଡାକିଲେ ବି କାହିଁକି ମୂକ ପାଲଟିଛୁ । ଏହି ଭାବନାକୁ ନେଇ ଲେଖିଲି -

ସୁଖୀକୁ ଦେଉ ତୁ ସୁଖରେ କାଳିଆ
ଦୁଃଖୀକୁ ଦେଉ ତୁ ଦୁଃଖ,
ଦୁଃଖୀ ତୋ ଦୁଆରେ ଡାକିଲେ ଆତୁରେ
ହେଉ ତୁ ସଦା ବିମୁଖ ।

ମୁଁ ତ ତୋର ପରୀକ୍ଷାର ସମ୍ମୁଖୀନ ସବୁବେଳେ ହେଉଛି । ଆଜି ମୁଁ ତୋତେ ପରୀକ୍ଷା କରିବି ବୋଲି କହିଲି ଏବଂ କହିଲି ଯଦି ତୁ ମୋର ଠିକ୍ ଭଗବାନ ଏବଂ ମୁଁ ତୋର ଠିକ୍ ଭକ୍ତ ତେବେ ଆଜି ଏହି ସ୍ଥାନରୁ ଇଞ୍ଚେ ବି ଘୁଞ୍ଚିବୁ ନାହିଁ । ଏ କଥା ମନ ଦୁଃଖରେ ବିରକ୍ତ ହୋଇ କହିଦେଲି ସିନା, କିନ୍ତୁ କାଳିଆ ଚକା ଆଖିରେ ଚକ୍ଷୁଶ୍ରବା ହୋଇ ଶୁଣୁଛି ସେ କଥା ମୋତେ ଜଣା ନାହିଁ । ଏହା ପରେ ଘଣ୍ଟ ବାଜିଲା । ସଙ୍କେତ ଦେଲେ ରଥ ଟାଣିବାକୁ । ରଥ ଯେମିତି ଟାଣିଛନ୍ତି ସେମିତି ରଥ ଦଉଡ଼ି ଫଟ୍ ଫାଟ୍ ହୋଇ ଛିଡ଼ିଗଲା । ରଥ ଟାଣିବା ବନ୍ଦ ହୋଇଗଲା ଏବଂ ତା' ଆରଦିନ ରଥଟଣା ହେବ ଘୋଷଣା କରାଗଲା । ମହାପ୍ରଭୁଙ୍କୁ ଜୁହାରଟିଏ ମାରି ଲୋତକଭରା ନୟନରେ ବସାଘରକୁ ଫେରିଗଲି । ମନେ ମନେ ଭାବିଲି ଯଦି ପ୍ରଭୁ ମୋର ଗୁହାରି ଶୁଣିଥିବେ ତା'ହେଲେ କେତେ ବଡ଼ ଅପରାଧ କଲି । ପ୍ରଭୁଙ୍କ ପାଖରେ ଏଥିପାଇଁ କ୍ଷମା ମାଗିଲି ।

ତହିଁ ଆରଦିନ ରଥଟଣା ପରେ ମୋର ଜଣେ ସାଙ୍ଗଙ୍କ ସହିତ ଦେଖାହେଲା । ସେ କହିଲେ, 'ନନ୍ଦବାବୁ ଆପଣ ରାଇରଙ୍ଗପୁର ତହସିଲକୁ ଯିବେ କି ?' ମୁଁ ତାଙ୍କର କଥାର ଉତ୍ତର ଦେଇ କହିଲି, ବଦଳି କଥା ନେଇ ନା ଜିଲ୍ଲାପାଳ ନା ମହୀପାଳ କେହି ତ ଶୁଣିଲେ ନାହିଁ । କାଳିଆକୁ ଭରସା ନାହିଁ ବୋଲି କହିଲି । ସେ କହିଲେ, ଭରସା କରନ୍ତୁ ସେ ନିଶ୍ଚୟ ଶୁଣିବେ । ତାଙ୍କର କଥାର ସମ୍ମତି ଜଣାଇ ସେ ହାତରେ ଧରିଥିବା ଦରଖାସ୍ତରେ ଦସ୍ତଖତ କରିଦେଲି । ୧୫ ଦିନ ମଧରେ ବଦଳି ଆଦେଶ ପାଇ ରାଇରଙ୍ଗପୁରକୁ ଚାଲି ଆସିଲି । ଟିକିଏ ଆଶ୍ୱସ୍ତି ପାଇ ମନେ ମନେ ଭାବୁଥାଏ, କାଳିଆର ମହିମା ବୁଝିବା କଷ୍ଟକର ।

୨୦୦୫ ମସିହାରେ ଚାକିରିରୁ ଅବସର ଗ୍ରହଣ କଲାପରେ ଦିନେ ଗୋଟିଏ ଜାଗାରେ ଧକ୍କା ପାଇ ଶଯ୍ୟାଶାୟୀ ହୋଇ ପଡ଼ି ରହିଲି । ଯେତେ ଔଷଧ ବ୍ୟବହାର କଲେ ମଧ କିଛି ଫଳ ହେଲା ନାହିଁ । ଡାକ୍ତରଖାନାରେ ୭ ଦିନ ରହିବା ପରେ ଡାକ୍ତର କହିଲେ, 'ଆପଣଙ୍କର ବୋଧହୁଏ ମେରୁଦଣ୍ଡରେ କିଛି ଅସୁବିଧା ହୋଇଛି । କଟକ ଯାଇ ଏମ୍.ଆର୍.ଆଇ କରାନ୍ତୁ' ଏବଂ କହିଲେ ଯଦି ଡାକ୍ତର ମେରୁଦଣ୍ଡ ଅପରେସନ ପାଇଁ କହିବେ ଅପରେସନ ହେବେ ନାହିଁ, କାହିଁକି ନା ଏଥିରେ ଅନେଶତ ଭାଗ ଆରୋଗ୍ୟ ହୁଅନ୍ତି ନାହିଁ । ତାଙ୍କର କଥା ଅନୁଯାୟୀ କଟକ ଯାଇ ଏମ୍.ଆର୍.ଆଇ କରାଇ ଫେରି ଆସିଲି । ଡାକ୍ତର ମେରୁଦଣ୍ଡ ଅପରେସନ ପାଇଁ ଲେଖି ଦେଇଥିଲେ । ସେ କଥା ମୋତେ ଜଣାଇଲେ ନାହିଁ । ଜଣାଇଲେ ମୁଁ ହତାଶ ହୋଇପଡ଼ିବି । ସାନ ପୁଅ ଜଗନ୍ନାଥ ପ୍ରେମୀ । ସେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ମାଟିର ମୂର୍ତ୍ତି ତିଆରି କରି ନଅ ବର୍ଷ ଧରି ରଥ ଟାଣୁଥିଲା । ତା'ପରେ ୫ ବର୍ଷ ହେଲା ପୁରୀରୁ ଚତୁର୍ଦ୍ଧା ଦାରୁମୂର୍ତ୍ତି ଆମ ଘରେ ବିଜେ କରିଛନ୍ତି । ତାଙ୍କର ମନ୍ଦିର ମଧ ତିଆରି ଶେଷ ହେବା ଉପରେ । ଦିନେ ସକାଳୁ ଉଠି ଗାଧୁଆ ପାଧୁଆ ସାରି କାଳିଆ ଠାକୁରଙ୍କୁ ମୋର ଶରୀରର ଦୁଃଖ ଯନ୍ତ୍ରଣା ଉପଶମ ହେବା ପାଇଁ ଗୁହାରି କରିବାକୁ ଯାଇ ବସିଲା ବେଳେ ଆଖି ଛଳ ଛଳ ନୟନରେ ଏହି ଦୁଃଖଦ ଗୀତ ମନରୁ ବାହାରି ଆସିଥିଲା -

କାଳିଆରେ ତୋ' ଚରଣ ସେବା କରିବି ବୋଲି
ଜୀବନେ କେତେ ଆଶା କରିଥିଲି,
ସବୁ ଆଶା ମୋର ଭାଙ୍ଗି ଦେଇ ତୁହି
ମହୋଦଧି ଜଳରେ ଦେଲୁ ଠେଲି ।

ତା'ପରେ ଛିଡ଼ା ହୋଇ ଜୁହାରଟି ମାରିଲି କାହିଁକି ନା ଅଣ୍ଟା କିମ୍ବା ମେରୁଦଣ୍ଡ ନୁଆଁଇଲେ ଯନ୍ତ୍ରଣା ଅଧିକ ହୁଏ । ୧୯୮୦ ମସିହାରୁ ତାଙ୍କର କୃପାରୁ ନିଜର ତଥା

ପରିବାରର ସଦସ୍ୟ ଏବଂ ବନ୍ଧୁ ବାନ୍ଧବଙ୍କ ଚିକିତ୍ସା ପାଇଁ ହୋମିଓପ୍ୟାଥିକ ଚିକିତ୍ସା ସମ୍ବନ୍ଧରେ କିଛି ଜ୍ଞାନ ଆହରଣ କରିଥିଲି । ଠାକୁରଙ୍କୁ ଗୁହାରି ଜଣାଇବା ପରେ ଜଣେ ଜର୍ମାନ୍ ହୋମିଓପ୍ୟାଥିକ୍ ଡାକ୍ତରଙ୍କ ଲିଖିତ ବହି ଖୋଲି ଅଧ୍ୟୟନ କଲି ଏବଂ ସେହି କାଳିଆ ଠାକୁରଙ୍କର ନିର୍ଦ୍ଦେଶକ୍ରମେ ଉପଯୁକ୍ତ ଔଷଧ ବାଛି ଔଷଧ କିଣି ଆଣି ବ୍ୟବହାର କରିବାରେ ୧୫ ଦିନ ମଧ୍ୟରେ ତା'ର ଫଳ ପାଇଲି । ଏକ ମାସ ଯାଏ ଔଷଧ ସେବନ କଲା ପରେ ଆଜି ତାଙ୍କରି କରୁଣାରେ ବଞ୍ଚିରହିଛି । କରୁଣାମୟ ଜଗନ୍ନାଥଙ୍କ କରୁଣାରେ ଗୀତ ମାଧ୍ୟମରେ ତାଙ୍କୁ ମୋର ଦୁଃଖ ଗୁହାରି ଜଣାଇ ପାରୁଥିବାରୁ ତାଙ୍କ ପଦ୍ମପୟରେ ନିଜକୁ ସମର୍ପି ଦେଇଛି । ତାଙ୍କର ଭଜନ ଗାଇ ଗାଇ ସୁସ୍ଥ ଅବସ୍ଥାରେ ଯେତେଦିନ ପର୍ଯ୍ୟନ୍ତ ଏ ମାଟି ଘଟରେ ପ୍ରାଣ ଅଛି ସେତେଦିନ ପର୍ଯ୍ୟନ୍ତ ପର ନ ମଣିବା ପାଇଁ କାକୁତି ମିନତି କରୁଛି । ସେହି ଭାବନାକୁ ନେଇ ଲେଖିଛି -

ତୁମ ପରି ପ୍ରଭୁ ଆଉ କି ପାଇବି
ପିଣ୍ଡରୁ ଗଲେ ପରାଣ,
ଆଣିଥିଲ ମୋତେ ଏ ମର ଜଗତେ
ଦେଇ ଦୁର୍ଲଭ ଜନମ ।
ମାୟା ମୋହ ଜାଲେ ଛନ୍ଦି ହୋଇ ମୁହିଁ
ଲୋଡ଼ିଲି ସରଗ ସୁଖ,
ସୁଖ ପଛେ ଧାଇଁ ଭୋଗିଲି ପ୍ରଭୁ ହେ
ଜୀବନେ ଅନେକ ଦୁଃଖ ।
ଜୀବନ ଜଞ୍ଜାଳ ହେବାରୁ ଜଟିଳ
ପଶିଲି ତୁମ ଶରଣ ।। ୧ ।।
ଚାହୁଁଥିଲି ଯାହା ମିଛ ମୋହ ମାୟା
ପୀୟୂଷ ନୁହେଁ ସେ ବିଷ,
ଚାହିଁ ନାହିଁ ଯାହା ଦେଲ ମୋତେ ତାହା
ଲୋଡ଼ିବି ଆଉ ମୁଁ କିସ ।
ଶରଣ ପଞ୍ଜର ନ ମଣିବ ପର
ଥିବା ଯାଏ ପିଣ୍ଡେ ପ୍ରାଣ ।। ୨ ।।

ଜଗନ୍ନାଥଙ୍କ ସମ୍ବନ୍ଧେ ଏହି ହେଲା ମୋର ଅନୁଭୂତି ।

ଭାତଛତ୍ର, ମଝିଗାଁ (ବିଶୋଇ)
ମୟୂରଭଞ୍ଜ - ୭୫୭୦୩୩
ଭ୍ରାମ୍ୟଭାଷ : ୮୫୯୮୯୬୧୫୦୫

⊙ ⊙

# ଅଭୁଲା ସ୍ମୃତି

## ବାଇଧର ନାୟକ

ଜଗନ୍ନାଥ ଧାମକୁ ଅନେକ ଥର ଯାଇଛି, ହେଲେ କେବେ ଅସୁବିଧାର ସମ୍ମୁଖୀନ ହୋଇନାହିଁ । ମାତ୍ର ଥରଟିଏ ପ୍ରଭୁ ମୋ ସହିତ ଅଲୌକିକ ଲୀଳା ପ୍ରକଟ କରିଥିଲେ । ବିପଦରେ ପକାଇ ପୁଣି ବିପଦରୁ ଉଦ୍ଧାର କରିଥିଲେ । ସେହି ଅଭୁଲା ସ୍ମୃତି ମୋର ଏବେବି ହୃଦୟରେ ଲେଖାହୋଇ ରହିଛି ।

୨୦୧୧ ମସିହାର କଥା । 'ବିଲୁଆ ନନା' ସଂପାଦକ ଶରତ ବେହୁରା କହିଲେ ଯେ, ନୂଆ ବର୍ଷ ଦିନ କାଳିଆ ଠାକୁରଙ୍କୁ ଦର୍ଶନ କରିବା । ତେଣୁ ଆମେ ବିଦାୟୀ ୨୦୧୦ ମସିହା ରାତିରେ ପୁରୀ ଯିବା ପାଇଁ ପ୍ରସ୍ତୁତ ହେଲୁ । ତାଙ୍କ ସାଙ୍ଗ ଦୁଇଜଣ ମଧ ଯିବାପାଇଁ ବାହାରିଲେ । କଥା ହେଲା ଯେ, ରାତି ଚାରିଟାରେ ବାଇକ୍ ନେଇ ମହାପ୍ରଭୁଙ୍କ ପାଖକୁ ଯିବା । ତାହାହିଁ ହେଲା । ଆମେ ଦୁଇ ଖଣ୍ଡ ବାଇକ୍‌ରେ ଗଲୁ । ଅବଶ୍ୟ ଆମେ ଚାରିଟାରେ ଯାଇପାରିଲୁ ନାହିଁ । ପାଞ୍ଚଟାରେ ବାହାରିଲୁ । ସକାଳ ସାତଟାରେ ଶ୍ରୀକ୍ଷେତ୍ରରେ ପହଞ୍ଚିଗଲୁ । ସମୁଦ୍ରରେ ଲହଡ଼ି ଭାଙ୍ଗି କାଳିଆ ଦର୍ଶନରେ ମନ୍ଦିର ଭିତରକୁ ଭୋଗ ଧରି ପ୍ରବେଶ କଲୁ । ନୂଆ ବର୍ଷ ଯୋଗୁଁ ନାହିଁ ନଥିବା ଭିଡ଼ ହୋଇଥାଏ । ଏତେ ଗହଳି ଭିତରେ ମହାପ୍ରଭୁଙ୍କୁ ଦେଖିବା ସମ୍ଭବ ହେଉନଥାଏ ।

ମୁଁ ଜମାରୁ ଦିଅଁମାନଙ୍କୁ ଦେଖି ପାରୁନଥାଏ । କାରଣ ମୋ ଆଗରେ ଖୁବ୍ ଢ଼େଙ୍ଗା ଢ଼େଙ୍ଗା ଲୋକ ଠିଆ ହୋଇଥା'ନ୍ତି । ସେମାନେ ପରସ୍ପର ହିନ୍ଦୀରେ କଥା ହେଉଥା'ନ୍ତି । ମୁଁ ସେମାନଙ୍କ ପଛରେ ରହି ବିରକ୍ତି ଭାବ ପ୍ରକାଶ କରୁଥାଏ । କେମିତି କାଳିଆକୁ ଦେଖିବି ଭାବୁଥାଏ । ମୋ କପାଳରୁ ଝାଳ ବୋହି ଯାଉଥାଏ । ମନରେ ନିରାଶ ଭାବ ସୃଷ୍ଟି ହେଉଥାଏ । ଦୀର୍ଘ ପାଞ୍ଚ ବର୍ଷ ପରେ କାଳିଆ ସାଆନ୍ତକୁ ଦେଖିବାକୁ ଆସିଥିଲି, କ'ଣ କାଳିଆ ସାଆନ୍ତଙ୍କୁ ଦେଖିପାରିବି ନାହିଁ । ଏମିତି ଦୁଃଖ ମନରେ ଆଗକୁ ଆଗକୁ ଚାଲିଥାଏ । ପଛଆଡୁ ଭୀଷଣ-ଭାବରେ ଯାତ୍ରୀମାନେ ଠେଲୁଥା'ନ୍ତି । ମୁଁ ହଠାତ୍ ମୋ ଆଗରେ ଥିବା ଡେଙ୍ଗା ଲୋକ ଉପରେ ପଡ଼ିଗଲି । ଜଣେ ଡେଙ୍ଗା ଲୋକ ବୋଧେ ହିନ୍ଦୀରେ ମତେ ଗାଳି ଦେଉଥାଏ । ତା' ଗାଳି ଉପରେ ମୋର ନଜର ନଥାଏ । ନଜର ଥାଏ ଯେମିତି ହେଲେ ମହାବାହୁଙ୍କୁ ଦେଖିବି । ସେହି ସମୟରେ ମୋ ପଛ ପାଖରୁ ଜଣେ କେହି ମତେ ଟେକି ଧରି କହୁଥାଏ, ଦେଖ କାଳିଆକୁ । କ'ଣ ଦେଖି ପାରିଲୁ ? ଏମିତି କହି ମତେ ତିନି ଚାରି ମିନିଟ୍ ଟେକି ଧରିଥାଏ । ମୁଁ ଆନନ୍ଦରେ କାଳିଆ ଠାକୁରଙ୍କୁ ଦେଖି ଆନନ୍ଦରେ ଅଧୀର ହୋଇ ଯାଉଥାଏ । ତା'ପରେ ମତେ ସେ ଲୋକଟି ତଳେ ଠିଆ କରାଇଦେଲା । ମୁଁ ପଛକୁ ଚାହିଁ ଲୋକଟିକୁ ଧନ୍ୟବାଦ ଦେବାକୁ ମୁହଁ ବୁଲାଇଲା

ସମୟରେ ମୋ ମଥାରେ ଜନୈକ ପାଳିଆ ସେବକ ଜୋର୍‌ରେ ବେତ ପ୍ରହାର କଲେ । ମୋ ସାଙ୍ଗମାନେ କେତେବେଳୁ ମନ୍ଦିର ବେଢ଼ାରେ ମତେ ଅପେକ୍ଷା କରିଥା'ନ୍ତି ।

ତା'ପରେ ଆମେ ଅବଢ଼ା ଖାଇଲୁ । ଅନ୍ୟାନ୍ୟ ମଠ ମନ୍ଦିର ବୁଲିଲୁ । ଧୀରେ ଧୀରେ ଶ୍ରୀକ୍ଷେତ୍ରରେ ଭିଡ଼ ବଢୁଥାଏ । ସାଙ୍ଗମାନଙ୍କ ସହିତ ବୁଲାବୁଲି କରୁଥାଏ । କଥା ଥାଏ ଯେ ବାଇକ୍ ଥିବା ସ୍ଥାନରେ ଠିକ୍ ସଂଧ୍ୟା ପାଞ୍ଚଟା ବେଳକୁ ଆମେ ଏକତ୍ରିତ ହେବୁ । ଏମିତି ବୁଲାବୁଲି ସମୟରେ ହଠାତ୍ ଚାରିଟା ବେଳେ ମୁଁ ସେମାନଙ୍କୁ ହଜାଇ ବସିଲି । ସେତେବେଳେ ମୋ ପାଖରେ ମୋବାଇଲ ନଥାଏ । କ'ଣ କରିବି ? ବାଇକ୍ ପାଖରେ ପହଞ୍ଚିବା ବେଳକୁ ବାଇକ୍ ମଧ୍ୟ ନଥାଏ । ସେହିଠାରେ ଠିଆ ହୋଇ ରହିଲି । ଶରତ ବାବୁ ଓ ତାଙ୍କ ସାଙ୍ଗମାନଙ୍କର କାହାରି ଦେଖାନାହିଁ । ରାତି ଆସି ଆଠଟା ହେଲା । କେଉଁଠି ରହିବି । କେଉଁଠାକୁ ଯିବି ? ପୁଣି ଶୀତ ରାତି । ଭୋକ ବି ପ୍ରବଳ ଲାଗୁଥାଏ । ମୋ ପକେଟ କାଗଜ ଓ ଟଙ୍କା ସବୁ ରୁମାଲରେ ବାନ୍ଧି ଶରତ ବାବୁଙ୍କ ଆଟାଚିରେ ରଖିଥାଏ । ମୋ ପକେଟରେ ମାତ୍ର ସାତ ଟଙ୍କା ପଚିଶ ପଇସା ଥାଏ । ରେଳ ଷ୍ଟେସନ ଆଡ଼େ ଚାଲିଲି । ଟ୍ରେନ୍‌ରେ କଟକ ପଳାଇବା ଚିନ୍ତା ମନରେ ଥାଏ । ଭାବୁଥାଏ ପାଞ୍ଚ ଟଙ୍କାରେ କିଛି ଖାଇ ପାଣି ପେଟେ ପିଇଦେବି । ଯିବା ବାଟରେ ଦେଖିଲି ଅନେକ ଲୋକ ଖାଇ ବସିଛନ୍ତି । ମତେ ବି ଜଣେ କେହି କହିଲା - ଆସ ଖାଇକରି ଯାଅ । ମୁଁ ଡେରି ନ କରି ପତର ଖଣ୍ଡେ ଧରି ବସି ପଡ଼ିଲି । ପେଟପୂରା ସୁଖାଦ୍ୟ ଖାଇ ଘଡ଼ିଏ ବସିଲି । ପଚାରି ବୁଝିଲି ଏବେ ଲୋକାଲ ଟ୍ରେନ୍ ନାହିଁ । ଟ୍ରେନ୍‌ରେ ଯିବାକୁ ବି ପଇସା ନାହିଁ । ଖାଇ ସାରିବା ପରେ ମନରୁ ହତାଶା ଭାବ ଦୂର ହୋଇଗଲା ।

ଭାବିଲି ଜଗାକୁ ଦେଖିବା ପାଇଁ କିଛି ଅସୁବିଧା ସୃଷ୍ଟି ହେଲା । କିନ୍ତୁ କିଏ ତ ମତେ ଟେକି ଦେଖାଇଦେଲା । ସେମିତି ଭୋକ ଲାଗୁଥିଲା, ଖାଇବାକୁ ସୁମିଷ୍ଟ ଖାଦ୍ୟ ପେଟପୂରା ମିଳିଲା । ସେମିତି ମଧ୍ୟ ଯିବା ପାଇଁ ଜଗନ୍ନାଥ ସବୁ ବ୍ୟବସ୍ଥା କରିଦେବେ । ମୋ ବସିଥିବା ସ୍ଥାନରେ ଦଳେ ଯୁବକ କଟକ ଯିବେ କିପରି ମସୁଧା କରୁଥା'ନ୍ତି । ମୁଁ ସେମାନଙ୍କ ସହିତ ସାମିଲ ହୋଇଗଲି । ସେମାନେ ବିନା ଟିକେଟରେ ଯିବା କଥା କହିଲେ । ମୁଁ ସେମାନଙ୍କୁ ମୋ କଥା କହିଲି । ସେମାନେ କହିଲେ - 'ମଉସା ! ଆପଣ ଆମ ସାଙ୍ଗରେ ନିଶ୍ଚୟ ଯିବେ । ଚାଲନ୍ତୁ ଷ୍ଟେସନ ଯିବା । ଯେଉଁ ଗାଡ଼ି ଆସିବ ଉଠିବା । ତାହାହିଁ ହେଲା ।

ମୁଁ କଟକରେ ପହଞ୍ଚି ଶରତ ବାବୁଙ୍କ ଘରକୁ ଗଲି । ଶରତ ବାବୁ ଫେରି ନଥା'ନ୍ତି । ନିଶ୍ଚୟ ମତେ ଖୋଜି କେଉଁଠି ଅଟକିଗଲେ ବୋଧେ । ସେ ଯାହାହେଉ, ଏପ୍ରକାର ଏକ ଅଭୁଲା ସ୍ମୃତି ମୋ ଭିତରେ ସବୁବେଳେ ଆଲୋଡ଼ନ ସୃଷ୍ଟି କରେ । ଜଗତର ନାଥ ପ୍ରଭୁ ଜଗନ୍ନାଥ ଭକ୍ତକୁ ଖୋଜି ଖୋଜି ସହାୟ ହୁଅନ୍ତି । ମୋର ଅସହାୟତା ସମୟରେ ଯେମିତି ସହାୟ ହେଲେ । ସାରା ଜୀବନ ସାଉଁଟି ରଖିବା ପାଇଁ ସ୍ମୃତିପରି ସ୍ମୃତିଟିଏ ।

ସା.- ପରମାନନ୍ଦପୁର, ପୋ. - ବାହାବଳପୁର
ଭାୟା - ତିହିଡ଼ି, ଭଦ୍ରକ - ୭୫୬୧୩୦
ଦୂରଭାଷ : ୯୯୩୮୦୦୭୮୩୩



# ଭାବ ବିନୋଦିଆର ଭାବ

**କୃଷ୍ଣଚନ୍ଦ୍ର ଜେନା**

ପୁରୀ ଠାରୁ ୭ କି.ମି. ଦୂରରେ ପୁରୀରୁ ବ୍ରହ୍ମଗିରି ଓ ସାତପଡ଼ାକୁ ଯିବା ରାସ୍ତା କଡ଼ରେ ଏହି ଗାଁଟି ଅବସ୍ଥିତ । ଗାଁର ନାଁ ଗିରଳ, ୬୦ ଘରରେ ଶୋଭା ମଣ୍ଡିତ କରୁଛି ଏହି ଗାଁ । ଗାଁର ଆଦ୍ୟ ଭାଗରେ ସଭାଗୃହ ବା କୋଠଘର । ଗାଁର ମଧ୍ୟ ଭାଗରେ ଭାଗବତ ଟୁଙ୍ଗି ବା ବାସୁଦେବଙ୍କ ଘର । ବାସୁଦେବଙ୍କ ଘର ସାମ୍ନାରେ ମା' ମଙ୍ଗଳାଙ୍କ ମନ୍ଦିର । ଗାଁର ଶେଷ ଭାଗରେ ମା' ଭଗବତୀଙ୍କ ମନ୍ଦିର । ଗାଁର ଉତ୍ତର ପାର୍ଶ୍ୱରେ ପୁରୀରୁ ବ୍ରହ୍ମଗିରି ଓ ସାତପଡ଼ାକୁ ଯିବାକୁ ରାସ୍ତାକୁ ଲାଗି ବାବା ନୀଳକଣ୍ଠେଶ୍ୱରଙ୍କ ମନ୍ଦିର । ସେହି ମନ୍ଦିରରେ ବାବା ନୀଳକଣ୍ଠେଶ୍ୱରଙ୍କ ସହିତ ମା' ପାର୍ବତୀ, ଗଣେଶ, କାର୍ତ୍ତିକେୟ ଉପାସନା ପାଉଛନ୍ତି ।

ଏହି ଛୋଟିଆ ଗାଁଟିର ଶେଷ ଭାଗରେ ମୋ ଘର । ସେହି ଘରେ ମୋ ବୋଉ, ମୋର ଛୋଟ ଛୋଟ ଦୁଇ ଭାଇ ଭଉଣୀଙ୍କ ସହିତ ମୁଁ ରୁହେ । ବାପାଙ୍କର ଦେହାନ୍ତ ପରେ ମୋର ଛୋଟ ଛୋଟ ଭାଇ ଭଉଣୀଙ୍କର, ବୋଉଙ୍କର ଓ ଘରର ସବୁ ଦାୟିତ୍ୱ ମୋ ଉପରେ । ଗାଁରେ ହେଉଥିବା ପର୍ବପର୍ବାଣିରେ, ମେଳା ମହୋତ୍ସବରେ ଗ୍ରାମ ସଭାରେ ମୋତେ ଉପସ୍ଥିତ ରହିବାକୁ ପଡ଼େ । ଗାଁରେ ହେଉଥିବା ପର୍ବପର୍ବାଣିକୁ ମେଳା ମହୋତ୍ସବକୁ ମୋତେ ଅର୍ଥ ଦେବାକୁ ମଧ୍ୟ ପଡ଼େ ।

ଦିନେ ସଭାଗୃହ ବା କୋଠଘର ସଭାରେ ଗୋଟେ ଗୁରୁତ୍ୱପୂର୍ଣ୍ଣ ବିଷୟକୁ ନେଇ ଆଲୋଚନା ଚାଲିଥାଏ । ସେହି ସମୟରେ ଗ୍ରାମର ମୂଳି ବେହେରାଙ୍କ ପୁଅ ଉଦ୍ଧବ ବେହେରା କହିଲେ - ଆପଣମାନଙ୍କୁ ମୋର କିଛି କହିବାର ଅଛି । ସଭାରେ ଉପସ୍ଥିତ ଥିବା ବ୍ୟକ୍ତିମାନେ ଉଦ୍ଧବ ବେହେରାଙ୍କୁ କହିଲେ, ଆପଣଙ୍କର କ'ଣ କହିବାର ଅଛି କୁହନ୍ତୁ । ଉଦ୍ଧବ ବେହେରା ସଭାରେ ଉପସ୍ଥିତ ଥିବା ବ୍ୟକ୍ତିମାନଙ୍କୁ କହିଲେ, ଏବେ ମୋ ବାପାଙ୍କର ଦେହ ଖରାପ, କିଛିଦିନ ପାଇଁ ଭାଗବତ ଟୁଙ୍ଗିରେ ଭାଗବତ ପଢ଼ିବା ପାଇଁ ଅନ୍ୟ କାହାକୁ କୁହନ୍ତୁ । ସେଦିନ ମୁଁ ସଭାରେ ଉପସ୍ଥିତ ଥାଏ । ସଭାପତି, ଅନ୍ୟ କେତେ ଜଣଙ୍କୁ ଭାଗବତ ପଢ଼ିବା ପାଇଁ କହିଲେ, କିନ୍ତୁ ଜଣେ ବି ବ୍ୟକ୍ତି 'ହଁ' କହିଲେ ନାହିଁ । ଶେଷରେ ଭାଗବତ ପଢ଼ିବା ପାଇଁ ମୋତେ କହିଲେ । ସେହିଦିନ ଠାରୁ ପ୍ରତ୍ୟେକ ଦିନ ସଂଧ୍ୟାରେ ଭାଗବତ ପଢ଼ିବାକୁ ଭାଗବତ ଟୁଙ୍ଗିକୁ ମୁଁ ଯାଉଥାଏ । ଭାଗବତ ପଢ଼ିବାର ପ୍ରାୟ କୋଡ଼ିଏ ଦିନ ପରେ ଦିନେ ସଂଧ୍ୟାରେ ଭାଗବତ ଟୁଙ୍ଗିରେ ମୁଁ ଭାଗବତ ପାଠ କରୁଥାଏ । ମୂଳି ବେହେରା ଭାଗବତ ଟୁଙ୍ଗି ମଧ୍ୟକୁ ପ୍ରବେଶ କରି ମୋତେ କହିଲେ,

ପୁଅ ଏବେ ମୋ ଦେହ ଭଲ ହୋଇଗଲାଣି, କାଲିଠାରୁ ତୁମେ ଆଉ ଭାଗବତ ପଢ଼ିବାକୁ ଆସିବନି, କାଲିଠାରୁ ଭାଗବତ ମୁଁ ପଢ଼ିବି । ତା' ପରଦିନ ସଂଧ୍ୟାରେ ମୁଁ ଆଉ ଭାଗବତ ଟୁଙ୍ଗିକୁ ଗଲି ନାହିଁ । ପ୍ରାୟ ରାତ୍ର ୮ଟା ହେବ, ମୂଳି ବେହେରାଙ୍କ ପତ୍ନୀ ଆମ ଘରକୁ ଆସି ମୋତେ କହିଲେ, ପୁଅ ଦୟାକରି ଆଉ ୨-୩ ଦିନ ଭାଗବତ ପଢ଼, ତୁମ ମାମୁଁ ଏଇ ୨-୩ ଦିନ ଭାଗବତ ପଢ଼ିବାକୁ ଭାଗବତ ଟୁଙ୍ଗିକୁ ଆସିପାରିବେନି । ତାଙ୍କ କଥାଶୁଣି ମୋତେ ବହୁତ ରାଗ ରାଗିଲା, କାରଣ ସେବେ ଖାଲି ଭାଗବତ ପଢୁଥିଲି ପ୍ରକୃତରେ ଭାଗବତ କ'ଣ ମୁଁ ବୁଝିନଥିଲି, ପ୍ରଭୁ ଜଗନ୍ନାଥଙ୍କର ମହିମାକୁ ଅନୁଭବ କରିନଥିଲି ।

ରାଗିବା ପରେ ମଧ୍ୟ ବାଧ୍ୟ ହୋଇ ସେଦିନ ଭାଗବତ ଟୁଙ୍ଗିକୁ ଭାଗବତ ପଢ଼ିବାକୁ ଯାଇଥିଲି । ସେଦିନ ରାତ୍ରିରେ ମୁଁ ନିଦ୍ରା ଯାଇଥିବା ଅବସ୍ଥାରେ ସ୍ୱପ୍ନ ଦେଖିଲି, ମୁଁ ଭାଗବତ ଟୁଙ୍ଗିରେ ଭାଗବତ ପଢୁଚି, ମୂଳି ବେହେରା ଭାଗବତ ଟୁଙ୍ଗିର ଦୁଆର ମୁହଁରେ ଠିଆହୋଇ ମୋତେ କହୁଛନ୍ତି - ହେ ପୁଅ, ତୁ ମୋ ଉପରେ ବିରକ୍ତି କାହିଁ ହଉଚୁ କହିଲୁ । ତୁ ତ ଭଲଭାବେ ଜାଣିଛୁ ଏବେ ମୋ ଦେହ ଭଲ ନାହିଁ । ତଥାପି ତୁ ମୋତେ ରାଗୁଚୁ ମୋ ଉପରେ ବିରକ୍ତ ହଉଚୁ । ତୋ ଉପରେ ମୋର କାହିଁକି ଏତେ ସ୍ନେହ କହିଲୁ, ତୁ ଭାଗବତ ପଢ଼ିଲେ ମୋତେ ଶୁଣିବାକୁ ଭଲ ଲାଗୁଚି । ହଉ ହେଲା, ତୁ ଆଉ ରାଗନା ମୋ ଦେହ ଭଲ ହୋଇଯାଉ ତା'ପରେ ତୁ ଆଉ ନ ପଢ଼, କିନ୍ତୁ ମୋ ଦେହ ଭଲ ହେବାଯାଏଁ ତୁ ଟିକେ ଭାଗବତ ପଢ଼ । ମୂଳି ବେହେରାଙ୍କ କଥାଶୁଣି ମୁଁ ଆହୁରି ଜୋର୍‌ରେ ରାଗିକରି ତାଙ୍କୁ କହିଲି - ତମେ ତ କହୁଥିଲ ମୋ ଦେହ ଭଲ ହୋଇଗଲାଣି ପୁଣି କ'ଣ ହେଲା ? ମୁଁ ଆଉ ଭାଗବତ ପଢ଼ି ପାରିବିନି ତୁମେ କାଲିଠାରୁ ଭାଗବତ ପଢ଼ । ମୋ କଥାଶୁଣି ମୂଳି ବେହେରା କହିଲେ, ଆରେ ତୁ ଏତିକିରେ ଏମିତି ହଉଚୁ କ'ଣ, ମୁଁ ତ ଭାବିଚି ଆଗକୁ ପ୍ରତ୍ୟେକ ଦିନ ତୁ ହିଁ ଭାଗବତ ପଢ଼ିବୁ । ମୂଳି ବେହେରାଙ୍କ କଥାଶୁଣି ମୁଁ କହିଲି- ନାଁ, ମୁଁ ଆଉ ପଢ଼ିପାରିବିନି । ମୂଳି ବେହେରା କହିଲେ, ଦେଖିବା କେମିତି ତୁ ନ ପଢ଼ିବୁ ? ଦୁହିଁଙ୍କ ମଧ୍ୟରେ ଯୁକ୍ତିତର୍କ ବଢ଼ିବା ସମୟରେ ମୋ ନିଦ ଭାଙ୍ଗିଗଲା, ନିଦରୁ ଉଠି କିଛି ସମୟ ସ୍ୱପ୍ନ କଥା ଭାବିଲି । ସେଇ ସମୟରେ ମୋର ମନେ ପଡ଼ିଗଲା, ଏମିତି ସ୍ୱପ୍ନ ଦେଖିବାର କାରଣ କ'ଣ ହୋଇପାରେ ? ସେଇଦିନ ଠାରୁ ପ୍ରାୟ ମାସକ ପରେ ଦିନେ ଗ୍ରାମସଭା ଚାଲିଥାଏ । ଗ୍ରାମସଭାରେ ଗ୍ରାମର ବିଭିନ୍ନ ସମସ୍ୟାର ସମାଧାନ ଆଲୋଚନା ମାଧ୍ୟମରେ ଚାଲିଥାଏ । ସେହି ସମୟରେ ମୂଳି ବେହେରା ସଭାରେ ଉପସ୍ଥିତ ହୋଇ ସଭାପତି ଓ ସଭାରେ ବସିଥିବା ସଦସ୍ୟ ମାନଙ୍କୁ କହିଲେ - ଆଜ୍ଞା ମୁଁ ବୃଦ୍ଧ ହେଲି, ମୋ ଆଖିକୁ ଆଉ ଭଲ ଭାବେ ବହିର ଅକ୍ଷର

ଦେଖାଯାଉନାହିଁ । ଶୀତ ସମୟରେ ଅପରାହ୍ନରେ ଗାଧୋଇବାକୁ ମୋତେ ବହୁତ କଷ୍ଟ ଲାଗୁଚି । ଦୟାକରି, ଭାଗବତ ପଢ଼ିବାକୁ ଆପଣମାନେ ଅନ୍ୟ କାହାକୁ କୁହନ୍ତୁ । ଯେତିକି ଦିନ ପ୍ରଭୁଙ୍କର କଥା ପଠନ କରିବାକୁ ପ୍ରଭୁଙ୍କର ଅନୁଗ୍ରହ ଥିଲା, ସେ ସମୟ ସରିଯାଇଚି ଏବେ ମୁଁ ଆଉ ପାରୁନି ।

ପୂର୍ବପରି ସଭାପତି ଜଣ ଜଣ କରି ଅନେକ ବ୍ୟକ୍ତିଙ୍କୁ କହିଲେ । ସଭାପତିଙ୍କର କଥାରେ କିଏ ବି ଜଣେ ହଁ କହିଲେ ନାହିଁ । ଶେଷରେ ସମସ୍ତଙ୍କର ଆଖି ମୋରି ପାଖକୁ ଚାଲି ଆସିଲା । ମୁଁ ଯେତେ ମନାକଲି ମୁଁ ଏକା, ଘରର ଏତେ ଜଞ୍ଜାଳ ଭିତରେ ପୁଣି ଭାଗବତ ପଢ଼ିବା, ମୁଁ ପାରିବିନି । କିଏ ଜଣେ ବି ମୋ ଅନୁରୋଧକୁ ଗ୍ରହଣ କଲେ ନାହିଁ । ସବୁ ସେଇ ଚକାଡ଼ୋଳାର ଲୀଳା, ଗ୍ରାମ ଲୋକଙ୍କ ପାଖରୁ ଖସିଯିବା ପାଇଁ ମୋ ପାଖରେ କିଛିବି ଉପାୟ ନଥିଲା, ଠିକ୍ ସେଇ ସମୟରେ ମୋର ମନେ ପଡ଼ିଗଲା, ଭାବିଲି ସେଦିନ ରାତିରେ ସ୍ୱପ୍ନରେ ସେ ବୃଦ୍ଧ ଲୋକ ଜଣଙ୍କ ମୂଳି ବେହେରା ନ ଥିଲେ ମୂଳି ବେହେରା ରୂପରେ ସେ ଥିଲେ ଭାବ ବିନୋଦିଆ ଠାକୁର ପ୍ରଭୁ ଶ୍ରୀଜଗନ୍ନାଥ । ମୋତେ ସେଦିନ ସ୍ୱପ୍ନରେ ସେ ବୃଦ୍ଧ ଯାହାସବୁ କହିଥିଲେ, ଆଜି ସେ ସ୍ୱପ୍ନବାଣୀ ସତ୍ୟର ରୂପ ନେଉଛି । କିଛି ସମୟ ବସି ଭାବିବା ପରେ ସମସ୍ତଙ୍କୁ କଥା ଦେଲି, ହଁ ମୁଁ ଆଗକୁ ଆସୁଥିବା ଭାଗବତ ଜନ୍ମ ଠାରୁ ଭାଗବତ ଟୁଙ୍ଗିରେ ଭାଗବତ ପଢ଼ିବି । କିଛିଦିନ ପରେ ଭାଦ୍ରବ ପୂର୍ଣ୍ଣିମା, ଭାଗବତ ଜନ୍ମ ପଡ଼ିଲା । ସେଇ ଦିନଠାରୁ ପ୍ରାୟ ୪ ବର୍ଷ ହେବ ଆମ ଗାଁ ଭାଗବତ ଟୁଙ୍ଗିରେ ମୁଁ ଭାଗବତ ପଢ଼ି ଆସୁଚି । ଏବେବି ସେଦିନ ରାତ୍ରିର ସେ ସ୍ୱପ୍ନ କଥା ମନେ ପଡ଼ିଗଲେ ମୋ କାୟା ଓ ମନରେ ଅପୂର୍ବ ଶିହରଣ ଖେଳିଯାଉଚି ।

ଗିରଳ, ଗୋରୁଆଳ, ପୁରୀ
ଭ୍ରାମ୍ୟଭାଷ : ୮୩୩୯୮୩୫୬୮୯



# ମୁଗ୍‌ଧ ଅନୁଭବ

## ଡ. ବାସୁଦେବ ଦାସ

**୧**୯୭୫ ମସିହା ଜୁନ୍ ୨୫ ତାରିଖରେ ଆକୁମାରୀ ହିମାଚଳ ଜରୁରୀ ପରିସ୍ଥିତି ଜାରି ହୋଇଗଲା । ଗ୍ରୀଷ୍ମଛୁଟି ପୁରୀ ନୀଳାଚଳ ଧାମରେ ବିତାଇବାର ମାନସିକତା ନେଇ ସସ୍ତ୍ରୀକ ଶ୍ରୀକ୍ଷେତ୍ରରେ ରହିଲି । ସେହି ସମୟରେ କେତେକ ଅଞ୍ଚଳରେ ଯାଦବ-ଗୋପାଳମାନଙ୍କୁ କେତେକ ସାମନ୍ତବାଦୀ ଲୋକ କାନ୍ଧିଆ ପାଇଁ ବାଧ କରିବା ଦ୍ୱାରା ଅସ୍ୱାଭାବିକ ପରିସ୍ଥିତି ଉପୁଜିଥାଏ । ସେହି ଅଞ୍ଚଳ ଗୁଡ଼ିକୁ ଯାଇ ଏପରି କୁସଂସ୍କାର ବର୍ଜନ କରିବା ମୋର ଥିଲା କାର୍ଯ୍ୟସୂଚୀ ।

ଦୁଇ-ତିନିଟି ଗ୍ରାମରେ ଅତ୍ୟାଚାର ସଙ୍ଗୀନ ହେବାରୁ ମୁଁ କେନ୍ଦ୍ର ଘରୋଇ ମନ୍ତ୍ରୀ ରଘୁନାଥ ରେଡ୍‌ଡ଼ୀ ଓ ମୁଖ୍ୟମନ୍ତ୍ରୀ ଶ୍ରୀମତୀ ନନ୍ଦିନୀ ଶତପଥୀଙ୍କୁ ଟେଲିଗ୍ରାମ କରିବାରୁ ସଶସ୍ତ୍ର ପୋଲିସ ପଠାଇ ମୁଖ୍ୟମନ୍ତ୍ରୀ ଶାନ୍ତି ପ୍ରତିଷ୍ଠା ପାଇଁ ପଦକ୍ଷେପ ଗ୍ରହଣ କରିଥିଲେ । ମୋତେ ସ୍ଥାନୀୟ ଭଦ୍ରଲୋକ ବ୍ରଜ କିଶୋର ଦାସ ସହାୟତା କରୁଥିଲେ । ତତ୍କାଳୀନ ଘରୋଇ ବିଭାଗର ଉପ-ସଚିବ ରତ୍ନାକର ମାଣିଆ ଆନ୍ଦୋଳନର ପଶ୍ଚାଦ୍‌ଭାଗରେ ଥିଲେ ।

ଏହି ପରିପ୍ରେକ୍ଷୀରେ ସର୍ବଭାରତୀୟ ଯାଦବ ମହାସଭା ଆହୂତ ହୋଇଥିଲା । କେନ୍ଦ୍ରୀୟ ନେତୃବୃନ୍ଦ ରାଜ୍ୟ ସରକାରଙ୍କ ଉପରେ ଚାପ ପକାଇବେ ଏବଂ ଜନ ସଚେତନତା ସୃଷ୍ଟି କରାଯିବ । ଏହି ସଭାର ଅଭ୍ୟର୍ଥନା ସମିତିର ମୁଁ ଥିଲି ଯୁଗ୍ମ ସଂପାଦକ ଏବଂ ସଂପାଦକ ଭାଗବତ ପ୍ରସାଦ କବି କଲିକତା ସମିତିର ଟାଣୁଆ ନେତା । ରାତି ପାହିଲେ ସଭାର ଆୟୋଜନ-କନ୍ହେଇଲାଲ ବଗଲା ଧର୍ମଶାଳାରେ । ଭାଗବତ ବେହେରାଙ୍କ ନାମରେ ମୁଁ ସରକାରୀ ଅଫିସ ଓ ଥାନା ମାନଙ୍କରେ ପରିଚୟ ଦେଇ କାର୍ଯ୍ୟ କରୁଥିଲି । ଇମରଜେନ୍ସି ଘୋଷିତ ହେବାର ଘଣ୍ଟାକ ପରେ ଆମକୁ ଥାନା ତରଫରୁ ଜଣାଇ ଦିଆଗଲା, ତମର ମହାସଭା ବେଆଇନ ଘୋଷିତ ଏବଂ ଏକତ୍ରିତ ହୋଇପାରିବ ନାହିଁ । ସେତେବେଳକୁ ବହୁ ବିଶିଷ୍ଟ ବ୍ୟକ୍ତି ଟ୍ରେନ୍ ଯୋଗେ ଆସି ଯାଇଥିଲେ ।

ମୁଁ ଯେହେତୁ ଭାଗବତ ବେହେରାଙ୍କ ଲୋକ, ପୁରୀ ଅଞ୍ଚଳରେ ପାଦରେ ବୁଲି ଜନ ସଚେତନତା ସୃଷ୍ଟି କରୁଥିଲି, ମୋତେ ଥାନା ଏସ୍.ଆଇ ଚିତ୍ତରଞ୍ଜନ ଦାସ ଧରି ନେଇ ଥାନାରେ ପୂରାଇ ଦେଲେ । ନାମ ଠିକ୍ କହିଥିଲି ସିନା ଠିକଣା ବଦଳ ହୋଇଥିଲା । ଇତ୍ୟବସରରେ ମୋର ଅବସ୍ଥା ଯାହା ହେଉନା କାହିଁକି ? ମୋ ପତ୍ନୀଙ୍କୁ ଗାଣ୍ଡୁଆ ଚଉରା ସନ୍ନିକଟ ଜଣେ ଲୋକଙ୍କ ଘରେ ବସାଇ ଆସିଥିଲି । ଫେରିଲେ ବଡ଼ସିଂହାର ଦେଖି ଫେରିବୁ ଡୁଡୁଆଲା ଧର୍ମଶାଳା ।

ଏ ଖବର କିପରି ଯିବ ଏବଂ ମୁଁ ନିର୍ଦ୍ଦୋଷ, ଅଣ ରାଜନୀତିକ ଲୋକ, ଏହା ପ୍ରମାଣିତ ହେବ କିପରି ? ପୁଲିସଙ୍କର ଅଖଣ୍ଡ କ୍ଷମତା । ଭାଗବତ ବେହେରା କାହିଁକି ଓଡ଼ିଶାର ତୁଙ୍ଗ ନେତାମାନେ ଗିରଫ ହୋଇ ଜେଲ୍ ଗଲେ ବୋଲି ଆକାଶବାଣୀ ବେତାରରୁ ଖବର ମିଳିଲା । କେବଳ ଏ ବିପଦରୁ ପ୍ରଭୁ ଜଗନ୍ନାଥ ହିଁ ତ୍ରାଣ କରିପାରିବେ ! ତେଣେ ମୋର ପତ୍ନୀ ସେଠା ପାଖ ଲୋକଙ୍କୁ ଖବର ଦେଇ ମନ୍ଦିର ଅଞ୍ଚଳରେ ଖୋଜିବା ନିମନ୍ତେ କାହାକୁ କାହାକୁ ଅନୁରୋଧ ବାଢ଼ି ଜଗନ୍ନାଥଙ୍କୁ ଗୁହାରି କରୁଥାଆନ୍ତି । ରାତି ୧୧ଟା ହେବାରୁ ମୋ ଛାତିର ସ୍ପନ୍ଦନ ବଢ଼ି ବଢ଼ି ଚାଲିଲା । ସ୍ନାନ ପୂର୍ଣ୍ଣିମା ଅବକାଶରେ ଜଗନ୍ନାଥଙ୍କୁ ଆମ୍ଭେ ପତି-ପତ୍ନୀ ଉତ୍ତମ ମାର୍ଜନା କରି ସନ୍ତାନ ମାଗିଥିଲୁ । କରୁଣାର ହାତ ଆମ ଉପରେ ପ୍ରଭୁ ଥାଉ । ପ୍ରତିବର୍ଷ ସ୍ନାନ ପୂର୍ଣ୍ଣିମାକୁ ଆସି ଦର୍ଶନ କରିବୁ । ସେଦିନ ଥିଲି ଏକାନ୍ତ ଭାବ-ବିହ୍ୱଳ । ଜଗନ୍ନାଥ ମହାପ୍ରଭୁଙ୍କୁ ଆମେ ହଲାଇ ହଲାଇ ବ୍ୟସ୍ତ ହୋଇପଡ଼ିଥାଉ । ଏ ସୁଯୋଗ ଦି'ଜଣ ବନ୍ଧୁଙ୍କ ଯୋଗୁଁ ମିଳିଥିଲା । ତାଙ୍କର କୃପା ନହେଲେ ଏ ସୁଯୋଗ ମିଳେ ନାହିଁ ।

ସେହି ପଥ ଦେଇ ଡାକ୍ତର କୁନାନନ୍ଦ ଗିରି ଯାଉଥିବାରୁ ଡାକ ପକାଇଲି । କାନ୍ଦ କାନ୍ଦ ହୋଇ ପୁଲିସଙ୍କୁ କହିବାରୁ ସେ ଡାକିଲେ । ତାଙ୍କୁ ଏ ଖବର କହିବାର ଉଦ୍ଦେଶ୍ୟ ଥିଲା, ସେ ଭି.ଆଇ.ପି ରୋଡ଼ ସ୍ଥିତ ବ୍ରଜ କିଶୋର ଦାସଙ୍କୁ ଖବର ଦେବେ । କୁନାନନ୍ଦ ଗିରି ବ୍ରଜ ଦାସଙ୍କୁ ଖବର କହିବା ଫଳରେ ମୋତେ ସେ ଥାନାରୁ ମୁକ୍ତ କରି ଯଥା ସ୍ଥାନରେ ଛାଡ଼ିଥିଲେ । ପ୍ରକୃତରେ ମୁଁ ଜଣେ ବିପ୍ଳବୀ ଓ କବି, ମୋତେ ପୁଲିସ ଛାଡ଼ି ନଥା'ନ୍ତା । ଏ ଥିଲା ପ୍ରଥମ ଅନୁଭବ ।

॥ ୨ ॥

ମୋ ସ୍ତ୍ରୀଙ୍କର ଗୋଟେ ଅପରେସନ ଦରକାର ପଡ଼ିଲା । ବିଶ୍ୱସ୍ତ ଅଥଚ ଭଲ ପ୍ରସୂତୀ ବିଭାଗ ଡାକ୍ତର ସନ୍ଧାନରେ ରହିଲି । ଜଗନ୍ନାଥଙ୍କୁ ମାନସିକ କରିଥିଲି, ଏଠାରେ ଏହି ଶ୍ରୀକ୍ଷେତ୍ରରେ ତାକୁ ଆରୋଗ୍ୟ କର । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ସେହି କାଳଜୟୀ ପଦଟି ଗାଇଲି -

'ଯେତେ ଦୂରେ ଘଣ୍ଟ ନିନାଦ ଶୁଭେ ନଦରେ ନେଇ
ପକାଏ ଅନୃତ ଦୁଷ୍କୃତି ଗଳେ ଗଳଥା ଦେଇ ।''

ପ୍ରଭୁଙ୍କ'ର କୃପା ହେଲା, ଡାକ୍ତର ସରୋଜିନୀ ମହାନ୍ତି ସମ୍ବଲପୁରରୁ ବଦଳି ହୋଇ ଆସିଲେ ପୁରୀ ଜିଲ୍ଲା ହସ୍‌ପିଟାଲକୁ । ତାଙ୍କ ସହ ପରାମର୍ଶ କରି ସ୍ତ୍ରୀଙ୍କୁ ଆଣିଲି । ସେ ପରସ୍ପର ପରିଚିତ ହୋଇଗଲେ । ଡାକ୍ତର ଦମ୍ପତିଙ୍କର ଶ୍ରଦ୍ଧା-ସମ୍ମାନ ଅଭୁଲା ଓ ଅବିସ୍ମରଣୀୟ । ଡାକ୍ତରଖାନାର ଉପର ମହଲାରେ ଚାହିଁଲେ ନୀଳଚକ୍ର ଦିଶେ । ଆମେ ଦୁହେଁ ସେଇଠୁଁ ପ୍ରଣତି ବାଢୁ । ଏଭଳି ଜଗନ୍ନାଥଙ୍କ କୃପା ହେଲା, ମୋତେ ଖାଇବା ବା

ଅନ୍ୟ କିଛି କାମ ପାଇଁ ସରୋଜିନୀ ମାଡାମ୍ ନିଜେ ବସି ରୋଗୀ ପାଖରେ ଆଟେଡାଣ୍ଟ ହୁଅନ୍ତି । ପରିଶେଷରେ ଆମଠୁଁ ଟଙ୍କାଟେ ବି ନେଲେ ନାହିଁ । ବରଂ ଆମକୁ ଖୁଆଇ ପଥି ଯୋଗାଇ ଋଣୀ କରି ଦେଇଛନ୍ତି । ସେ ମହତ୍ ଲୋକ ନିଶ୍ଚୟ । ଜଗନ୍ନାଥଙ୍କ କରୁଣା ତାଙ୍କ ମାଧ୍ୟମରେ ପ୍ରତିଫଳିତ ହେଲା । ସବୁଠୁଁ ଚମତ୍କାର ଘଟଣା - ଡାକ୍ତର ଆର୍ କେ. ମହାନ୍ତି ମୋ ସାରସ୍ୱତ ସାଧନା ସଂପର୍କରେ ଅବହିତ ହୋଇ ଘଣ୍ଟା ଘଣ୍ଟା ବସାଇ ଆଲୋଚନା କରନ୍ତି । ସେ ଜଗନ୍ନାଥଙ୍କର ଜଣେ ନିଷ୍ଠାପର ଭକ୍ତ କହିଲେ ଭ୍ରାନ୍ତି ହେବ ନାହିଁ । ଏ ହେଉଛି ୧୯୮୧ ମସିହା ମାର୍ଚ୍ଚ ମାସର ଅନୁଭୂତି । ଏମିତି କିଛି ମନସ୍ତାପ ଆସିଲା, ମଝିରେ କେତେବର୍ଷ ଜଗନ୍ନାଥ ଦର୍ଶନରେ ଗଲି ନାହିଁ । କେତେଜଣ ବନ୍ଧୁ ପୁରୀ ଯିବାର ପ୍ରସ୍ତାବ କଲେ । ମୋତେ ଯିବାର ପ୍ରୋତ୍ସାହନ ମିଳିଲା ମାତ୍ର ସେମାନେ ମୋତେ କହିବାରୁ - ମୁଁ କହିଲି, କ'ଣ ହାତରୁ ପଇସା ଖର୍ଚ୍ଚ କରି ଜଗନ୍ନାଥଙ୍କୁ ଦେଖା କରିବି । ସେ କ'ଣ ଜାଣେନାହିଁ, ମୁଁ କାହିଁ ଯାଉନି ! ସେ ଯେଉଁଦିନ ନେବେ, ମୁଁ ଯିବି !

ଦୁଇଦିନ ଗଲା, ତୃତୀୟ ଦିନ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟରୁ ଏକ ଆଦେଶମୂଳକ ପତ୍ର ମିଳିଲା । ମୁଁ 'ମଡ଼ରେସନ ବୋର୍ଡ଼'ର ଚେୟାରମ୍ୟାନ । ପ୍ରଶ୍ନକର୍ତ୍ତାମାନଙ୍କ ପ୍ରଶ୍ନ ଗୁଡ଼ିକର ଯଥାର୍ଥତା ବିଚାର କରି ଛାଡ଼ିଲେ, ଉପଶାସ୍ତ୍ରୀ ଓ ଶାସ୍ତ୍ରୀ ପ୍ରଶ୍ନ ଛପା ହେବାକୁ ଆଦେଶ ଯିବ । ସେହି ବନ୍ଧୁମାନେ ଯିବା ପୂର୍ବରୁ ମୁଁ ଗଲି ଏବଂ ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟରେ ତିନିଦିନ କାର୍ଯ୍ୟ କରିବାର ସୁଯୋଗ ପାଇଲି । ବିଦ୍ୱାନ ଅଧ୍ୟାପକ ମାନଙ୍କ ସହିତ ସାକ୍ଷାତ ହେଲା, ଜଗନ୍ନାଥଙ୍କର ନିରୋଳା ଦର୍ଶନ ପାଇ ନିଜକୁ ଧନ୍ୟ ମନେ କଲି । ମନେ ପଡ଼େ -

'ସେ କମ୍ବୁ କଟକେ ରାଜା ସ୍ୱୟଂ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ।'

ବାସ୍ତବିକ, ଯେ ଯାହା ପ୍ରାପ୍ତି ପାଇଁ ଅଭିଳାଷ ଆଣିଛି, ସେ ପାଇଛି । ଭକ୍ତିର ଡ଼ୋରିରେ ସେ ବନ୍ଧା । ବିଶ୍ୱାସର ଠାକୁର । ଥରେ ଏକାନ୍ତ ବିଶ୍ୱାସ ଆସିଲେ, ପ୍ରଭୁ ପାଖେ ପାଖେ ରହିଲେ । ଏକଦା ଘରେ ଥିବା ସୁନ୍ଦର ସମୁଜ୍ଜଳ ଜଗନ୍ନାଥ ଫଟୋ ଉଇ ଖାଇଗଲା । ରାତିରେ ସ୍ୱପ୍ନ ଦେଖିଲି, ମାଙ୍କଡ଼ ଘରେ ପଶିଛି ଏବଂ ଜଗନ୍ନାଥ ଫଟୋ ନେଇ ଯାଉଛି । ମୋ ସ୍ତ୍ରୀ ଦିନେ ଘର ଭିତରେ ସଂଧ୍ୟାରେ ମାଙ୍କଡ଼ର ଚେହେରା ଦେଖି ପଳାଇ ଆସିଲେ 'ମାଙ୍କଡ଼ ମାଙ୍କଡ଼' କହି । ପରିଶେଷରେ ସେ ଫଟୋଟି କୀଟଦ୍ରଂଷ୍ଟ ହୋଇଗଲା । ଓଡ଼ିଆ ଜାତିର ସ୍ୱାଭିମାନକୁ ଉଚ୍ଚାଙ୍ଗ କରିଥିବା ଜଗନ୍ନାଥ ଆତ୍ମାର ଅଭିଷେକ ତୁଲ୍ୟ । ତାଙ୍କୁ ନେଇ ଆମ୍ଭେମାନେ ବଞ୍ଚିଛୁ ! ବଞ୍ଚିଥିବା !


ଜୟୀପୁର (ବି. କଲୋନୀ)
କେନ୍ଦ୍ରାପଡ଼ା - ୭୫୪୨୧୧
ଭ୍ରାମ୍ୟଭାଷ : ୯୪୩୮୦୧୮୫୦୧




# ସ୍ମୃତିରେ ଶ୍ରୀଜଗନ୍ନାଥ

## ସୁରେଶ ଚନ୍ଦ୍ର ସାହୁ

ଉଣେଇଶ ଶହ ନବେ ମସିହା । ଆଜକୁ ପ୍ରାୟ ଚବିଶ ବର୍ଷ ତଳର ଘଟଣା । ମୁଁ ପୁରୁଣା ପୁରୀ ଜିଲ୍ଲା ଭାପୁର ବ୍ଲକରେ କୃଷି ଅଧିକାରୀ ଥିଲି । ପରିବାର ସହ ବ୍ଲକ କଲୋନୀରେ ରହୁଥାଏ । ସେଠି ବି.ଡ଼ି.ଓ., ଜେ.ଇ., ପିଏ.ଏସ୍.ଆଇ ଏବଂ ଅନ୍ୟମାନେ ବି ପରିବାର ସହ ରହୁଥା'ନ୍ତି । ମୋର ଘନିଷ୍ଠ ବନ୍ଧୁ ଜେ.ଇ ଷଡ଼ଙ୍ଗୀ ବାବୁ ଏବଂ ପି.ଏ. ଛବୀନ୍ଦ୍ର ବାବୁ ଦିନେ ସ୍ଥିର କଲେ ଆମ ତିନି ପରିବାର ସାକ୍ଷୀଗୋପାଳ, କୋଣାର୍କ ଓ ପୁରୀ ବୁଲିଯିବା ପାଇଁ । ତାହା ପୁଣି ରାଧାଷ୍ଟମୀ ଦିନ । ମାତ୍ର ଛଅ ମାସ ହେଲା ଖରିଦ ହୋଇଥିବା ଗୋଟିଏ ଅରଖ ନୂଆ ଆମ୍ବାସଡ଼ର ଭଡ଼ା ସୂତ୍ରରେ ଠିକଣା କରାଗଲା ଆମର ଯାତ୍ରା ସକାଶେ । ରାଧାଷ୍ଟମୀ ଦିନ ପାହାନ୍ତି ପହରୁ ଆମେ ତିନି ପରିବାର କଲୋନୀ ଛାଡ଼ି ସାକ୍ଷୀଗୋପାଳ ପହଞ୍ଚିଲା ବେଳକୁ ସକାଳ ସାତଟା । ମନ୍ଦିର ଆଖପାଖ ଲୋକାରଣ୍ୟ ଏବଂ ଦେଢ଼ କିଲୋମିଟର ଯାଏ ଲମ୍ବା ଧାଡ଼ି । ଧାଡ଼ିରେ ଠିଆ ହୋଇ ରାଧାଙ୍କର ପାଦ ଦର୍ଶନ କରି ସାରି ସାକ୍ଷୀଗୋପାଳ ଛାଡ଼ିଲା ବେଳକୁ ପୂର୍ବାହ୍ଣ ଉତ୍ତୀର୍ଣ୍ଣ ପ୍ରାୟ । ତା'ପରେ କୋଣାର୍କ, ରାମଚଣ୍ଡୀ ଦେଖିସାରି ଭୋଜନାନ୍ତେ କ୍ଳାନ୍ତି ମେଣ୍ଟାଇବା ପାଇଁ ରହଣି ହେଲା କୋଣାର୍କର ଏକ ପାନ୍ଥଶାଳାରେ । ସେଠୁ ଆସି ପୁରୀ ଛୁଇଁଲା ବେଳକୁ ଅପରାହ୍ନ ବିଦାୟ ନେଇ ଗୋଧୂଳି ଉପଗତ । ମହିଳା ମହଲରେ ସର୍ବ ସମ୍ମତିକ୍ରମେ ନିଷ୍ପତ୍ତି ହେଲା ସୁନାର ଗୌରାଙ୍ଗ ଏବଂ ସମୁଦ୍ର ପନ୍ତାରେ ପବନ ଆହରଣ ପରେ ହିଁ କାଳିଆଙ୍କ ଦର୍ଶନ । ଏସବୁ ବୁଲିସାରି ବଡ଼ଦାଣ୍ଡରେ ପାଦ ଥାପିଲା ବେଳକୁ ରାତି ସାଢ଼େ ସାତଟା ।

ବଡ଼ଦାଣ୍ଡର ସେ ଚିକିମିକି ଆଲୋକରେ ବିଭିନ୍ନ ବିପଣିରେ ଗଚ୍ଛିତ ନାନା ରକମ ଜିନିଷର ପ୍ରଦର୍ଶନ ଆକର୍ଷିତ କରିଥିଲା ଭାପୁର ବ୍ଲକର ବିରଳ ବାଦ୍‌ଶାହା ଜେ.ଇ ଷଡ଼ଙ୍ଗୀ ବାବୁ ଏବଂ ପି.ଏ ଛବୀନ୍ଦ୍ର ବାବୁଙ୍କର ପତ୍ନୀ ଦ୍ୱୟ ଏବଂ ଲହୁଣୀ ପିତୁଳା ସନ୍ତାନମାନଙ୍କୁ । ଦୁହେଁ ପ୍ରସ୍ତାବ ଦେଲେ ଆଗ କିଣାକିଣି ସାରି ପରେ ଠାକୁର ଦର୍ଶନ ପାଇଁ । ମୁଁ ଏବଂ ମୋର ପତ୍ନୀ ଏ ପ୍ରସ୍ତାବରେ କେବଳ ନୀରବ ସମର୍ଥନ ବ୍ୟତିରେକ ଅନ୍ୟପନ୍ଥା ନଥିଲା । ଶଙ୍ଖା, ଚୁଡ଼ି, ମାଳି ତଥା ଅନ୍ୟାନ୍ୟ ସାମଗ୍ରୀ କିଣୁ କିଣୁ ବାଜିଗଲାଣି ସାଢ଼େ ନଅଟା । ଏହାବାଦ୍ ପୁଣି ଖିଆପିଆ ଅଛି । ଫେରିବାକୁ ହେବ ଗୁଡ଼ାଏ ବାଟ । ଆଉ ବାବୁ ବାବୁଆଣୀ କାହାର ମନହେଲାନି ମନ୍ଦିର ଯିବାପାଇଁ । କହିଲେ, ଏଥର ଯିବାନି ଆଉ କେତେବେଳେ ଆସିଲେ ଯିବା ।

ମୁଁ ମତ ରଖିଲି, ପୁରଷୋତ୍ତମ ଆସି କାଳିଆକୁ ନ ଦେଖି ଫେରିଗଲେ ଯାତ୍ରା ଅସଂପୂର୍ଣ୍ଣ ରହିଯିବ । କିଛି ଭଲ ଲାଗିଲାନି । ମୋର ଏଇ କଥା ଶୁଣିବାକୁ ସେମାନେ ପ୍ରସ୍ତୁତ ନଥିଲେ ଯେପରି । ମନ ବୁଝିଲାନି । ଅଳ୍ପ ସମୟ ପାଇଁ ମୁଁ ଚାଲିଗଲି ଅରୁଣ ସ୍ତମ୍ଭ ନିକଟକୁ । ଯୋଡ଼ ହସ୍ତ ଏବଂ ଲୁହଭରା ନୟନରେ ଜଣେଇଲି, କାଳିଆ ମୁଁ ଆଉ ପାରୁନି । ସବୁ ତୋରି ଇଚ୍ଛା । ଖିଆପିଆ ସାରି ସମସ୍ତେ ଗାଡ଼ିରେ ବସିଲେ । ଗାଡ଼ି ଚାଲିଲା । ଦିନସାରା ବୁଲି ବୁଲି କ୍ଲାନ୍ତି ସକାଶେ ପ୍ରାୟ ସମସ୍ତେ ଘୁମେଇବା ଆରମ୍ଭ କଲେଣି, ମୋତେ ଓ ଚାଳକକୁ ଛାଡ଼ି । ମାତ୍ର ପଇଁତିରିଶ କିଲୋମିଟର ଆସିଛୁ ହଠାତ୍ ଗାଡ଼ିର ଦୁଇଟି ଯାକ ଲାଇଟ୍ ଲିଭିଗଲା । ଓହ୍ଲେଇ ପଡ଼ିଲେ ସମସ୍ତେ । ଛାଇ ଛାଇଆ ନିଦ କୁଆଡ଼େ ଉଭେଇଗଲା ତତଲା ପଲମ ଉପରେ ପାଣି ଉଭେଇଗଲା ପରି । ଚାଳକ ଏବଂ ଜେ.ଇ. ଙ୍କର ସୀମିତ ଜ୍ଞାନ ପୁନର୍ବାର ଆଲୋକ ଜଳାଇବାରେ ସମର୍ଥ ହେଲାନି । ବିକଳ୍ପ ଭାବରେ ବାଧହୋଇ ମୋର ହାତ ବ୍ୟାଗ୍‌ରେ ଥିବା ଏଭାରେଡ଼ି ଟର୍ଚ୍ଚଟିକୁ ମୁଁ ଜଳେଇ ଧରି ସାମନାକୁ ଦେଖେଉଲି । ଗାଡ଼ି ଚାଲିଲା ଅପେକ୍ଷାକୃତ କମ୍ ଗତିରେ । ଚାଳିଶ ମିନିଟ୍ ଖଣ୍ଡେ ଗାଡ଼ି ଚାଲିଲା । ହଠାତ୍ କ'ଣ ହେଲା ଗାଡ଼ିଟି ଚଳତ୍ ଶକ୍ତି ହୀନ ହୋଇଗଲା । ଚାଳକ ଯେତେ ଚେଷ୍ଟା କଲେ ବି ଗାଡ଼ି ଇଞ୍ଚେ ବି ଆଗକୁ ବଢୁନି । ଇଂଜିନ୍‌ଟି ଖାଲି ଘର ଘର ଶବ୍ଦ କରି ବନ୍ଦ ହେଉଛି ସିନା କିନ୍ତୁ ଗାଡ଼ି ଚାଲୁନି । କେଉଁଠି ପହଞ୍ଚିଛୁ ବି ଜାଣି ହେଉନି । ଗାଁ ଗଣ୍ଡା ଦେଖାଯାଉନି । ନିକାଞ୍ଚନ ଜାଗା କିଟି କିଟି ଅନ୍ଧାର । ଝିଙ୍କାରୀର ଝିଁ ଝିଁ ଶବ୍ଦ । ସବୁଆଡ଼େ ଖାଁ ଖାଁ । ବିଲୁଆର ହୁକେ ହୋ ଡାକ ପରିବେଶକୁ ଭୟଙ୍କର କରିଦେଉଛି । ମୋ ଟର୍ଚ୍ଚଟି ହିଁ କେବଳ ସାହା ଭରସା । ସେଇଟିକୁ ଧରି ଚାଳକ ଯେତେ ତଳେ ଆଣ୍ଠେଇ ଚେଷ୍ଟା କଲେ ବି ସଜାଡ଼ି ପାରିଲାନି । ଛଅ ମାସର ନୂଆ ଗାଡ଼ିଟା ଯେ ଏମିତି ଠିକଣା ବେଳେ ଦଗା ଦେବ ତାହା ସମସ୍ତଙ୍କର କଳ୍ପନାର ବାହାରେ ଥିଲା ।

ଆଜିକାଲି ପରି ମୋବାଇଲର ପ୍ରଚଳନ ସେତେବେଳେ ନଥିଲା । ପିଲାମାନେ ଏକବାରେ ତଟସ୍ଥ, କାକୁସ୍ଥ । ମାଆମାନଙ୍କ କୋଳ ଖୋଜିଲେଣି ଭୟରେ । ବାବୁ ବାବୁଆଣୀ ମାନଙ୍କର ମୁହଁ ଫଡକ ଆଉ ନାହିଁ । ରାତି ସାଢ଼େ ଏଗାରଟା ବାଜିବ । ଏଇ ନିର୍ଜନ ଜାଗାରେ କି ଶୋଚନୀୟ ମାରାତ୍ମକ ତଥା ଅଭାବନୀୟ ଅଘଟଣ ଆମକୁ ସାମନା କରିବାକୁ ଆସୁଛି ତାହା ଭାବି ସମସ୍ତଙ୍କ ଦେହ ଝାଳେଇଗଲାଣି । ବାବୁଆଣୀ ମାନେ ଭୟରେ ଜଡ଼ସଡ଼ ହୋଇ ବେକରୁ ହାତରୁ ଗହଣା ଗଣ୍ଠି ଉତାରି ଅଣ୍ଟାରେ ଖୋସିଲେଣି ଭ୍ୟାନିଟ୍‌ରେ ନରଖି । ପଇସାପତ୍ର ବାବୁମାନେ ପ୍ୟାଣ୍ଟର ଚୋରା ପକେଟରେ

ସାଇତିଲେଣି । କେହି ମୁହଁରେ ପ୍ରକାଶ ନ କରୁଥିଲେ ମଧ୍ୟ ସେଇ ସ୍ଥାନ ପରିବେଶ ଏବଂ ବେଳା ଯେ ଚୋର, ଡକାୟତ, ଲୁଟେରା ଏବଂ ବଳାତ୍କାରୀ ମାନଙ୍କ ପାଇଁ ପୂରାପୂରି ଅନୁକୂଳ ଏହା ସମସ୍ତେ ଭାବିସାରିଲେଣି । ଶେଷରେ ନିରାଶ ହୋଇ ସଭିଏଁ ସେଇ ଜଗତର ନାଥ ଜଗନ୍ନାଥଙ୍କୁ ମନେ ମନେ ଡାକିଲେ ।

ଆଗରୁ ନ ହେଲବି କାଳିଆ ଆସି ଏତେବେଳକେ ମନେ ପଡ଼ିଗଲେ । କିଛି ବେଳ ନାନା ଭୟ ଏବଂ ଆଶଙ୍କାରେ କଟିଗଲା ପରେ ବହୁ ଦୂରରୁ ଗୋଟିଏ ଲୁନା ଆସିବାର ଶବ୍ଦ ଶୁଣାଗଲା । ସେଥିରେ ଥିଲେ ଦୁଇଜଣ ଆରୋହୀ । ଅଟକିଲେ ସେମାନେ ଆମ ପାଖରେ । ସବୁକଥା ଶୁଣିଲେ । ଯୋଗକୁ ପଛରେ ବସିଥିବା ଲୋକଟି ଜଣେ ମଧ୍ୟବୟସ୍କ ମୋଟର ମେକାନିକ୍ । ସେମାନେ ନିକଟରେ ଥିବା ଗୋଟିଏ ଅସଜ ମାଟାଡ଼ୋରକୁ ମରାମତି କରି ନିଜ ଗାଆଁକୁ ଫେରୁଥିଲେ । ମେକାନିକ୍ ବିଚରା ଅଧଘଣ୍ଟାଏ ଲାଗି ଆମ ଗାଡ଼ିର ଲାଇଟ୍ ଏବଂ ଇଞ୍ଜିନ୍‌କୁ ସଜାଡ଼ି କାର୍ଯ୍ୟକ୍ଷମ କରିଦେଲା, ମାତ୍ର ଏକଶତ ଟଙ୍କା ପାରିଶ୍ରମିକ ବାବଦକୁ ନେଇ । ବଞ୍ଚିଗଲୁ ଆମେ କାଳିଆଙ୍କ ଅପାର କରୁଣାରୁ । ଅନ୍ତରଭରା କୃତଜ୍ଞତା ଜଣାଇ ବିଦାୟ ଦେଲୁ ସେ ଦୁଇ ଜଣଙ୍କୁ । ଜ୍ଞାତ ଓ ଅଜ୍ଞାତ ସାରରେ ଯାହା ଦୋଷ କରିଥିଲେ ମଧ୍ୟ ସେହି କାଳିଆର କରୁଣା ହୋଇନଥିଲେ ସେ ଦାରୁଣ ସଙ୍କଟ କଦାପି ଟଳି ନଥା'ନ୍ତା । କଲୋନୀରେ ପହଞ୍ଚିଲା ବେଳକୁ ରାତି ଆଉ ଅଳ୍ପ ବାକି ଅଛି । ବହୁତ ଦିନ ବିତିଗଲାଣି ହେଲେ ସେହି ଘଟଣା ଆଜିବି ମୋ ମାନସପଟରେ ଅଲିଭା ସ୍ମୃତି ହୋଇ ରହିଯାଇଛି ।

ଅବସରପ୍ରାପ୍ତ କ୍ଷେତ୍ର ବିଜ୍ଞାନୀ
ଶ୍ରୀଚନ୍ଦନପୁର, ବାଙ୍କୀ, କଟକ
ଭ୍ରାମ୍ୟଭାଷ : ୯୪୩୮୨୯୨୩୩୮



# ରଥେ ତୁ ବାମନଂ ଦୃଷ୍ଟ୍ୱା

## ଚନ୍ଦ୍ରଶେଖର ପ୍ରଧାନ

**ଶି**ଶୁର କୋମଳ ସ୍ୱାର୍ଥହୀନ ମନରେ ଈଶ୍ୱର ଆପେ ଆପେ ଧରା ଦିଅନ୍ତି । ସ୍ୱାର୍ଥୀ ମନୁଷ୍ୟ ପରି କୋମଳମତି ନିଷ୍ପାପ ଶିଶୁକୁ ନବଧା ଭକ୍ତିରେ ଉପାସନା କରିବାର ଆବଶ୍ୟକତା ନଥାଏ । ଥରେ ଯଦି ତାହା ଈଶ୍ୱରାଭିମୁଖୀ ହୁଏ, ତେବେ ଈଶ୍ୱର ଅଚିରେ ଦର୍ଶନ ଦିଅନ୍ତି । ପିଲାଦିନ ମୋର ଓଡ଼ିଶାର ଏକ ସୁନ୍ଦର ଗ୍ରାମର ମାଟି, ପାଣି, ପବନରେ କଟିଛି । ମୋ ବାପାଙ୍କର ସରଳତା ସହ ପରୋପକାରୀ ମନୋଭାବ ଓ ମୋ ବୋଉର ଉଦାରମନ ଓ ଭକ୍ତି ଭାବନା ମୋର ପିଲାମନ ଉପରେ ପରୋକ୍ଷରେ ପ୍ରଭାବ ପକାଇଛି । ସ୍କୁଲ ଯିବା ବୟସରେ ସାଇ ପଡ଼ିଶାଙ୍କ ବାଡ଼ି ବଗିଚାରୁ ଜାତି ଜାତି ଫୁଲ ଏକାଠି କରି ଠାକୁର ପୂଜିବା ମୋର ବଡ଼ ସଉକ ଥିଲା । ଫୁଲ ଚୋରି ଆଉ ଗଛ ଡାଳଭଙ୍ଗା କଥା ସାଇ ପଡ଼ିଶା ମୋ ବୋଉ ଆଗରେ ଫେରାଦ ହୁଅନ୍ତି । ମୋର କିନ୍ତୁ ଗୋଟିଏ ନିଶା ଫୁଲ ତୋଳିବି, ଠାକୁର ପୂଜା କରିବି । ସେତେବେଳେ ଭଗବାନ ଶ୍ରୀକୃଷ୍ଣ ଓ ମା' ଶାରଳା ମୋର ଆରାଧ୍ୟ ଦେବଦେବୀ ଥିଲେ ।

ଥରେ ରାତ୍ରିରେ ମୁଁ ଶୋଇଥିବା ବେଳେ ହଠାତ୍ ମୋ ନିଦ ଭାଙ୍ଗିଯାଇଥିଲା । ମୋର ଶଯ୍ୟାଧାରରେ ବାଳକରୂପୀ ଭଗବାନ ଶ୍ରୀକୃଷ୍ଣଙ୍କ ଉପସ୍ଥିତି ଅନୁଭବ କଲି । ସେଇ ନୀଳ କଳେବର, କମନୀୟ ମୁଖକାନ୍ତି, ରକ୍ତିମ ଅଧର, ପୀତବସ୍ତ୍ର, ହାତରେ ବଂଶୀ, ଅଗୁରୁ, ଚନ୍ଦନ, ତୁଳସୀର ମହମହ ବାସ୍ନାରେ ଆମ ଘର ପୂରି ଉଠିଲା । ମୋର ବୋଉ ମଧ୍ୟ ତାଙ୍କର ଉପସ୍ଥିତି ଅନୁଭବ କରିଥିଲେ । ସେ ଅପୂର୍ବ ସ୍ୱର୍ଗୀୟ ବାସ୍ନା ଦୁଇଦିନ ପର୍ଯ୍ୟନ୍ତ ଆମ ଘରେ ଅନୁଭୂତ ହେଉଥାଏ ।

ଧୀରେ ଧୀରେ ସମୟ ସାଥିରେ ସବୁକିଛି ବଦଳିଗଲା । କିନ୍ତୁ ମୋର ବାଳୁତ ବୟସର ଭଗବାନ ମୋ ଯୁବକ ବୟସରେ ମଧ୍ୟ ସେମିତି ମୋ ମନରେ ଘର କରି ରହିଥା'ନ୍ତି । ନିଜର ପାଠପଢ଼ା ଓ ପରେ ପରେ ଚାକିରିକୁ ନେଇ ସହରରେ ରହିବାକୁ ବାଧ୍ୟ ହେଲି । ତା'ପରେ ବିବାହ, ଘର ସଂସାର । ଏସବୁ ମଧ୍ୟରେ ଲୀଳାମୟ ଶ୍ରୀକୃଷ୍ଣ ଗୋପ, ମଥୁରା, ଦ୍ୱାରକାରେ ନିଜର ଲୀଳା, ଖେଳା କରି ପରେ ଶ୍ରୀମନ୍ଦିରରେ ଚତୁର୍ଦ୍ଧା ମୂର୍ତ୍ତି ହୋଇ ବସିବା ପରି, ମୋ ପିଲାଦିନର ଶ୍ରୀକୃଷ୍ଣ ଏବେ ଅନେକ ଛୋଟ ବଡ଼ ଦିବ୍ୟ ଅନୁଭୂତି ଦେଇ ଶ୍ରୀଜଗନ୍ନାଥ ରୂପରେ ମୋ ହୃଦୟରେ ବିରାଜମାନ ଅଛନ୍ତି ।

ଥରେ ଅଫିସ୍‌ରେ ଏକ ସେମିନାରରେ ଭାଗ ନେଇ ଜଗନ୍ନାଥଙ୍କ ଅନେକ ବେଶ ବିଷୟରେ ଜାଣିବାକୁ ପାଇଥିଲି । ତା'ପରେ ମନ ମଧ୍ୟରେ ସେହି ସବୁ ବେଶ ଏକ

ଏକ କରି ଦର୍ଶନ କରିବାର ଆକାଂକ୍ଷା ମଧ୍ୟ ପ୍ରବଳ ହେଲା । ସେହି ପରମ କାରୁଣିକଙ୍କ କୃପାରୁ ଏହା ସମ୍ଭବ ମଧ୍ୟ ହେଲା । କର୍ମବହୁଳ ଜୀବନ ଭିତରୁ ଟିକିଏ ଖାଲି ସମୟ ମିଳିଲେ ମୁଁ ପ୍ରଭୁଙ୍କୁ ଦର୍ଶନ କରିବା ପାଇଁ ପୁରୀ ଧାଇଁ ଯାଇଥାଏ । ତାଙ୍କୁ ଦର୍ଶନ କରି ଫୁଲ, ତୁଳସୀ ଲାଗି କରି ପରମ ଶାନ୍ତି ଅନୁଭବ କରେ ।

କିନ୍ତୁ ମନ ମଧ୍ୟରେ ଗୋଟିଏ ଦୁଃଖ ଥାଏ । ବିଶ୍ୱପ୍ରସିଦ୍ଧ ରଥଯାତ୍ରାକୁ ବଡ଼ଦାଣ୍ଡରେ ଉପସ୍ଥିତ ରହି କେବେ ଦେଖିପାରି ନଥାଏ । କାରଣ ଜନଗହଳିକୁ ମୋର ଭୀଷଣ ଭୟ । ଅତିରିକ୍ତ ଭିଡ଼ ମଧ୍ୟରେ ଠେଲାପେଲାରେ ନା ରଥ ଟାଣି ପାରିବି, ନା ତା'ଉପରେ ବିରାଜମାନ ପ୍ରଭୁଙ୍କୁ ପାଖରୁ ଦେଖି ପାରିବି । ଏମିତି ଭାବି ଭାବି ମନେ ମନେ ଟିକିଏ ଦୁଃଖୀ ଥାଏ । ଏଣେ ଶାସ୍ତ୍ର କହେ, 'ରଥେ ତୁ ବାମନଂ ଦୃଷ୍ଟ୍ୱା ପୁନର୍ଜନ୍ମ ନ ବିଦ୍ୟତେ ।' ତେଣୁ ଏହି ଚର୍ମ ଚକ୍ଷୁରେ ଥରେ ସେ ରୂପ ଦର୍ଶନ କରିବାର ପ୍ରବଳ ବାସନାକୁ ମନ ମଧ୍ୟରେ ଚାପି ରଖିଥାଏ ।

ଏମିତି ଏମିତି ଦଶ ବର୍ଷ କଟିଗଲା । ପ୍ରତିବର୍ଷ ରଥଯାତ୍ରା ଦିନ ସକାଳୁ ସକାଳୁ ଗାଧୁଆ ପାଧୁଆ ସାରି ନିର୍ଦ୍ଧାରିତ ସମୟ ପୂର୍ବରୁ ଟେଲିଭିଜନ ସାମ୍ନାରେ ବସିଯାଏ । ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ରଥଯାତ୍ରାର ଧାରା ବିବରଣୀ ଶୁଣିବା ସହିତ ପ୍ରଭୁଙ୍କ ପହଣ୍ଡିବିଜେ ଠାରୁ ଆରମ୍ଭ କରି ଛେରାପହଁରା, ରଥଟଣା ଇତ୍ୟାଦି କାର୍ଯ୍ୟକ୍ରମ ଟିକିନିଖି କରି ଦେଖେ । ରଥଟଣା ଶେଷ ନ ହେବା ପର୍ଯ୍ୟନ୍ତ ମୁଁ ସେଠାରୁ ତିଳେହେଲେ ଘୁଞ୍ଚେ ନାହିଁ ।

୨୦୦୦ ମସିହା ରଥଯାତ୍ରା ଦିନର ଘଟଣା । ସେଦିନ ମଧ୍ୟ ମୁଁ ସବୁବର୍ଷ ପରି ନିତ୍ୟକର୍ମ ଶେଷ କରି ଧାରା ବିବରଣୀ ଆରମ୍ଭ ହେବା ପୂର୍ବରୁ ଟିଭି ସମ୍ମୁଖରେ ବସିବା ପାଇଁ ନିଜକୁ ପ୍ରସ୍ତୁତ କରୁଥାଏ । ଠିକ୍ ଏତିକିବେଳେ ମୋର ଜଣେ ବନ୍ଧୁ ଅଜୟ ମିଶ୍ର (ସିଭିଲ୍ ଇଂଜିନିୟର) ଙ୍କର ଫୋନ କଲ୍ ଆସିଲା । ସେ ସେପଟୁ କହିଲେ ଯଦି ତୋର ରଥଯାତ୍ରା ଦେଖିବାର ଅଛି, ତେବେ ଶୀଘ୍ର ପ୍ରସ୍ତୁତ ହୋଇଯାଆ, ମୁଁ ଯାଇ ପହଞ୍ଚୁଛି । ମୁଁ ପୁଣି ସେହି ପୁରୁଣା କଥା ଦୋହରାଇଲି, ସେଠି ପ୍ରବଳ ଭିଡ଼, ଠେଲାପେଲାରେ କିଏ ଯିବ, କହିଲୁ ! ମୁଁ ଭିଡ଼କୁ ଡରେ ବୋଲି ତୁ ଜାଣିଛୁ । ସେ ପୁଣି କହିଲା ଆରେ ନାଇଁ, ଭିଡ଼ ଭିତରେ ପଶିବା ଦରକାର ନାହିଁ । ସ୍ୱୟଂ ଗଜପତି ମହାରାଜାଙ୍କର ମୁଁ ଆଜି ଅତିଥି । ତାଙ୍କ ନିମନ୍ତ୍ରଣ ପାଇ ଯାଉଛି, ଭାବିଲି ତୋତେ ବି ସାଙ୍ଗରେ ନେଇଯିବି । ତାଙ୍କରି ବାଲ୍‌କୋନିରେ ବସି ସୁନ୍ଦର ଭାବରେ ରଥଟଣା ଦେଖିବା । ତୁ ଯେତେ ଶୀଘ୍ର ପାରୁ ପ୍ରସ୍ତୁତ ହେଇଯା, ମୁଁ ଯାଇ ପହଞ୍ଚୁଛି ।

ଏ'ତ ମୋ ବନ୍ଧୁର ନୁହେଁ, ସ୍ୱୟଂ ଜଗନ୍ନାଥଙ୍କର ନିମନ୍ତ୍ରଣ । ମୋତେ ଆଉ ସମ୍ଭାଳେ କିଏ ? ମୁଁ ସାଙ୍ଗେ ସାଙ୍ଗେ ପ୍ରସ୍ତୁତ ହେଇଗଲି । ବନ୍ଧୁ ମଧ୍ୟ ଆସି ପହଞ୍ଚିଗଲେ, ପତ୍ନୀଙ୍କର ଇଚ୍ଛା ଥିବ ଭାବି ତାଙ୍କୁ ଥରେ ଡାକିଦେଲି । ତାଙ୍କର କିନ୍ତୁ କିନ୍ତୁ ଭାବ ଦେଖି ଆମେ

ଦୁହେଁ ବାହାରି ପଡ଼ିଲୁ । ଠିକ୍ ସମୟରେ ପୁରୀରେ ପହଞ୍ଚିଗଲୁ । ଆମେ ଦୁହେଁ ରାଜ ନଅରରେ ପହଞ୍ଚିଲୁ । ମହାରାଜା ଯିଏ ସ୍ୱୟଂ ଚଳନ୍ତି ଠାକୁର ସେ ଆମକୁ ହସି ହସି ସ୍ୱାଗତ କଲେ । ରାଜନଅର ବୁଲାଇ ଦେଖାଇଲେ । ତାଙ୍କରି ନଅର ଉପରୁ ଆମେ ସୁନ୍ଦର ଭାବରେ ରଥଯାତ୍ରା ଦର୍ଶନ କଲୁ । ମହାରାଜା ଗଜପତି ଦିବ୍ୟସିଂହ ଦେବ ରୁପା ତାମ୍‌ଜାନ୍‌ରେ ବସି ଛେରାପହଁରା କରିବାକୁ ଗଲେ । ଫେରିଆସି ଆମମାନଙ୍କ ସହ ଜଳଯୋଗ ଗ୍ରହଣ କଲେ ।

ରାଜନଅରର ଭବ୍ୟ ଜଳଖିଆ ରାଜାଙ୍କ ସହ ଗୋଟିଏ ଟେବୁଲ୍‌ରେ ଅନେକ ଆଦର ସମ୍ମାନ ସହ ଶେଷ ହେଲା । ଏଇଠି ଗୋଟିଏ କଥା କହିରଖେ, ମହାରାଜା ଦିବ୍ୟସିଂହ ଦେବ ବିଶ୍ୱପ୍ରସିଦ୍ଧ, ମାନ ସମ୍ମାନରେ ସବୁ ଓଡ଼ିଆବାସୀଙ୍କ ନମସ୍ୟ, ତଥାପି ତାଙ୍କର ଆଚାର ବ୍ୟବହାରରେ ଏତେ ସରଳତା ଏତେ ମଧୁରଭାବ ଯେ ଯେ କୌଣସି ବ୍ୟକ୍ତିଙ୍କ ମଥା ତାଙ୍କ ନିକଟରେ ନଇଁଯିବ । ମହାରାଜା ଉପାଧି ବାଦ୍ ମଧ୍ୟ ସେ ଜଣେ ଜ୍ଞାନୀ, ଗୁଣୀ, ପୂଜାସ୍ପଦ ବ୍ୟକ୍ତି । ଏଣେ ସ୍ୱୟଂ ଜଗନ୍ନାଥଙ୍କର ପରମ ସେବକ । କିନ୍ତୁ ତାଙ୍କର ନମ୍ର, କୋମଳ ବ୍ୟବହାର ଆମକୁ ଆଚମ୍ୱିତ କରିଥିଲା ।

ପୁଣି ରଥଟଣା ମନଭରି ଉପଭୋଗ କଲୁ । ଏହାପରେ ମହାରାଜାଙ୍କ ସହ ଦ୍ୱିପ୍ରହରର ମଧ୍ୟାହ୍ନ ଭୋଜନ ବହୁ ଆଡ଼ମ୍ବର ସହକାରେ ଶେଷ ହେଲା । ବିଭିନ୍ନ ସୁସ୍ୱାଦୁ ଅନ୍ନ ବ୍ୟଞ୍ଜନରେ ଆମକୁ ଆପ୍ୟାୟିତ କରାଗଲା । ସବୁକିଛି ମୋତେ ସ୍ୱପ୍ନଭଳି ଲାଗୁଥାଏ । ମନେ ମନେ ଜଗନ୍ନାଥଙ୍କୁ କୋଟି କୋଟି ଧନ୍ୟବାଦ ଦେଉଥାଏ । ଶେଷରେ ଆଉ ଗୋଟିଏ ମନୋକାମନା ବାକି ରହି ଯାଇଥିଲା ! ରଥ ଉପରେ ଅତି ନିକଟରୁ ପ୍ରଭୁଙ୍କୁ ଥରୁଟିଏ ଦେଖିଥା'ନ୍ତି ! ଏକଥା ଆଉ ମନ ଭିତରେ ଲୁଚାଇ ରଖିପାରିଲି ନାହିଁ, ମହାରାଜାଙ୍କୁ କହିଦେଲି । ସେ ଦୁଃଖ କଲେ । କହିଲେ, 'ଆଗରୁ କହିଥିଲେ, ଛେରା ପହଁରା ବେଳେ ମୋ ସହିତ ଯାଇ ପାଖରୁ ଦର୍ଶନ କରିଥା'ନ୍ତେ । ହଉ ଦୁଃଖ କରନ୍ତୁ ନାହିଁ, ପ୍ରଭୁଙ୍କର କୃପା ହେଲେ ଆଉ ଥରେ ନିଶ୍ଚୟ ଦର୍ଶନ ହେବ ।' କିନ୍ତୁ ତାଙ୍କ କୃପାରୁ ଯେତିକି ମିଳିଲା, ଏଇତ ମୋର କେତେ ଜନ୍ମର ପୁଣ୍ୟ ଫଳ । ରଥଯାତ୍ରା ସମୟରେ ରାଜାଙ୍କର ଅତିଥି ହୋଇ, ରାଜନଅରରୁ ରଥଯାତ୍ରା ଦର୍ଶନ କରିବା କେତେଜଣଙ୍କ ଭାଗ୍ୟରେ ଥାଏ ? ଏସବୁ ସେଇ ପରମ କାରୁଣିକଙ୍କ କରୁଣାରୁ ସମ୍ଭବ ହେଲା । ମନୁଆ ଠାକୁର, ଭକ୍ତବାଞ୍ଛା ପୂର୍ଣ୍ଣକାରୀ ଦିନେ ନା ଦିନେ ଅବଶ୍ୟ ଭକ୍ତର କାମନା ପୂରଣ କରନ୍ତି । ଏହା ମୋର ଦୃଢ଼ ବିଶ୍ୱାସ । ପ୍ରଭୁ ସମସ୍ତଙ୍କର ମଙ୍ଗଳ କରନ୍ତୁ ।

ଗ୍ରୀଡ୍‌କୋ କଲୋନୀ, ୟୁନିଟ୍ - ୯
ଭୁବନେଶ୍ୱର - ୭୫୧୦୨୨
ଭ୍ରାମ୍ୟଭାଷ : ୯୪୩୮୯୦୭୨୦୦



# ଶ୍ରୀଜଗନ୍ନାଥାନୁଭୂତି

## ଡ. ଚାଇନା ପ୍ରଧାନ

ଅନନ୍ତ କୋଟି ବିଶ୍ୱ ବ୍ରହ୍ମାଣ୍ଡର ସର୍ବମୟ କର୍ତ୍ତା ଶେଷହୀନ ଗୁଣ, କୀର୍ତ୍ତି ତଥା ମହିମାର ଅଧୀଶ୍ୱର ବିଶ୍ୱବିଦିତ, ବିଶ୍ୱପୂଜିତ ଓ ବିଶ୍ୱବନ୍ଦିତ ଜଗତର ନାଥ ପ୍ରଭୁ ଶ୍ରୀଜଗନ୍ନାଥ କେବଳ ଉତ୍କଳ କାହିଁକି ସମଗ୍ର ବିଶ୍ୱର ପରମ ଆରାଧ୍ୟ ଦେବାଧିପତି ଭାବେ କାଳେ କାଳେ ପୂଜା ପାଇ ଆସିଛନ୍ତି ଓ ଆସୁଛନ୍ତି ମଧ୍ୟ । ସେ ହିଁ ଇଚ୍ଛାମୟ, ଲୀଳାମୟ, ଭାବମୟ ଓ ରହସ୍ୟମୟ ଠାକୁର ଭାବେ ନିଜର କାୟା; ଛାୟା, ମାୟା ତଥା ଜ୍ୟୋତିକୁ ବିସ୍ତାର କରି କୋଟି ଭକ୍ତ ହୃଦୟର ମଉଡ଼ମଣି ଭାବେ ନିଜର ଶ୍ରେଷ୍ଠତ୍ୱକୁ ପ୍ରତିପାଦନ କରିଛନ୍ତି । ସେ ହିଁ ଭକ୍ତର ଭାବରେ, ପ୍ରେମରେ ଓ ପୂଜାରେ ବନ୍ଧା ହୋଇଛନ୍ତି । କାରଣ ସେ ହେଉଛନ୍ତି ଭକ୍ତାଧୀନ ଭଗବାନ ସ୍ୱୟଂ ପରମବ୍ରହ୍ମ । ସେ ଯଥା ସମୟରେ ଭକ୍ତର ଦୁଃଖ, କ୍ଳେଶ ତଥା ଯନ୍ତ୍ରଣାକୁ ହରଣ କରନ୍ତି । ସେ ଅଶେଷ ସୁଖ, ଶାନ୍ତି ଓ ମୁକ୍ତି ପ୍ରଦାନ କରନ୍ତି । ଏପରିକି ପ୍ରୟୋଜନ ହେଲେ ପ୍ରଭୁ ଶ୍ରୀଜଗନ୍ନାଥ ଭକ୍ତର ରକ୍ଷଣ ନିମନ୍ତେ ସୁଦର୍ଶନ ଚକ୍ର ମଧ୍ୟ ଧାରଣ କରନ୍ତି । ବାସ୍ତବରେ ନୀଳାଦ୍ରୀଶ ଭକ୍ତ ଗଣ୍ଡିଧନ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଅସୀମ କରୁଣା ଓ ଅବର୍ଣ୍ଣନୀୟ ମହିମାର ତୁଳନା ନାହିଁ । ପ୍ରକୃତରେ କହିବାକୁ ଗଲେ ବିଶ୍ୱର ସମସ୍ତ ଆଧ୍ୟାତ୍ମିକ ଚର୍ଚ୍ଚା ଓ ସର୍ବଶାସ୍ତ୍ରର ଉପମା ପ୍ରଭୁଙ୍କ କରୁଣା ଓ ମହିମା ବର୍ଣ୍ଣନା ନିକଟରେ ନିଅଣ୍ଟ ପଡ଼ିବ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ବ୍ରହ୍ମାଣ୍ଡ ଠାକୁର ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଏ ଅକିଞ୍ଚନର ଅନେକ ଅନୁଭୂତି ରହିଥିଲେ ମଧ୍ୟ ଏଠାରେ ମାତ୍ର ଦୁଇଗୋଟି ଅନୁଭୂତି ଉପସ୍ଥାପନ କରାଯାଇଅଛି । ମୋର ଜନ୍ମଭୂମି ସାକ୍ଷୀଗୋପାଳ ଅନ୍ତର୍ଗତ ଗବକୁଣ୍ଡର ହରିପୁର ଗ୍ରାମ ହୋଇଥିଲେ ମଧ୍ୟ ଦୀର୍ଘ ଦିନର କର୍ମଭୂମି ହିଁ ଜଗତସିଂହପୁରର ନାଉଗାଁ ଅଟେ । ଏହି କର୍ମଭୂମିସ୍ଥିତ ବିଶ୍ୱ ସନାତନ ଯୁବସେବା ସଂଘ ଉଦ୍ୟମରେ ତିହୁଡ଼ା ବାଲିସାହିର ପ୍ରଭୁ ଶ୍ରୀ ଦକ୍ଷିଣେଶ୍ୱର ମହାଦେବଙ୍କ କ୍ଷେତ୍ରରେ ଏବେ (୨୦୧୪) ଶ୍ରୀ ପତିତପାବନ ଜୀଉ ମନ୍ଦିରରେ ପ୍ରଭୁ ପ୍ରତିଷ୍ଠା ହୋଇସାରିଛନ୍ତି, ଯାହାକି 'ଏହି ପବିତ୍ର କ୍ଷେତ୍ରକୁ ହରି-ହରଙ୍କର ଏକ ମିଳନ କ୍ଷେତ୍ରରେ ପରିଣତ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ୨୦୧୨ ମସିହାର ଘଟଣା । ସେହିବର୍ଷ ଏହି ସୁଦୃଶ୍ୟ ସୁରମ୍ୟ ମନ୍ଦିରର ରତ୍ନମୁଦ କରାଯିବାର ଯୋଗାଡ଼ ଚାଲିଲା । ଏହି ପବିତ୍ର କାର୍ଯ୍ୟ ଧାର୍ଯ୍ୟ ଦିବସର ଚାରି ପାଞ୍ଚଦିନ ପୂର୍ବର କଥା । ଆମେ ମାତ୍ର ତିନିଜଣ କର୍ମକର୍ତ୍ତା ସକାଳ ସାଢ଼େ ସାତଟା ବେଳେ ନାଉଗାଁ ବଜାରରେ ଚା'ପର୍ବ ସାରି ଏହି ଶୁଭକାର୍ଯ୍ୟ କଥା ଆଲୋଚନା କରୁଥିଲୁ । ହଠାତ୍ ମୋର ମନେ ପଡ଼ିଗଲା ଏବଂ

ମୁଁ କହିଲି, 'ଭାଇମାନେ, ଧାନାଦି ଶସ୍ୟ, ଅଷ୍ଟଧାତୁ ଏବଂ ପୂଜାଦ୍ରବ୍ୟ ସବୁ ତ ଯୋଗାଡ଼ ଚାଲିଛି, ହେଲେ ନୂଆ ଗଉଣି ଆଉ ବେତୁଲି ନହେଲେ ଏଡ଼େ ବଡ଼ ଶୁଭକାର୍ଯ୍ୟ କିପରି ଆରମ୍ଭ ହେବ ?' ଏହାଶୁଣି ଜଣେ ବନ୍ଧୁ କହିଲେ, 'ପୁରୁଣା ଗଉଣି, ବେତୁଲିରେ ଚଳିଯିବନି, ଆଉ ତ ସମୟ କମ୍ ରହିଲା । ତା'ଛଡ଼ା ଆଜିକାଲି ଏ ଜିନିଷ ମିଳିବା କଷ୍ଟ ମନେ ହେଉଛି ।' ଏହାଶୁଣି ଧୀର ସ୍ୱରରେ କହିଲି, 'ହଉ... ପ୍ରଭୁ ଜଗନ୍ନାଥଙ୍କ ଇଛା, ତାଙ୍କ କାମ ସିଏ ବୁଝିବେ ।' କେଇଟା ମୁହୂର୍ତ୍ତ ପରେ ପୁଣି ରହୃମୁଦ ସଂପର୍କରେ ଆଲୋଚନା କଲୁ । ମାତ୍ର ତିନି ଚାରି ମିନିଟ୍ ଯାଇଛି କି ନାହିଁ ପ୍ରଭୁ ଶ୍ରୀଜଗନ୍ନାଥ ନିଜର କୃପା ତଥା ମହିମା ପ୍ରକଟ କରିବାରେ ଟିକିଏ ବି ବିଳମ୍ବ କଲେ ନାହିଁ । କରନ୍ତେ ବା କିପରି ? ସେ ହିଁ ତ ଭକ୍ତର ଅତି ଆପଣାର । ସେ ହିଁ ତ ଭକ୍ତର ଅଭିଳାଷ ପୂର୍ଣ୍ଣ କରିଥାଆନ୍ତି । ସତକୁ ସତ ଜଣେ ଗଉଣି ଓ ବେତୁଲି ବିକାଳୀ ଆମ ପାଖରେ ପହଞ୍ଚିଗଲା । ସାଇକେଲ୍‌ରେ କେତୋଟି ଗଉଣି ଆଉ ବେତୁଲି ଝୁଲୁଥାଏ । ସତେ ଯେମିତି ଶ୍ରୀଜଗନ୍ନାଥ ତାକୁ ଆମ ନିକଟକୁ ପଠାଇଥିଲେ । ଆମ୍ଭେମାନେ କାଳବିଳମ୍ବ ନ କରି ଗଉଣି ଓ ବେତୁଲି କିଣିଲୁ । ଏହାପରେ ପୂର୍ବ ନିର୍ଦ୍ଧାରିତ ଦିବସରେ ସଂଗଠନର ଉପଦେଷ୍ଟା, ସଭାପତି, ସମସ୍ତ କର୍ମକର୍ତ୍ତା, ସାଧୁସନ୍ଥ ସର୍ବୋପରି ବହୁ ସଂଖ୍ୟକ ଭକ୍ତ ତଥା ଶ୍ରଦ୍ଧାଳୁଙ୍କ ଉପସ୍ଥିତିରେ ଏକ ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ଏହି ଶୁଭକାର୍ଯ୍ୟ ବିନା ବାଧାରେ ସଂପାଦିତ ହେଲା ଯାହାକି ଏକ ଅମୃତ ଅନୁଭବ ।

ଆଉ ଏକ ଦିବ୍ୟାନୁଭୂତିର କଥା । ମୋ ପିତୃଦେବ ଦୁର୍ଯ୍ୟୋଧନ ପ୍ରଧାନଙ୍କ ଶ୍ରାଦ୍ଧ ଦିବସ ଚୈତ୍ର ମାସ କୃଷ୍ଣପକ୍ଷ ପଞ୍ଚମୀ ତିଥିରେ ପଡୁଥିବାରୁ ମୁଁ ଗାଆଁକୁ ଯାଇଥିଲି । ଦିନ କେଇଟା ପୂର୍ବରୁ ଅବଢ଼ା ଗଣ୍ଡେ ଖାଇବାକୁ ଭାରି ଇଚ୍ଛା ହେଉଥିଲା । ସଂଯୋଗବଶତଃ ତା ୯.୩.୨୦୧୫ ରିଖରେ ଗାଆଁର ଜଣେ ବଡ଼ ବୋଉଙ୍କର ଶୁଦ୍ଧିଘର ଏକାଦଶାହ ପଡ଼ିଲା । ଆର୍ଥିକ ଅଭାବ ଦୃଷ୍ଟିରୁ କେବଳ ବ୍ରାହ୍ମଣମାନଙ୍କ ପତ୍ରରେ ମହାପ୍ରସାଦ ଲଗାଇବା ଉଦ୍ଦେଶ୍ୟରେ ଅବଢ଼ା, ଡାଲି ଓ ବେସର (ବଡ଼ କୁଡୁଆ ନୁହେଁ) ଅଣାଯାଇଥିଲା । ବ୍ରାହ୍ମଣ ଭୋଜନ ସରିଲା ପରେ ଗାଉଁଲି ଭୋଜନ ଆରମ୍ଭର ବ୍ୟବସ୍ଥା ହେଲା । ସେତିକିବେଳେ ମୁଁ ଗାଆଁ ଲୋକଙ୍କ ସହ ଖାଇବା ନିମନ୍ତେ ଉଦ୍ୟତ ହେଲା ବେଳେ ଆମ ଗାଁ ଲୋକ ହିସାବରେ ମାମୁଁ (ମଧୁ ମାମୁଁ) ହାତ ଧରି ପିଣ୍ଡାକୁ ନେଇଗଲେ । ସେ ସାଙ୍ଗେ ସାଙ୍ଗେ ଆସନ, ପତ୍ର ଓ ପାଣି ଦେଇ କହିଲେ, 'ବାପା ଚିନୁ, ଅବଢ଼ା ଦେଉଛି ।' ସେ ମନ ଭରି ଅବଢ଼ା, ଡାଲି, ବେସର ପରଷିଲେ । ମୁଁ ସେଦିନ ଆକଣ୍ଠ ଭୋଜନ କରି ମନେ ମନେ ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପ୍ରଣାମ କରୁଥିଲି । ମନରେ ପ୍ରଶ୍ନ ଆସେ, ବ୍ରାହ୍ମଣ ଭୋଜନ ପାଇଁ ଅଳ୍ପ ଅବଢ଼ା, ଡାଲି ଓ ବେସର ଅଣାଯାଇଥିଲେ ମଧ୍ୟ ଏଥିରୁ

ଏତେ ବଳିଲା କେମିତି ? ଯଦି ବଳିଲା ଅନ୍ୟ ଲୋକ ବା ବନ୍ଧୁ ବାନ୍ଧବଙ୍କ ହାବୁଡ଼ରେ ପଡ଼ିଲା ନାହିଁ କାହିଁକି ? ତା'ଛଡ଼ା ମଧୁ ମାମୁଁ ଗୃହକର୍ତ୍ତା ନୁହନ୍ତି କି ତାଙ୍କ ଘରର ମଧ କେହି ନୁହନ୍ତି । ଅନ୍ୟ ପକ୍ଷରେ ମୁଁ ଗାଆଁ ଲୋକଙ୍କ ସହ ବସି ଯାଇଥିଲେ, ଭୋଜନରେ ବସିଯାଇଥାଆନ୍ତି । ଏହି ଖାଇବା ଗହଳି ମଧ୍ୟରେ ମୋତେ ଅବଢ଼ା ଦେବା କଥା ମଧୁ ମାମୁଁଙ୍କ ମୁଣ୍ଡରେ ଆସିଲା କେମିତି ? ଏହି ସମସ୍ତ କଥା ଭାବିଲା ବେଳେ ମନରେ ଆସେ, ପ୍ରଭୁ ଶ୍ରୀଜଗନ୍ନାଥ ମୋ ଅବଢ଼ା ଖାଇବାର ଅଭିଳାଷକୁ ପୂର୍ଣ୍ଣ କଲେ । ଏକଥା କହିବା ବାହୁଲ୍ୟ ଯେ ଏ ଅକିଞ୍ଚନ ଯେତେବେଳେ ପ୍ରଭୁଙ୍କର ମହାପ୍ରସାଦ ପାଇବାକୁ ଅତି ଇଚ୍ଛା କରିଛି ସେତେବେଳେ ଶ୍ରୀଜଗନ୍ନାଥ ମୋର ଇଚ୍ଛା ପୂର୍ଣ୍ଣ କରି ମୋତେ ଧନ୍ୟ କରିଛନ୍ତି । ଏହା ହିଁ ତାଙ୍କରି ଲୀଳା ତଥା ମହିମା ବୋଲି କୁହାଯିବାର ଯଥାର୍ଥତା ରହିଛି । ବାସ୍ତବରେ ଏହାହିଁ ମୋ ଜୀବନର ଗୋଟିଏ ଗୋଟିଏ ଅମୃତ ଅନୁଭବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।

**ଶିକ୍ଷା ବିଭାଗ ମୁଖ୍ୟ, ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ**
**ନାଉଗାଁ ହାଟ, ଜଗତସିଂହପୁର-୧୩**
**ଭ୍ରାମ୍ୟଭାଷ : ୯୪୩୮୬୧୬୬୭୭**

◉ ◉

# ବିପଦର ବନ୍ଧୁ

## ଡ. ରତିକାନ୍ତ ବେହେରା

'ବଡ଼ ଠାକୁର ହେ ତୁମ୍ଭରି ମହିମା ତିନିପୁରେ ବ୍ୟାପିଥାଉ
ତୁମ୍ଭ ନାମ ଗାଇ ଯୁଗେ ଯୁଗେ ଏଇ ଜଗତ ଉଦ୍ଧାର ହେଉ ।
କେମିତି ବର୍ଣ୍ଣିବ ଏଇ ଅକିଞ୍ଚନ ତୁମ୍ଭର କରୁଣା ଗାଥା
ଏ ଭବସାଗରୁ ଉଦ୍ଧାରିବ ପ୍ରଭୁ ଏତିକି ମାତର ବ୍ୟଥା ॥

ତୋ ମହିମା ଅପାର, ତୋ କରୁଣା ଅପାର ପ୍ରଭୁ ! ତୋର ଦର୍ଶନରେ ମନ ପୂରିଯାଏ । ତୋ ଚିନ୍ତନରେ ମନର ଦୁଃଖ ରୂପକ କୀଟ ଅଗ୍ନିରେ ପତଙ୍ଗ ପରି ଧ୍ୱଂସ ହୋଇଯାଏ । ତୋ ଗୁଣଗାନରେ ଅନ୍ତର ହୁଏ ପୁଲକିତ । ତୋ କଥା ଭାବିଦେଲେ ଆନନ୍ଦରେ ଗାଧୋଇପଡ଼େ ମୁଁ ।

ଖୁବ୍ ନିବିଡ଼ ଭାବରେ ଜୀବନରେ ଗୋଟିଏ କଥା ମୁଁ ଅନୁଭବ କରିଛି, ଗୋଟିଏ ଗୋଟିଏ ଜଟିଳ ପରିସ୍ଥିତିରେ ଏ ସ୍ୱାର୍ଥାନ୍ୱେଷୀ ସମାଜ ବାରମ୍ବାର ମୋତେ ଯେଉଁ ଦୁଃଖ ଓ ଯନ୍ତ୍ରଣା ଦେଇଛି, ସେଥିରୁ ତୁମେ ହିଁ ମୋତେ ମୁକୁଳେଇ ଆଣିଛ । ସାଂଘାତିକ ବ୍ୟାଧିରୁ ମଧ୍ୟ ଆରୋଗ୍ୟ ଲଭିଛି ତୁମରି ଦୟାରୁ । ରାତ୍ରିରେ ନିଦ୍ରାଯାଇଛି ତୁମକୁ ସ୍ମରଣ କରି । ଶୟନେ ସପନେ ଜାଗରଣରେ ବି ତୁମ କଥା ଭାବି ଭାବି ଅଭିଭୂତ ହୋଇପଡ଼ିଛି । ଦୁଃଖର ପାହାଡ଼ ଗୁଡ଼ିକୁ ଫୁଲ ପରି ହାଲୁକା କରିଦେଇଛ । କେଉଁଆଡ଼େ ଉଡ଼େଇ ନେଇଛ ଜୀବନର ସବୁ ଯାତନା ଓ ଯନ୍ତ୍ରଣା । ଶୁଖେଇ ଦେଇଛ ଆଖିର ଲୁହ ।

କେମିତି କେଜାଣି, କେବେ ମୁଁ ମୋ ଅଲକ୍ଷ୍ୟରେ ବୋଧହୁଏ ତୁମ ପାଖରେ କାମନା କରିଥିବି କବିଟିଏ ହେବା ପାଇଁ କି ଲେଖକଟିଏ । ହେଲେ କର୍ମମୟ ଜୀବନର ବ୍ୟସ୍ତତା ଭିତରେ, ସାଂସାରିକ ଅଭାବ ଓ ନାନାଦି ଜଞ୍ଜାଳ ଭିତରେ ସାରସ୍ୱତ ସାଧନା କରିବାର ଅବକାଶ ତ ଆଦୌ ନଥିଲା । ତଥାପି ସେହି ବ୍ୟସ୍ତତାର ଜଞ୍ଜାଳ ଭିତରେ ଯେତେବେଳେ ବି ଟିକେ ଅବକାଶ ଦେଇଥିଲ, ସେତେବେଳେ ତୁମକୁ ସ୍ମରଣ କରି ଭାବାବିଷ୍ଟ ଅବସ୍ଥାରେ ସପନ ଦେଖିଲାପରି କଲମ ମୂନରେ ଯାହା ବି ଲେଖିଛି, ତାହା ତୁମ ପ୍ରସାଦରୁ ଅପୂର୍ବ ସଫଳତା ମିଳିଯାଇଛି । ଯେଉଁ ପାଞ୍ଚ ଛ'ଗୋଟି ପୁସ୍ତକ ପ୍ରକାଶିତ ହୋଇଛି, ତାହା ତୁମରି କରୁଣା ପ୍ରଭୁ । ତଥାପି ନିଜକୁ ମୁଁ ଲେଖକଟିଏ ବୋଲି ମଣିନାହିଁ । ଓଡ଼ିଆ ସାରସ୍ୱତ ଭଣ୍ଡାର ଯେଉଁଠି ପୂରିଛି ହୀରା ନୀଳା ମୋତି ମାଣିକ୍ୟରେ, ପୁଣି ମହାନ ମହାନ କବି, ଲେଖକ, କଳାକାରଗଣ ଚିର ଭାସ୍ୱର ରହିଛନ୍ତି, ସେଠି ମୁଁ ନିଜକୁ ସାମାନ୍ୟ ଖଦ୍ୟୋତ ବୋଲି ମନେ କରିଛି ।

ଏମିତି ସ୍ଥିତିରେ କେମିତି ବର୍ଣ୍ଣିବି ମୁଁ ତୁମ୍ଭରି ମହିମା ? ତୁମ ମୋ ଭିତରର ଭାବକୁ କେଉଁଠି ବଖାଣିବାକୁ ପଡ଼ିବ, ଏହା ମୁଁ କେବେ ବି କଳ୍ପନା କରିନଥିଲି । କିନ୍ତୁ ଏବେ ମୁଁ ବୁଝୁଛି, ସବୁ ତୁମରି ଭିଆଣ ପ୍ରଭୁ । କେମିତି କେଜାଣି, ତୁମ ପବିତ୍ର ଧାମରୁ ତୁମର ଜଣେ ଭକ୍ତ ମୋତେ ଫୋନ କଲେ - ତୁମ ମୋ ଭିତରେ ଥିବା ସଂପର୍କ (ହୋଇଥାଉ ପଛେ ଭାବର କି ଅଭାବର) କୁ ନେଇ କଥାଟିଏ ବାଢ଼ିଦେବି ଅନୁଭୂତିର ଆର୍ଦ୍ରତାରେ କିମ୍ବା ଆବେଗର ଆବିଷ୍ଟତାରେ ।

ଫୋନ ପାଇ ତୁମ ମୁଖକୁ ଚାହିଁଲା ବେଳକୁ ଯାହା ନିର୍ଦ୍ଦେଶ ପାଇଲି, ତାକୁ ହିଁ ସମ୍ବଳ କରି ସମ୍ମତି ଦେଲି । କାହିଁକି କେଜାଣି, ମନଟା ପୂରିଗଲା ସେତେବେଳେ ଅପୂର୍ବ ଆନନ୍ଦରେ ।

ଫୋନରୁ ବିଚ୍ଛିନ୍ନ ହେଲାପରେ ବି ଆଚ୍ଛନ୍ନ ଥିଲି ପୁଲକରେ । ମୋ ମନକୁ ସେତେବେଳେ ଦୁଇଟା କଥା ଆସିଲା, ତୁମେ ସ୍ୱୟଂ ନିଜେ ମୋତେ ଫୋନ କଲ କି ! ନତୁବା ତୁମେ ସେ ପୁଣ୍ୟାତ୍ମାଙ୍କୁ ଫୋନ କରିବା ପାଇଁ ପ୍ରବର୍ତ୍ତେଇଲ କି ! ଦ୍ୱିତୀୟ ସମ୍ଭାବନାଟି ଅଧିକ ସତ୍ୟ । ତମେ ନିଶ୍ଚୟ ତାଙ୍କୁ କହିଥିବ ମୋତେ ଫୋନ କରିବାକୁ । ନହେଲେ ସେ ବା କେମିତି ଜାଣନ୍ତେ ମୋତେ ? ଓଡ଼ିଶାରେ ତଥା ଭାରତରେ କବି ଲେଖକମାନଙ୍କର ଅଭାବ ନାହିଁ । ସେଥିରେ ପୁଣି ମୋ ପରି ଅକିଞ୍ଚନକୁ ସେ ଏପରି ଏକ ମହତ୍ କାର୍ଯ୍ୟରେ ଭାଗୀଦାର କରିବାକୁ ଚାହାଁନ୍ତେ କାହିଁକି ?

ଏ କଥାର ସତ୍ୟତା ଠିକ୍ ମାସେ ପରେ ମୋତେ ମିଳିଲା । ତୁମ ସଂପର୍କରେ କିଛି ଗୋଟେ ଲେଖିବି ବୋଲି ସାହସ କୁଳଉ ନଥିଲା । ଦିନେ ସଂଧ୍ୟାରେ ତୁମକୁ ସ୍ମରଣ କରି ଲେଖିବି ବୋଲି ବସିଲି । ଭଜନ ଭଳି ଗୋଟେ ଭାବ ମୋ ଭିତରେ ଉଦ୍‌ଭାସିତ ହୋଇଗଲା । ଆବିଷ୍ଟ ଅବସ୍ଥାରେ ଚାରିଧାଡ଼ି ମାତ୍ର ମୋତେ ମିଳିଲା । ଅବଶିଷ୍ଟ ଧରି ରଖିପାରିଲି ନାହିଁ । ଆଶ୍ଚର୍ଯ୍ୟ ହେଲି, ସମଗ୍ର ଜୀବନ କାଳ ମଧ୍ୟରେ ଧାଡ଼ିଟିଏ କବିତା ପ୍ରୟାସ କରି ଲେଖିପାରି ନଥିବା ମୁଁ କିପରି ଚାରିଧାଡ଼ି ଭଜନ ଲେଖିଦେଲି ? ଦ୍ୱିତୀୟ ଆଶ୍ଚର୍ଯ୍ୟ ଥିଲା, ସେଇଦିନ ଲେଖିସାରି ମୁଁ ଫୋନ ଲଗେଇଲି ସେ ମହାଶୟଙ୍କୁ, ଲେଖାଟିକୁ କେମିତି ଏବଂ କିପରି ପଠେଇବି ବୋଲି ? ସେ ଫୋନ ଗ୍ରହଣ କଲେ, ହେଲେ ଆମ ଭିତରେ ହୋଇଥିବା ପୂର୍ବ କଥାକୁ ସେ ଭୁଲିଯାଇଛନ୍ତି ! ପୂର୍ବାପର ସଂଗତି କଲା ପରେ, ଅବଶ୍ୟ ସେ ସ୍ମରଣ କଲେ ।

ଏଣୁ ଜୀବନର ପ୍ରତିଟି କ୍ଷଣରେ, ପ୍ରତି ଘଟଣା ଓ ଦୁର୍ଘଟଣାରେ, ମୁଁ ତୁମକୁ ହିଁ ସ୍ମରଣ କରିଥାଏ । ତୁମକୁ ହିଁ ଅନୁଭବ କରିଥାଏ ମୋର ପ୍ରତିଟି ନିଃଶ୍ୱାସର ସ୍ପନ୍ଦନରେ ।

ଜୀବନର ଅନେକ ସମୟରେ, ଅନେକ ଭାବରେ ଏ ପାପୀ ଅକିଞ୍ଚନକୁ ସହାୟ ହୋଇଛ ପ୍ରଭୁ ! ଛୋଟ ବଡ଼ ଅନେକ ବିପଦରୁ ଅସମ୍ଭବ ଭାବେ ବର୍ତ୍ତିଯାଇଛି ତୁମ କରୁଣାରୁ । ତୁମ ଅନୁକମ୍ପାରେ ମୁଁ ତ ଏ ଯାଏଁ ବଞ୍ଚିଛି ବୋଲି ମୋର ଅନୁଭବ । ନିହାତି ଦୁଃସ୍ଥିତି ଭିତରୁ ମୋତେ ଆଣି ଉତ୍ତମ ସ୍ଥିତି ପ୍ରଦାନ କରିଛ । ଯାହା ମାଗିଛି ମୋ ଆଞ୍ଜୁଳା ଭରି ଦେଇଛ । ଯାହା ନ ମାଗିଛି, ତାକୁ ବି ଭରଣା କରିଛ । କେମିତି ତୁମକୁ ଆଡ଼େଇ ଯାଆନ୍ତି ! ସେଥିପାଇଁ ମୋର ପ୍ରତିଟି ଗଳ୍ପ ଉପନ୍ୟାସରେ ତୁମର ହିଁ ବର୍ଣ୍ଣନା ରହିଛି ।

ଗୋଟେ କଥା କ'ଣ ଜାଣିଛୁ କାଳିଆ ! କଥାଟିକୁ କହିବି କି ନାହିଁ ବୋଲି ଭାବୁଛି । ତଥାପି କହୁଛି ଶୁଣ୍ । ଧରାଯାଉ ମୁଁ ଗୋଟେ ନାହିଁ ନଥିବା ବିପଦରେ ଆଣ୍ଠେଇ ପଡ଼ି ତୋତେ ଡାକିଛି । ଡାକିବା ଭିତରେ ନିଉଛାଳି ହୋଇଛି, ମାଗୁଣି କରିଛି । 'କାଳିଆରେ ! ମୋତେ ଟିକେ ଏଇ ବିପଦରୁ ଉଦ୍ଧାର କରି ଦେ । ସତ କହୁଛି, ଏହାପରେ ତୋତେ ଆଉ କିଛି ବି ମାଗିବି ନାହିଁ । ରାଣ ପକଉଛି, ତୋତେ ଆଉ କିଛି ମାଗି ଅସ୍ଥିର କରିବି ନାହିଁ । ତୋର ଅନେକ ଲୋକଙ୍କୁ ଅନେକ ବିପଦ ଆପଦରୁ ତ ଉଦ୍ଧାର କରିବାର ଅଛି । ସେଥିରେ ତୁ ସବୁବେଳେ ବ୍ୟସ୍ତ ରହୁଛୁ । ଭକ୍ତ, ଗୁହାରିଆ, ସେବକ ଓ ଶ୍ରଦ୍ଧାଳୁମାନଙ୍କର କଥା ବୁଝିବା ପାଇଁ ତୋ ଆଖିରେ ପଲକ ପଡୁନାହିଁ । ଏଣୁ ଏଇ ଥରକ ଟିକେ କରୁଣା କରିଥା । ଯା'ପରେ ତୋତେ ଆଉ କିଛି ଯାଚଞ୍ଚା କରି ଅସ୍ଥିର କରିବି ନାହିଁ ।'

ସତକୁ ସତ, ତୁ ମୋତେ ସେଥିରୁ ଛୁ' ମନ୍ତର କରି ମୁକୁଳେଇ ଆଣିଛୁ । ମୁଁ ବର୍ତ୍ତିଯାଇଛି । ତା'ପରେ ଯେଉଁ କଥାକୁ ସେଇକଥା । ପୁଣି ଗୋଟେ ସମସ୍ୟା, ପୁଣି ଗୋଟେ ଦୁଃଖ, ପୁଣି ଗୋଟେ ସଙ୍କଟ । ଏ ସଂପର୍କରେ ମୁଁ ଗୋଟେ କଥା ଭାବୁଥିଲି । ବୋଧହୁଏ ମଣିଷମାନଙ୍କ ପାଇଁ ଅଲକ୍ଷ୍ୟରେ ଦୁଃଖ କଷ୍ଟଗୁଡ଼ିକ ସଜେଇ ଦେଇଥାଉ । ଭାବିଥାଉ, ଲୋକେ ବିପଦରେ ପଡ଼ିବେ, ଆଉ ସେଥିରୁ ମୁକୁଳିବା ପାଇଁ ତୋତେ ଗୁହାରି କରିବେ । ତୁ ତାଙ୍କୁ ମୁକ୍ତି ପ୍ରଦାନ କରିବୁ, ସେଇ ସଙ୍କଟ ଓ ବିପଦରୁ ଉଦ୍ଧାର କରିବୁ । ଏଥିରେ ତୋର ମହିମା ବଢ଼ିବ ।

ଏ କଥା କେବଳ ମୁଁ ନୁହେଁ, ସଚରାଚରରେ ସମସ୍ତେ ଏଇଆ ହିଁ ଭାବିଥା'ନ୍ତି । କିନ୍ତୁ ପ୍ରକୃତରେ ସେଇଆ ନୁହେଁ । ସେଦିନ ମୋର ଜଣେ ବନ୍ଧୁ ତୋତେ ଦାୟୀ କରୁଥାଏ ତା'ର ଏକ ନିଜସ୍ୱ ସଙ୍କଟ ପାଇଁ । କଥାଟା ମୋତେ ଭାରି କଷ୍ଟ ଦେଲା । କହିଲି, 'ସାଙ୍ଗ ! ଠାକୁରେ କେବେ କାହାରିକୁ ଦୁଃଖ ଦିଅନ୍ତି ନାହିଁ । ସେ ମଙ୍ଗଳମୟ । ସମସ୍ତଙ୍କର ମଙ୍ଗଳ ଚାହାନ୍ତି । କିନ୍ତୁ ମୂଢ଼ ମଣିଷ ତା'ର ଭୁଲ୍ କର୍ମ ପାଇଁ, ତ୍ରୁଟିପୂର୍ଣ୍ଣ ନିର୍ଣ୍ଣୟ କିମ୍ବା

ସିଦ୍ଧାନ୍ତ ପାଇଁ ସଙ୍କଟରେ ପଡ଼େ, ବିପଦରେ ପଡ଼ି ଘାଣ୍ଟି ହୁଏ । ସେଥିରୁ ଠାକୁରେ ଉଦ୍ଧାର କରନ୍ତି । ସେ କାହିଁକି ଦୁଃଖ ଦେବେ ? ସେ ପରା ମଙ୍ଗଳକର୍ତ୍ତା, ମୁକ୍ତିଦାତା ।'

କଥାଟା ତାଙ୍କ ମନକୁ ପାଇଲା । ହୃଦୟଙ୍ଗମ କଲେ, ନିଜ ନିଜର ବିପଦ ପାଇଁ ଠାକୁରଙ୍କୁ ଦାୟୀ କରିବା ଉଚିତ ନୁହେଁ । ମଣିଷ ନିଜର କର୍ମଫଳ ହିଁ ଭୋଗ କରିଥାଏ ।

ସତରେ କାଳିଆ ! ଅନନ୍ତ ତୋର ମହିମା, ଅପାର ତୋର କରୁଣା ବୋଲି ଏବେ ମୁଁ ବୁଝିଲିଣି । କାହିଁକିନା, ମୋରି ଭଳି କୋଟି କୋଟି ଲୋକଙ୍କ ସମସ୍ୟା ଓ ସଙ୍କଟ ବୁଝି ସେମାନଙ୍କୁ କରୁଣା କରୁଛୁ ବୋଲି ତୁ ତ କରୁଣା ସାଗର । ତୋତେ କିଏ ବା ଏ ବିଶ୍ୱ ବ୍ରହ୍ମାଣ୍ଡରେ କଳନା କରିବ ?

ଥରେ, ଢେର ଦିନ ତଳେ ଗୋଟେ ଅସମ୍ଭବ ବିପଦରେ ପଡ଼ିଗଲି । ସମ୍ଭବତଃ ୧୯୮୯ ମସିହା ଜୁନ୍ ତେର ତାରିଖ । ପରଦିନ ପହିଲି ରଜ । ପନ୍ଦର ତାରିଖ ଥାଏ ସାଧାରଣ ନିର୍ବାଚନ । ଆମ ଘର ବାସୁଦେବପୁର ଏବଂ ମୋର ଶ୍ୱଶୁରଙ୍କ ଘର ଚାନ୍ଦବାଲି । ଆଜିକାଲି ଭଳି ସେତେବେଳେ ରାସ୍ତାଘାଟ ଏତେ ଭଲ ନଥାଏ କି ବେଶୀ ଗାଡ଼ି ମୋଟର ନଥାଏ । ଜୁନ୍ ମାସ ଦୁଇ-ତିନି ତାରିଖରୁ ଆମଘରୁ କିରଣବାଳା ପୁଅ ଝିଅଙ୍କୁ ନେଇ ଯାଇଥାଏ ଚାନ୍ଦବାଲି, ତାଙ୍କ ପିତ୍ରାଳୟ । ପୁଅ ହୋଇଥାଏ ଛଅ ବର୍ଷର ଓ ଝିଅ ଚାରି ବର୍ଷର । ମୁଁ ଜୁନ୍ ଏଗାର ତାରିଖରେ ଚାନ୍ଦବାଲି ଗଲି ସେମାନଙ୍କୁ ଧରି ଆସିବି ବୋଲି । ଉଦ୍ଦେଶ୍ୟ ଥିଲା, ପୁଅ ଝିଅ ଆମଘରେ ରଜ ମନେଇବେ ଏବଂ ପନ୍ଦର ତାରିଖରେ କିରଣବାଳା ଆମଘରେ ଭୋଟ ଦେବ । କଥା ଥିଲା, ରଜ ପୂର୍ବଦିନ ସମସ୍ତେ ଗୋଟେ ଗାଡ଼ି କରି ଫେରିବୁ ।

କିନ୍ତୁ ଶ୍ରୀମତୀ ରାଜି ହେଲେନାହିଁ । ରଜରେ ନିଜ ବାପଘରେ ରହିବାର ଆକର୍ଷଣ ବୋଧହୁଏ ତାଙ୍କୁ ଛାଡ଼ିଦେଲା ନାହିଁ । ତା'ଛଡ଼ା ତାଙ୍କ ଘରେ ମା' ଓ ଭାଇମାନେ ଅମଙ୍ଗ ଥିଲେ । ଏଣୁ ବାଧ୍ୟ ହୋଇ ରଜ ପୂର୍ବଦିନ ସଂଧ୍ୟା ପାଞ୍ଚଟାବେଳେ ତାଙ୍କ ଘରୁ ବାହାରିଲି । ଏତିକିବେଳେ ପୁଅ କାନ୍ଦିକାଟି ଉଚ୍ଛନ୍ନ ହେଲା ମୋ ସହିତ ଆସିବ ବୋଲି । ବାଧ୍ୟହୋଇ ତାକୁ ସାଙ୍ଗରେ ଧରି ବାହାରିଲି । ମୋର ମଝିଆ ଶଳା ମୋତେ ସ୍କୁଟରରେ ଆଣି ଚାନ୍ଦବାଲି ବଜାରରେ ଛାଡ଼ିଲେ । ତାଙ୍କ ଘରଠାରୁ ବଜାର ପାଖାପାଖି ପାଞ୍ଚ କିଲୋମିଟର । ପହଞ୍ଚି ଦେଖିଲି ଯେ, ସଂଧ୍ୟା ହୋଇ ଆସୁଛି । ଚାନ୍ଦବାଲିରୁ ଭଦ୍ରକକୁ ଶେଷ ବସ୍‌ଟି ଛାଡ଼ିବ । କିଛି ଆଗପଛ ବିଚାର ନକରି ପୁଅକୁ ଧରି ସେହି ବସ୍‌ରେ ବସିପଡ଼ିଲି । ସେତେବେଳକୁ ଛ'ଟା ବାଜିଲାଣି । ଭଦ୍ରକରେ ବସ୍ ପହଞ୍ଚିବ ସାଢ଼େ ଆଠଟାରେ । ମୁଁ ଆଉ ଭଦ୍ରକ ପର୍ଯ୍ୟନ୍ତ ନଯାଇ ଇଚ୍ଛାପୁର ଛକରେ ଓହ୍ଲେଇ ପଡ଼ିଲି ଆଠଟା ପନ୍ଦରରେ ।

ଭାବନା ଥିଲା, ଭୁବନେଶ୍ୱରରୁ ଢଗାକାଳିଆ ବସ୍ ବିଳମ୍ବିତ ରାତିରେ ବାସୁଦେବପୁରକୁ ଫେରେ ଏବଂ ତାହା ଆଠଟା ପଇଁଚାଳିଶରେ ଇଚ୍ଛାପୁର ଛକ ଅତିକ୍ରମ କରେ ।

ଅଧଘଣ୍ଟାଏ ସେହି ଛକରେ ପୁଅକୁ ଧରି ଅପେକ୍ଷା କଲାପରେ ଢଗାକାଳିଆ ବସ୍ ଆସିଲା । ହେଲେ ସେଠି ଅଟକିଲା ନାହିଁ । ବସ୍‌ଟିରେ ଅସମ୍ଭବ ଭିଡ଼ । ବସ୍‌ର ଛାତ ଉପରେ ମଧ୍ୟ ପାଖାପାଖି ଚାଳିଶ-ପଚାଶ ଲୋକ ବସିଥା'ନ୍ତି । ଛୋଟିଆ ଏଇ ବସ୍‌ଷ୍ଟପ୍‌ରେ ଆମେ ଚାରି ପାଞ୍ଚଜଣ ମାତ୍ର ଥିଲୁ । ଏହାପରେ ଆଉ ବସ୍ ନଥିଲା । ଟ୍ରେକରଗୁଡ଼ିକ ଇଲେକ୍‌ସନ ଡିଉଟିରେ ଚାଲିଯାଇଥିଲେ । କ୍ରମେ ରାତି ବଢ଼ିବା ସହିତ ମୋ ଭିତରେ ବଢ଼ି ଚାଲିଥିଲା ଉଦ୍‌ବେଗ । ଯେଉଁ ଦୁଇ ଚାରିଜଣ ଆମେ ଗାଡ଼ିକୁ ଅପେକ୍ଷା କରିଥିଲୁ, ମୋତେ ଛାଡ଼ିଦେଲେ ଆଉ କେହି ବାସୁଦେବପୁର ଯିବାକୁ ନଥିଲେ । ସେମାନେ ଇଚ୍ଛାପୁର ପରବର୍ତ୍ତୀ ଷ୍ଟେଜ୍ ସାବରଙ୍ଗ ପର୍ଯ୍ୟନ୍ତ ଯିବେ ବୋଲି ପଚାରି ବୁଝିଲି । ଏଠାରୁ ସାବରଙ୍ଗ କେବଳ ପାଞ୍ଚ କିଲୋମିଟର ରାସ୍ତା । ଏଣୁ ଜଣେ ଦୁଇଜଣ ଚାଲିଚାଲି ଓ ଅନ୍ୟ ଜଣେ ଜଣକର ସାଇକେଲ ପଛରେ ବସି ଚାଲିଗଲେ । ମୁଁ ଆହୁରି ଅସହାୟ ହୋଇପଡ଼ିଲି । ବାସୁଦେବପୁର ଏଠାରୁ ପଚିଶ କିଲୋମିଟର ରାସ୍ତା । ପିଲାଟାକୁ ଧରି କେମିତି ମୁଁ ଯିବି ?

ଏବେ ମୁଁ ସଂପୂର୍ଣ୍ଣ ଏକୁଟିଆ ପୁଅ ସହିତ । ଦେଖିଲି ଇଚ୍ଛାପୁର ଛକରେ ଥିବା ଦୋକାନୀମାନେ ସେମାନଙ୍କ ଦୋକାନ ବନ୍ଦ କରିବାକୁ ଲାଗିଲେ । ଗୋଟେ ବନ୍ଦ ପାନ ଦୋକାନ ସାମ୍ନା ବେଞ୍ଚରେ ଅସହାୟ ଅବସ୍ଥାରେ ବସି ରହିଲି ।

ସେତେବେଳେ ମୋ ପକେଟରେ ଆବଶ୍ୟକତାରୁ ଅଧିକ କିଛି ଟଙ୍କା ନଥାଏ । ଘରେ ପହଞ୍ଚିବା ପର୍ଯ୍ୟନ୍ତ ଯେତିକି ଦରକାର, ସେତିକି ରଖି ଅବଶିଷ୍ଟ ସ୍ତ୍ରୀଙ୍କୁ ଦେଇ ଆସିଥାଏ । ସେଇ ଟଙ୍କାରୁ ଅଳ୍ପ ଖର୍ଚ୍ଚ କରି ପୁଅକୁ ଖାଇବାକୁ ଦେଲି ଏବଂ ମୁଁ ଚାହା ପିଇଲି । କିଛି ସୁବିଧାଜନକ ବାଟ ବତେଇପାରେ ବୋଲି ଭାବି ମୁଁ ଜଳଖିଆ ଦୋକାନୀକୁ ମୋର ସଙ୍କଟ ଜଣେଇଲି । ସବୁ ଶୁଣି ସେ ତା'ର ଅସହାୟତା ପ୍ରକାଶ କଲା । ତଥାପି ଏତିକି କହିଲା ଯେ, 'ବିଳମ୍ବିତ ରାତ୍ରିରେ ଗୋଟେ ଅଧେ ମାଲବୋଝେଇ ଟ୍ରକ୍ ଭଦ୍ରକରୁ ବାସୁଦେବପୁର ଯାଏ । ଯଦି ମିଳିଯାଏ, ସେମାନଙ୍କୁ ବିନତି କଲେ ହୁଏତ ନେଇଯାଇପାରନ୍ତି ।'

କିନ୍ତୁ ଅନ୍ୟମାନଙ୍କ ଠାରୁ ଯାହା ବୁଝିଲି, ଇଲେକ୍‌ସନ ପାଇଁ ସବୁଯାକ ଟ୍ରକ୍ ବି ରିକ୍ୟୁଜିସନ ହୋଇଯାଇଛି । ଏତେ ରାତିରେ ଆଉ ଖଣ୍ଡେ ବି ଗାଡ଼ି ମୋଟର ମିଳିବା ଅସମ୍ଭବ ।

ଏ କଥା ଶୁଣି ଆହୁରି ଅସହାୟ ମଣିଲି ମୁଁ । ବିକଳ ହେଲା ପୁଅ । ତା' କ୍ଷୁଦ୍ର ବୁଦ୍ଧିରେ ଅନୁମାନ କରିନେଲା, ଏଠୁ ଆଉ ଘରକୁ ଯିବା ଆଦୌ ସମ୍ଭବ ନୁହେଁ । ପ୍ରବୋଧନା ଦେଇ ପୁଅକୁ ନେଇ ଆସିଲି ଜଳଖିଆ ଦୋକାନରୁ । ଭାବିଲି, ଦୋକାନୀକୁ ମୋର ଅସହାୟତା ଜଣେଇ କିଛି ଲାଭ ନାହିଁ । ବରଂ ପୁଅ ବେଶୀ ଥମ୍ ଥମ୍ ହୋଇଯାଉଛି । ଲେଉଟି ଆସିଲି ପୂର୍ବସ୍ଥାନକୁ, ବନ୍ଦ ପାନଦୋକାନ ସାମ୍ନା ବେଞ୍ଚକୁ ।

ବେଞ୍ଚ ଉପରେ ବସୁ ବସୁ ପୁଅ ମୋ କୋଳରେ ମୁଣ୍ଡ ରଖି ଶୋଇପଡ଼ିଲା । ପରିସ୍ଥିତି ଚକ୍ରରେ ବାପା ସଂପୂର୍ଣ୍ଣ ଅସହାୟ, ଏମିତି କିଛି ତା' ଅନୁଭବକୁ ଆସିଥିଲା ସେତେବେଳେ । ଧରି ନେଇଥିଲା, ବାପା ବୋଧହୁଏ ଏଇଠି ବସି ବସି ରାତି କାଟିଦେବେ । ଏଣୁ କ୍ଳାନ୍ତି ମେଣ୍ଟେଇବାକୁ ବାପାଙ୍କ କୋଳ ଓ ବେଞ୍ଚ ବୋଧହୁଏ ଥିଲା ତା' ପାଇଁ ବେଶ୍ ଉତ୍ତମ ବ୍ୟବସ୍ଥା ।

ରାସ୍ତା ପ୍ରାୟ ଶୁନ୍ଶାନ୍ ହୋଇ ଆସିଲା । ଆଜିକାଲି ପରି ସେତେବେଳେ ଏତେ ବାଇକ୍, ସ୍କୁଟି କିମ୍ବା କାର୍ ନଥିଲା । କାଁ ଭାଁ ଲୋକଙ୍କ ପାଖରେ ଥିଲା ସ୍କୁଟର । ପୁଣି ଏ ମଫସଲ ଅଞ୍ଚଳରେ ସେଗୁଡ଼ିକ ସାଧାରଣ ଲୋକଙ୍କ ପାଇଁ ଥିଲା ସାତସପନ । ମୋବାଇଲର ପ୍ରଶ୍ନ ହିଁ ନଥିଲା । କିଛି ସ୍ୱଚ୍ଛଳବର୍ଗ ଓ ପୋଷ୍ଟ ଅଫିସ୍‌ମାନଙ୍କରେ ଲ୍ୟାଣ୍ଡଫୋନ ବ୍ୟବସ୍ଥା ଥିଲା । ସଂପୂର୍ଣ୍ଣ ଯୋଗାଯୋଗ ବିଚ୍ଛିନ୍ନ ହୋଇ ପଡ଼ିଥିଲୁ ଆମେ ବାପ ପୁଅ ଦି'ଜଣ । ଶ୍ୱଶୁରଙ୍କ ଘରଠାରୁ ପଇଁଚାଳିଶ ଓ ଆମ ଘରଠାରୁ ପଚିଶ କିଲୋମିଟର ବ୍ୟବଧାନରେ ଏତେ ରାତିରେ ଶୂନ୍ଶାନ୍ ପାନଦୋକାନ ସାମ୍ନା ବେଞ୍ଚ ଉପରେ ବିମୂଢ଼ ଭାବେ ବସି ବସି ମୁଁ ଏକପ୍ରକାର ଜଡ଼ ପାଲଟି ଯାଇଥିଲି ।

ମଣିଷ ଯେତେବେଳେ ସଂପୂର୍ଣ୍ଣ ଅସହାୟ ହୋଇଯାଏ, ସହାୟତା ମିଳିବାର ସବୁ ମାର୍ଗ ବନ୍ଦ ହୋଇଯାଏ, ସେତେବେଳେ ଈଶ୍ୱର ତାକୁ ସହାୟ ହୋଇଥା'ନ୍ତି । ରାତି ଦଶଟା ଅତିକ୍ରମ କରିଗଲାଣି, ଛକରେ ଯେଉଁ ପାଞ୍ଚ ସାତଗୋଟି ଦୋକାନୀ, ସଭିଏଁ ସେମାନଙ୍କ ଦୋକାନ ବନ୍ଦ କରି ଫେରିଗଲେଣି କେତେବେଳୁ । ଅଦୂରରେ କେବଳ ମାତ୍ର ଗୋଟିଏ ପାନ ଦୋକାନ ଖୋଲା ରହିଛି ।

'କଳି ଯୁଗେ ଜଗନ୍ନାଥ' । କେଉଁଠୁ ଶୁଣିଥିବା ଏଇ ପ୍ରବଚନର ଅଂଶଟି ମୋ ମାନସପଟରେ ସେତେବେଳେ ଝଲସି ଉଠିଲା । ମନେ ମନେ ମୁଁ କାଳିଆକୁ ସ୍ମରଣ କଲି ଏବଂ ସ୍ୱଭାବତଃ ମୋ ହାତଯୋଡ଼ିକ ମିଶିଯାଇ ମୁଣ୍ଡରେ ଲାଗିଲେ । ମନେ ମନେ ମୁଁ ମୋର ବିନତି ଜଣେଇଲି - 'ତୁ ପରା ଘୋର ବନସ୍ତରେ ମୃଗୁଣୀକୁ ଉଦ୍ଧାର କରିଥିଲୁ, କୁମ୍ଭୀର କବଳରୁ ଗଜକୁ ? ମୋତେ ମୋର ଏହି ଅସହାୟତାରେ ଟିକେ ସହାୟ ହୁଅନ୍ତନି ପ୍ରଭୁ ? ଅବୋଧ ଶିଶୁଟିକୁ ନେଇ ଘରେ ଛାଡ଼ନ୍ତନି ?'

ପ୍ରାୟ ପନ୍ଦର ମିନିଟ୍ ପରେ ମୋ ପାଖରେ ଜଣେ ଲୋକ (ମୋର ବୟସର) ଭେସ୍‌ପା ସ୍କୁଟରରେ ଆସି ବ୍ରେକ୍ ମାରିଲେ । ଷ୍ଟାର୍ଟ ବନ୍ଦ କରି ହଠାତ୍ ପଚାରିଦେଲେ - 'ଏତେ ରାତିରେ ଆପଣ ଏକୁଟିଆ ପିଲାଟାକୁ ନେଇ ବସିଛନ୍ତି ! କୁଆଡ଼େ ଯିବେ କି ?'

'ବାସୁଦେବପୁର ।' ମୋ ସ୍ୱରରେ ବିକଳତା ସ୍ପଷ୍ଟ ବାରି ହେଉଥିଲା ।

ମୋ ମୁଖ ଓ ମୁହଁର ଭାଷାରୁ ଲୋକଟା ସବୁ କଥା ବୁଝିଗଲା । ଆସନ୍ତାକାଲି ରଜ ଓ ପରଦିନ ଇଲେକ୍‌ସନ ଯୋଗୁଁ ଗାଡ଼ି ମୋଟର ନ ପାଇ ରାସ୍ତାରେ ଅଟକିଯାଇଛି ଅସହାୟ ଭାବେ । ମୁହଁରେ ତା'ର ସ୍ପଷ୍ଟ ହୋଇ ଆସୁଥିଲା ଅନୁକମ୍ପାର ମୁଦ୍ରା ।

'ମୁଁ ଆପଣଙ୍କୁ ବାସୁଦେବପୁର ନୁହେଁ, ଆପଣଙ୍କ ଘରେ ଛାଡ଼ି ଦେଇଆସିବି । ଏତେ ରାତିରେ ବାସୁଦେବପୁର ବଜାରରେ ସାପ ବେଙ୍ଗ ବ୍ୟତୀତ ଆଉ କେହି ନଥିବେ । ଆପଣଙ୍କ ଘର ସେଠୁ କେତେଦୂର ?'

କେଡ଼େ ସଦୟ ସୁନ୍ଦର ଅଭିବ୍ୟକ୍ତି । ଅଭିଭୂତ ହୋଇଗଲି ମୁଁ ତାଙ୍କ କଥା ଶୁଣି । ଆବେଗରେ ଛଳ ଛଳ ହୋଇଗଲା ମୋର ସମଗ୍ର ସତ୍ତା ।

'ମନ୍ଦାରୀ । ବାସୁଦେବପୁରଠାରୁ ମାତ୍ର ଦୁଇ କିଲୋମିଟର ପୂର୍ବକୁ' - ତରତରରେ ମୁଁ ତାଙ୍କୁ କହିଲି ।

'ଠିକ୍ ଅଛି । ମୋ ଶ୍ୱଶୁର ଖାଇସାରି ବସିଛନ୍ତି । ତାଙ୍କର ପାନ ସରିଯାଇଛି । ଦୁଇଟି ପାନ ଦରକାର । ତାଙ୍କୁ ମୁଁ ପାନ ଦେଇ ଏଇ ସଙ୍ଗେ ସଙ୍ଗେ ଫେରିଆସୁଛି । ଆପଣ ପୁଅକୁ ଉଠେଇ ଦିଅନ୍ତୁ ।' ଆଗ୍ରହରେ ଅପରିଚିତ ଲୋକ ଜଣକ ମୋତେ କହିଲେ ।

ସ୍ୱଭାବତଃ ମୁଁ ଜଣେ ସରଳ ବିଶ୍ୱାସୀ ଲୋକ । ଏଣୁ ତାଙ୍କୁ ମୁଁ ବିଶ୍ୱାସ କଲି । ମୋ ଭିତରେ ମୋ ବିଶ୍ୱାସକୁ ଦୃଢ଼ କରିବା ପାଇଁ ପୁନରାୟ ସେ କହିଲେ - 'ମୋ ଘର ଏଇ ପାଖରେ । ମୋତେ ମାତ୍ର ପାଞ୍ଚ ମିନିଟ୍ ହିଁ ଲାଗିବ । ଆପଣ ଏଇଠି ଥିବେ ।'

ଏତକ କହି ସେ ଖୋଲାଥିବା ଏକମାତ୍ର ପାନ ଦୋକାନ ପାଖକୁ ଗଲେ ଏବଂ ପାନଧରି ଅଚାନକ ଉଭାନ ହୋଇଗଲେ ।

ମୁଁ ତାଙ୍କୁ ପ୍ରତୀକ୍ଷା କଲି ଏବଂ ମୋତେ ଲାଗୁଥିଲା ସେ ନିଶ୍ଚୟ ଫେରିବେ ଆମକୁ ସାହାଯ୍ୟ କରିବା ପାଇଁ ଏ ଦୁଃସ୍ଥିତିରୁ ।

ସତକୁ ସତ ମୋ ବିଶ୍ୱାସକୁ ଆହୁରି ଦୃଢ଼ୀଭୂତ କରି ଲୋକଟି ପାଞ୍ଚ ମିନିଟ୍ ପରେ ଫେରିଆସିଲେ ଆମ ପାଖକୁ । ମୁଁ କୃତ-କୃତ୍ୟ ହୋଇପଡ଼ିଲି ତାଙ୍କ ନିକଟରେ । କୃତଜ୍ଞତାରେ ମୋ ମୁଣ୍ଡ ନଇଁ ଯାଉଥିଲା ।

ମୁଁ ପୁଣି ଥରେ ନୀରବରେ ପ୍ରଣାମ କଲି କାଳିଆକୁ । ଏ ନିଶ୍ଚୟ ତାଙ୍କର ପରୋକ୍ଷ କରୁଣା ବୋଲି ଅନୁଭବ କଲି । ବିନା କୌଣସି ଦ୍ୱିଧାରେ ଆମ ବାପ ପୁଅଙ୍କୁ ସ୍କୁଟରରେ ବସେଇ ରାତି ବାରଟାରେ ସେ ଲୋକ ଆମକୁ ଛାଡ଼ିଥିଲେ ଆମ ଘରେ ।

ସେବେଠାରୁ ଏ ପର୍ଯ୍ୟନ୍ତ ଜୀବନର ପ୍ରତିଟି କ୍ଷେତ୍ରରେ, ପ୍ରତିଟି ସଂକଟରେ ମୁଁ ତାଙ୍କୁ ସ୍ମରଣ କରି ଉଦ୍ଧାର ପାଇଆସିଛି ।

ହେତୁବାଦୀମାନେ ଏ କଥାକୁ ଅସ୍ୱୀକାର କରିପାରନ୍ତି କିମ୍ବା ଏହାକୁ ଏକ ମଜହବୀ କଳ୍ପନା ବୋଲି କହି ହସେଇ ଉଡ଼େଇ ଦେଇପାରନ୍ତି । କିନ୍ତୁ ମୋ ପାଇଁ ଏହା ଥିଲା ଏକ ନିଛକ ବାସ୍ତବ ଘଟଣା ଯାହା ଜଗନ୍ନାଥଙ୍କର କରୁଣାର କାଣିଚାଏ ବୋଲି ମୁଁ ବୁଝିଥିଲି । ସଂଧ୍ୟାବେଳୁ ପୁଅକୁ ଧରି ବିଳମ୍ବିତ ରାତି ପର୍ଯ୍ୟନ୍ତ ମୁଁ ଯେପରି ଅସହାୟ ଭାବେ ଲଣ୍ଡଭଣ୍ଡ ହେଉଥିଲି, କାହିଁ ସେତେବେଳେ ତ କେହି ମୋତେ ସହାୟତା କରିବାକୁ ଆଗେଇ ଆସି ନଥିଲେ ? ଯେତେବେଳ ପର୍ଯ୍ୟନ୍ତ ମୁଁ ତାଙ୍କୁ ସ୍ମରଣ କରିନଥିଲି, ସହାୟତା ଲୋଡ଼ି ନଥିଲି କି ତାଙ୍କ ଶରଣକୁ ଯାଇନଥିଲି । ମୁଁ ମୋ ଉଦ୍ୟମ ଓ ପ୍ରଚେଷ୍ଟାରେ ଥିଲି । ଉପାୟଶୂନ୍ୟ ହୋଇ ମୁଁ ଯେତେବେଳେ ତାଙ୍କୁ ହାତ ଟେକିଦେଲି, ସେତେବେଳେ ତାଙ୍କ ନିର୍ଦ୍ଦେଶରେ ବ୍ୟକ୍ତି ଜଣକ ସ୍ୱତଃ ଆଗେଇ ଆସିଥିଲେ ମୋତେ ସହାୟତା କରିବା ପାଇଁ । 'ସକଳ ଘଟେ ନାରାୟଣ' । ସଭିଙ୍କ ଭିତରେ ଓ ବାହାରେ ତାଙ୍କରି ସତ୍ତା ବିଦ୍ୟମାନ । ପ୍ରତିକ୍ଷଣରେ ପ୍ରତିଲୋକର ପ୍ରତିକଥାକୁ ହିଁ ସେ ଜାଣୁଛନ୍ତି । ସେହି ବଦାନ୍ୟ ବ୍ୟକ୍ତି ହିଁ ଥିଲେ ମୋ ପାଇଁ ସେଦିନ ମୋ 'କାଳିଆ ଠାକୁର', 'କାଳିଆ ସାଆନ୍ତ' ।

ଯା' ଭିତରେ ଦୀର୍ଘ ପଚିଶ ବର୍ଷ ବିତିଯାଇଥିଲେ ବି, ସେଦିନର ସେ ଘଟଣା ମୁଁ ଆଜି ପର୍ଯ୍ୟନ୍ତ ଭୁଲି ପାରିନାହିଁ । ସେହିଦିନ ଠାରୁ ଆଜି ପର୍ଯ୍ୟନ୍ତ ମୁଁ ପ୍ରତିଟି କ୍ଷଣରେ ପ୍ରତି ମୁହୂର୍ତ୍ତରେ ତାଙ୍କୁ ହିଁ ସ୍ମରଣ କରିଆସିଛି । ମୋ ଭିତରେ ସେ ରହି ମୋତେ ମାର୍ଗ ବତେଇଛନ୍ତି, ପ୍ରତି ପଲକରେ ମୋତେ ପ୍ରେରିତ କରିଛନ୍ତି, ଅସହାୟ ଅବସ୍ଥାନରେ ସହାୟତା କରିଛନ୍ତି, ବିପଦ ଆପଦରୁ ମୁକୁଳେଇ ଆଣିଛନ୍ତି । ତାଙ୍କ ବିନା ମୋର ଗତ୍ୟନ୍ତର ନାହିଁ ।

କୃଷ୍ଣ ନଗର, ଅଙ୍ଗାରଗଡ଼ିଆ
ବାଲେଶ୍ୱର - ୭୫୬୦୦୧
ଭ୍ରାମ୍ୟଭାଷ : ୯୪୩୯୪୪୨୯୪୨



# ଜଗନ୍ନାଥ ମନ କଥା ବୁଝିଲେ

## ରଘୁନାଥ ରଥ

୧୯୬୩ ମସିହାର କଥା । ଅଗଷ୍ଟ ମାସରେ ପୁରୀରେ ରାଜସ୍ୱ ନିରୀକ୍ଷକ ତାଲିମ ନେବାପାଇଁ ଆଦେଶ ମିଳିଲା । ସେଥିନିମନ୍ତେ ଦୁଇଟି କାରଣରୁ ମୁଁ ଖୁସି ହେଲି । ପ୍ରଥମ କାରଣ, ତାଲିମ ନେବା ପରେ ଚାକିରିରେ ଥଇଥାନ ହୋଇପାରିବି ଏବଂ ଦ୍ୱିତୀୟ କାରଣ, ଅନ୍ତତଃ ତାଲିମ ସମୟ ଛଅ ମାସ ଧରି ପୁରୀରେ ଅବସ୍ଥାନ କରିପାରିବି ଓ ବଳିୟାର ଭୁଜ ଜଗନ୍ନାଥଙ୍କ ଦର୍ଶନ ପ୍ରତିଦିନ କରିପାରିବି । ପ୍ରତ୍ୟେକ ଓଡ଼ିଆଙ୍କ ହୃଦୟର ନିଭୃତ କନ୍ଦରରେ ଜଗନ୍ନାଥଙ୍କ ଦର୍ଶନ କରିବା ଆଶାର ବୀଜଟିଏ ନିଶ୍ଚୟ ଥାଏ । ମୁଁ ବା ସେଥିରୁ ବାଦ୍ ପଡ଼ିବି କିପରି ?

ସେପ୍ଟେମ୍ବର ମାସରେ ଯାଇ ପୁରୀରେ ତାଲିମ କେନ୍ଦ୍ରରେ ଯୋଗ ଦେଲି । ସେତେବେଳେ ତାଲିମ କେନ୍ଦ୍ରଟି ପଶ୍ଚିମ ଦ୍ୱାରରେ ଥିବା ମିଶ୍ର ପଙ୍କାରେ ଭଡ଼ାରେ ଚାଲୁଥାଏ । ସେହିଠାରେ ତାଲିମ କେନ୍ଦ୍ର ଓ ହଷ୍ଟେଲ ଚାଲୁଥାଏ । ଯେହେତୁ ପଶ୍ଚିମ ଦ୍ୱାରରେ ଆମ ହଷ୍ଟେଲ ଚାଲୁଥାଏ ସେଠାରୁ ଜଗନ୍ନାଥଙ୍କ ମନ୍ଦିରକୁ ଯାଇ ସହଜରେ ଦର୍ଶନ କରିବାର ସୁଯୋଗ ନିମନ୍ତେ ଭାରି ଖୁସି ଲାଗିଲା । ସବୁଦିନେ ନ ହେଲେ ବି ଅଧିକାଂଶ ଦିନ ଜଗନ୍ନାଥଙ୍କ ଦର୍ଶନର ସୁଯୋଗ ନେବାପାଇଁ ଚେଷ୍ଟା କରୁଥିଲି ।

ତାଲିମ ସମୟରେ ମାସକୁ ତିରିଶ ଟଙ୍କା ତାଲିମ ଭତ୍ତା ମିଳୁଥିଲା । ସେଥିରେ ହଷ୍ଟେଲରେ ଖାଇବା ଖର୍ଚ୍ଚ ବାବଦକୁ ତିରିଶ ଟଙ୍କା ଦେବାକୁ ପଡୁଥିଲା । ଘରୁ ବଡ଼ବାପା ମାସକୁ ଦଶ ଟଙ୍କା ପଠାଉଥିଲେ । ସେଥିରେ ଜଳଖିଆ, ଲୁଗାସଫା, ବାଳ କାଟିବା ଇତ୍ୟାଦି ଆନୁସଙ୍ଗିକ କାର୍ଯ୍ୟ ପାଇଁ ପଇସା ଅଣ୍ଟୁ ନଥିଲା । କିନ୍ତୁ ମନରେ ଥାଏ ଜଗନ୍ନାଥଙ୍କୁ ତୁଳସୀର ମାଳଟିଏ ଚଢ଼େଇବା ପାଇଁ । କିନ୍ତୁ ଅର୍ଥାଭାବ ତା’ କରିବା ପାଇଁ ସୁଯୋଗ ଦେଉନଥିଲା । ସେହିବର୍ଷ କାର୍ତ୍ତିକ ମାସରେ ଦିନେ ମନ୍ଦିରକୁ ଯାଇ ଜଗନ୍ନାଥଙ୍କୁ ପ୍ରଣିପାତ କଲାବେଳେ ମୋ ସମ୍ମୁଖରେ ଏକ ଟଙ୍କିଆ ମୁଦ୍ରାଟିଏ ପଡ଼ିଥିବାର ଦେଖିଲି । ହୁଏତ ଅସାବଧାନତା ବଶତଃ କାହା ହାତରୁ ତାହା ପଡ଼ିଯାଇଥାଇପାରେ । ସନ୍ତର୍ପଣରେ ମୁଦ୍ରାଟିକୁ ଉଠାଇନେଇ ପକେଟରେ ରଖିଲି । ସେ ଟଙ୍କାକୁ ନେଇ କ’ଣ କରିବି ଚିନ୍ତା କରିପାରୁ ନଥାଏ । ଚିନ୍ତିତ ଅବସ୍ଥାରେ ହଷ୍ଟେଲକୁ ଫେରିଲି ।

ତା’ପରଦିନ ସଂଧ୍ୟାରେ ମନ୍ଦିରକୁ ଯିବାପାଇଁ ପ୍ରସ୍ତୁତ ହେଲି । ସିଂହଦ୍ୱାରରୁ ତିନୋଟି ତୁଳସୀ ମାଳ କିଣିଲି ଏବଂ ମୁଦ୍ରାଟି ଦୋକାନୀକୁ ଦେଲି । ସେ ଉକ୍ତ ମୁଦ୍ରାକୁ ପାଞ୍ଚ ଟଙ୍କିଆ ମୁଦ୍ରା ଭାବି ତୁଳସୀ ମାଳର ପଇସା କାଟି ମୋତେ ବାକି ପଇସା ଫେରାଇଲା ।

ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇଗଲି ଏବଂ କିଛି ନ କହି ସେଠାରୁ ଫେରିଲି । ବଳକା ପଇସାରେ ନଡ଼ିଆ, କଦଳୀ ଏବଂ ଦୀପ କିଣି ମନ୍ଦିରକୁ ଗଲି ଏବଂ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତିନି ଠାକୁରଙ୍କୁ ତିନୋଟି ତୁଳସୀ ମାଳ ଚଢ଼ାଇବା ପାଇଁ ଜଣେ ପାଳିଆ ସେବକଙ୍କୁ ଦେଲି । ସେ ନେଇ ତିନି ଠାକୁରଙ୍କୁ ତୁଳସୀ ମାଳ ଚଢ଼ାଇଲେ ଏବଂ ଭୋଗ ନୈବେଦ୍ୟ କଲେ । ମୋ ପାଖରେ ଆଉ ଯାହା ପଇସା ବଳକା ଥାଏ ସେସବୁ ଦକ୍ଷିଣାରେ ଦେଇ ଦେଲି । ହିନ୍ଦୁ ହିସାବରେ ଦେବତାଙ୍କ ଧନ ଆତ୍ମସାତ୍ କରିବା ମହାପାପ । ସେହି ଦୃଷ୍ଟିରୁ ମୁଁ ଗୋଟିଏ ବି ପଇସା ରଖିଲି ନାହିଁ ।

ମାଳ ଚଢ଼ାଇବା ଓ ଭୋଗ ଲଗାଇବା ପରେ ମନରେ ଅଶେଷ ଶାନ୍ତି ଆସିଲା । ଜଗନ୍ନାଥ ତ ଭାବର ଠାକୁର । ସେ ମୋର ମନକଥା ବୁଝିପାରି ଯଦି ସେ ଟଙ୍କାଟିଏ ଦେଇ ନଥା'ନ୍ତେ ତା'ହେଲେ ମୋର ଅଭିଳାଷ ପୂରଣ ହୋଇପାରି ନଥା'ନ୍ତା । ସେ ଦିନ ଠାରୁ ମୋ ଜୀବନରେ କ୍ରମୋନ୍ନତି ଘଟି ଚାଲିଛି । ଏହା ଜଗନ୍ନାଥଙ୍କ ଆଶୀର୍ବାଦ ବୋଲି ମୁଁ ମନେ କରୁଛି ।


ପଣସପଡ଼ି, ବାଲିଗୁଡ଼ା<br>
କନ୍ଧମାଳ - ୭୬୨୧୦୩<br>
ଭ୍ରାମ୍ୟଭାଷ : ୯୪୩୭୩୨୫୧୯୯




# ଲୀଳାମୟ ଠାକୁର ଶ୍ରୀଜଗନ୍ନାଥ

## କୈଳାସ ଚନ୍ଦ୍ର ବେହେରା

ଜଗତର ନାଥ ଶ୍ରୀଜଗନ୍ନାଥଙ୍କର ଅପାର ମହିମା । କେତେବେଳେ ଯେ ସେ କେଉଁ ରୂପରେ ଭକ୍ତଙ୍କୁ ଦେଖାଦିଅନ୍ତି ତାହା କେହି ଜାଣିପାରନ୍ତି ନାହିଁ । ଏହି କଳିଯୁଗରେ ମଧ୍ୟ ଜଗନ୍ନାଥଙ୍କର ଅଲୌକିକତା ସମ୍ବନ୍ଧରେ ଅନେକ ଭକ୍ତଙ୍କ ଠାରୁ ବିଭିନ୍ନ ଘଟଣା ଶୁଣାଯାଏ । ମୋର ବ୍ୟକ୍ତିଗତ ଅନୁଭୂତିରୁ ଦୁଇଟି ଘଟଣା ଏଠାରେ ବର୍ଣ୍ଣନା କରୁଛି ।

ଦେବସ୍ନାନ ପୂର୍ଣ୍ଣିମା ପରେ ଜଗନ୍ନାଥ ଅଣସର ଘରେ ରହନ୍ତି । ସେତେବେଳକୁ ଆମର ଗ୍ରୀଷ୍ମଛୁଟି ହୋଇଥାଏ । ମୋର ଜନ୍ମସ୍ଥାନ ଭଞ୍ଜନଗର ନିକଟସ୍ଥ ଗାମୁଣ୍ଡି ଗ୍ରାମକୁ ଯାଇଥାଏ । ମୋର ବଡ଼ ଶଳା ରାମଚନ୍ଦ୍ର ବେହେରା ମଧ୍ୟ ଜଣେ ଶିକ୍ଷକ । ତେଣୁ ଉଭୟଙ୍କର ଛୁଟି ହୋଇଥିବା ହେତୁ ଏହି ଅବସରରେ ପୁରୀ ଯିବା ଲାଗି ଦୁହେଁ ମନସ୍ଥ କଲୁ । ମୋ ପିତାଙ୍କର ଅସ୍ଥି ବିସର୍ଜନ କରିବା ଲାଗି ଚିନ୍ତା କରି ଦୁହେଁ ଭଞ୍ଜନଗରରୁ ବସ୍ ଧରି ପୁରୀରେ ପହଞ୍ଚିଲୁ । ସେଠାରୁ ଦୁହେଁ ସ୍ୱର୍ଗଦ୍ୱାର ଠାରେ ପହଞ୍ଚି ସମସ୍ତ ବିଧିବିଧାନ ସହ ମୁଁ ପିତାଙ୍କର ଅସ୍ଥି ବିସର୍ଜନ କଲି । ମୋ ଶଳା ସେଠାରେ ଲଣ୍ଡା ହୋଇ ବାଳ ପକାଇଲେ । ତା'ପରେ ଗୋଟିଏ ରିକ୍ସା କରି ପୁରୀର ବିଭିନ୍ନ ଦର୍ଶନୀୟ ସ୍ଥାନ ଯଥା - ମାଉସୀ ବାଡ଼ି, ଶ୍ୱଶୁର ବାଡ଼ି, ମଶାଣିଚଣ୍ଡୀ, କେତେକ ମଠ, ଲୋକନାଥ ମନ୍ଦିର, ଇନ୍ଦ୍ରଦ୍ୟୁମ୍ନ ପୋଖରୀ ଇତ୍ୟାଦି ଦେଖିଲୁ । ସବା ଶେଷରେ ଜଗନ୍ନାଥ-ମନ୍ଦିରକୁ ଯିବାକୁ ଇଚ୍ଛା କଲୁ, କାରଣ ଜଗନ୍ନାଥ ତ ଅଣସର ଘରେ ଥିବେ, ପ୍ରକୃତ ବିଗ୍ରହଙ୍କୁ ଦେଖିବାର ସୁଯୋଗ ମିଳିବ ନାହିଁ । ତେଣୁ ମନ୍ଦିର ବେଢ଼ା ଭିତରେ ବୁଲି ଦେଖିବାକୁ ଇଚ୍ଛା କଲୁ ।

ସେତେବେଳେ ଆମ ଗାଆଁର ବିଶ୍ୱନାଥ ଡାକୁଆ ନାମକ ଜଣେ ବ୍ୟକ୍ତି ପୁରୀ ସହରରେ ସରକାରୀ ଚାକିରି କରୁଥା'ନ୍ତି । ତାଙ୍କର ଡାକ ନାମ ଖଦାଳ । ଆମେ ତାଙ୍କୁ ଖଦାଳ ଭାଇନା ବୋଲି ଡାକୁ । ସେ ଆମ ଅନୁରୋଧ ରକ୍ଷା କରି ଆମ ସାଙ୍ଗରେ ଆସିଲେ । ପ୍ରଥମେ ମନ୍ଦିର ବେଢ଼ା ଭିତରେ ବୁଲି ଦେଖିଲୁ । ଆମେ ବୁଲି ବୁଲି ଦେଖୁଥିବା ସମୟରେ ଜଣେ ଯୁବକ ବ୍ରାହ୍ମଣ ଆମ ପିଛା ଲାଗିଲେ ଏବଂ ଆମକୁ ବିଭିନ୍ନ ସ୍ଥାନ ଦେଖାଇ ଦେବାଲାଗି କହିଲେ । ଆମେ ତାଙ୍କୁ ମନା କରିବା ସତ୍ତ୍ୱେ ସେ ଆମ ପଛେ ପଛେ ଆସି ଏଠାରେ ଏତିକି ଟଙ୍କା ଦିଅ ସେଇଠି ଏତିକି ଟଙ୍କା ଦିଅ କହି ଦାବି କଲେ । ତାଙ୍କର ହାବଭାବ ଦେଖି ମୋତେ ଭାରି ବିରକ୍ତ ଲାଗିଲା । ମୁଁ କହିଲି - 'ଦେଖ ଆମେ ତ ତମକୁ ଡାକି ନାହୁଁ କି ଆମକୁ ଦେଖାଇବା ପାଇଁ ଅନୁରୋଧ କରି

ନାହୁଁ । ଅଯଥାରେ ତମେ ଆମ ପଛରେ ଲାଗି କାହିଁକି ପଇସା ଦେବାପାଇଁ ବାଧ କରୁଛ ?' ବ୍ରାହ୍ମଣ ଜଣକ ଆମଠାରୁ କିଛି ପଇସା ମିଳିବ ନାହିଁ ଜାଣିପାରି ଉତ୍‌କ୍ଷିପ୍ତ ହୋଇ କହିଲେ - 'ତମେ ସବୁ ପାପୀ, କେଉଁ ଗାଆଁରୁ ଆସିଛ ହୋ ? ପଇସା ଦେବାକୁ କୁଣ୍ଠାବୋଧ କରୁଛ ।'

ମୁଁ ତାଙ୍କୁ ରାଗିଯାଇ କହିଲି - 'ତମେ ବୋଧହୁଏ ପୂର୍ବ ଜନ୍ମରେ ଚଣ୍ଡାଳ କି ଭିକାରୀ ଥିଲ । ସେଥିପାଇଁ ଆମକୁ ଏମିତି ବ୍ୟବହାର କରୁଛ । ଏତିକି କହିବା ପରେ ପରେ ଆଉ କେତେଜଣ ବ୍ରାହ୍ମଣ ସେଠାକୁ ଚାଲି ଆସି ସେହି ଯୁବକ ବ୍ରାହ୍ମଣର ପକ୍ଷ ନେଇ ଆମକୁ ନାନା କଟୁକଥା କହିଲେ । ମୁଁ ମନେ ମନେ ଭାବିଲି, ଜଗନ୍ନାଥଙ୍କ ପାଖକୁ ଆସି ଆମର ପୁଣି ଏମିତି ହଇରାଣ ହରକତ ହେବାକୁ ଥିଲା । ମୁଁ ଆଉକିଛି ଭାବିବାକୁ ଯାଉଛି ହଠାତ୍ ଜଣେ ବୃଦ୍ଧ ବ୍ରାହ୍ମଣ ଗହଳି ଭିତରୁ ନଇଁ ନଇଁ ଆସି ଆମକୁ ପଚାରିଲେ - 'କ'ଣ ହେଲା ? ଏତେ ପାଟିତୁଣ୍ଡ ହେଉଛି କାହିଁକି ?' ମୁଁ କହିଲି - 'ଦେଖନ୍ତୁ ଗୋସେଇଁ ଆମେ ପ୍ରଥମ କରି ପୁରୀ ଆସି ଜଗନ୍ନାଥ ମନ୍ଦିର ଦେଖି କିଛି ଭୋଗ କରି ଦିଅଁ ଦର୍ଶନ କରି ଯିବାକୁ ଆସିଥିଲୁ । ଆମର ଅନ୍ୟ କିଛି ମନସ୍କାମନା ନାହିଁ । କିନ୍ତୁ ଏଇ ପଣ୍ଡାମାନେ ଆମକୁ ହଇରାଣ କରି ନାନା କଥା କହୁଛନ୍ତି ।'

ବୃଦ୍ଧ ବ୍ରାହ୍ମଣ ଜଣକ ହସିଦେଇ ଦୁଇହାତ ପ୍ରସାରି କହିଲେ - 'ହଉ ହଉ କ'ଣ ଭୋଗ କରିବ ଦିଅ ମୁଁ ପୂଜା କରି ଆଣିଦେବି ।' ମୁଁ ବୃଦ୍ଧ ବ୍ରାହ୍ମଣଙ୍କୁ ନଡ଼ିଆ, କଦଳୀ, ଧୂପକାଠି ଇତ୍ୟାଦି ଭୋଗ କରିବାକୁ ଦେଇ ଅପେକ୍ଷା କଲି । ଅନ୍ୟ ବ୍ରାହ୍ମଣମାନେ ଏଇ ଘଟଣାରେ ଅସନ୍ତୁଷ୍ଟ ହେବା ଭଙ୍ଗୀରେ ଜଣେ ଜଣେ ଚାଲିଗଲେ । ଅଳ୍ପ ସମୟ ପରେ ବୃଦ୍ଧ ବ୍ରାହ୍ମଣ ଜଣକ ଆମକୁ ଭୋଗତକ ଦେଇ ପଚାରିଲେ - 'ଦିଅଁଙ୍କୁ ଦର୍ଶନ କରିବ ?' ଆମେ ଖୁସିହୋଇ ହଁ ଭରିଲୁ । ସେ ଆମର ହାତ ଧରି ଅନ୍ୟ ଏକ ବାଟ ଦେଇ ପତିଦିଅଁଙ୍କ ପାଖକୁ ଆମକୁ ନେଇଗଲେ । ଆମେ ଆନନ୍ଦରେ ଗଦ୍ ଗଦ୍ ହୋଇ ପତିଦିଅଁଙ୍କୁ ଦର୍ଶନ କରି ପ୍ରଣିପାତ କଲୁ । ମୋର ଇଛା ହେଲା ସେହି ବୃଦ୍ଧ ବ୍ରାହ୍ମଣଙ୍କୁ କିଛି ପଇସା ଦେବାପାଇଁ । କିନ୍ତୁ ଆମେ ତିନିଜଣ ତାଙ୍କୁ ଯେତେ ଖୋଜିଲୁ ଆଉ ପାଇଲୁ ନାହିଁ । ଏହା ଜଗନ୍ନାଥଙ୍କର ଏ ଅଲୌକିକତା ବୋଲି ମୁଁ ଭାବି ଭକ୍ତର ଭଗବାନ ଜଗନ୍ନାଥଙ୍କୁ ମନେ ମନେ ଶତ କୋଟି ପ୍ରଣାମ ଜଣାଇଲି ।

ଆଉ ଏକ ଘଟଣା ଜଗନ୍ନାଥଙ୍କର ରଥଯାତ୍ରା ସମୟରେ ଘଟିଥିଲା । ସେଥର ମୁଁ ଜଗନ୍ନାଥଙ୍କୁ ରଥରେ ଦେଖିବା ପାଇଁ ଇଚ୍ଛା କରି ରଥଯାତ୍ରା ପୂର୍ବ ଦିନରୁ ବାଲିଗୁଡ଼ାରୁ ବାହାରି ରଥଯାତ୍ରା ଦିନ ଭୋର୍‌ରୁ ବସ୍‌ରେ ପୁରୀରେ ପହଞ୍ଚିଲି । ଏକ ସୁଲଭ ଶୌଚାଳୟରେ ନିତ୍ୟକର୍ମ ସାରି ଜଳଖିଆ ଖାଇ କିଛି ସମୟ ବୁଲାବୁଲି କରିବା ପରେ ଠିକ୍ ରଥଯାତ୍ରା ସମୟରେ ବଡ଼ଦାଣ୍ଡରେ ପହଞ୍ଚିଲି । ଦେଖିଲି ସେଠାରେ ଜନ ସମୁଦ୍ର ।

ଦୂରରୁ ତିନୋଟି ରଥ ଦେଖାଯାଉଛି । ଇଚ୍ଛା ହେଲା ସେଇ ଗହଳି ଭିତରେ ପଶି ଆଉ ଟିକିଏ ଆଗକୁ ଗଲେ ଠାକୁରମାନଙ୍କୁ ଭଲ ଭାବରେ ଦେଖି ପାରିବି । ମୁଁ ଗହଳି ଭିତରେ ପଶି ଆଗକୁ ଅଗ୍ରସର ହେବା ସମୟରେ ବାଲିଗୁଡ଼ାରେ ସାଇକେଲ୍ ମାର୍ଟ କରିଥିବା ଲୋକନାଥ ନାମକ ଜଣେ ବ୍ୟକ୍ତି ମୋତେ କହିଲେ - 'ସାର୍, ଗହଳି ଭିତରେ ପଶି ଆପଣ ଆଗକୁ ଯାଇପାରିବେ ନାହିଁ, ବରଂ ଏଠାରେ ଠିଆ ହୋଇ ରଥଯାତ୍ରା ଦେଖିବା ଭଲ ।' ତାଙ୍କ କଥାରେ କର୍ଣ୍ଣପାତ ନ କରି ମୁଁ ଗହଳି ଭିତରେ କିଛି ବାଟ ଯାଇଛି ଦେଖିଲି ଜଣେ ଲୋକ ଗହଳି ପାର ହୋଇ ମୋ ଆଡ଼କୁ ଆସିବାକୁ ଚେଷ୍ଟା କରୁଛନ୍ତି । ତାଙ୍କର ପିନ୍ଧିଥିବା ସାର୍ଟଟି ଚିରିଯାଇଛି । ସେ ଝାଳରେ ବୁଡ଼ି ଯାଇଛନ୍ତି । ତାଙ୍କର ଅବସ୍ଥା ଦେଖି ମୁଁ ଆଉ ଆଗକୁ ନ ଯାଇ ପୁଣି ପୂର୍ବ ସ୍ଥାନକୁ ଫେରି ଆସିଲି । ନଡ଼ିଆଟିଏ ଦୁଇ ହାତରେ ଟେକିଧରି କହିଲି - 'ହେ ପ୍ରଭୁ ଜଗନ୍ନାଥ, ତମେ ଦାସିଆ ବାଉରୀ ହାତରୁ ନଡ଼ିଆ ନେଇଥିଲ, ମୁଁ ତ ତୁମ ପାଖକୁ ଯାଇପାରିଲି ନାହିଁ । ମୋ ନଡ଼ିଆଟିକୁ ଗ୍ରହଣ କର ।' ଏତିକି କହି ସେହି ପିଚୁ ରାସ୍ତା ଉପରେ ନଡ଼ିଆଟିକୁ ବାଡ଼େଇ ଦେଇ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିଦେଲି । ହଠାତ୍ ଜଣେ ଗେରୁଆ ବସ୍ତ୍ର ପିନ୍ଧିଥିବା ସନ୍ୟାସୀ ମୋ ପାଖକୁ ଆସି କହିଲେ - 'ତମର ନଡ଼ିଆକୁ ଜଗନ୍ନାଥ ଗ୍ରହଣ କଲେ । ଖାଇକରି ଦେଖୁନ, ଜାଣିପାରିବ ।' ମୁଁ ତାଙ୍କ କଥାଶୁଣି ଟିକିଏ ନଡ଼ିଆ ବାହାର କରି ପାଟିରେ ପକାଇ ଚୋବାଇଲି । ନଡ଼ିଆ ଖଣ୍ଡକ ସତେ ଯେମିତି ଚିନି ପକାଇ ନଡ଼ିଆ ପାତି କରା ହୋଇଛି ସେପରି ଅନୁଭବ କଲି । ମୁଁ ଆଗରୁ ଅନେକ ମନ୍ଦିରର ନଡ଼ିଆ ଭୋଗ ଖାଇଛି କିନ୍ତୁ ଏ ନଡ଼ିଆ ଭୋଗ ଏତେ ମିଠା ହେଲା କିପରି ? ଏହା ଭାବି ମୋର ବିସ୍ମୟର ସୀମା ରହିଲା ନାହିଁ । ମନେ ମନେ ଜଗନ୍ନାଥଙ୍କୁ କୋଟି କୋଟି ପ୍ରଣିପାତ ଜଣାଇଲି । ପର ମୁହୂର୍ତ୍ତରେ ଭାବିଲି ଯେଉଁ ସନ୍ୟାସୀ ଜଣକ ନଡ଼ିଆ ଚାଖିବା ପାଇଁ କହିଲେ, ସେ ପ୍ରକୃତରେ କିଏ ? ଏହାଭାବି ତାଙ୍କୁ ମନେ ମନେ ଧନ୍ୟବାଦ ଦେଇ ସେହି ନଡ଼ିଆ ଭୋଗରୁ ତାଙ୍କୁ କିଛି ଦେବାପାଇଁ ଆଗ ପାଖୁ ଚାହିଁଲି । କିନ୍ତୁ ସେ ଦେଖାଗଲେ ନାହିଁ । ମୋର ଉତ୍କଣ୍ଠା ଆହୁରି ବଢ଼ିଗଲା । ମୁଁ ସେ ଗହଳି ଭିତରେ ଆଡ଼େଇ ଆଡ଼େଇ ଯେତେ ଖୋଜିଲି ଆଉ ତାଙ୍କୁ ପାଇଲି ନାହିଁ । ଶେଷରେ ନିରାଶ ହୋଇ ଅପଲକ ନୟନରେ ରଥ ଉପରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତିନି ଠାକୁରଙ୍କୁ ଦେଖି ମନେ ମନେ ନିଜକୁ ଧନ୍ୟ ମନେ କଲି । ଭାବିଲି ସେହି ଗେରୁଆ ବସ୍ତ୍ରଧାରୀ ସନ୍ୟାସୀ ଜଣକ ଜଗନ୍ନାଥ ହୋଇ ପାରନ୍ତି । ଭକ୍ତର ଆକୁଳ ପ୍ରାର୍ଥନାକୁ ସହ୍ୟ କରି ନପାରି ସନ୍ୟାସୀ ରୂପରେ ହୁଏତ ମୋତେ ଦେଖାଦେଇ ଗଲେ ।

ସଂପାଦକ 'ଉତ୍କଳ ସମ୍ମିଳନୀ'
କନ୍ଧମାଳ ଜିଲ୍ଲା ଶାଖା, ବାଲିଗୁଡ଼ା-୭୬୨୧୦୩
ଭ୍ରାମ୍ୟଭାଷ : ୯୪୩୮୭୫୩୭୭୪



# ଜଗନ୍ନାଥ ମୋର ଆରାଧ୍ୟ ଦେବତା

## ଶ୍ରୀକୃଷ୍ଣ ସାମଲ

୧୯୯୬-୯୭ ମସିହାର କଥା । ସେତେବେଳେ ମୁଁ ମୟୂରଭଞ୍ଜ ଜିଲ୍ଲା ପାଞ୍ଚପିଢ଼ ଉପଖଣ୍ଡ କରଞ୍ଜିଆ ଶିକ୍ଷାଜିଲ୍ଲା ନିରୀକ୍ଷାଳୟରେ ଅନୁ-ନିରୀକ୍ଷକ ଭାବେ ଅବସ୍ଥାପିତ ହୋଇଥାଏ । ଅଗତ୍ୟା ମୋତେ ଯଶିପୁର ପଞ୍ଚାୟତ ସମିତି ଅନ୍ତର୍ଗତ ଯଶିପୁର କେନ୍ଦ୍ର ପ୍ରାଥମିକ ବିଦ୍ୟାଳୟରେ ଅନୁଷ୍ଠିତ ହୋଇଥିବା ତୃତୀୟ ଶ୍ରେଣୀ ବୃତ୍ତି ପରୀକ୍ଷାରେ ତ୍ରୁଟି ବିଚ୍ୟୁତି ନିମନ୍ତେ ତଦାରଖ ପାଇଁ ନିର୍ଦ୍ଦେଶ ଦିଆଗଲା । ମୁଁ ଗୋଟିଏ ଦିନ ପରେ ଆବଶ୍ୟକ ନଥିପତ୍ର ସହ କରଞ୍ଜିଆରୁ ବସ୍ ଯୋଗେ ଯଶିପୁର ଯାଇ ସେଠାରେ ତଦାରଖ କାର୍ଯ୍ୟ ଆରମ୍ଭ କରିଦେଲି । ସଂପୂର୍ଣ୍ଣ ଧୈର୍ଯ୍ୟ-ଅବଲମ୍ବନ କରି ସମସ୍ତ ତଦାରଖ କାର୍ଯ୍ୟ ସମାପନ କଲି । ସମସ୍ତ ତଥ୍ୟ ସଂଗ୍ରହ କରି ସେ ସବୁକୁ ଗଚ୍ଛିତ କରି ପ୍ରତ୍ୟାବର୍ତ୍ତନ ନିମନ୍ତେ ପ୍ରସ୍ତୁତ ହେଲି । ସେତେବେଳକୁ ଜନୈକ ପରୀକ୍ଷା ପରିଚାଳକ ତଦନ୍ତ ବେଳୁ ଠଉରାଇ ନେଇଥିଲେ ଯେ ହୁଏତ ପରୀକ୍ଷା ପରିଚାଳନାର ତ୍ରୁଟି ବିଚ୍ୟୁତି ନିମନ୍ତେ ସେ ଦାୟୀ ହେବେ । ମୁଁ ଏହା ପୂର୍ବରୁ ଯଶିପୁର ପଞ୍ଚାୟତ ସମିତି କାର୍ଯ୍ୟାଳୟରେ ଶିକ୍ଷା ଅନୁନିରୀକ୍ଷକ ଭାବେ କାର୍ଯ୍ୟ ସଂପାଦନ କରୁଥିବାରୁ ସଂପୃକ୍ତ ପରୀକ୍ଷା ପରିଚାଳକଙ୍କ ସହିତ ଜଣାଶୁଣା ଥାଏ । ପ୍ରକାରାନ୍ତରେ ଜାଣିବାକୁ ପାଇଲି ଯେ, ସେ ଜଣେ ତନ୍ତ୍ର ସାଧକ ଥାଆନ୍ତି ।

ଯାହା ହେଉ ସେଦିନ ତଦନ୍ତ କାର୍ଯ୍ୟ ସମାପନ କରି ବସ୍ ଷ୍ଟପେଜକୁ ଆସି ଦେଖେ, ଅପରାହ୍ନ ନଇଁ ଆସିଲାଣି । ଟଙ୍ଗାବିଲା ଦେଇ ଜାତୀୟ ରାଜପଥରେ ସିଙ୍ଗଡ଼ା ଛକ ପରେ ବାରିପଦା ଖ୍ୱିଚିଂ ବସ୍‌ଟି ଖ୍ୱିଚିଂ ଯିବା ଅଭିମୁଖରେ ଷ୍ଟାର୍ଟରେ ବସ୍ ଷ୍ଟପେଜ୍‌ରେ ଛିଡ଼ା ହୋଇଛି । ଏଣୁ ସନ୍ଧ୍ୟା ପୂର୍ବରୁ କରଞ୍ଜିଆ ପହଞ୍ଚିବା ପାଇଁ ସିଙ୍ଗଡ଼ା ଛକରୁ, କେଉଁଝରରୁ କରଞ୍ଜିଆ ଅଭିମୁଖେ ଆସୁଥିବା କୌଣସି ଯାନବାହନ କିମ୍ବା ଖିଚିଂରୁ ସିଙ୍ଗଡ଼ା ଛକ ଦେଇ କରଞ୍ଜିଆ ଅଭିମୁଖେ ଆସୁଥିବା କୌଣସି ଯାନବାହନରେ ଚଢ଼ି କରଞ୍ଜିଆ ପହଞ୍ଚିବା ପାଇଁ ମନସ୍ଥ କରି ସେଇ ଷ୍ଟାର୍ଟ ଅବସ୍ଥାରେ ଥିବା ବାରିପଦା ଖ୍ୱିଚିଂ ବସ୍‌ରେ ଚଢ଼ି ସିଙ୍ଗଡ଼ା ଛକରେ ଓହ୍ଲାଇ ଗଲି ଏବଂ ଛକ ସଂଲଗ୍ନ ଏକ ଉଠା ଦୋକାନର କାଠ ବେଞ୍ଚରେ ବସି କୌଣସି ଯାନବାହାନକୁ ଅପେକ୍ଷା କରି ବସିଲି । ଅଗତ୍ୟା କରଞ୍ଜିଆରେ ମୁଁ ରହୁଥିବା ବସ୍ତିର ଜଣେ କଲେଜ ପିଲା ସଦ୍ୟ ବିବାହିତା ତା ଭଉଣୀକୁ ତା'ର ଶ୍ୱଶୁର ଘରେ ଛାଡ଼ି ସେଇ ସିଙ୍ଗଡ଼ା ଛକ ଦେଇ ବାଇକ୍ ଯୋଗେ କରଞ୍ଜିଆ ଅଭିମୁଖେ ଯାଉଥିଲା । ଏଣୁ ତାକୁ ଲିଫ୍ଟ ମାଗିବାରୁ ସେ ଲିଫ୍ଟ ଦେଇଥିଲା । ତା' ବାଇକ୍‌ର ବେଗ ଯାହା ଥିଲା ତାକୁ ମୁଁ ହୁସିଆର କରିଦେବା ପୂର୍ବରୁ ସିଙ୍ଗଡ଼ା ଛକଠାରୁ ଅନତି ଦୂରରେ ଏକ ନୁଆଁଣିଆ

ମୋଡ଼ରେ ବାଇକ୍‌ଟିକୁ ଏକ ଭୟଙ୍କର ଦୁର୍ଘଟଣାର ଶିକାର କରାଇଲା । ବାଇକ୍‌ରୁ ଛିଟିକି ପଡ଼ି ମୁଁ ସଂପୂର୍ଣ୍ଣ ସଂଜ୍ଞାହୀନ ହୋଇ ପଡ଼ିଲି । ମୋର ଛାତି, ଗୋଡ଼, ହାତରେ ଭୟଙ୍କର ଆଘାତ ଲାଗିଲା । ମୋର ଡାହାଣ ହାତଟି କାନ୍ଧ ସନ୍ଧିରୁ ଖସିଗଲା । ମୁଁ ଭୟଙ୍କର ଯନ୍ତ୍ରଣାରେ ଛଟପଟ ହୋଇ ଏକ ପାଣି କାଦୁଅ ଖାଲୁଆ ଜାଗାରେ ପଡ଼ିଥାଏ । ହଠାତ୍ କେନ୍ଦୁଝର ଆଡୁ ଆସୁଥିବା ଏକ ବସ୍ ସେଇଠି ବ୍ରେକ ଦେଲା । ଯାତ୍ରୀ ସବୁ ଓହ୍ଲାଇ ପଡ଼ିଲେ । ବସ୍ ଡ୍ରାଇଭର ମୋର ଜଣେ ଘନିଷ୍ଠ ଛାତ୍ର ଥାଏ । ସେ ମୋତେ ଚିହ୍ନି ପାରି ପ୍ରବୋଧନା ଦେଲା ଏବଂ ଆଉ ଦୁଇ ତିନି ଜଣଙ୍କ ସହାୟତାରେ ମୋତେ ନେଇ ବସ୍‌ରେ ବସାଇଲା ଓ ସିଧା ନେଇ ହସ୍‌ପିଟାଲରେ ପହଞ୍ଚାଇ ଦେଲା । ପରେ ପରେ ଚିକିତ୍ସା ଆରମ୍ଭ ହୋଇଗଲା ଓ ମୋର ଗୋଡ଼, ହାତ, ଛାତି ପ୍ଲାଷ୍ଟର ହେବା ପରେ ମୋତେ ଆଣି ଘରେ ଛାଡ଼ି ଦିଆଗଲା । ମୁଁ ଦୁଇ-ତିନି ଦିନ ପରେ ସାମାନ୍ୟ ସୁସ୍ଥ ହେବାରୁ ଠାକୁର ଘରେ ଯାଇ ଜଗନ୍ନାଥଙ୍କ ନିକଟରେ ଲୁହ ଗଡ଼ାଇଲି । କହିଲି, ଠାକୁର ମୋତେ ପଙ୍ଗୁ କରିଦେଲ । ଏମିତି ଜୀବନ ନେଇ ବଞ୍ଚିବାଟା କ'ଣ ଭଲ ? କାରଣ ଆଗରୁ ମୁଁ ବାମ ଆଖିଟି ଭୁଲ ଚିକିତ୍ସା ପାଇଁ ହରାଇ ସାରିଥିଲି । ଏଣେ ଏବେ ଏପରି ଅବସ୍ଥା । ମୁଁ ସଂପୂର୍ଣ୍ଣ ଭାଙ୍ଗି ପଡ଼ିଥିଲି । ଆଖିରୁ ଧାର ଧାର ହୋଇ ଲୁହ ଝରୁଥାଏ । ଠାକୁର ଘରେ କେତେ ସମୟ ବସି ରହିଥିଲି ମୁଁ ଜାଣି ପାରି ନଥିଲି । ଘରେ ମୁଁ ଏକୁଟିଆ ଥାଏ । ସହଧର୍ମିଣୀ ଜଣେ କର୍ମଜୀବୀ ମହିଳା ହୋଇଥିବାରୁ ସେ ତାଙ୍କ କାର୍ଯ୍ୟସ୍ଥଳୀକୁ ଯାଇଥା'ନ୍ତି । ଯାହା ହେଉ ଏହା ପରେ ମୋର ସର୍ବାଙ୍ଗ ଶରୀରରେ ଜଗନ୍ନାଥଙ୍କର ମସ୍ତକ ସହିତ ଚକାଆଖି ସବୁ ଛାଇ ହୋଇଗଲା, ମୁଁ ଅତିମାତ୍ରାରେ ଆଶ୍ୱସ୍ତ ହୋଇଗଲି । ଭାବିଲି, ଜଗନ୍ନାଥଙ୍କର ଅପାର କରୁଣା ମୋ ପ୍ରତି ବହୁ ପରିମାଣରେ ରହିଛି । କିଛିଦିନ ପରେ ସଂପୂର୍ଣ୍ଣ ସୁସ୍ଥ ହୋଇଗଲି । ସେହିଦିନରୁ ମୁଁ ଜଗନ୍ନାଥଙ୍କ ନିକଟରେ ନିଜକୁ ସମର୍ପଣ କରି ଦେଇଛି । ଡାକ୍ତରଙ୍କ ପରାମର୍ଶ ଓ ନିର୍ଦ୍ଦେଶ କ୍ରମେ କୌଣସି ରୋଗ ଦାଉରେ ପଡ଼ିଲେ, ଔଷଧ ଏବଂ ପଥ୍ୟ ବ୍ୟବହାର କରୁଥିଲେ ମଧ୍ୟ ସବୁ ଭଗବାନଙ୍କର ଇଚ୍ଛା ବୋଲି ଧରି ନେଇଥାଏ ।

୨୦୦୪ ମସିହାରେ ମୁଁ ହୃଦ୍‌ଘାତ ଜନିତ ସମସ୍ୟା ଅନୁଭବ କରିବାରୁ ଅନ୍ୟମାନଙ୍କ ପରାମର୍ଶ କ୍ରମେ କଳିଙ୍ଗ ହସ୍‌ପିଟାଲରେ ଚିକିତ୍ସା ନିମନ୍ତେ ଭର୍ତ୍ତି ହେଲି । ହେଲେ ମୁଁ ପ୍ରଥମେ ଶ୍ରୀକ୍ଷେତ୍ର ପୁରୀ ଯାଇ ଜଗନ୍ନାଥଙ୍କୁ ସମସ୍ତ ମର୍ମବେଦନା ଜଣାଇଲା ପରେ ଆସି କଳିଙ୍ଗ ହସ୍‌ପିଟାଲରେ ଚିକିତ୍ସିତ ହେଲି । ଯାହାହେଉ ଜଗନ୍ନାଥଙ୍କର ଅପାର

କରୁଣା ଯୋଗୁଁ ସଂପୂର୍ଣ୍ଣ ସୁସ୍ଥ ହୋଇଗଲି । ପୁଣି ଥରେ ୨୦୦୯ ମସିହାରେ ହୃଦ୍‌ଘାତ ଜନିତ ସମସ୍ୟା ଉପୁଜିବାରୁ ଓ ଏହା ଅଧିକ ଜଟିଳ ହେବାରୁ ପୁଣି କଳିଙ୍ଗ ହସ୍‌ପିଟାଲରେ ଚିକିତ୍ସିତ ହେଲି । ହେଲେ ଏଥରର ହୃଦ୍‌ଘାତ ଜନିତ ସମସ୍ୟା ଅଧିକ ଜଟିଳ ଥିବାରୁ ଆଉ ପୁରୀ ଶ୍ରୀକ୍ଷେତ୍ର ଯାଇ ଜଗନ୍ନାଥଙ୍କ ଦର୍ଶନ କରିପାରିଲି ନାହିଁ । ମନ ଓ ହୃଦୟ ଆନ୍ଦୋଳିତ ହେଉଥାଏ । ଯାହାହେଉ ହୃଦ୍‌ଘାତ ଜନିତ ସମସ୍ୟା ସଂପୂର୍ଣ୍ଣ ଦୂର ହୋଇପାରିଲା ନାହିଁ । ସମସ୍ୟା ନିୟନ୍ତ୍ରଣ ହେଲା ପରେ ଔଷଧ ଓ ଡାକ୍ତରଙ୍କ ପରାମର୍ଶ ନେଇ ଘରକୁ ଚାଲି ଆସିଲି । ହେଲେ ଅବସ୍ଥା ସୁଧୁରିଲା ନାହିଁ । ଏଣୁ ପୁଣି ଥରେ କଳିଙ୍ଗ ହସ୍‌ପିଟାଲ ପରିବର୍ତ୍ତେ ଆଦିତ୍ୟ କେୟାର ହସ୍‌ପିଟାଲ୍‌ରେ ଚିକିତ୍ସା ନିମନ୍ତେ ସିଦ୍ଧାନ୍ତ ନେଲି । ଆଦିତ୍ୟ କେୟାର ହସ୍‌ପିଟାଲରେ ହୃଦ୍‌ଘାତ ଜନିତ ଚିକିତ୍ସାର ସ୍ୱତନ୍ତ୍ର ବ୍ୟବସ୍ଥା ଥିବା ତଥା ୨୦୦୪ ମସିହାରେ କଳିଙ୍ଗ ହସ୍‌ପିଟାଲରେ ମୋତେ ଚିକିତ୍ସା କରୁଥିବା ବିଶେଷଜ୍ଞ ଡାକ୍ତର ମହେନ୍ଦ୍ର ପ୍ରସାଦ ତ୍ରିପାଠୀ ଆଦିତ୍ୟ କେୟାର ହସ୍‌ପିଟାଲରେ ଥିବାରୁ ସେଠାରେ ଚିକିତ୍ସିତ ହେଲି । ହେଲେ ଏଥର ମଧ୍ୟ ସ୍ୱାସ୍ଥ୍ୟ ପରିସ୍ଥିତି ଜଟିଳ ଥିବାରୁ ଶ୍ରୀକ୍ଷେତ୍ର ଯାଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ମନବେଦନା ଜଣାଇ ପାରିଲି ନାହିଁ । ଜଗନ୍ନାଥଙ୍କୁ ଦର୍ଶନ କରି ମନବେଦନା ଜଣାଇଲା ପରେ ଚିକିତ୍ସା ନିମନ୍ତେ ଭର୍ତ୍ତି ହୋଇ ପାରି ନଥିବାରୁ ମନ ଓ ହୃଦୟ ଆନ୍ଦୋଳିତ କରି ଉଠୁଥାଏ । ଏକଥା ମୋ ସହଧର୍ମିଣୀ ମଧ୍ୟ ଠିକ୍ ଭାବେ ଠଉରାଇ ନେଇ ସାରିଥା'ନ୍ତି । ତାଙ୍କର ମନ ମଧ୍ୟ ଠିକ୍ ନ ଥାଏ । ଯାହାହେଉ କାଜୁଆଲିଟିରେ ସ୍ୱାସ୍ଥ୍ୟ ନିରୀକ୍ଷଣ ପରେ ସିଧା ବେଡ୍‌କୁ ପଠାଇ ଦିଆଯାଇଥିଲା । ଏଣେ ଆଦିତ୍ୟ କେୟାର ହସ୍‌ପିଟାଲର ସୀମା ସରହଦ ବିଷୟରେ କାହାରି ଧାରଣା ନ ଥାଏ । ହଠାତ୍ ମୋ ସହଧର୍ମିଣୀ ବାହାରକୁ ବାହାରି ଦେଖନ୍ତି ତ ହସ୍‌ପିଟାଲ ସାମନାରେ ଶ୍ରୀଜଗନ୍ନାଥ ଓ ଶ୍ରୀଗଣେଶ ଭବ୍ୟ ବେଶରେ ଶୋଭା ପାଉଛନ୍ତି । ସହଧର୍ମିଣୀଙ୍କ ହୃଦୟ କୁଣ୍ଢେ ମୋଟ ହୋଇଗଲା, ସେ ସଙ୍ଗେ ସଙ୍ଗେ ଆସି କହିଲେ, ତୁମେ ଜଗନ୍ନାଥଙ୍କ କଥା ଭାବୁଥିଲ ନା, ଏଇ ଆସ ଦେଖିବ ଏଠିବି ଜଗନ୍ନାଥ ଭବ୍ୟ ବେଶରେ ଶୋଭା ପାଉଛନ୍ତି । ମନ ମୋର ଆନନ୍ଦରେ ଅଧୀର ହୋଇଉଠିଲା । ଜଗନ୍ନାଥଙ୍କୁ ଅଶେଷ କୃତଜ୍ଞତା ଜଣାଇଲି । ଭକ୍ତବତ୍ସଳ ଜଗନ୍ନାଥ ଯେ ଭକ୍ତର ମନୋବାଞ୍ଛା ପୂରଣ କରନ୍ତି, ଏଥିରେ ମୋର ସନ୍ଦେହ ରହିଲା ନାହିଁ । ସେତେବେଳେ ମୁଁ ଚଳପ୍ରଚଳ ହୋଇ ପାରୁଥିଲି ଓ ବେଡ଼ରୁ ଉଠି ଜଗନ୍ନାଥଙ୍କ ପାଖରେ ଯାଇ ମୁଣ୍ଡିଆ ମାରିଲି । ମନବେଦନା ଜ୍ଞାପନ କରିଲି । କିଛିଦିନ ପରେ ସଂପୂର୍ଣ୍ଣ ସୁସ୍ଥ ହୋଇ ଘରକୁ ଫେରିଲି ।

ଯେତେଥର ଚେକ୍-ଅପ୍ ପାଇଁ ଯାଏ ସିଧା ଶ୍ରୀକ୍ଷେତ୍ର ଯାଇ ପ୍ରଥମେ ଜଗନ୍ନାଥଙ୍କ ଦର୍ଶନ ପରେ ଆସି ଭୁବନେଶ୍ୱର ଆଦିତ୍ୟ କେୟାର ହସ୍‌ପିଟାଲରେ ଚେକ୍-ଅପ୍ କରାଏ । ଯାହାହେଉ ଏବେ ମୁଁ ସଂପୂର୍ଣ୍ଣ ସୁସ୍ଥ ଅଛି । ଅବସର ନେଇ ସାରିଲିଣି । ଅବସର ପରେ ସରକାରଙ୍କର ତରଫରୁ ଗୋଷ୍ଠୀ ଶିକ୍ଷା ପ୍ରଶିକ୍ଷକ ଭାବେ ପୁଣି ଥରେ କାର୍ଯ୍ୟନିର୍ବାହ କରୁଛି । ଇତିମଧ୍ୟରେ ଜନ୍ମସ୍ଥାନରେ ମୋର ନିଜସ୍ୱ ସମ୍ବଳରେ ଶ୍ରୀ ଶ୍ରୀ ଲକ୍ଷ୍ମୀନାରାୟଣ ଓ ଶ୍ରୀ ଶ୍ରୀ ସ୍ୱପ୍ନେଶ୍ୱର ମହାଦେବଙ୍କ ମନ୍ଦିର ତୋଳାଇ ବିଧିମତେ ପୂଜାର୍ଚ୍ଚନାର ବନ୍ଦୋବସ୍ତ କରାଇଛି । ସାହିତ୍ୟ ସାଧନାରେ ନିଜକୁ ନିୟୋଜିତ କରିଛି, ଦେଖାଯାଉ ଜଗନ୍ନାଥ କେବେ ତାଙ୍କ ନିକଟକୁ ନେଉଛନ୍ତି । କାରଣ ମଣିଷ ଜୀବନ ଅମର ନୁହେଁ - 'ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହେଲେ ବି ମରଇ' । ଏଣୁ ମୁଁ ନିଜକୁ ଜଗନ୍ନାଥଙ୍କ ନିକଟରେ ସଂପୂର୍ଣ୍ଣ ସମର୍ପଣ କରିଦେଇଛି । ସେହି ଜଗନ୍ନାଥ ହିଁ ସାହା ଭରସା । ସେହି ମୋର ଚିର ଆରାଧ୍ୟ ଦେବତା ।

ଶ୍ରୀକୃଷ୍ଣ ନିବାସ, କରଞ୍ଜିଆ
ମୟୂରଭଞ୍ଜ - ୭୫୭୦୩୭
ଭ୍ରାମ୍ୟଭାଷ : ୯୪୩୭୩୨୦୬୭୯



# କାଳିଆ ସାଆନ୍ତଙ୍କ ଗୋବର୍ଦ୍ଧନ ଧାରଣ

## ଡ. ଅଭୟ କୁମାର ନାୟକ

ଦ୍ୱାପର ଯୁଗରେ ଯଶୋଦା ନନ୍ଦନ କଳାକାହ୍ନୁ ବୃନ୍ଦାବନବାସୀଙ୍କୁ ଆଶ୍ୱାସନା ଦେଇ ଇନ୍ଦ୍ରଙ୍କ ପୂଜା ବନ୍ଦ କରାଇଲେ । ଫଳରେ ଇନ୍ଦ୍ର ହେଲେ କ୍ଷୁବ୍ଧ । ସାତଦିନ ଧରି ବର୍ଷିଗଲେ ଅଜସ୍ର ପାଣି । ଇନ୍ଦ୍ରଙ୍କର ଏହି କ୍ରୋଧକୁ ପ୍ରତିହତ କରିବାପାଇଁ ସାତବର୍ଷର ବାଳକ, ନନ୍ଦସୁତ କହ୍ନେଇ ବାମ ହସ୍ତର କାଣି ଆଙ୍ଗୁଠିରେ ଧାରଣ କଲେ ପର୍ବତରାଜ ଗୋବର୍ଦ୍ଧନଙ୍କୁ । ସେଦିନ ଇନ୍ଦ୍ରଙ୍କୁ ଜଣା ନଥିଲା ସେଇ ପରମ ପୁରୁଷ, ଲୀଳା ପୁରୁଷୋତ୍ତମ ଆଜି ଶ୍ରୀକୃଷ୍ଣ ରୂପରେ ଗୋପପୁରରେ ବିରାଜିତ । ଆଉ ଯେତେବେଳେ ଜାଣିଲେ ଶ୍ରୀକୃଷ୍ଣ ହିଁ ପରଂବ୍ରହ୍ମ, ତା'ପରେ ଇନ୍ଦ୍ର ସେଇ ଅଭୟ ଚରଣରେ ଶରଣ ପଶିଲେ ଏବଂ କ୍ଷମାପ୍ରାର୍ଥନା କଲେ । କ୍ଷମା ତ ମିଳିଗଲା ଏବଂ ତତ୍ ସଙ୍ଗେ ସଙ୍ଗେ ସମସ୍ତଙ୍କୁ ଶିକ୍ଷା ମିଳିଲା, ପରଂବ୍ରହ୍ମ ଗାଳି ସହିବେ କିନ୍ତୁ ଗର୍ବ ସହିବେ ନାହିଁ ।

ଉପରୋକ୍ତ ଉପାଖ୍ୟାନଟି ଏଇ ଅନୁଭୂତିର କାହାଣୀରେ ଅବତରଣ କରାଇବାର ଉଦ୍ଦେଶ୍ୟ ହେଉଛି ଯେ, ଆମ କାଳିଆ ସାଆନ୍ତ ହେଉଛନ୍ତି ଦ୍ୱାପରର ସେହି ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣ । ଦ୍ୱାପର ଯୁଗରେ ଯଦି ଶ୍ରୀକୃଷ୍ଣ ରୂପରେ ସେ ଗୋପପୁରବାସୀଙ୍କ ପାଇଁ ଗୋବର୍ଦ୍ଧନ ଧାରଣ କଲେ, ଇନ୍ଦ୍ରଙ୍କର ଭୟଙ୍କର ବର୍ଷାରୁ ସେମାନଙ୍କୁ ରକ୍ଷା କଲେ, ସେମିତି କଳିଯୁଗରେ ବି ଆମ କାଳିଆ ସାଆନ୍ତ କେଉଁଠି ନା କେଉଁଠି ପ୍ରବଳ ବର୍ଷାକୁ ପ୍ରତିହତ କରୁଥିବେ ଆଉ ଗୋବର୍ଦ୍ଧନ ଧାରଣ କରିଥିବେ । ପରଂବ୍ରହ୍ମ ଶ୍ରୀଜଗନ୍ନାଥଙ୍କର ଲୀଳା ଅନନ୍ୟ - ଯିଏ ତାଙ୍କୁ ଅନୁଭବ କରିଛି, କେବଳ ସେ ହିଁ ଜାଣିଛି । ଆମ କାଳିଆ ସାଆନ୍ତେ ଇନ୍ଦ୍ରଙ୍କ ବର୍ଷାକୁ ପ୍ରତିହତ କରିଛନ୍ତି ଏବଂ ଗୋବର୍ଦ୍ଧନ ଧାରଣ କରି ଆଶ୍ୱାସନା ଦେଇଛନ୍ତି, ଭରସା ଦେଇଛନ୍ତି, ଆଉ ଗୀତାରେ କହିଛନ୍ତି ମୋ କଥାକୁ ମୁଁ ରକ୍ଷା କରୁଛି - 'ସର୍ବଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ' । ଯିଏ ତାଙ୍କ ପାଖରେ ଶରଣ ଯାଇଛି, ସିଏ ତାକୁ ପ୍ରତିଟି ବିପଦରୁ ରକ୍ଷା କରିଛନ୍ତି ଏବଂ ଅଦୃଶ୍ୟରେ ଗୋବର୍ଦ୍ଧନକୁ ଧାରଣ କରିଛନ୍ତି ।

ଥରେ ଆମେ କାର୍ତ୍ତିକ ମାସରେ ବୃନ୍ଦାବନର ଛିପିଗଲି ଆଶ୍ରମରେ ଥାଉ ଏବଂ ପରମ ବୈଷ୍ଣବ ଶ୍ରୀ ଦିବାକର ମିଶ୍ରଙ୍କ ଠାରୁ ଲୀଳା ପୁରୁଷୋତ୍ତମ ଶ୍ରୀକୃଷ୍ଣଙ୍କ ଲୀଳା ବିଷୟରେ ଶୁଣୁଥାଉ । ଯେତେବେଳେ ଉପରୋକ୍ତ ଉପାଖ୍ୟାନଟି ଆସିଲା ଆମେ ପ୍ରଶ୍ନ କଲୁ, ଆଜିର ବିଜ୍ଞାନ ଯୁଗରେ କେହି କ'ଣ ବିଶ୍ୱାସ କରିବେ ଯେ ସାତ ବର୍ଷର ବାଳକ କାଣି ଆଙ୍ଗୁଠିରେ ଏତେବଡ଼ ପାହାଡ଼କୁ ସାତଦିନ ଧରି ଧାରଣ କରିଥିଲେ । ଉତ୍ତରରେ

ଶ୍ରୀଯୁକ୍ତ ମିଶ୍ର କହିଥିଲେ, 'ବୁଝିଲେ ଅଭୟ ବାବୁ ! ଗିରିରାଜ ହେଲେ ସ୍ୱୟଂ ଶ୍ରୀକୃଷ୍ଣ । ଯିଏ ଭଗବାନ ସିଏ କିଛିବି ସୃଷ୍ଟି କରିପାରିବେ, କିଛି ବି ବିଲୟ କରିପାରିବେ । 'ଭଗବାନ' ଶବ୍ଦର ଅର୍ଥ ହେଲା ଯିଏ ନୂତନ ସୃଷ୍ଟି କରିପାରେ । ସେଦିନ ଭଗବାନ ଶ୍ରୀକୃଷ୍ଣ ସ୍ୱୟଂ ଗୋପପୁର ବାସୀଙ୍କ ମୁଣ୍ଡ ଉପରେ ଗୋବର୍ଦ୍ଧନ ପର୍ବତ ରୂପରେ ଆଚ୍ଛାଦିତ ହୋଇ ସେମାନଙ୍କୁ ଅଭୟ ପ୍ରଦାନ କରିଥିଲେ । କହିବା ବାହୁଲ୍ୟ ଯେ, ଯେତେବେଳେ ଭକ୍ତର ଡାକରେ ମହାପ୍ରଭୁଙ୍କ ହୃଦୟ ଦ୍ରବୀଭୂତ ହୋଇଯାଏ ସେତେବେଳେ ସେ ଗୋବର୍ଦ୍ଧନ ସଦୃଶ୍ୟ ରକ୍ଷା କବଚ ପାଲଟିଯା'ନ୍ତି ଏବଂ ଭକ୍ତକୁ ବିପଦରୁ ରକ୍ଷା କରନ୍ତି ।

ନିମ୍ନବର୍ଣ୍ଣିତ ଅନୁଭୂତିର କାହାଣୀରେ କେମିତି ଆମ କାଳିଆ ସାଆନ୍ତ ବିଭିନ୍ନ ସମୟରେ କଳ୍ପନାରୂପୀ ଗୋବର୍ଦ୍ଧନ ଧାରଣ କଲେ ଏବଂ ତାଙ୍କ ବସିବା ସ୍ଥାନକୁ ବର୍ଷା ଦାଉରୁ ସୁରକ୍ଷିତ ରଖିଲେ ତାହା ବର୍ଣ୍ଣନା କରାଯାଇଛି । ଦ୍ୱାପରର ଶ୍ରୀକୃଷ୍ଣ ଯେ ନୀଳକନ୍ଦର ବାସୀ ଜଗନ୍ନାଥ ତାହାର ପ୍ରମାଣ ଦିଏ ଜୟଦେବଙ୍କ କୃତ ଗୀତଗୋବିନ୍ଦ, ଶଙ୍କରାଚାର୍ଯ୍ୟଙ୍କ ଲିଖିତ 'କଦାଚିତ୍ କାଳନ୍ଦୀ ତଟ ବିପିନ...' ଜଗନ୍ନାଥାଷ୍ଟକ, ଅତିବଡ଼ୀ ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତ ଇତ୍ୟାଦି । ସେହି ନୀଳକନ୍ଦରବାସୀ ମହାପ୍ରଭୁ ଜଗନ୍ନାଥ ତାଙ୍କ ଅଭୟ ହାତ ବଢ଼ାଇ ଏ ଭୟାଳୁକୁ କେମିତି ଅଭୟ ପ୍ରଦାନ କରିଛନ୍ତି, ତାହା ଏଠାରେ ବର୍ଣ୍ଣିତ ।

ଆମେ ଆଇ.ଆଇ.ଟି., କାନପୁରରେ କାମ କରୁଥିଲା ବେଳେ ଭୁବନେଶ୍ୱର ଉପକଣ୍ଠ ସତ୍ୟ ବିହାର ଠାରେ ଏକ ଛୋଟ ଜାଗାଟିଏ ନେଇଥିଲୁ, ମାତ୍ର ୧୮ଶହ ବର୍ଗଫୁଟ । ଏତେ ଛୋଟ ଜାଗାରେ ଭଲ ଘର ହୋଇପାରିବନି ଭାବି ଆମେ ମନସ୍ଥ କରିଥାଉ ତାକୁ ବିକି ଦେଇ ଅନ୍ୟତ୍ର ଜାଗା ନେଇ ଘର କରିବୁ । କିନ୍ତୁ ବିଭିନ୍ନ କାରଣ ନେଇ ତାହା ସମ୍ଭବ ହେଲାନାହିଁ ଏବଂ ୨୦୧୨ ସୁଦ୍ଧା ହାଇଟେକ୍ ଛକ ପାଖରୁ ଦୟାନଦୀ ପର୍ଯ୍ୟନ୍ତ ବାଇପାଶ୍ ରୋଡ଼ ତିଆରି ହୋଇଗଲା । ଆମ ମନରେ ଆସିଲା ଏହାବୋଧେ ମହାପ୍ରଭୁଙ୍କର ପରୋକ୍ଷ ନିର୍ଦ୍ଦେଶ ଯେ ସତ୍ୟ ବିହାରରୁ ଏହି ବାଇପାଶ୍ ରୋଡ଼କୁ ଯିବାକୁ ମାତ୍ର ପାଞ୍ଚ ମିନିଟ୍ ଲାଗେ । ମହାପ୍ରଭୁ ଆମ ଭିତରେ ପ୍ରେରଣା ଦେଲେ ଏହି ଛୋଟ ପ୍ଲଟ୍‌ରେ ଘର ତିଆରି କରିବାପାଇଁ । ପୁଣି ଭାବନା ଆସିଲା, ପ୍ଲଟ୍ ଛୋଟ ହେଲେ କ'ଣ ହେବ ଯଦି ଏହା ଏକ ସ୍ୱତନ୍ତ୍ର ସନ୍ଦେଶ ସମାଜକୁ ଦେଇପାରିଲା ତାହା ହିଁ ହେବ ପ୍ରକୃତ ବିଶାଳତା ବା ମହନୀୟତା ।

ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗ କରି ଆମେ ଏହି ନୂତନ ଗୃହ ନିର୍ମାଣ ପାଇଁ ମନ ବଳେଇଲୁ । ୨୦୧୩ ମସିହା ଅକ୍ଷୟ ତୃତୀୟାର ପୂର୍ବଦିନ ଭୂମି ପୂଜନ ହେଲା । ଆମର ପରମପୂଜ୍ୟ ଗୁରୁଦେବ ସ୍ୱାମୀ ଶ୍ରଦ୍ଧାନନ୍ଦଙ୍କ ସ୍ୱହସ୍ତରେ ଅର୍ଘ୍ୟ ପ୍ରଦାନ କରାଗଲା

ଏବଂ ତାଙ୍କରି ତତ୍ତ୍ୱାବଧାନରେ ନିର୍ମାଣ କାର୍ଯ୍ୟର ଶୁଭ ପ୍ରଦାନ କରାଗଲା । ବନ୍ଧୁ ପଣ୍ଡିତ ରବୀନ୍ଦ୍ରନାଥ ମିଶ୍ର ଭୂମି ପୂଜନ ଶ୍ରଦ୍ଧାର ସହ କରିଥିଲେ ।

ଭୂମି ପୂଜନର ତିନି ମାସ ବିତିଯାଇଥିଲେ ମଧ୍ୟ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇପାରୁ ନଥାଏ । ଅକ୍ଷୟ ତୃତୀୟା ପଡ଼େ ଅପ୍ରେଲ ମାସରେ । ସେତେବେଳେ ଖରା ଥାଏ । ତେଣୁ ନିଅଁ କାର୍ଯ୍ୟ ସୁରୁଖୁରୁରେ ହୋଇଯାଏ । କିନ୍ତୁ ଆମ କ୍ଷେତ୍ରରେ ବ୍ୟତିକ୍ରମ ଦେଖାଦେଲା । ଆମ ନିଅଁ କାମ ଆରମ୍ଭ ହେଲାବେଳକୁ ଜୁଲାଇ ହୋଇଗଲା । ପ୍ରବଳ ବର୍ଷା ବି ଆରମ୍ଭ ହୋଇଗଲା । ତେଣୁ କ'ଣ କରିବୁ କିଛି ବୁଝିପାରୁ ନଥାଉ । ଆମର ସେହି ଛୋଟ ଜାଗାଟିରେ ବର୍ଷାଦିନେ ପୁରୁଷେ ପାଣି ଛିଡ଼ା ହୋଇଯାଏ । ଯେହେତୁ ଆମେ ଠିକାଦାର ଉପରେ ନିର୍ଭର କରୁଥାଉ, ତାଙ୍କ ଯୋଜନାକୁ ମାନିନେବା ଛଡ଼ା ଆମର ଅନ୍ୟ ଉପାୟ ନଥାଏ । ବର୍ଷାର ଦୌରାତ୍ମ୍ୟକୁ ସ୍ୱାଗତ କରିବା ସଙ୍ଗେ ସଙ୍ଗେ ଗୁରୁ-ଗୋବିନ୍ଦଙ୍କୁ ସୂକ୍ଷ୍ମରେ ସଂପୂର୍ଣ୍ଣ କାର୍ଯ୍ୟର ଦାୟିତ୍ୱ ଅର୍ପଣ କରି ନିଅଁ ଖୋଳିବା ଆରମ୍ଭ କଲୁ ।

ଖୁଣ୍ଟ ମାନଙ୍କର ଢଳେଇ ପକାଇବା ଦିନ ଧାର୍ଯ୍ୟ ହେଲା । ସକାଳୁ ପାଗ ଭଲ ଥାଏ । ଗୋବିନ୍ଦ ବାବୁ ଯିଏ ଏହି ଗୃହ ନିର୍ମାଣର ଦାୟିତ୍ୱ ନେଇଥା'ନ୍ତି ତାଙ୍କ ଲୋକମାନଙ୍କୁ (ରାଜମିସ୍ତ୍ରୀ, ମେସିନ୍ ଚାଳକ, ମଜୁରିଆ ଇତ୍ୟାଦିଙ୍କୁ) ନେଇ ନିର୍ମାଣ ସ୍ଥଳରେ ପହଞ୍ଚିଲେ । ଯେହେତୁ ଏହାଥିଲା ନିର୍ମାଣ କାର୍ଯ୍ୟର ପ୍ରଥମ ଦିନ, ଆମେ ବି ଉପସ୍ଥିତ ଥାଉ । ନଡ଼ିଆ ବାଡ଼ିଆ ହେବ, ପୂଜା ହେବ, ତା'ପରେ କାର୍ଯ୍ୟ ଆରମ୍ଭ ।

ଯେହେତୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଆମେ ନିର୍ମାଣର ଦାୟିତ୍ୱ ମନେ ମନେ ସମର୍ପି ଦେଇଥାଉ ସେଦିନ ଶ୍ରୀମନ୍ଦିରରୁ ଆସିଥିବା ନେତକୁ ଆମେ ସେଠାରେ ସ୍ଥାପନ କଲୁ । ଗୋବିନ୍ଦ ବାବୁ ଆମକୁ କହିଲେ, ସାର୍ ଆଉ ଡେରି କାହିଁକି ! ନଡ଼ିଆ ବାଡ଼େଇ କାର୍ଯ୍ୟ ଆରମ୍ଭ କରନ୍ତୁ ।

ଆମେ କହିଲୁ, 'କାର୍ଯ୍ୟର ଶୁଭ ତ ଦିଆ ସରିଛି । ମା' ଧରିତ୍ରୀଙ୍କୁ ତ ଅର୍ଘ୍ୟ ଦିଆ ସରିଛି ।'

କହିବାର ଉଦ୍ଦେଶ୍ୟ ଥିଲା, ଯେଉଁଦିନ ଭୂମି ପୂଜନ ହୋଇଥିଲା, ସେଦିନ ଆମର ପରମପୂଜ୍ୟ ଗୁରୁଦେବଙ୍କ ହାତରେ କାର୍ଯ୍ୟର ଶୁଭାରମ୍ଭ କରେଇଥିଲୁ । ତା'ଛଡ଼ା ବାବାହିଁ ପଇଡ଼ ପାଣି ନେଇ ଐଶାନ୍ୟ କୋଣରେ ବାସ୍ତୁ ଦେବତାଙ୍କୁ ସନ୍ତୁଷ୍ଟ କରାଇଥିଲେ । ଜଣେ ଉଚ୍ଚକୋଟୀର ସନ୍ଥ, ଶ୍ରୀଜଗନ୍ନାଥଙ୍କ ଅନନ୍ୟ ଭକ୍ତଙ୍କ ହାତରେ ଏହି ନିର୍ମାଣର ଶୁଭାରମ୍ଭ ହୋଇଥିଲା । ଏହି ନିର୍ମାଣର ଲକ୍ଷ୍ୟ ଥିଲା, ଏହା ଏକ ଗୃହସ୍ଥାଶ୍ରମ ହେଲେ

ହେଁ ଏହା ଉତ୍ସର୍ଗ ହେବ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ଚେତନାକୁ ପରିବ୍ୟାପ୍ତ କରିବାକୁ ଏବଂ କ୍ରିୟାଯୋଗକୁ ପ୍ରଚାର ଓ ପ୍ରସାର କରିବାକୁ । ତାହାହିଁ ହୋଇଛି ମଧ୍ୟ ।

ତଥାପି ଗୋବିନ୍ଦ ବାବୁ ଅନୁରୋଧ କଲେ, 'ଆପଣ ଗୃହକର୍ତ୍ତା ! ଆଜି ଆପଣଙ୍କ ହାତରେ ଏହାର ଶୁଭାରମ୍ଭ ହେବ ।'

ଆମେ ଆଗେଇ ଗଲୁ । ଐଶାନ୍ୟ କୋଣରେ ଧୂପ, ଦୀପ, ନୈବେଦ୍ୟ ଦେଇ ପୂଜା କଲୁ ଏବଂ ଦୀର୍ଘଶ୍ୱାସରେ 'ଶ୍ରୀଜଗନ୍ନାଥ ଗାୟତ୍ରୀ' - 'ଓଁ ଦାରୁବ୍ରହ୍ମାୟ ବିଦ୍ମହେ ଜଗନ୍ନାଥାୟ ଧିମହୀ ତନ୍ନୋ ବ୍ରହ୍ମ ପ୍ରଚୋଦୟାତ୍' ଜପ କଲୁ । ନଡ଼ିଆଟିକୁ ଶ୍ରୀଜଗନ୍ନାଥଙ୍କୁ ସମର୍ପଣ କରି ସେଠାରେ ବାଡ଼େଇ ତା'ର ଅର୍ଘ୍ୟ ବାସ୍ତୁ ଦେବତାଙ୍କୁ ଅର୍ପଣ କଲୁ । କରଣୀରେ ସିମେଣ୍ଟ-ବାଲିର ମସଲା ନେଇ ଦୁଇ ଇଟା ମଝିରେ ପ୍ରଦାନ କଲୁ । ତା'ପରେ ଆରମ୍ଭ ହେଲା ରାଜମିସ୍ତ୍ରୀଙ୍କ ଦ୍ୱାରା ପରବର୍ତ୍ତୀ କାର୍ଯ୍ୟକ୍ରମ ।

ତିନି-ଚାରିଟି ସ୍ତମ୍ଭର ଢଳେଇ ପଡ଼ି ସାରିଛି, ସମୟ ୧୨ଟା ପାଖାପାଖି ହେବ । ଚାରିଆଡ଼ୁ ଘୋଟି ଆସିଲା କଳାହାଣ୍ଡିଆ ମେଘ । ମନ ହେଲା ବିଚଳିତ । ବାହ୍ୟ ଜଗତରେ ପ୍ରବଳ ମେଘର ସୂଚନା ମିଳୁଥିଲା ବେଳେ ଆମେ ହେଲୁ ଅନ୍ତର୍ମୁଖୀ । ମହାପ୍ରଭୁଙ୍କୁ ଜଣେଇଲୁ, 'ପ୍ରଭୁ ! କେଉଁଠି ତ୍ରୁଟି ରହିଗଲାକି ! ଗୁରୁ-ଗୋବିନ୍ଦଙ୍କ ଚରଣରେ ପ୍ରଣତି ଜଣେଇ ଏତିକି କହିଲୁ, ପ୍ରଭୁ ! ତୁମ ଆଶ୍ରମ, ତୁମ ମନ୍ଦିର ! ତା'ର ସମସ୍ତ ଦାୟିତ୍ୱ ଆପଣଙ୍କୁ ସମର୍ପିତ, ଆପଣ ଏହାର ରକ୍ଷାକର୍ତ୍ତା ।

ଦ୍ୱାପରର ଶ୍ରୀକୃଷ୍ଣ କେମିତି ଗୋବର୍ଦ୍ଧନ ଧାରଣ କରିଥିଲେ ତାହା ଆମକୁ ଜଣା ନାହିଁ, କିନ୍ତୁ ଆମ କାଳିଆ ସାଆନ୍ତ ଆମପାଇଁ ଅଦୃଶ୍ୟ ଗୋବର୍ଦ୍ଧନ ଧାରଣ କଲେ ।

ଆମେ ଦେଖୁଛୁ ଉତ୍ତରକୁ ଅର୍ଥାତ୍ କଟକ ପଟକୁ ମେଘର ଧାର ଲମ୍ବି ଆସିଲାଣି ତଳକୁ । ଚାହିଁଲୁ ପୂର୍ବକୁ ଅର୍ଥାତ୍ କୁଆଖାଇ ନଦୀ ଆଡ଼କୁ-ଦେଖୁଛୁ ବର୍ଷା ଗାଳି ଚାଲିଛି, ଚାହିଁଲୁ ଭୁବନେଶ୍ୱର ସହର ଆଡ଼କୁ ବର୍ଷା ଗୋଡ଼ ବଢ଼େଇଲାଣି ଆଉ ଛୁଇଁବ ଧରଣୀକୁ । ଆଉ ପଶ୍ଚିମରେ ଅନୁରୂପ ଅବସ୍ଥା । ଏକ ଘଣ୍ଟାର ଅନ୍ତଃସ୍ୱର ଆମ କାଳିଆ ସାଆନ୍ତଙ୍କ ହୃଦୟକୁ ଛୁଇଁଥିଲା ସମ୍ଭବତଃ । ଏକଘଣ୍ଟା ପରେ ଜଣେ ବନ୍ଧୁ ଯିଏ ଜଗତ୍‌ସିଂହପୁରରୁ ଆସୁଥିଲେ ସେ ସତ୍ୟବିହାରରେ ପହଞ୍ଚିଲେ ସଂପୂର୍ଣ୍ଣ ଓଦା ହୋଇ ଆଉ କହିଲେ ପାହାଳ ପର୍ଯ୍ୟନ୍ତ ଏତେ ବର୍ଷା ଯେ ମୁଁ ସଂପୂର୍ଣ୍ଣ ଓଦା ହୋଇଗଲି । ଆମେ ଯେତେବେଳେ ମଧ୍ୟାହ୍ନରେ ଆଚାର୍ଯ୍ୟ ବିହାରସ୍ଥ ଆମ ସରକାରୀ ବାସଭବନକୁ ଗଲୁ ଦେଖିଲୁ ଯେ, ବାଣୀବିହାର ପରଠାରୁ ବର୍ଷା ହୋଇଛି ଏବଂ ପରେ ଖବର ମିଳିଲା ଯେ ସହରରେ ପ୍ରବଳ ବର୍ଷା ହୋଇଛି ।

ସତ୍ୟବିହାରସ୍ଥ ଆମର ପ୍ରଥମ ଦିନର ନିର୍ମାଣ କାର୍ଯ୍ୟ ବିନା ବ୍ୟାଘାତରେ ସଂପୂର୍ଣ୍ଣ ହେଲା । ବର୍ଷା ଆସୁଥିବା ସମୟରେ ଅବଶ୍ୟ କୁଣ୍ଡା ଝାଡ଼ିଲା ପରି ଟିକେ ବର୍ଷିଲା, ତାହା ମହାପ୍ରଭୁଙ୍କ ଆମ ପ୍ରତି ଏବଂ ଏହି ଗୃହସ୍ଥାଶ୍ରମ ପ୍ରତି ତାଙ୍କର ପୁଷ୍ପ ବର୍ଷା ବୋଲି ଆମେ ଭାବିଲୁ । ଏହା ଅତ୍ୟନ୍ତ ଶୁଭ ବୋଲି ଗୋବିନ୍ଦ ବାବୁ କହିଲେ ।

ଅପରାହ୍ନରେ ଅଦୃଶ୍ୟ ଗୋବର୍ଦ୍ଧନ ହଟିଗଲେ ଏବଂ ପଶ୍ଚିମ ଆକାଶରୁ ଭାସ୍କର ତାଙ୍କର ଜୁଲାଇ ମାସର ଟାଣୁଆ ରଶ୍ମି ନିକ୍ଷେପ କରିବାକୁ ଲାଗିଲେ ଆଉ ଆକାଶ ଦିଶିଲା ସ୍ୱଚ୍ଛ ଏବଂ ନିର୍ମଳ ।

ସଂଧ୍ୟାରେ ଆମେ ମହାପ୍ରଭୁଙ୍କୁ ଆଳତି କରୁଥିଲୁ, ମହାପ୍ରଭୁ ହସୁଥିଲେ, ତାଙ୍କ ରଙ୍ଗା ଅଧରରୁ ଝରି ପଡୁଥିବା ମୁଚୁକୁନ୍ଦ ହସକୁ ଆମେ ଅନୁଭବ କଲୁ ଯେପରି ସେ କହୁଛନ୍ତି, 'ଦେଖିଲୁ ତ ! ମୁଁ କେମିତି ଗୋବର୍ଦ୍ଧନ ଧାରଣ କଲି । ଏହା ତ ଆରମ୍ଭ ମାତ୍ର, ଅପେକ୍ଷା କର, ଦେଖିବୁ କେତେ ଅଲୌକିକତା ଏହି ଆଶ୍ରମରେ ଅନୁଭୂତ ହେବ ।

ଆମେ ଅପେକ୍ଷା କଲୁ ମହାପ୍ରଭୁଙ୍କ ପରବର୍ତ୍ତୀ ଲୀଳାକୁ ଅବଲୋକନ କରିବା ପାଇଁ ।

ଏବେ ଆଶ୍ରମ କାର୍ଯ୍ୟ ଶେଷ ହୋଇଛି ଏବଂ ମହାପ୍ରଭୁ ସ୍ଥାପିତ ହୋଇଛନ୍ତି ଚତୁର୍ଥ ମହଲାରେ ।

କୁଳସଚିବ, ନାଇକର
୫ ଆର୍.ଏଫ୍-୨/୪, ୟୁନିଟ୍ - ୯, ଭୁବନେଶ୍ୱର - ୨୨
ଭ୍ରାମ୍ୟଭାଷ : ୯୪୩୭୪୯୭୮୭୮



# ଅନୁଭୂତିରୁ ପଦେ ଅଧେ

## ପ୍ରଶାନ୍ତ କୁମାର ଷଡ଼ଙ୍ଗୀ

ପ୍ରାୟ ବର୍ଷକ ତଳର ଏକ ଘଟଣା । ସେଦିନ ଥିଲା ୨୦୧୪ ମସିହା ମାର୍ଚ୍ଚ ମାସ ୩୧ ତାରିଖ । ସବୁଦିନ ପରି ସେଦିନ ମଧ୍ୟ ଯଥା ସମୟରେ ଅଫିସ୍‌ରେ ପହଞ୍ଚି କାର୍ଯ୍ୟ ଆରମ୍ଭ କରୁଥାଏ । ହଠାତ୍ ଶଳାଦ୍ୱୟଙ୍କ ଠାରୁ ଖବର ପାଇଲି, ମୋର ଶ୍ୱଶୁର ମସ୍ତିଷ୍କ ଆଘାତରେ ଆକ୍ରାନ୍ତ ହୋଇ ଚିକିତ୍ସାଳୟର ଆଇ.ସି.ୟୁ.ରେ ଅଛନ୍ତି । ପ୍ରାୟ ଘଣ୍ଟାକ ମଧ୍ୟରେ ପତ୍ନୀକୁ ସାଙ୍ଗରେ ନେଇ କଟକରେ ପହଞ୍ଚିଲି । ପହଞ୍ଚିବା ପରେ ଦେଖିଲି ଶ୍ୱଶୁର ଅଚେତନ ଅବସ୍ଥାରେ ଅଛନ୍ତି । ଡାକ୍ତରମାନେ ତାଙ୍କ ଅବସ୍ଥାକୁ ନେଇ ଖୁବ୍ ତତ୍ପର ଜଣାପଡୁଥା'ନ୍ତି । ଅବସ୍ଥା ଉଦ୍‌ବେଗଜନକ ବୋଲି ଡାକ୍ତରମାନଙ୍କ ଗତିବିଧିରୁ ଜାଣିପାରିଲି । ଶଳା ଦୁଇଜଣ ମୋ ଠାରୁ ବୟସରେ ବହୁତ ସାନ । ବାପାଙ୍କୁ ଏପରି ଅବସ୍ଥାରେ ଦେଖି ଭାରି ବ୍ୟସ୍ତ ହୋଇପଡୁଥା'ନ୍ତି । ଔଷଧପତ୍ର ପାଇଁ ଦୌଡ଼ ଧାପଡ଼ କରୁଥା'ନ୍ତି । ଶ୍ୱଶୁରଙ୍କ ଅବସ୍ଥା ଉଦ୍‌ବେଗଜନକ ବୋଲି ଡାକ୍ତରମାନେ ଚେତାଇ ଦେଲେ । ରକ୍ତଚାପ ଧୀରେ ଧୀରେ କମି କମି ଯାଉଥାଏ । ଏହା ଏକ ଭଲ ଲକ୍ଷଣ ନୁହେଁ ବୋଲି ଡାକ୍ତର ସୂଚାଇଦେଲେ । ଏଣୁ ସମସ୍ତେ ବ୍ୟସ୍ତ ହୋଇ ପଡ଼ିଲୁ । ଅତି ବିକଳ ହୋଇ ଠାକୁରଙ୍କୁ ପ୍ରାର୍ଥନା କରୁଥାଉ ଏବଂ ଡାକ୍ତରଙ୍କୁ ଅନୁରୋଧ କଲୁ ତୁରନ୍ତ ଚିକିତ୍ସା ଆରମ୍ଭ କରନ୍ତୁ । ତତ୍‌କ୍ଷଣାତ୍ ଡାକ୍ତର ଏକ ଫର୍ମ ଦେଇ ସେଥିରେ ଦସ୍ତଖତ କରିବାକୁ କହିଲେ । ଯାହାକି ସାଧାରଣତଃ ଅପରେସନ ବା କୌଣସି ପ୍ରକାର ଲାଇଫ ସେଭିଙ୍ଗ୍ ଔଷଧ ବ୍ୟବହାର ଆଗରୁ ଡାକ୍ତରମାନେ କରାଇଥା'ନ୍ତି । ଜଗନ୍ନାଥଙ୍କୁ ଡାକି ତୁରନ୍ତ ସେଥିରେ ମୁଁ ଏବଂ ମୋର ପତ୍ନୀ ଦସ୍ତଖତ କଲୁ । ସେପଟେ ଚିକିତ୍ସା ଆରମ୍ଭ ହେଲା । କିନ୍ତୁ ଏପଟେ ଆମର ଆଇ.ସି.ୟୁ. ବାହାରେ ଜଗନ୍ନାଥଙ୍କୁ ଡାକିବା ଛଡ଼ା ଅନ୍ୟ ଉପାୟ ନଥିଲା । ଶଳା ଦୁଇଜଣ ସାନ ହୋଇଥିବାରୁ ତାଙ୍କୁ ମୁଁ ବାରମ୍ବାର ଆଶ୍ୱାସନା ଦେଉଥାଏ । କିନ୍ତୁ ମୋ ମନଂକୁ ମୁଁ ନିଜେ ବୁଝାଇପାରୁ ନଥାଏ'।

ତିନି ତିନି ଥର ଷ୍ଟ୍ରୋକ୍ ! ବାପା କ'ଣ ଆଖି ଖୋଲି ଆଉ ଚାହିଁବେ ? ପ୍ରଭୁଙ୍କୁ ଆକୁଳ ଭାବରେ ପ୍ରାର୍ଥନା କରୁଥାଏ, ବାପା ଶୀଘ୍ର ଭଲ ହୋଇ ଘରକୁ ଫେରନ୍ତୁ । ତାଙ୍କର ଲିଖିତ ଜଗନ୍ନାଥ ସମ୍ବନ୍ଧୀୟ ଏକ ପୁସ୍ତକ ମୁଦ୍ରଣ ଅବସ୍ଥାରେ ଥାଏ । ମୋର ପତ୍ନୀ ଏହି ପୁସ୍ତକର ସଙ୍କଳନ ଦାୟିତ୍ୱରେ ଥାଏ । ବହିଟି କିପରି ଶୀଘ୍ର ଛପା ହେବ, ସ୍ନାନ ପୂର୍ଣ୍ଣିମାରେ ଠାକୁରଙ୍କ ପାଖରେ ଲାଗି ହେବ ଏଥିପାଇଁ ବାପା ଆଗରୁ ପ୍ରକାଶକଙ୍କ ସହିତ କଥାବାର୍ତ୍ତା କରୁଥାଆନ୍ତି । ଆଗକୁ ଏତେ ବଡ଼ କାମ । ମନକୁ ଖାଲି ପାପ

ଛୁଉଁଥାଏ । ବହିଟି କେମିତି ପ୍ରକାଶ ପାଇବ ? ବହିଟି କ'ଣ ବାପା ଆଉ ଦେଖିପାରିବେ ନାହିଁ ? ଏମିତି ଅନେକ ପ୍ରଶ୍ନ ମନକୁ ଭାରାକ୍ରାନ୍ତ କରୁଥାଏ ଓ ମନରେ କୋହ ଆସୁଥାଏ । ମାତ୍ର ତାକୁ ସବୁ ହୃଦୟ ଭିତରେ ଚାପି ରଖି ମନେ ମନେ ଜଗନ୍ନାଥଙ୍କୁ ଡାକୁଥାଏ, 'ତୁମେ ହିଁ ତୁମ ଭକ୍ତକୁ ରକ୍ଷା କର ।'

ଧନ୍ୟ ପ୍ରଭୁ ଜଗନ୍ନାଥଙ୍କର ମହିମା ! ଏ କଥା କେହି ବିଶ୍ୱାସ କରିପାରିବେ ନାହିଁ । ପ୍ରଭୁ ଜଗନ୍ନାଥ ଏପରି ଠାକୁର ଯେ ତାଙ୍କର ବିଚିତ୍ର ମହିମାର ଅନ୍ତ ନାହିଁ । ଏକଥା କେବଳ ଅନୁଭବୀ ହିଁ ଜାଣିପାରିବ । ଆଇ.ସି.ୟୁ.ରେ ବିପଦଜ୍ଜନକ ଅବସ୍ଥାରେ ପାଖାପାଖି ୨୪ ଘଣ୍ଟା ରହିବା ପରେ ବାପାଙ୍କର ହଠାତ୍ ଚେତା ଫେରିଲା । ମୋର ଶ୍ୱଶୁର ଜଣେ ଅବସରପ୍ରାପ୍ତ ସରକାରୀ ଡାକ୍ତର । ସାରା ଜୀବନ ଲୋକଙ୍କ ସେବାରେ କଟାଇଥିବା ଜଣେ ଭକ୍ତର ଚିକିତ୍ସା ଦାୟିତ୍ୱ ନିଜେ ଜଗନ୍ନାଥ ହିଁ ନେଲେ । ଭକ୍ତ ପାଖରେ ସେ ନିଜେ ଜଣେ ଚିକିତ୍ସକ ହୋଇ ଭକ୍ତକୁ ରକ୍ଷା କଲେ । ନହେଲେ ଏହା ବୋଧହୁଏ ସାଧାରଣ ଡାକ୍ତରଙ୍କ ପାଖରେ ମଧ୍ୟ ସମ୍ଭବ ହୋଇପାରି ନଥା'ନ୍ତା । ରୋଗୀ ବର୍ତ୍ତମାନ ବିପଦମୁକ୍ତ ବୋଲି ଡାକ୍ତର ଘୋଷଣା କଲେ ।

ବାପାଙ୍କର ଚେତା ଫେରିବା ପରେ ସେ ଦେଖିଲେ ସେ ଏକ ଡାକ୍ତରଖାନାରେ ଅଛନ୍ତି । ତାଙ୍କର ଶଯ୍ୟା ନିକଟକୁ ଡାକ୍ତର ମହାଶୟ ଆସିବା ସମୟରେ ବାପା ଅସ୍ପଷ୍ଟ ସ୍ୱରରେ ତାଙ୍କୁ ପଚାରିଲେ, ଡକ୍ଟର ମୋର କ'ଣ ହୋଇଛି ? ଡାକ୍ତର ମହାଶୟ ତାଙ୍କୁ ଉତ୍ତର ଦେଲେ, ଆପଣଙ୍କର କିଛି ହୋଇନାହିଁ । ଜଣେ ବୟସ୍କ ଲୋକର ମସ୍ତିଷ୍କ ଯାହା ହେବା କଥା ତାହା ହିଁ ହୋଇଛି । ଆଉ ଗୋଟିଏ ବଢ଼ିଆ କଥା କହିଥିଲେ - ଗାଁରେ ଲୋକମାନେ ଭାବୁଥିବେ ଯେ ବୁଢ଼ା ଯାଇଛି, ଆଉ ଫେରିବ ନାହିଁ । ଆପଣ ଏବେ ଦୁଇଦିନ ସାଧାରଣ ୱାର୍ଡ଼ରେ ରହି ଘରକୁ ଫେରିଯିବେ । ଯାହାହେଉ ଠାକୁରେ ଆମର ଡାକ ଶୁଣିଲେ । ସେ ସମସ୍ତଙ୍କୁ ରୋଗ, ବଇରାଗ ଓ କିଛି ନା କିଛି ଦୁଃଖ ସୁଖ ଦେଇଥା'ନ୍ତି ଏବଂ ଏପରିକି ତାଙ୍କ ନିଜକୁ ମଧ୍ୟ ସାଂସାରିକ ଲୀଳା ଯଥା ରୋଗ ଓ ମରଣ ମଧ୍ୟ ଭୋଗ କରିବାକୁ ପଡ଼ିଥାଏ ।

ଏହା ଭିତରେ ବାପା ଟିକେ ଭଲ ହୋଇ ଘରକୁ ଆସିଲେ । ନାକବାଟେ ଖାଇବାକୁ ଦିଆଯାଉଥାଏ ଓ ପରିସ୍ରା ନଳୀ ମଧ୍ୟ ଲାଗିଥାଏ । ଯାହାହେଉ ସେତେବେଳକୁ ତାଙ୍କ ଲିଖିତ ଜଗନ୍ନାଥ ସମ୍ବନ୍ଧୀୟ ପୁସ୍ତକଟି ସଂପୂର୍ଣ୍ଣ ଭାବରେ ପ୍ରକାଶ ପାଇବା ଅବସ୍ଥାକୁ ଆସିଯାଇଥାଏ । ତା'ପରେ କେମିତି ପୁସ୍ତକଟି ଠାକୁରଙ୍କ ପାଖରେ ଲାଗି କରାଯିବ ? ପୁରୀରେ ସ୍ନାନ ପୂର୍ଣ୍ଣିମା ଅବସରରେ ଠାକୁରଙ୍କ ପାଖରେ ଲାଗି କରାଇବେ ବୋଲି

ପ୍ରକାଶକ ମହାଶୟ ସୂଚନା ଦେଲେ । ମାତ୍ର ମୋର ପତ୍ନୀ ବହିଟି ତାଙ୍କ ଗ୍ରାମର ଜଗନ୍ନାଥ ମନ୍ଦିରସ୍ଥ ସ୍ନାନ ମଣ୍ଡପରେ ସେହି ସ୍ନାନ ପୂର୍ଣ୍ଣିମା ଦିନ ଲାଗି କରିବାପାଇଁ ପ୍ରସ୍ତାବ ଦେଲେ । ଏଥିରେ ପ୍ରକାଶକ ମହାଶୟ କିଞ୍ଚିତ୍ ଅସମ୍ମତି ପ୍ରକାଶ କରୁଥା'ନ୍ତି । ବାପାଙ୍କର କିନ୍ତୁ ଇଚ୍ଛା ଥାଏ ଯେ, ମୁଁ ତ ଆଉ ଯିବା ଆସିବା କରିପାରୁନି । ଦେହ ଅସୁସ୍ଥ । ତେଣୁ ବହିଟି ଏଇଟି ଗାଁ ମନ୍ଦିରରେ ଜଗନ୍ନାଥଙ୍କ ପାଖରେ ଲାଗିହେଲେ ଭଲ ହୁଅନ୍ତା । କାଳିଆ ଠାକୁର ବାପାଙ୍କର ମନ କଥା ଜାଣିପାରିଲେ । ହଠାତ୍ ସ୍ନାନପୂର୍ଣ୍ଣିମା ପୂର୍ବଦିନ ପ୍ରକାଶକ ମହାଶୟ ମୋର ପତ୍ନୀଙ୍କୁ ଫୋନରେ ଜଣାଇଲେ ଯେ, ବହିଟି ଆସନ୍ତାକାଲି ଆପଣଙ୍କ ଗାଁ ଜଗନ୍ନାଥ ମନ୍ଦିରରେ ଲାଗି କରାଯିବ । ହଉ ଠାକୁରଙ୍କର ଯେଉଁଠି ଇଚ୍ଛା । ବାପା ଯାହା ଚାହୁଁଥିଲେ ଠାକୁର ବି ସେଇଆ ଚାହିଁଲେ । ପ୍ରକୃତରେ କାଳିଆ ଠାକୁର ହେଉଛନ୍ତି ଭାବଗ୍ରାହୀ ଓ ଭକ୍ତବତ୍ସଳ । ପ୍ରକାଶକ ମହାଶୟ ପୁସ୍ତକ ଆଣି ସ୍ନାନ ପୂର୍ଣ୍ଣିମା ଦିନ ଶ୍ୱଶୁରଙ୍କ ଘରେ ପହଞ୍ଚିଲେ । ମୋର ପତ୍ନୀ ଅତ୍ୟନ୍ତ ଖୁସି ହୋଇ ପ୍ୟାକେଟ୍‌ଟିକୁ ଖୋଲିବାକୁ ଉଦ୍ୟମ କରନ୍ତେ ବାପା ଆଖି ବୁଜି ଦେଇ କହିଲେ, ଏହା ଜଗନ୍ନାଥଙ୍କ ପାଖରେ ଲାଗି କରାଯିବା ପରେ ହିଁ ଅନ୍ୟ କେହି ଦେଖିବେ । ମୋର ପ୍ରାର୍ଥନା ବାପାଙ୍କୁ ଆରୋଗ୍ୟ କରିବା ଓ ବାପାଙ୍କର ପ୍ରାର୍ଥନା କିପରି ପୁସ୍ତକଟି ତାଙ୍କ ଗ୍ରାମସ୍ଥ ଜଗନ୍ନାଥଙ୍କ ଠାରେ ଉନ୍ମୋଚିତ ହେଉ ତାହା ପରମ କାରୁଣିକ ଜଗନ୍ନାଥ ମହାପ୍ରଭୁ ହିଁ ପୂରଣ କଲେ ।

ମୋର ଶ୍ୱଶୁର ଜଗନ୍ନାଥଙ୍କର ଜଣେ ଚେତନାଭୁକ୍ତ ଭକ୍ତ ଓ ପ୍ରବଚକ । ଦୁଇବର୍ଷ ତଳେ ତାଙ୍କର ଏକ ପ୍ରବଚନ କାର୍ଯ୍ୟକ୍ରମ ପାଖ ଗ୍ରାମ ଲକ୍ଷ୍ମୀନାରାୟଣପୁରରେ ଥାଏ । ସେଦିନ ଆମେ ଭୁବନେଶ୍ୱରରୁ ଗାଁକୁ ଯାଇଥାଉ । ପ୍ରବଚନ କାର୍ଯ୍ୟକ୍ରମ ଶୁଣି ମୁଁ ଏବଂ ମୋର ପତ୍ନୀ ସେଠାରେ ପହଞ୍ଚିଲୁ । ସେଦିନ ତାଙ୍କର ପ୍ରବଚନ କେବଳ ଆମର ନୁହେଁ ସମସ୍ତଙ୍କର ଖୁବ୍ ମନଛୁଆଁ ହୋଇଥିଲା । 'ଭକ୍ତ ଓ ଭକ୍ତି' ପ୍ରସଙ୍ଗକୁ ପ୍ରବଚନ ମାଧ୍ୟମରେ ସେ ବ୍ୟାଖ୍ୟା କରିଥିଲେ । ଅନେକ ଭାବନ୍ତି ଯେ ଦେବତା କେବଳ ମନ୍ଦିରରେ ଥାଆନ୍ତି । ମାତ୍ର ଦେବତା ଅତ୍ର, ତତ୍ର, ସର୍ବତ୍ର ଏକ ସ୍ୱତନ୍ତ୍ର ଭାବରେ ସବୁଠାରେ ଥାଆନ୍ତି । ସେଠାରେ କହିଲା ବାଲା ଓ ଶୁଣିଲା ବାଲା ଉଭୟେ ଭଗବାନ । ସେହି ସ୍ଥାନ ମଧ୍ୟ ଠାକୁରଙ୍କ ସ୍ଥିତି ଯୋଗୁ ପବିତ୍ର ହୋଇଯାଏ । କହିଲାବେଳେ ବାପା ଏଭଳି ଜଗନ୍ନାଥଙ୍କ ଠାରେ ତଲ୍ଲୀନ ହୋଇଯାଉଥା'ନ୍ତି ଯେ ମୋର ପତ୍ନୀ ମନେ ମନେ ବାପାଙ୍କ ଉପରେ ଖୁବ୍ ରାଗିଯାଉଥାଏ । ଡାଇବେଟିକ୍ ରୋଗୀ, ଏତେ ସମୟ ହେଲାଣି । ଶୀଘ୍ର କାହିଁକି ପ୍ରବଚନ ସାରୁ ନାହାନ୍ତି । ଯାହାହେଉ ପ୍ରବଚନ ସରିଲା । ସମସ୍ତେ ଆସି ଘରେ ପହଞ୍ଚିଲୁ । ଘରେ ପହଞ୍ଚିବା ପରେ ମୋର ପତ୍ନୀ ଶାଶୁଙ୍କୁ କହିଲା, ବୋଉ ! ବାପାଙ୍କୁ ଆଜି ସେଠାରେ ବହୁତ

ସମ୍ମାନ ମିଳିଲା । ବାପା ଏହାଶୁଣି ସଙ୍ଗେ ସଙ୍ଗେ କହିଥିଲେ, ନା' ନା' ଏ ସମ୍ମାନ ମୋର ନୁହେଁ, ଏ ସମ୍ମାନ କେବଳ ପ୍ରଭୁ ଜଗନ୍ନାଥଙ୍କର ।

ବାପା ସୁସ୍ଥ ହୋଇ ଗ୍ରାମରେ ଥାଆନ୍ତି । ଶୋଇଥିବା ଅବସ୍ଥାରେ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ଜଣେ କେହି ଅଜଣା ବ୍ୟକ୍ତି ତାଙ୍କ ନିକଟକୁ ଆସି ଦୁଇପଟ ନାଲି ଶଙ୍ଖା ଦେଇ କହିଲେ, ତୋର ତ ଡାହାଣ ହାତ ଅଚଳ, ବାମ ହାତରେ ନେ । ଶଙ୍ଖା ଦୁଇପଟ ନାଲି ସୂତାରେ ବନ୍ଧା ହୋଇଥାଏ । ଏହାପରେ ସେ ସ୍ୱପ୍ନରେ ଦେଖୁଥା'ନ୍ତି ଯେ, ଲୋକ ଜଣକ ଚାଲିଯାଉଛନ୍ତି । ହଠାତ୍ ନିଦରୁ ଉଠି ସବୁ କଥା ଶାଶୁଙ୍କୁ ଜଣାଇ ଶଙ୍ଖା ଦୁଇପଟ ତାଙ୍କୁ ପିନ୍ଧାଇ ଦେଲେ । ଶ୍ୱଶୁର ତ ଖୁବ୍ ଭଗବଦ୍ ବିଶ୍ୱାସୀ । ତେଣୁ ସେ ଜାଣିଲେ, ବାସ୍ତବରେ ଯେଉଁ ବ୍ୟକ୍ତି ସେହି ଶଙ୍ଖା ଦୁଇପଟ ଦେଇଗଲେ ସେ ସାକ୍ଷାତ ଜଗନ୍ନାଥଙ୍କ ବ୍ୟତୀତ ଅନ୍ୟ କେହି ନୁହଁନ୍ତି । ତେଣୁ କିଏ କହିବ ଭଗବାନ ଭକ୍ତବତ୍ସଳ ନୁହଁନ୍ତି ବୋଲି !!

ପ୍ଲଟ୍ ନଂ - ୪୭୦
ନୂଆସାହି, ନୂଆପଲ୍ଲୀ, ଭୁବନେଶ୍ୱର
ଭ୍ରାମ୍ୟଭାଷ : ୯୪୩୮୩୬୫୭୯୩



# ଅନୁଭବରେ ଶ୍ରୀଜଗନ୍ନାଥ

## ଶିବପ୍ରସାଦ ମିଶ୍ର

ଈଶ୍ୱରଙ୍କ ପ୍ରେମରେ ବାନ୍ଧି ହୋଇ ସାରିଥାଏ । ଘରେ, ବାହାରେ, ରାସ୍ତାରେ, ଅଫିସ୍‌ରେ, ବସ୍‌ରେ, ଟ୍ରେନ୍‌ରେ ସବୁଠାରେ ତାଙ୍କର ବନ୍ଧନର ଅନୁଭୂତି । ୨୦୦୫ ଶେଷ ବେଳକୁ ବମ୍ବେ ବଦଳି ହୋଇଗଲା । ଭାବିଲି ଚାକିରି ଛାଡ଼ିଦେବି । କିନ୍ତୁ ହୋଇ ପାରିଲାନାହିଁ । ବମ୍ବେରେ ସାଧନା ପାଇଁ ଆଉ କିଛି ଅଧିକ ସମୟ ମିଳିଲା । 'ଭଗବାନ ଯାହା କରନ୍ତି ପ୍ରାଣୀର ମଙ୍ଗଳ ପାଇଁ' ଭାବି ପୁଣି ନୂଆ କାମ ଓ ସାଧନାରେ ସମୟ କଟି ଚାଲିଲା । କ୍ରିୟା ଯୋଗ ସାଧନା ୨୪ ଘଣ୍ଟିଆ । ପ୍ରତି ଶ୍ୱାସରେ ପ୍ରାଣେଶ୍ୱରଙ୍କୁ ସ୍ମରଣ ଓ ସମର୍ପଣ । ମୁଁ ଓ ମୋ ସ୍ତ୍ରୀ ଆସ୍ତେ ଆସ୍ତେ ଆଗେଇ ଚାଲିଥାଉ କ୍ରିୟା ଯୋଗର ଅମୃତ ଧାରାରେ । ଦିନ ରାତି ଏକ ହୋଇଯାଏ ଗୁରୁ ଓ ଭଗବାନଙ୍କ ଚର୍ଚ୍ଚାରେ, ଭକ୍ତମାନଙ୍କର ଅନୁଭୂତିର ଆଲୋଚନାରେ, ସାଧୁ ସନ୍ଥଙ୍କର ବାଣୀ ଓ ଜୀବନୀ ଶ୍ରବଣ ଓ ଅଧ୍ୟୟନରେ । ସେ ଯେ ଅନନ୍ତ, ତାଙ୍କର ନିଶା ଯାହାକୁ ଘାରିଲା, ସେ ଆଉ ସେଥିରୁ ବାହାରି ପାରେନାହିଁ । ତା' ଛଡ଼ା, ସ୍ୱାମୀ ଓ ସ୍ତ୍ରୀ ଉଭୟ ଏଭଳି ନିଶାସକ୍ତ ହୋଇଗଲୁ ନିଶା ଛାଡ଼ିବାର ଉପାୟ ନାହିଁ । ଜଣଙ୍କୁ ନିଶା ଛାଡ଼ିଲେ, ଅନ୍ୟ ଜଣଙ୍କ, ସେ ଅମୃତର ପସରା ଅଜାଡ଼ି ଦିଏ । ଅନନ୍ତଙ୍କର ଏହି ନିଶା ୨୦୦୨ରୁ ଦୀକ୍ଷା ପରଠାରୁ ଧୀରେ ଧୀରେ ପଶି କେତେବେଳେ ଯେ ପୂର୍ଣ୍ଣ ରୂପରେ ଆୟତ୍ତ କଲା ଜାଣି ହେଲାନି । ଅନେକ ସମୟରେ ମନ୍ଦିର ଭିତରେ ଯାଇ ତାଙ୍କୁ ମୁଣ୍ଡିଆ ମାରି ଅସୀମିତଙ୍କୁ ସୀମିତ କରିବା ପାଇଁ ଇଚ୍ଛା ହେଲା ନାହିଁ । ଅଗାଧୁଆ ଜଗନ୍ନାଥଙ୍କୁ ଦର୍ଶନ କରି ତୁଳସୀ ପାଇବା ବେଳେ ଅସ୍ଥିର ମନକୁ, ବଡ଼ ସହଜରେ ବୁଝାଇ ଦେଲ 'ତୁମ ଇଚ୍ଛା ବିନା ପତ୍ରଟିଏ ବି ହଲିପାରେନା, ତୁ ତୁଳସୀ କିପରି ପାଇବୁ' ମୁଁ କିନ୍ତୁ ଜାଣିଥିଲି, ତାଙ୍କର ଇଚ୍ଛାମଧ୍ୟ ତାଙ୍କର ଅଧୀନ ନୁହେଁ । ସେ ଇଚ୍ଛାର ଆଲୁଅଟି ଜଳିଉଠେ ଭକ୍ତର ଭାବର ସୁଇଚ୍‌ଟି ଅନ୍ ହୋଇଗଲେ, ଭକ୍ତର ଭିତରେ ଥିବା ସରଳତା ଜାଗ୍ରତ ହୋଇ କୁଟୀଳତା ନଷ୍ଟ ହୋଇଗଲେ କିମ୍ବା ମନଟାକୁ ବା ସମସ୍ୟାଟିକୁ ସଂପୂର୍ଣ୍ଣ ଭାବରେ ତାଙ୍କ ପାଖରେ ସମର୍ପଣ କରିଦେଲେ । କିନ୍ତୁ ପୁଣି ଭୁଲ୍ ହୋଇଯିବ, ଅନନ୍ତଙ୍କୁ ସୀମିତ କରିବାର, ଅନନ୍ତଙ୍କର ଇଚ୍ଛା ଜାଗ୍ରତ ହେବାର କାରଣଗୁଡ଼ିକୁ ସୀମିତ କରିବାର । ତେଣୁ ତାଙ୍କ ଇଚ୍ଛା ଜାଗ୍ରତ ହେବାର କାରଣ ତାଙ୍କ ଉପରେ ଛାଡ଼ି ଦିଆଯାଉ ।

ଏ ଲେଖାଟି ସୃଷ୍ଟି ହେବା ପୂର୍ବରୁ ତାଙ୍କୁ ସମର୍ପିତ, ତେଣୁ ଫଳଟି ବି ତାଙ୍କର । ହେ ପାଠକ, ଆପଣ ପଢ଼ି ଆନନ୍ଦିତ ହେଲେ, ତାଙ୍କୁ ଗୋଟିଏ ପ୍ରଣାମ କରି କିଛି ସମୟ ତାଙ୍କୁ ସମର୍ପିତ୍ ହୋଇ ଯାଆନ୍ତୁ ।

୨୦୦୭ ମସିହା ବମ୍ବେରେ ଥିବା ସମୟରେ ଦିନେ ସଂଧ୍ୟାରେ ଅଫିସ୍‌ରୁ ଫେରି ଡ୍ରାଇଁ ଘରେ ସୋଫା ଉପରେ ବସି ପିପିଲି ଚାନ୍ଦୁଆର ଜଗନ୍ନାଥଙ୍କୁ ଚାହିଁଥାଏ । ମନରେ ଟିକେ ଟେନସନ୍ ଥିଲା, ମୋର ଭୁବନେଶ୍ୱରରେ ଥିବା ଘରକୁ ନେଇ । ଭାବ ଆସିଗଲା, ମନେ ମନେ ତାଙ୍କୁ କହିଲି, ତମେ ତ ତିରୁପତିରେ ବାଲାଜୀ ରୂପରେ ତେଲୁଗୁ ଲୋକମାନଙ୍କର ଭଲ ବିଜିନେସ୍ ପାର୍ଟନର ହୋଇପାରୁଛ । ମୁଁ କ'ଣ ତୁମ ରଥଯାତ୍ରା ପାଇଁ ପ୍ରତିବର୍ଷ ମାସକର ଭଡ଼ା ଦେଉ ନାହିଁ । ତେବେ ମୋ ଘରକଥା କାହିଁକି ବୁଝୁନ । ଏ ଘରଟା ମୋତେ ବହୁତ କଷ୍ଟ ଦେଲାଣି ୪ ବର୍ଷ ହେଲାଣି, ବିଲ୍‌ଡ଼ରଟି ମୋର ଘର ଥିବା ପ୍ଲଟର କିଛି ଅଂଶ ପଇସା ନେଇ ମଧ୍ୟ ରେଜିଷ୍ଟ୍ରେସନ କରୁନି । ଘର ଭଡ଼ା ଦେଇ ଭଡ଼ା ଆଦାୟରେ ବହୁ ଅସୁବିଧାର ସମ୍ମୁଖୀନ ହୋଇଛି । ବିଲ୍‌ଡ଼ର ପାଖରୁ ଘର ନେବାବେଳେ ଯାହା ବାଧାବିଘ୍ନ ସାମ୍ନା କରିଛି ଭାବିଲେ ଜ୍ୱର ଆସିଯାଏ । ସମସ୍ତେ ମୋର ସରଳ ଏବଂ କୋମଳ ସ୍ୱଭାବର ସୁଯୋଗ ନେଇ ବହୁତ ହଇରାଣ କରିଛନ୍ତି । ଆଉ ସମ୍ଭାଳି ହେବନି । ଏଥର ମୋର ଘର କଥା ତମେ ବୁଝିବ ।

୪ ବର୍ଷ ବହୁତ ଚେଷ୍ଟା କରିଛି । ଶେଷରେ ଜଣେ ବନ୍ଧୁଙ୍କ ମାଧ୍ୟମରେ ଜଣେ ଉଚ୍ଚପଦସ୍ଥ ପୋଲିସ ଅଫିସରଙ୍କୁ ଦେଖାକରି ସମସ୍ୟାର ସମାଧାନ କରିବାକୁ ଚେଷ୍ଟା କରି ମଧ୍ୟ ହୋଇପାରିଲା ନାହିଁ । ବିଲ୍‌ଡ଼ରକୁ ଯେତେ ଚେଷ୍ଟାକଲେ କଥାବାର୍ତ୍ତା କରିହୁଏନା । ରିସେପ୍ସନିଷ୍ଟର ସବୁବେଳେ ସେହି ଉତ୍ତର, ସାର୍ ବ୍ୟସ୍ତ ଅଛନ୍ତି, ସାର୍ ଅଫିସ୍‌ରେ ନାହାନ୍ତି ଇତ୍ୟାଦି । ଶେଷରେ ଆଉଜଣେ ବନ୍ଧୁଙ୍କ ମାଧ୍ୟମରେ ସିବିଆଇର ଜଣେ ଉଚ୍ଚପଦସ୍ଥ ଅଫିସରଙ୍କୁ ପାଇଲ ସହ ଦେଖା କରିବା ପାଇଁ ସ୍ଥିର ହେଲା । ତଥାପି ସମସ୍ୟାର ସମାଧାନ ହୋଇ ପାରିଲାନି ।

ଏଥର କିନ୍ତୁ ସମସ୍ୟାଟା ମୋର ହୋଇ ରହିଲାନି, ତାଙ୍କର ହୋଇ ସାରିଥିଲା । କିଛିଦିନ ଭିତରେ ଅପ୍ରତ୍ୟାଶିତ ଭାବରେ ବମ୍ବେରୁ ଭୁବନେଶ୍ୱର ଏବଂ ଭୁବନେଶ୍ୱରରୁ ବମ୍ବେ ୫-୬ ଦିନ ବ୍ୟବଧାନରେ ଫ୍ଲାଇଟ୍ ଟିକେଟ କାଟି ଦେଲି । କେବଳ ଗୋଟିଏ ଚିନ୍ତା ଏଥର ରେଜିଷ୍ଟ୍ରେସନ କାମଟା କୌଣସି ମତେ ସାରିବି । ଭୁବନେଶ୍ୱର ଆସିବାର ୩-୪ ଦିନ ଆଗରୁ ଇସ୍କନରେ ରହିବାର ବନ୍ଦୋବସ୍ତ, ସେଠାର ଜଣେ ସ୍ୱାମୀଜୀଙ୍କୁ କହି କରାଇଦେଲି । ସ୍ୱାମୀଜୀଙ୍କ ସାଙ୍ଗରେ ମୋର ଭାବର ସଂପର୍କ । ତାଙ୍କୁ ହିଁ ମୁଁ ରଥଯାତ୍ରା ପାଇଁ ପ୍ରତିବର୍ଷ ପଇସା ଦିଏ । ଭୁବନେଶ୍ୱରରେ ପହଞ୍ଚୁ ପହଞ୍ଚୁ ସ୍ୱାମୀଜୀଙ୍କର ପ୍ରଶ୍ନ, 'କ'ଣ ଏମିତି କାମ ଥିଲା ଯେ, ହଠାତ୍ ପଳାଇ ଆସିଲେ,' ତାଙ୍କୁ ସବୁକଥା କହିଲି । ସିଏ ସଙ୍ଗେ ସଙ୍ଗେ କହିଲେ, ଏଇଟା ଗୋଟେ କଥା, ଚାଲନ୍ତୁ ଯିବା ଜଣେ

ପୋଲିସ ଅଫିସରଙ୍କ ପାଖକୁ, ସେ ମୋର ଅତି ଚିହ୍ନା ଏବଂ ନିଶ୍ଚିତ ଭାବରେ ସାହାଯ୍ୟ କରିବେ । ତା'ପରେ ଆମେ ଚାଲିଲୁ ସେହି ପୋଲିସ ଅଫିସରଙ୍କ ପାଖକୁ । ସେ ମୋଠୁ ଗୋଟିଏ ଦରଖାସ୍ତ ଲେଖାଇ ନେଇ ସବୁ ଡକ୍ୟୁମେଣ୍ଟର ଜେରକ୍ସ ଲଗାଇ ଦେବାକୁ କହିଲେ ଏବଂ କହିଲେ ଜନ୍ମାଷ୍ଟମୀରେ ମୋର ଡ଼ିଉଟି ଅଛି, ତେଣୁ ଜନ୍ମାଷ୍ଟମୀ ପରଦିନ ଆପଣ ଦଶଟା ବେଳକୁ ମୋ ପାଖକୁ ଆସନ୍ତୁ । ମୁଁ ତାଙ୍କ କହିବା ଅନୁସାରେ ଜନ୍ମାଷ୍ଟମୀ ପରଦିନ ତାଙ୍କ ପାଖକୁ ଗଲି, ସେଠାରୁ ସେ ମୋତେ ତାଙ୍କ ପୋଲିସ ଜିପ୍‌ରେ ଏକ ନିର୍ଦ୍ଦିଷ୍ଟ ପୋଲିସ ଷ୍ଟେସନକୁ ପଠାଇଲେ । ସେଠାରେ ଯାଇ ଦେଖେ ତ ବିଲ୍‌ଡ଼ରର ଲୋକ ବସିଛି । ତାଙ୍କୁ ଦେଖି ମୁଁ ମନଇଚ୍ଛା ବକିଗଲି । ତା'ପରେ ସେ ଥାନାର ଇନ୍‌ଚାର୍ଜ, ତାଙ୍କୁ ସଙ୍ଗେ ସଙ୍ଗେ ରେଜିଷ୍ଟ୍ରେସନ କରିବା ପାଇଁ କହିଲେ । ସତକୁ ସତ ସୁନାପିଲାଟି ଭଳି ତା' ପରଦିନ ମଧ୍ୟରେ ମୋର ଜାଗା ରେଜିଷ୍ଟ୍ରେସନ କାମ ସରିଗଲା । ଯେଉଁ କାମଟି ୪-୫ ବର୍ଷ ହେଲା ହୋଇପାରୁ ନଥିଲା, ସେଇ କାମଟା ତାଙ୍କୁ ଦାୟିତ୍ୱ ଦେଇ ଦେବାରୁ ଅତିଶୀଘ୍ର ହୋଇଗଲା । ଏଭଳି ସବୁବେଳେ ତୁମେ ମୋ ସାଙ୍ଗେ ବାନ୍ଧି ହୋଇ ଚାଲିଥାଅ, ଏତିକି କାମନା, ଏତିକି ପ୍ରାର୍ଥନା ।

ପ୍ଲଟ୍ ନଂ - ୩, ଲେନ୍ ନଂ - ୧
ଆଦର୍ଶ ବିହାର, ପଟିଆ, ଭୁବନେଶ୍ୱର
ଭ୍ରାମ୍ୟଭାଷ : ୭୩୮୧୬୫୨୬୨୫



# ମନ ଜାଣେ ମନୁଆ ଠାକୁର

## ଚିନ୍ତାମଣି ମହାଲିକ

ଜଗତର ନାଥ ଜଗନ୍ନାଥ ଯେତେ ଐଶ୍ୱର୍ଯ୍ୟ ଏବଂ ମାଧୁର୍ଯ୍ୟର ଠାକୁର ହୁଅନ୍ତୁ ନା କାହିଁକି, ସର୍ବୋପରି ସେ ଭାବର ଠାକୁର । ଭକ୍ତର ଭାବକୁ ନେଇ ସେ ବି ପାଲଟି ଯାଆନ୍ତି ମନୁଆ ଠାକୁର । ଚୁମ୍ବକ ଲୁହାକୁ ଟାଣିଲା ପରି ସେଇ କାଳିଆ ଠାକୁର ଆମ ମନର ଭାବକୁ ଅତି ସହଜରେ ନିଜ ଆଡ଼କୁ ଟାଣି ନେଇ ଆମ ସହିତ ଚକା ଭଉଁରୀର ଖେଳ ଖେଳନ୍ତି ଏବଂ ହଲାପଟା ମଧ୍ୟ କରନ୍ତି । ଖେଳେଇ ଖେଳେଇ ଶେଷରେ ଚେତେଇ ଦିଅନ୍ତି, ତୋ ମନ ଯେମିତି, ଫଳ ପାଇଲୁ ସେମିତି । ସେଇ ମନର ଆବେଗକୁ ନେଇ ମୋର ଏ ଦିବ୍ୟ ଅନୁଭୂତିକୁ ପ୍ରକାଶ କରୁଛି ।

ଗତ ୧୯୯୪ ମସିହା ଜୁନ୍ ୨୩ ତାରିଖ । ସେଦିନ ଥାଏ ଦେବସ୍ନାନ ପୂର୍ଣ୍ଣିମା । ସେଇ ଉତ୍ସବର ୪-୫ ଦିନ ପୂର୍ବରୁ ପୁରୀର ଜନୈକ କବିବନ୍ଧୁ ଶ୍ରୀ ଶ୍ୟାମପ୍ରକାଶ ସେନାପତିଙ୍କ ଠାରୁ ନିମନ୍ତ୍ରଣ ପତ୍ର ଖଣ୍ଡିଏ ପାଇଲି । ଆସନ୍ତା ସ୍ନାନପୂର୍ଣ୍ଣିମା ପୂର୍ବାହ୍ଣରେ ଶ୍ରୀକ୍ଷେତ୍ର ଲେଖକ ସାମ୍ମୁଖ୍ୟ, ପୁରୀ ଆନୁକୂଲ୍ୟରେ ଏକ ସାରସ୍ୱତ ସମ୍ମେଳନ ଅନୁଷ୍ଠିତ ହେବ । ଉକ୍ତ ସମ୍ମେଳନର କବିତା ଆସରରେ ସଂଯୋଜକ ରୂପେ ଯୋଗ ଦେବାପାଇଁ ଅନୁରୋଧ । ନିମନ୍ତ୍ରଣ ପତ୍ର ସହ ତାଙ୍କ ହାତଲେଖା ଚିଠିଟି ପାଇ ବହୁତ ଖୁସି ହୋଇଗଲି । ପୁରୀ ଜଗନ୍ନାଥ ଧାମରେ ଅନୁଷ୍ଠିତ ସାହିତ୍ୟ ସମ୍ମେଳନରେ ପୂର୍ବରୁ କେବେ ଯୋଗଦେଇ ନଥିଲି । ଏହା ହେବ ମୋର ଶ୍ରୀକ୍ଷେତ୍ର ଧାମରେ ପ୍ରଥମ ଅନୁଭୂତି । ଦ୍ୱିତୀୟତଃ ଶ୍ରୀକ୍ଷେତ୍ର ଧାମରେ ଶ୍ରୀ ବିଗ୍ରହଙ୍କର ସ୍ନାନ ଉତ୍ସବ ମଧ୍ୟ ପୂର୍ବରୁ କେବେ ଦେଖିନଥିଲି । ତେଣୁ ମନେ ମନେ ଭାରି ଖୁସି ହୋଇଗଲି, ଭାଗ୍ୟରେ ଥିଲେ ଏଭଳି ସୁଯୋଗ ଆସେ । ଏକାସାଙ୍ଗରେ କଦଳୀ ବିକା ଏବଂ ଠାକୁର ଦେଖା ଦୁଇଟି ଯାକ କାମ ହୋଇଯିବ । ସତ କହିବାକୁ ଗଲେ ଠାକୁର ଦେଖା ଉପରେ ଯେତିକି ଗୁରୁତ୍ୱ ଦେଇନଥିଲି, ଅଧିକ ଗୁରୁତ୍ୱ ଦେଇଥିଲି କଦଳୀ ବିକା ଉପରେ । ଅର୍ଥାତ୍ ସାହିତ୍ୟ ସମ୍ମେଳନ ମୋର ମୁଖ୍ୟ ଆକର୍ଷଣ ଥିଲା ।

ସେତେବେଳେ ମୁଁ ଚାକିରି କରୁଥାଏ ଅବିଭକ୍ତ ବିହାର ରାଜ୍ୟର ପଶ୍ଚିମ ସିଂହଭୂମି ଜିଲ୍ଲା ଅନ୍ତର୍ଗତ ମେଘାହାତୁବୁରୁରେ । ଓଡ଼ିଶା ଏବଂ ବିହାର ଉଭୟ ରାଜ୍ୟର ସେ ଅଞ୍ଚଳଟି ସୀମାନ୍ତ ଅଞ୍ଚଳ । ଜୀବିକା ପାଇଁ ତାହା ଥିଲା ମୋର କର୍ମକ୍ଷେତ୍ର । ଦେବସ୍ନାନ ପୂର୍ଣ୍ଣିମାର ଗୋଟିଏ ଦିନ ପୂର୍ବରୁ ପୁରୀ ଅଭିମୁଖେ ଘରୁ ବାହାରିଲି । ମନରେ ଗୋଟେ ଦମ୍ଭ, ଏକୁଟିଆ ଯାଉଛି, ରହିବା ପାଇଁ କ'ଣ ପୁରୀରେ ଜାଗା ଅଭାବ ହେବ । ପୁରୀ ଭଳି ସହରରେ କେତେ ଧର୍ମଶାଳା, ହୋଟେଲ, ଲଜ୍ ଆଦି ରହିଛି । କେଉଁଠି ନା' କେଉଁଠି ରାତିକ ପାଇଁ ଜାଗା ମିଳିଯିବ ।

ଏଇଭଳି ଏକ ବେପରୁଆ ଭାବ ମୋତେ ଆଚ୍ଛନ୍ନ କରି ରଖିଥାଏ । ଶ୍ରୀ ବିଗ୍ରହମାନଙ୍କୁ ସ୍ନାନ ମଣ୍ଡପରେ ଦର୍ଶନ କରିବା ଯାହାକି ମୋ ଜୀବନର ପ୍ରଥମ ଅନୁଭୂତି, ସେଥିପାଇଁ ମୋ ମନରେ କିଛି ଆକୁଳତା ନଥିଲା । ବରଂ ବସ୍‌ଯାତ୍ରା ବେଳେ ସାହିତ୍ୟ ସଭା ପାଇଁ ମାନସିକ ସ୍ତରରେ ନିଜକୁ ପ୍ରସ୍ତୁତ କରୁଥାଏ ।

ରାତି ଆଠଟା ପାଖାପାଖି ମୁଁ ପୁରୀରେ ପହଞ୍ଚିଗଲି । ବଡ଼ଦାଣ୍ଡ ଲୋକାରଣ୍ୟ । ଗାଡ଼ିରୁ ଓହ୍ଲେଇ ମନସ୍ଥ କଲି, ପ୍ରଥମେ ରହିବା ପାଇଁ ହୋଟେଲ ଠିକ୍ କରିନିଏ, ତା'ପରେ ମନ୍ଦିର ଯାଇ ଠାକୁର ଦର୍ଶନ କରିବି । ଆଟାଚି ହାତରେ ଓହଳେଇ ବଡ଼ଦାଣ୍ଡ କଡ଼େ କଡ଼େ ଥିବା ପ୍ରାୟ ଡଜନ ଅଧିକ ସବୁ ହୋଟେଲ/ଲଜ୍ ବୁଲି ଆସିଲି । ସବୁଠି ନାସ୍ତିବାଣୀ । ଏପରିକି ତାଚ୍ଛଲ୍ୟଭରା ଉତ୍ତର ବି ଶୁଣିଲି, ରାତି ପାହିଲେ ସ୍ନାନ ପୂର୍ଣ୍ଣିମା । ୧୦-୧୫ ଦିନ ଆଗରୁ ଲୋକମାନେ ହୋଟେଲ ବୁକ୍ ପାଇଁ ଚେଷ୍ଟା କରିବି ଜାଗା ପାଉନାହାନ୍ତି, ଆପଣ ଏବେ ଆସି ଜାଗା ଖୋଜୁଛନ୍ତି ? ଦୀର୍ଘ ଦୁଇଘଣ୍ଟା କାଳ ଏ ହୋଟେଲ ସେ ହୋଟେଲ ଯାଇ ଥକିପଡ଼ିଲି । ନିଜ ଦାମ୍ଭିକ ପଣର ଖୁମ୍ବ ଖିଲାଣ ସବୁ ଦୋହଲି ଗଲା । ଏତେ ଗହଳି ଭିତରେ ଗୋଟେ ନିର୍ଜନତା ମୋତେ କାବୁ କରିନେଲା । ଶେଷରେ ବୁଲୁ ବୁଲୁ ମଠ ଭଳି ଲାଗୁଥିବା ଗୋଟେ ଧର୍ମଶାଳାରେ ପହଞ୍ଚିଲି । ତା'ଭିତରେ ବହୁ ଯାତ୍ରୀଙ୍କର ଭିଡ଼ । ମ୍ୟାନେଜରଙ୍କୁ ମୋ ଅସହାୟତା ଜଣାଇ ଅନ୍ତତଃ ପକ୍ଷେ କୋଠରୀ ନହେଲା ନାହିଁ ବାରଣ୍ଡାରେ ଜାଗା ଦେଲେବି ରାତିଟା କଟେଇ ଦେବି ବୋଲି ତାଙ୍କୁ ଅନୁରୋଧ କଲି । ଏପରିକି ଆସନ୍ତାକାଲି ଅନୁଷ୍ଠିତ ହେବାକୁ ଥିବା ସାହିତ୍ୟ ସଭାର ନିମନ୍ତ୍ରଣ ପତ୍ର ମଧ ତାଙ୍କୁ ଦେଖାଇଲି । ସେ ନିଜର ଅସହାୟତା ପ୍ରକାଶ କରି କହିଲେ, ପ୍ରତିବର୍ଷ ଏଠାରେ ରହୁଥିବା ବଙ୍ଗାଳୀ ତୀର୍ଥଯାତ୍ରୀଙ୍କୁ ଏବର୍ଷ ମୁଁ ଜାଗା ନଦେଇ ଫେରାଇ ଦେଇଛି । ବାରଣ୍ଡାରେ ବ୍ୟାଗ୍‌ଟିଏ ବି ରଖିବା ପାଇଁ ଜାଗା ନାହିଁ । ଆପଣ ଅନ୍ୟଆଡ଼େ ଚେଷ୍ଟା କରନ୍ତୁ । ସେଠାରେ ଉପସ୍ଥିତ ଥିବା ଜଣେ ଭଦ୍ରଲୋକ ଆମ କଥାବାର୍ତ୍ତା ଶୁଣୁଥିଲେ । ସେ ମୋ ପରିସ୍ଥିତିକୁ ହୃଦୟଙ୍ଗମ କରି ସେ ମୋ ଆଡ଼କୁ ସହଯୋଗର ହାତ ଲମ୍ୱେଇ ଦେଲେ । ମୋତେ ପଚାରିଲେ, ହୋଟେଲ ବାରଣ୍ଡାରେ ଜାଗା ମିଳିଲେ ନିଜକୁ ଚଳେଇ ନେଇ ପାରିବେ ତ ? ମୁଁ, ହଁ କହିବାରୁ ତାଙ୍କର ଜଣାଶୁଣା ୨-୩ଟି ହୋଟେଲରେ ମୋ ପାଇଁ ସେ ଚେଷ୍ଟା କଲେ । ସବୁଠି ସେଇ ଫୋପାଡ଼ି ଦେଲା ଭଳି କଥା, ଜାଗା ନାହିଁ । ଶେଷରେ ସେ ଭଦ୍ରଲୋକ ନିଜ ପାଖରେ ନିଜେ ହାର୍ ମାନି ବଗଲା ଧର୍ମଶାଳା ଆଡ଼କୁ ହାତ ଦେଖାଇ ସେଠାକୁ ଯାଇ ଥରେ ଚେଷ୍ଟା କରନ୍ତୁ ବୋଲି କହି ମୋ ଠାରୁ ସେ ବିଦାୟ ନେଲେ ।

ରାତିର ଦୈର୍ଘ୍ୟ ପ୍ରସ୍ଥ ବଢ଼ି ବଢ଼ି ଚାଲିଥାଏ । ମୋ ମନର ଅସ୍ଥିରତା ମଧ୍ୟ ବଢ଼ି ଚାଲିଥାଏ । ଗୋଟେ ଅସହାୟ ଭାବ ଆଖିରେ ଲୁହ ଜକେଇ ଆଣିଲା । ଶୂନ୍ୟ ମନ ଅଚେତନ । ମନ ଭିତରେ ନଥିଲା ସେ ଦାମ୍ଭିକ ପଣ କିମ୍ବା ଆସନ୍ତାକାଲିର ସାହିତ୍ୟ ସଭା ପାଇଁ ମନର ଉଦ୍‌ବେଳନ । ଶୂନ୍ୟ ଆକାଶକୁ ଚାହିଁ ମନେ ମନେ ସ୍ଥିର କଲି, ଆଉ କିଛି ଉପାୟ ନାହିଁ । ସାହିତ୍ୟିକ ବନ୍ଧୁଙ୍କ ସହ ଯୋଗାଯୋଗ ହୋଇପାରିବ ନାହିଁ । ତାଙ୍କ ବ୍ୟକ୍ତିଗତ ଠିକଣା ମୋ ପାଖରେ ନାହିଁ । କେବଳ ସଭାସ୍ଥଳୀର ଠିକଣା ଅଛି । ଆଜିର ମୋବାଇଲ୍ ଫୋନର ସୁବିଧା ସେତେବେଳେ ନଥିଲା । ରାତିଟା ମୁଣ୍ଡ ଗୁଞ୍ଜିବା ପାଇଁ ଆଉ ଜାଗା ମିଳିବ ନାହିଁ । ରେଲୱେ ଷ୍ଟେସନକୁ ଯାଇ ରାତି ବିତେଇବି । ଆଉ କିଛି ଉପାୟ ନାହିଁ । ଦିନସାରା ବସ୍‌ଯାତ୍ରାର କ୍ଳାନ୍ତି ଏବଂ ଭୋକ ଯୋଗୁଁ ଦେହ କେମିତି କେମିତି ଲାଗୁଥାଏ । ମୋ ମା'ଙ୍କ କଥା ମନେ ପଡ଼ିଲା । ସେ ଅଧିକାଂଶ ସମୟରେ କହେ - ପୁରୁଷୋତ୍ତମ ଧାମରେ ମା' ଲକ୍ଷ୍ମୀ ଠାକୁରାଣୀ ରାତିରେ କାହାରିକୁ ଉପବାସରେ ରଖେଇ ଦିଅନ୍ତି ନାହିଁ । କାହା ମାଧ୍ୟମରେ କିଛି ନା କିଛି ଖାଇବାକୁ ମିଳିଯାଏ । ମୋ ମନରେ ସ୍ୱତଃ ପ୍ରଶ୍ନଟିଏ ଉଙ୍କି ମାରିଲା - ଏଠାରେ ରହିବାକୁ ଜାଗା ତ ମିଳିଲା ନାହିଁ, ରେଲୱେ ଷ୍ଟେସନରେ ବସି ବସି ରାତି ବିତେଇବି । ଏ ପରିସ୍ଥିତିରେ ଖାଇବି କ'ଣ ? ଦେଖିବା ଲକ୍ଷ୍ମୀ ଠାକୁରାଣୀ ମୋତେ କେମିତି ଖୁଆଇବେ ? ଏଇକଥା ଭାବି ଭାବି ବଗଲା ଧର୍ମଶାଳା ଆଡ଼କୁ ମୁହାଁଇଲି । ସବୁଠି ଠୋକର ଖାଇ ଖାଇ ମନ ମରିଯାଇଥାଏ । ଗୋଟେ ସଙ୍କୋଚଭାବ ମୋତେ ମାଡ଼ି ବସିଥାଏ । ଶେଷରେ ଶୂନ୍ୟ ଆକାଶକୁ ଚାହିଁ ଜଗନ୍ନାଥଙ୍କୁ ସୁମରଣା କରି ଧର୍ମଶାଳାର ଅଫିସ୍ ପାଖରେ ପହଞ୍ଚିଲି । ଅଫିସ୍‌ରେ ଦୁଇଜଣ କର୍ମଚାରୀ ଥିଲେ । ମୁଁ କିଛି କହିବା ଆଗରୁ ତାଙ୍କ ମଧ୍ୟରୁ ଜଣେ ମୋତେ ପଚାରିଲେ, ଆପଣ ଏକୁଟିଆ ନା' ସାଙ୍ଗରେ କେହି ଅଛନ୍ତି ? ମୁଁ ଏକୁଟିଆ ଆସିଛି ବୋଲି କହିଲି । ସେ କହିଲେ, ଏଇ କିଛି ସମୟ ପୂର୍ବରୁ ଗୋଟିଏ ରୁମ୍ ଖାଲି ହେଲା । ନିୟମ ଦୃଷ୍ଟିରୁ ଜଣକୁ ଆମେ ଗୋଟିଏ ରୁମ୍ ଦେଇପାରିବୁ ନାହିଁ । ଅନ୍ୟ କର୍ମଚାରୀ ଜଣକ ଉପଦେଶ ଦେବା ଛଳରେ ମୋତେ ବୁଝେଇଲେ - ଗୋଟେ କାମ କରନ୍ତୁ, ଆଜି ରାତିକ ପାଇଁ ଦୁଇଜଣଙ୍କର ଭଡ଼ା ଜମାକରି ରସିଦ୍ ନେଇଯାଆନ୍ତୁ । ରାତିରେ କେହି ଯଦି ଆସି ପଚାରନ୍ତି ଆପଣ କହିବେ ଆମେ ଦୁଇଜଣ ରହୁଛୁ । ମୋ ସାଙ୍ଗ ବାହାରକୁ ବୁଲି ଯାଇଛନ୍ତି । ଏତକ କହି ରସିଦ୍ କାଟିଦେଲେ । ରୁମ୍ ଭଡ଼ା ବାବଦକୁ ମୋତେ ମାତ୍ର ପଚାଶ ଟଙ୍କା ଦେବାକୁ ପଡ଼ିଲା । ମୋ ହାତରେ ରୁମ୍‌ର ଚାବି ଧରେଇ ଦେଇ ଅଫିସ୍ ବନ୍ଦ କରି ଚାଲିଗଲେ । କିଛି ସମୟ ପାଇଁ ମୁଁ ସ୍ଥାଣୁ ପାଲଟିଗଲି । କିଛି ବୁଝିପାରିଲି ନାହିଁ । ଏ ସବୁ ବୁଝିବାକୁ ନିଜ ଭିତରେ ନିଜେ ମୁଁ ନଥିଲି । ହଠାତ୍ ଏ ସବୁ ଘଟିଲା କିପରି ? କିଛି ସମୟ ପରେ ପ୍ରକୃତିସ୍ଥ ହେଲି ।

ସବୁ କ୍ଲାନ୍ତି ସବୁ ଶ୍ରାନ୍ତି ଯେମିତି ଛାଏଁ ଛାଏଁ ଦୂରେଇଗଲା । ଦେହ ମନ ଖୁବ୍ ଉଶ୍ୱାସ ଲାଗିଲା । ଛବିର ପାଦ ପୁଣି ଚଳଚଞ୍ଚଳ ହୋଇପଡ଼ିଲା । ସବୁ ପାଇଗଲିର ଗୋଟେ ପୂରିଲା ପୂରିଲା ଭାବରେ ମୁଁ ଉବୁଟୁବୁ ହୋଇଗଲି । ରୁମ୍ ଖୋଲି ଆଟାଚିଟି ରୁମ୍‌ରେ ରଖିଛି, କବାଟ ବନ୍ଦ କରିଛି କିନ୍ତୁ ତାଲା ପକେଇବାକୁ ଆଉ ଖିଆଲ ନାହିଁ । ପାଦରୁ ଜୋତା ଖୋଲିଛି ପୁଣି ପିନ୍ଧିବାକୁ ଆଉ ହୋସ୍ ନାହିଁ । ଖାଲି ପାଦରେ ଏକମୁହାଁ ହୋଇ ଦୌଡ଼ିଲି ଶ୍ରୀମନ୍ଦିରକୁ । ଯେତେବେଳକୁ ଜୟ-ବିଜୟ ଦ୍ୱାର ବନ୍ଦ ହେବା ଉପରେ । ଦରଆଉଜା ହୋଇ ଅଳ୍ପକିଛି ଫାଙ୍କ ରହିଥାଏ । ସେଇ ଫାଙ୍କଦେଇ ଶ୍ରୀବିଗ୍ରହ ମାନଙ୍କୁ ଦର୍ଶନ କଲି । ଆଖିବୁଜି ଜଗନ୍ନାଥଙ୍କୁ ମନର ଏଣୁ ତେଣୁ କଥା କିଛି କହି ପକାଇଲି । ଆଖି ଖୋଲି ଦେଖେତ କବାଟ ବନ୍ଦ । ମୋତେ ଲାଗିଲା ମୁଁ ହିଁ ଶେଷ ଦର୍ଶକ । ମୋ ପାଇଁ ଏ କବାଟ ଅପେକ୍ଷାରେ ଥିଲା । ଗୋଟେ ଗଡ଼ ଜିଣିବାର ମନ ନେଇ ଆନନ୍ଦ ବଜାରକୁ ଆସିଲି । ମହାପ୍ରସାଦ ବିକ୍ରି କରୁଥିବା ଜନୈକ ନନାଙ୍କ ପସରା ଆଗରେ ଚକାମାଡ଼ି ବସିପଡ଼ିଲି । ପରିଚିତ ଲୋକ ଭଳି ସେ ମୋତେ ପଚାରିଲେ, ଏତେ ଡେରି ହେଲା ଯେ ? ନିଜ ଦୁର୍ବଳତାକୁ ଲୁଚେଇବାକୁ ଯାଇ ହସି ହସି କହିଲି, ଆଉ ଡେରି କରନ୍ତୁ ନାହିଁ, ଶୀଘ୍ର ବ୍ୟବସ୍ଥା କରନ୍ତୁ । ଅତି ନିଜର ଲୋକଭଳି ମଞ୍ଜ କଦଳୀ ପତ୍ରରେ ଲଙ୍କା, ଲୁଣ, କାଗିଜି ଲେମ୍ବୁ ସହ ମହାପ୍ରସାଦ ଅନ୍ନ ବ୍ୟଞ୍ଜନ ସବୁ ପରଶି ଦେଲେ । ଆଉ କ'ଣ ଦରକାର କି' ବୋଲି ପଚାରି ପଚାରି ବାଢ଼ି ଦେଉଥାଆନ୍ତି । ମୋ ସମଗ୍ର ଜୀବନକାଳ ଭିତରେ ଗୋଟେ ଦିବ୍ୟ ଭୋଜନର ଯେଉଁ ତୃପ୍ତି, ତାହା ମୁଁ ସେଦିନ ଉପଲବ୍ଧି କଲି । ମୋତେ ଆଶ୍ଚର୍ଯ୍ୟ ଲାଗୁଥିଲା, ମୁଁ ଏଠାରେ ଅଚିହ୍ନା ଅଜଣା ଲୋକ । କିନ୍ତୁ, ନନା ଜଣକ ପରିଚିତ ଲୋକଭଳି ମୋତେ ବ୍ୟବହାର ଦେଖାଉଥା'ନ୍ତି ।

ମନେ ପଡ଼ିଲା ମା'ଙ୍କ କଥା - ପୁରଷତ୍ତମ ଧାମରେ ଲକ୍ଷ୍ମୀ ଠାକୁରାଣୀ ରାତିରେ କାହାରିକୁ ଉପବାସରେ ରଖେଇ ଦିଅନ୍ତି ନାହିଁ । ସେଦିନ ମୁଁ ଅନୁଭବ କଲି । ଏ କେବଳ କଥାର କଥା ନୁହେଁ, ଅକାଟ୍ୟ ସତ୍ୟ । ବିଶ୍ୱାସ ଓ ଭାବର ଏକ ମେରୁଖଣ୍ଡ ।

ଉକ୍ତ ଘଟଣାଟି ଏକୋଇଶି ବର୍ଷ ତଳର ଘଟଣା । ଯାହା ମୋ ମାନସ ପଟରେ ଅଲିଭା ଅକ୍ଷର ଭଳି ଏବେ ବି ସାଇତା ହୋଇ ରହିଛି । ସେ ଦିନର ସେଇକଥା ମନକୁ ଆସିଲେ ଲୋମ ମୂଳ ଟାଙ୍କୁରି ଉଠେ । ସତରେ କାଳିଆ ଠାକୁର ବଡ଼ ମନୁଆ ଠାକୁର । ମନ ବି ବୁଝେ ହଟ ବି କରେ । ବାଟେ ବାଟେ ବାଟ ଚାଲିବାକୁ ବାଟ କଢ଼େଇନିଏ । ଏଇଥିପାଇଁ ତ କାଠର କଣ୍ଢେଇ ପାଲଟି ଯାଏ ଜୀବନ୍ତ ଦେବତା । ଅନ୍ତର ଫାଡ଼ି ଡାକିଦେଲେ 'ଓ' କରୁଥାଏ ।

କାଶୀପୁର, ବଳରାମପୁର
କେନ୍ଦୁଝରଗଡ଼ - ୭୫୮୦୦୧
ଭ୍ରାମ୍ୟଭାଷ : ୮୭୬୩୩୯୯୬୨୮



# ମହମହ ତୁଳସୀ ବାସ୍ନା

## ନନ୍ଦ ମହାନ୍ତି

ଅନୁଭବରେ ଜଗନ୍ନାଥ । ତାଙ୍କୁ ଯେଉଁମାନେ ଅନୁଭବ କରିଛନ୍ତି ବା ସେ ଯେଉଁମାନଙ୍କ ଅନୁଭବରେ ଆସିଛନ୍ତି ବା ଆସନ୍ତି ସେ ସବୁ ଅନୁଭବକୁ କ'ଣ ଭାଷାରେ ବ୍ୟକ୍ତ କରାଯାଇପାରେ । ସେ ପରା ଭାବର ଠାକୁର - ଭାବଗ୍ରାହୀ ଭାବ ବିନୋଦିଆ । ସେ ଅନୁଭବକୁ ବ୍ୟକ୍ତ କରିବା ପାଇଁ ଯେଉଁ ଶବ୍ଦ ବ୍ୟବହାର କରାଯାଏ, ସେ ଶବ୍ଦ ଅକୁଳାଣ ପଡ଼େ, ଅନୁଭବକୁ ଅବିକଳ ଉତାରିବା ପାଇଁ । ଜଗନ୍ନାଥ ପୂର୍ଣ୍ଣବ୍ରହ୍ମ, ପୁଣି ଶୂନ୍ୟବ୍ରହ୍ମ । ଶବ୍ଦ ମଧ ବ୍ରହ୍ମ, ଅକ୍ଷର ବି ବ୍ରହ୍ମ । ସୁତରାଂ ଯିଏ ବ୍ରହ୍ମ ଭାବରେ ତଲ୍ଲୀନ, ହୁଏତ ସେହି ମହାତ୍ମା ହିଁ ଅବିକଳ ବ୍ୟକ୍ତ କରିପାରିବେ ଆପଣା ଅନୁଭବରେ ଜଗନ୍ନାଥଙ୍କୁ ।

ଭାବର ଠାକୁର ଭାବବିନୋଦିଆ ଜଗା କାଳିଆ ଏକ ବହୁମୁଖୀ ଆବେଗ, କେତେବେଳେ ସେ ରତ୍ନ ସିଂହାସନେ ବିଜେ ମଣିମା ବଡ଼ ଠାକୁର ତ ପୁଣି କେତେବେଳେ ସଖା ସହୋଦର, ସେଥିପାଇଁ ତ ସେ ସାରା ବିଶ୍ୱର ବିସ୍ମୟ ଦେବତା, ମଣିଷ ପରି ଶୁଅନ୍ତି, ଉଠନ୍ତି, ଦାନ୍ତ ଘଷନ୍ତି, ପେଟୁଙ୍କ ପରି ଛପନ ପଉଟି ଖାଆନ୍ତି ପୁଣି ଅସୁସ୍ଥ ବି ହୁଅନ୍ତି, ଘଟ (ଶରୀର) ବି ବଦଳାନ୍ତି । ସେଥିପାଇଁ ତ ସେ ସାଧାରଣ ମଣିଷରୁ ସାଧାରଣତର । 'ମଣିମା ଆପଣ' ରୁ 'ତୁ' କୁ କେଉଁ ଛଟକରେ ଜଗା କାଳିଆ ଓହ୍ଲାଇ ଆସେ ସେ କଥା ସେ ହିଁ ଜାଣେ ।

ଏଇ ପାଞ୍ଚ ବର୍ଷ ତଳେ ଥରେ ପୁରୀ ଯାଇଥିଲୁ । ଭାରି ଭିଡ଼ ସେତେବେଳେ ଶ୍ରୀକ୍ଷେତ୍ରରେ । ଆମେ ଖରାବେଳଟାରେ ପହଞ୍ଚିଲୁ । ଆଗରୁ ବହୁବାର ପୁରୀ ଗଲେ ମୁଁ ପଶ୍ଚିମ ଦ୍ୱାର ପଟେ ଜଣେ ସେବକ (ତାଙ୍କ ନାଁ ସଞ୍ଜୟ ଦତ୍ତ ମହାପାତ୍ର) ଙ୍କ ଘରେ ରହେ । ତାଙ୍କ ଘରେ ଯାତ୍ରୀମାନଙ୍କ ପାଇଁ ତିନି ଚାରିଟି ସୁବନ୍ଦୋବସ୍ତ ସମ୍ପନ୍ନ ପ୍ରକୋଷ୍ଠ ଅଛି । ମୁଁ ଆଗରୁ ଫୋନ କରିଦିଏ, ସେ ମୋ ପାଇଁ ଜାଗା ରଖିବା·ସହିତ ଅବଢ଼ା ଇତ୍ୟାଦିର ବନ୍ଦୋବସ୍ତ ବି କରିଦିଅନ୍ତି । ଏଥର କିନ୍ତୁ ମୋ ମୋବାଇଲ ଫୋନଟି ହଜିଯିବା କାରଣରୁ ତାଙ୍କ ଫୋନ ନମ୍ବର ହଜି ଯାଇଥିଲା । (ସେହି ଯେ ହଜିଯାଇଛି, ଆଉ ମିଳୁନାହିଁ) । ତେଣୁ ପୁରୀରେ କେଉଁଠି ରହିବୁ କିଛି ଠିକ୍ ଠିକଣା ନଥିଲା । ହଠାତ୍ କାଳିଆର ଡାକ ଆସିଲା ଏବଂ ଆମେ ପୂରା ପରିବାର ବାହାରି ଯାଇଥିଲୁ ।

ଏହା ହେଉଛି ଜୁଲାଇ ମାସ ଘଟଣା । ଆଡ଼ପ ମଣ୍ଡପରେ କାଳିଆକୁ ଦର୍ଶନ କରିବାର ଇଚ୍ଛା ନେଇ ଆମେ ଯାଇଥିଲୁ, ଆମେ ବୋଇଲେ ମୋ ପରିବାରର ଆମେ ଦୁହେଁ (ମୁଁ ଓ ମୋ ସ୍ତ୍ରୀ) ଏବଂ ମୋ ସାନ ଝିଅ ଏବଂ ଆମ ସହିତ ଥିଲେ ଆମର

ଏକାନ୍ତ ପ୍ରିୟ ଅନ୍ୟ ଏକ ପରିବାର - ମୁନ୍ନାବାବୁ, ତାଙ୍କ ସ୍ତ୍ରୀ ମାମୀ ଓ ତାଙ୍କର ଦୁଇ ଝିଅ ।

ଟଣ ଟଣ ଖରାବେଳେ ଗାଡ଼ି ଆମର ବଡ଼ଦାଣ୍ଡରେ ପହଞ୍ଚିଲା । ମାଉସୀ ମା' ମନ୍ଦିରର ବହୁ ଦୂରରୁ ଟ୍ରାଫିକ୍ କଟକଣା ଯୋଗୁଁ ଗାଡ଼ିରେ ଜିନିଷ ପତ୍ର ରଖି ଚାଲି ଚାଲି ଗୁଣ୍ଡିଚା ମନ୍ଦିରକୁ ଗଲୁ । ଆମ ଦୁହିଁଙ୍କର ଆଣ୍ଠୁ ଯନ୍ତ୍ରଣା ଥିବା ସତ୍ତ୍ୱେ ବଡ଼ କଷ୍ଟରେ ଗୁଣ୍ଡିଚା ମନ୍ଦିରରେ ପହଞ୍ଚି ଦର୍ଶନ କଲୁ । ଗହ ଗହ ଗହଳି ସତ୍ତ୍ୱେ ଭଲ ଭାବରେ ଦର୍ଶନ ଅବଶ୍ୟ ମିଳିଲା । କିନ୍ତୁ କାହିଁକି କେଜାଣି ଆଗଥର ମାନଙ୍କ ପରି କାଳିଆର ଟହ ଟହ ହସ ମୁଁ ଅନୁଭବ କରିପାରିଲି ନାହିଁ । ଅବଡ଼ା ପାଇବା ପରେ ପୁଣି ଚାଲି ଚାଲି ଆସିବାକୁ ହେଲା ଗାଡ଼ି ପାଖକୁ । ମନଟା ମୋର କେମିତି ଘାଣ୍ଟି ଚକଟି ହେଉଥାଏ । ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କରି ସୁଦ୍ଧା ଦର୍ଶନ ହେବାର ଆନନ୍ଦ ମିଳୁ ନଥାଏ । ତହିଁ ଉପରେ ପାଦଚଲା କଷ୍ଟ ।

ଗାଡ଼ି ପାଖରେ ପହଞ୍ଚିବା ପରେ ମନ ଭିତରେ ଚିନ୍ତା ଆସିଲା - ରହିବା କେଉଁଠି ? ୨-୩ଟି ହୋଟେଲରୁ ଫେରିବା ପରେ ଆମେ ଗାଡ଼ି ଧରି ପହଞ୍ଚିଲୁ ଶ୍ରୀମନ୍ଦିର ପଶ୍ଚିମଦ୍ୱାର ସଞ୍ଜୟ ଦତ୍ତ ମହାପାତ୍ରଙ୍କ ଘରେ । ସେ ଘରେ ନଥିଲେ । ତାଙ୍କ ବାପା ବି ମନା କରିଦେଲେ - ଆଦୌ ରୁମ୍ ଖାଲି ନାହିଁ । ଯାହାହେଉ ତାଙ୍କରି ପରାମର୍ଶରେ ସେହି ପଶ୍ଚିମଦ୍ୱାରରେ ଗୋଟିଏ ଗେଷ୍ଟ ହାଉସ୍‌କୁ ଗଲୁ ଓ ରୁମ୍ ଦୁଇଟି ମିଳିଗଲା । ସାମାନ୍ୟ ବିଶ୍ରାମ ପରେ ପୁଣିଥରେ ସଂଧ୍ୟା ଗଡ଼ିଯିବାପରେ ଆଉଥରେ ଗୁଣ୍ଡିଚା ମନ୍ଦିର ଗଲୁ । ଏଥର ସାମାନ୍ୟ ପାଖକୁ ଅବଶ୍ୟ ଆମ ଗାଡ଼ି ଗଡ଼ିଗଲା, ତଥାପି ସେହି ଗହଳି, ମନେହେଲା ଚତୁର୍ଦ୍ଧାମୂର୍ତ୍ତି ଆଡ଼ପ ମନ୍ଦିରରେ ନିର୍ଲିପ୍ତ, ନିସ୍ପୃହ ହୋଇ ବସିଛନ୍ତି । ଅନ୍ୟ ସମୟରେ ଯେତେବେଳେ ଦେଖିବ, ମନେ ହୁଏ ସେ ତମକୁ ଚାହିଁ ଟହ ଟହ ହସୁଛି, କିନ୍ତୁ କାହିଁକି କେଜାଣି ମୋ ମନରେ ସେମିତି ଭାବ ଲେଶ ମାତ୍ର ଆସୁନଥାଏ । ଚେଷ୍ଟା କରି ଭିଡ଼ରେ ଠେଲି ସାମ୍ନାକୁ ଯାଇପାରିଲି ନାହିଁ । ସାଙ୍ଗରେ ଥିବା ପରିବାର ବାଧକ ସାଜିଲେ । ତେଣୁ ତୁଳସୀ ପାଦୁକ କିଛି ପାଇଲି ନାହିଁ, ପୁଣି ଫେରିଲୁ ।

ଗୁଣ୍ଡିଚା ମନ୍ଦିର ସିଂହଦୁଆରେ ଅଚାନକ ଭେଟ ହୋଇଗଲା, ସଞ୍ଜୟ ବାବୁଙ୍କ ସହିତ । ମୋ ଠୁ ସବୁ ଶୁଣିବା ପରେ କହିଲେ, ଗୋଟେ କାମ କରନ୍ତୁ କାଲି ସକାଳ ସାଢ଼େ ଚାରିରୁ ପାଞ୍ଚ ଭିତରେ ଏଇଠି ଆରତି ହେଉଥିବ, ଆପଣ ପହଞ୍ଚି ଯାଆନ୍ତୁ, ଭିଡ଼ ମୋଟେ ନଥିବ । ମୁଁ ଭଲ ଭାବେ ଦର୍ଶନ କରାଇଦେବି ।

ମୁଁ ପଚାରିଲି, ଆପଣଙ୍କୁ ପାଇବୁ କେମିତି ? ସେ ହସି ହସି ଉତ୍ତର ଦେଲେ, ମୁଁ ଏଇଠି ମିଳିଯିବି, ଆପଣ ଆଦୌ ବ୍ୟସ୍ତ ହୁଅନ୍ତୁ ନାହିଁ ।

ମୋ ମନ କହୁଥାଏ, ମୁଁ କାଳିଆକୁ ପାଖରୁ ଦେଖିବି, ତୁଳସୀ-ପାଦୁକ ପାଇବି, ତା'ପରେ ଯାଇ ଫେରିବି ।

ନିର୍ଦ୍ଧାରିତ ସମୟରେ ଗୁଣ୍ଡିଚା ମନ୍ଦିରରେ ପହଞ୍ଚିବା ପାଇଁ ଆମେ ଜାଙ୍ଗୁଲ୍ଲୁ ଜାଙ୍ଗୁଲ୍ଲୁ ଅନ୍ଧାରରୁ ଉଠି ନିତ୍ୟ କର୍ମ ସାରି ବାହାରି ପଡ଼ିଲୁ । ପଶ୍ଚିମ ଦ୍ୱାରରୁ ଗୁଣ୍ଡିଚା ମନ୍ଦିର ତିନି କିଲୋମିଟର ହେବ ବୋଧେ, ମୁଁ ସାରା ରାସ୍ତା ଭାବୁଥାଏ, କାଳିଆର କରୁଣାରୁ ମନ୍ଦିର ଦ୍ୱାର ପାଖରେ ସଞ୍ଜୟ ବାବୁ ମିଳିଯାଆନ୍ତୁ, ସାଙ୍ଗରେ ଭେଟ ହୋଇଯାଉ ।

ସତକୁ ସତ ଆମେ ଗାଡ଼ିରୁ ଓହ୍ଲାଇ ମନ୍ଦିର ଭିତରେ ପଶୁ ପଶୁ ସଞ୍ଜୟ ବାବୁ ଡାକିଲେ, ନନ୍ଦ ବାବୁ ଇଆଡ଼େ ଆସ, ମୁଁ ଏଇଠି ଅଛି । ଆମ ପାଇଁ ସେ ଦର୍ଶନ ଟିକେଟ କରି ଆଣି ଆମକୁ ବାଡ଼ ଭିତରକୁ ନେଇଗଲେ । ଭିଡ଼ ମୋଟେ ନଥିଲା । ଫର୍ଚ୍ଚା ପଡ଼ିଆସୁଥାଏ । ବାଡ଼ ଭିତରେ ଆମେ ଆଠ ଦଶ ଜଣ ଯାତ୍ରୀ ।

ମୋତେ ଲାଗିଲା ସାରା ପରିବେଶଟା ତୁଳସୀ ବାସ୍ନାରେ ମହକି ଉଠୁଛି ଏବଂ କାଳିଆ ମୋତେ ଚାହିଁ ଠୋ ଠୋ ହେଇ ହସୁଛି, ହାତ ଟେକି ଦେଲି ।

ସେଇ ସଙ୍ଗେ ସଙ୍ଗେ ଆରତି ହେଲା, ଆରତି ଦର୍ଶନର ଅନୁଭୂତି ବର୍ଣ୍ଣନା କରିହେବ ନାହିଁ । ଆରତି ପରେ ନନା ମାନଙ୍କ ହାତରୁ ଆରତିର ସ୍ପର୍ଶ ନେଲୁ ଆଖିରେ, ବାଡ଼ କଡ଼ରେ ପାଦୁକ ତୁଳସୀ ମିଳିଗଲା । ମୁଁ ପୁଣି ଥରେ ପଛକୁ ଫେରି ଚାହିଁଲି, କାଳିଆ ସେମିତି ହସୁଥିଲା ।

ବାହାରକୁ ଆସି ଖୋଜିଲି ସଞ୍ଜୟ ବାବୁ କୁଆଡ଼େ ଗଲେ । ତାଙ୍କ ଦେଖା ମିଳିଲା ନାହିଁ, ଆମେ ପାଦ ଲେଉଟାଇଲୁ ଫେରିବା ପାଇଁ ।

ମନ ଭରି ଦର୍ଶନ ଓ ତୁଳସୀ-ପାଦୁକ ସେବନ କରି ମନ ମୋର ଭରି ଯାଉଥାଏ, ହାଲୁକା ଲାଗୁଥାଏ, ଆଣ୍ଠୁ ଗଣ୍ଠିର ଯନ୍ତ୍ରଣା ମାଲୁମ୍ ପଡୁନଥାଏ । ଆମେ ସଅଳ ପାଦରେ ସିଂହଦ୍ୱାର ଆଡ଼କୁ ଆଗେଇଲୁ ।

ଠିକ୍ ସିଂହଦ୍ୱାର ବାହାରେ ପୁଣି ମିଳିଗଲେ ସଞ୍ଜୟ ବାବୁ । ହାତରେ ତୁଳସୀ ଦୟଣାର ଗୋଟେ ଗଜରା ହାର । ମୋ ହାତକୁ ବଢ଼ାଇ ଦେଇ କହିଲେ, ମହାପ୍ରଭୁଙ୍କ ଲାଗି ତୁଳସୀ, ନିଜେ ପାଇବେ ଓ ଅବଶିଷ୍ଟ ପୂଜା ଘରେ ଟାଙ୍ଗି ଦେବେ । ମୁଁ ଆନନ୍ଦରେ ସେଇ ତୁଳସୀ ଗଜରାକୁ ଝାମ୍ପି ନେଲି ।

ବହୁଦିନ ପର୍ଯ୍ୟନ୍ତ ସେହି ତୁଳସୀ ମାଳାଟି ଝୁଲୁଥିଲା ଆମ ଠାକୁର ଘରେ । ଆମେ ପୂଜା ପରେ ସେ ତୁଳସୀ ପାଉ । ଆଉ ସେ ମାଳାଟି ନାହିଁ, କିନ୍ତୁ ଠାକୁର ଘରେ ପୂଜାରେ ବସିଲେ, ବେଳେ ବେଳେ ଭାସି ଆସେ ତୁଳସୀ ଦୟଣାର ମହମହ ବାସ୍ନା ।

ଶଙ୍ଖଚିଲା ମାର୍ଗ, ଦଳା, ଯାଜପୁର ରୋଡ଼, ଯାଜପୁର
ଭ୍ରାମ୍ୟଭାଷ : ୯୪୩୭୩୦୮୯୧୦



# ବଡ଼ ଦେଉଳରେ ସେଦିନ

## ଅରବିନ୍ଦ ମୁଦୁଲି

ସେ ଦିନର ରାତି ମୋ ପାଇଁ ଅପୂର୍ବ ରାତି । ୧୯୯୫ ମସିହାର କଥା । ବଡ଼ ଦେଉଳରୁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ସାରି ମୁଁ ରାତି ୧୧ଟା ବେଳେ ଭୁବନେଶ୍ୱର ଫେରୁଥିଲି । ବାଇଶି ପାହାଚ ଉପରୁ ମୁଁ ଗଡ଼ି ଆସୁଛି । ତଳ ପାହାଚ ଗୁମୁଟ ଘର ପାଖାପାଖି ପହଞ୍ଚିଲା ବେଳକୁ ମୋତେ ଜଣେ କିଏ ଡାକିଲେ । ମୁଁ ପଛକୁ ବୁଲି ଅନେଇଲା ବେଳକୁ ମୋତେ କଳିଯୁଗ ପଡ଼ିଆରୀ (ନାରାୟଣ ଭାଇନା) ଡାକୁଛନ୍ତି । କହୁଛନ୍ତି, ଅରବିନ୍ଦ ବାବୁ, ଆପଣ ଅବଢ଼ା ନ ଖାଇ କ'ଣ ଚାଲିଯାଉଛନ୍ତି । ଆସନ୍ତୁ, ଆସନ୍ତୁ ଆପଣ ମହାପ୍ରସାଦ ଖାଇକି ଯିବେ । ମୁଁ ଫେରିଲି ଏବଂ ତାଙ୍କ ସଙ୍ଗରେ କଳ୍ପବଟ ମୂଳକୁ ଗଲି । ମୋତେ ନାରାୟଣ ଭାଇନା ସେହି କଳ୍ପବୃଟ ମୂଳରେ ବସେଇ ଦେଇ କୁଆଡ଼େ ଚାଲିଗଲେ । ଚାହୁଁ ଚାହୁଁ ରାତି ୧୨ଟା ବାଜିଲା । ମୁଁ ନୀଳଚକ୍ରକୁ ଚାହିଁ ଭାବୁଥାଏ, ଧନ୍ୟ ଧନ୍ୟରେ କାଳିଆ, ଧନ୍ୟ ତୋ ଲୀଳା । ଏହି ସମୟରେ ନାରାୟଣ ଭାଇନା ଏକ ଅଫିଟା କଦଳୀ ମଞ୍ଜି ପତ୍ର ଏବଂ ତା'ସହିତ ଗୋଟିଏ ବଡ଼ ବାଇହାଣ୍ଡିର ଅଧା କୁଡୁଆରେ ଅବଢ଼ା, ଡାଲି, ବେସର, ମହୁର, ଶାଗ, ଖଟା, ସବୁ ରଖି ମୋ ପାଖରେ ବାଢ଼ି ଦେଲେ । ମୁଁ ଦେଖିଲି ଅବଢ଼ା ସଂପୂର୍ଣ୍ଣ ଗରମ ଅଛି । ନାରାୟଣ ଭାଇନା ଖାଇବାକୁ ଦେଇସାରି କହିଲେ, ବୁଝିଲ ମୁଁ ଯାଉଛି, ତମେ ଖାଇ ଦେଇ ତମ ଘରକୁ ଯିବ । ମୁଁ କହିଲି, ଆଜ୍ଞା ହଁ । ତା'ପରେ ମୁଁ ଖାଇସାରି ତରତର ହୋଇ ସିଂହଦ୍ୱାରକୁ ଆସି ପହଞ୍ଚିଲା ବେଳକୁ ବଡ଼ଦାଣ୍ଡରେ ଜଣେ କାର ଡ୍ରାଇଭର ଭୁବନେଶ୍ୱର ଯିବେକି ବୋଲି ମୋତେ ପଚାରୁଛନ୍ତି । ମୁଁ ପତିତପାବନକୁ ଚାହିଁ କାନ୍ଦି ପକାଇଥିଲି । ଗାଡ଼ିରେ ବସି ଡ୍ରାଇଭରର ନାଁ ପଚାରିଲି, ସେ କହିଲା, ତା' ନାଁ କାଳିଆ, ସେ କଟକ ଯିବ । ସେ ମୋତେ ଭୁବନେଶ୍ୱର ଘରେ ପହଞ୍ଚେଇ କଟକ ଗଲା । ସେଦିନ ମହାପ୍ରଭୁଙ୍କ କୃପାରୁ ଏ ସବୁ ସମ୍ଭବ ହୋଇଥିଲା ।

ଆକାଶବାଣୀ ଓ ଦୂରଦର୍ଶନ କଣ୍ଠଶିଳ୍ପୀ
୯୫୦/ପି, ଭୀମଟାଙ୍ଗି, ଓଲ୍ଡ଼ ଟାଉନ
ଭୁବନେଶ୍ୱର - ୭୫୧୦୦୨
ଭ୍ରାମ୍ୟଭାଷ : ୯୪୩୭୨୭୯୯୪୯



# ଭକତ ଭାବରେ ବନ୍ଧା

## ଦ୍ୱିତୀ ଚନ୍ଦ୍ର ସାହୁ

ଓଡ଼ିଆ ଜନ ଜୀବନରେ ଜଗନ୍ନାଥ ଚେତନା ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଜଗନ୍ନାଥ ହେଉଛନ୍ତି ମାନବ ଦେବତା । ସେଥିପାଇଁ ମହାପ୍ରଭୁଙ୍କୁ ଅତିଶୟ ଗରମ ହୁଏ, ସ୍ନାନ ଦରକାର ହୁଏ । ତା'ପରେ ଅତ୍ୟଧିକ ସ୍ନାନ ଜନିତ ଜ୍ୱର । ଆଉ ଚାଲିଯାଆନ୍ତି ଅଣସର ଘରକୁ । ସ୍ନାନ ପୂର୍ଣ୍ଣିମା ଠାରୁ ପୁଣି ନବଯୌବନ ବେଶ ଯାଏଁ ଶ୍ରଦ୍ଧାଳୁ ଅଲାରନାଥଙ୍କ ଦର୍ଶନରେ ଯାଆନ୍ତି । ସ୍ନାନ ମଣ୍ଡପରେ ମହାପ୍ରଭୁଙ୍କ ସ୍ନାନ ଯାତ୍ରା ଦର୍ଶନରେ ମହାପୁଣ୍ୟ ଅର୍ଜନ ହୁଏ । ହାତୀ ବେଶ ଦର୍ଶନ ଏବଂ ମହାପ୍ରଭୁଙ୍କୁ ଆବେଗର ସହ କୁଣ୍ଢାଇ ଧରିବାର ମୋହକୁ ଶ୍ରଦ୍ଧାଳୁମାନେ ଏଇ ଦିନ ଚରିତାର୍ଥ କରିଥା'ନ୍ତି । ପ୍ରଭୁ କଳାଠାକୁରଙ୍କୁ ଅତି ନିକଟରୁ ଦେଖିବାର ଇଚ୍ଛା ହେତୁ ଲକ୍ଷ ଲକ୍ଷ ଭକ୍ତଙ୍କ ସମାଗମ ହୋଇଥାଏ । ଅନେକ ଦିନ ଯାଏଁ ଠାକୁରଙ୍କ ଦର୍ଶନର ଅଭିଳାଷ ମନରେ ଯଦିଓ ରହିଥିଲା, ତଥାପି ସରକାରୀ ଚାକିରିଆ ଜୀବନ ଓ କାର୍ଯ୍ୟବ୍ୟସ୍ତତା ମଧ୍ୟରେ ଜଗନ୍ନାଥଙ୍କ ଡ଼ୋର ପୁରୀକୁ ଲାଗି ନଥିଲା । ଛୁଟି ଶେଷ ହୋଇ ଆସୁଥାଏ । ତଥାପି କାର୍ଯ୍ୟକ୍ରମ ସ୍ଥିର ହୋଇପାରୁ ନଥାଏ । ଯା' ଭିତରେ ହଠାତ୍ କାହିଁକି କେଜାଣି ସ୍ନାନ ପୂର୍ଣ୍ଣିମା ଦୁଇ ଦିନ ପୂର୍ବରୁ ମନ ପ୍ରବଳ ମାଡ଼ିହେଲା । ମୁଣ୍ଡ ଫଟା ଖରାରେ ଷ୍ଟେସନରେ ପହଞ୍ଚିଲି, କିନ୍ତୁ ରିଜର୍‌ଭେସନ ନାହିଁ । ଅଗତ୍ୟା ତତ୍କାଳରେ ସପରିବାର ପାଇଁ ଟିକେଟ ବୁକ୍ କଲି ଏବଂ ପୁରୀ ପାଇଁ ନିର୍ଦ୍ଧାରିତ ଦିନ ଯାତ୍ରା ଆରମ୍ଭ ହେଲା ।

ସ୍ଥିର ହେଲା ଭୁବନେଶ୍ୱରରେ ରହଣି ଏବଂ ସ୍ନାନ ଯାତ୍ରା ପୂର୍ବ ଦିନ ଅପେକ୍ଷାକୃତ କମ୍ ଗହଳି ଭିତରେ ଶ୍ରୀମନ୍ଦିରରେ ଜଗନ୍ନାଥ ଦର୍ଶନ କରିବା । ସେଥିପାଇଁ ଭୁବନେଶ୍ୱରରୁ ସ୍ୱତନ୍ତ୍ର ଗାଡ଼ିରେ ପୁରୀରେ ପହଞ୍ଚିଲା ବେଳକୁ ଦିନ ୧୧.୩୦ ପାଖାପାଖି । ପହଡ଼ ପଡ଼ିଯିବା ଭୟରେ ତରତର ହୋଇ ବାଇଶି ପାହାଚ ଡେଇଁ ମନ୍ଦିର ନିକଟକୁ ଗଲା ବେଳେ ଦ୍ୱାର ବନ୍ଦ । ଭାବିଲୁ ପହଡ଼ ପଡ଼ିଯାଇଛି । ଏତେ ଦୂର ପୁଣି ଖର୍ଚ୍ଚାନ୍ତ ହୋଇ ଯେତେବେଳେ ଆସିଛୁ ଦର୍ଶନ ସାରି ହିଁ ଫେରିବା । ଏମିତି ବିଚାର ନେଇ ଅପେକ୍ଷା କଲୁ । ତା'ରି ଭିତରେ ମନ୍ଦିର ବେଢ଼ାରେ ଥିବା ଅନ୍ୟ ଦେବଦେବୀଙ୍କ ଦର୍ଶନ ସରିଗଲା । ମନ୍ଦିର ଭିତରେ ଲୋକ ହାଉଜାଉ । ସମସ୍ତେ ଶ୍ରୀଜୀଉଙ୍କ ଦର୍ଶନ ପାଇଁ ଅପେକ୍ଷାରତ । ପଣ୍ଡାଙ୍କୁ ପଚାରିଲୁ - 'କେତେବେଳେ ଦ୍ୱାର ଖୋଲିବ । ଉତ୍ତରରେ କିଏ କହୁଛି ଦୁଇଟା ପରେ ତ ଆଉ କିଏ କହୁଛି ଉପରବେଳା ଯାଇ ଖୋଲିବ, ତା'ର କିଛି ନିର୍ଦ୍ଦିଷ୍ଟତା ନାହିଁ ।'

ନିରାଶାଜନକ ଉତ୍ତର ଆମର ଉତ୍କଣ୍ଠାକୁ ଅଭିମାନରେ ପରିଣତ କରିଦେଲା । ସମ୍ଭବତଃ ଆଉ ଦର୍ଶନ ହେବ ନାହିଁ । ବୋଧହୁଏ ବିନା ଦର୍ଶନରେ ଫେରିବା । ପୂରାପୂରି ରାଗ ଓ ଅଭିମାନରେ ମନଟା ଜଳି ଉଠୁଥିଲା । ପରିବାରବର୍ଗ ଟଙ୍କ ତୋରାଣି ପିଇବା ପାଇଁ ଯିବାକୁ କହିଲେ । ରାଗରେ ମନା କରିଦେଲି । ସମସ୍ତେ ଟଙ୍କ ତୋରାଣି ଲାଗି ଆନନ୍ଦ ବଜାର ଗଲେ । ମୁକ୍ତି ମଣ୍ଡପ ତଳେ ଅନ୍ୟମାନଙ୍କ ଭଳି ଗୁମ୍ ମାରି ବସିଲି । ପଢ଼ିଥିବା ଶ୍ରୀଜୀଉଙ୍କ ଅନେକ ଅଲୌକିକ କଥା କାହାଣୀ ଭିତରକୁ ପଶିଗଲି । ଭାବୁଥିଲି ଠାକୁର ସେମିତି କିଛି କରିସ୍ମା କରନ୍ତେ କି । କିନ୍ତୁ ସେମିତି କିଛି ହେଉ ନଥିଲା । ସିଦ୍ଧାନ୍ତ କଲି ଦର୍ଶନ ନ ହେଲେ କେବେ ଆସିବି ନାହିଁ କି ପ୍ରସାଦ ଛୁଇଁବି ନାହିଁ । ଏଇ ସମୟରେ ଜଣେ ଧୋତି ଓ ରଙ୍ଗ ଗାମୁଛା ପିନ୍ଧିଥିବା ଏକ ପାନଖିଆ କୁଳବୃଦ୍ଧ ମୋ ପାଖରେ ପହଞ୍ଚି କହିଲେ, ଆଜି ଦର୍ଶନ ହେବନିରେ ପୁଅ । ଫେର୍ ଯାଇ ରାତିକି ଦ୍ୱାର ଖୋଲିବ, ତାହା ପୁଣି ଅଳ୍ପ ସମୟ ପାଇଁ, କାଲି ସ୍ନାନଯାତ୍ରା । ଭଲ କି ଦର୍ଶନ ପାଇବୁ । ମନ ଭରି ଦେଖିବୁ । ଏତିକିବେଳେ ମୋ ପାଟିରୁ ବାହାରିଗଲା- 'ଫେରେ କାଲିକି - ନ ଦେଖି ଚାଲିଯିବି ପଛେ କାଲିକି ଆସିବି ନାହିଁ ।'

ଆନନ୍ଦ ବଜାରରୁ ଫେରିବା ପରେ ଦର୍ଶନ ନ ମିଳିବାର ଖବରଟା ଦେଇ ସମସ୍ତଙ୍କୁ ଶ୍ରୀମନ୍ଦିରରୁ ବାହାରି ପଡ଼ିବାକୁ କହିଲି । ଭୋଗ ଧରିବା ପାଇଁ ସମସ୍ତେ କହିଲେ, କିନ୍ତୁ ମନା କଲି । ଏତେ ପରିଶ୍ରମ ପରେ ଯିଏ ଦର୍ଶନ ଦେଲାନି, ତା'ରି ପ୍ରସାଦ ନେବା ଦରକାର ନାହିଁ । ରାଗ ଦେଖି ଅନ୍ୟମାନେ ଚୁପ୍ ରହିଗଲେ । ବିନା ଦର୍ଶନରେ ବେଳାଭୂମି, କୋଣାର୍କ ହୋଇ ଭୁବନେଶ୍ୱର ଫେରିଲା ବେଳକୁ ରାତି ୧୦ଟା । ଦିନ ତମାମ ସମସ୍ତେ ଭୋକିଲା । କିଏ ବି କୋଉଠି ଖାଇପାରିଲେନି । ପୁଣି ବୁଲାବୁଲି କରି ଥକିଯାଇଥିବାରୁ ଘରେ ପହଞ୍ଚୁ ପହଞ୍ଚୁ ଶୋଇଗଲେ । ଦିନଟା କେମିତି ଥିଲା କେଜାଣି ପିଲାଛୁଆମାନେ ବି କିଛି ନ ଖାଇ ଶୋଇଗଲେ ।

ରାତିରେ ପୁଣି ସେହି ବୃଦ୍ଧ । ସ୍ୱପ୍ନରେ କହିଲେ - 'କାଲି ଆସିବୁ । ବାହା ହୋଇ ପ୍ରଥମେ ଆସିଛୁ, ଏମିତି ନ ଦେଖି ଫେରିବା ଭଲ ନୁହଁ । ଭଲ ଦର୍ଶନ ପାଇବୁ । ଅବଢ଼ା ବି ମିଳିବ । ଚାଉଁକିନା ନିଦ ଭାଙ୍ଗିଲା । ଦେହସାରା ଝାଳ । ସମସ୍ତେ ଶୋଇଛନ୍ତି । ଭାବିଲି ଏହା ହିଁ ବୋଧେ ବଡ଼ ଠାକୁରଙ୍କ ଅଲୌକିକତା । ଭକତ ଭାବରେ ବନ୍ଧା ଠାକୁର ସେ । ଦୁଇ ହାତ ଟେକି ପ୍ରଣାମ କଲି । ଲୋମ ସବୁ ଟାଙ୍କୁରି ଉଠିଯାଇଥିଲା ।'

ସକାଳୁ ଉଠିଲା ବେଳକୁ ମନ ଥଣ୍ଡା ହୋଇଯାଇଥିଲା । ଠାକୁରଙ୍କ ମାୟା ବୋଧେ କାହାରିକୁ କିଛି କହିବା ପୂର୍ବରୁ ସକାଳୁ ସକାଳୁ ଘରର ସମସ୍ତେ ଏକା ଜିଦ୍ କଲେ,

କେହି ନ ଗଲେ ବି ଦୁହେଁ ସ୍ୱାମୀ ସ୍ତ୍ରୀ ଯାଇ ଠାକୁର ଦର୍ଶନ କରି ଆସ । ରାୟଗଡ଼ାରୁ ବି ଫୋନ ଆସିଲା । ସେମାନଙ୍କର ସେଇ ଏକା ମତ ଯେମିତି ହେଉ ପଛେ କାଳିଆକୁ ଦେଖିକି ଆସ । ସମ୍ମିଳିତ ସ୍ୱର ଆଗରେ ମୋର ପ୍ରତିଜ୍ଞା ଚୁରମାର ହୋଇଗଲା ଯେମିତି । ଚଟାପଟ ନିତ୍ୟକର୍ମ ସାରି ଯାତ୍ରୀବାହି ବସ୍‌ରେ ଗଲୁ । ଭିଡ଼ ସତ୍ତ୍ୱେ କଣ୍ଡକ୍ଟର ଦୁଇଟି ସିଟ୍ ଯୋଗାଡ଼ କରି ବସାଇଦେଲା ଆମକୁ । ପୁରୀରେ ପହଞ୍ଚିଲା ବେଳକୁ ସ୍ନାନ ପରମ୍ପରା ଆରମ୍ଭ ହୋଇଥିଲା । ସ୍ନାନ ମଣ୍ଡପରୁ ଭଗବାନଙ୍କ ଦର୍ଶନ ପାଇ ଗଦ୍ ଗଦ୍ ହୋଇପଡ଼ିଲି । ଆପେ ଆପେ ଆଖିରୁ ଲୁହ ଗଡ଼ିଗଲା । ମନ ଭରି ଠାକୁରଙ୍କୁ ଦେଖିଲି । ଆନନ୍ଦ ବଜାରରେ ଢ଼େର୍ ଟଙ୍କ ତୋରାଣି ପିଇଲି । ସପତ୍ନୀକ ବସି ଅବଢ଼ା, ଡାଲି, ମହୁର ତୃପ୍ତିରେ ବି ଖାଇଲୁ । ପୁଣି ଘର ପାଇଁ ଅବଢ଼ା, ଡାଲି ଧରିଲି । ମୋତେ ସବୁ ଆଶ୍ଚର୍ଯ୍ୟ ଲାଗିଲା । ଫେରିଲା ବେଳେ ବଡ଼ଦାଣ୍ଡରୁ ଦୁଇ ହାତ ଟେକି କ୍ଷମା ମାଗିଲି । ପୁଣି ଥରେ ପୁରୀକୁ ଡୋର ଲଗାଇବାର ଭିକ୍ଷା ମାଗି ଫେରିଲି ସତ, ହେଲେ ବଡ଼ଦାଣ୍ଡରୁ ପାଦ ଉଠାଇବାକୁ ଇଚ୍ଛା ହେଉ ନଥିଲା । ଅଥଚ ସେଇ କୁଳବୃଦ୍ଧ ରହସ୍ୟ ମୋ ପାଇଁ ଚିରଦିନ ପାଇଁ ରହସ୍ୟ ହୋଇ ରହିଯିବ ଯେମିତି । ରହିଥିବ ବି ।


ଇନ୍ଦିରା ନଗର, ୪ର୍ଥ ଗଳି

ରାୟଗଡ଼ା - ୭୬୫୦୦୧

ଭ୍ରାମ୍ୟଭାଷ : ୯୫୫୬୨୮୭୭୭୫




# ଲୁଚକାଳି ଖେଳିବା ଯାହାର ସଉକ

## ଚକ୍ରପାଣି ପରିଚ୍ଛା

ଗତ ଫେବୃୟାରୀ ଦ୍ୱିତୀୟ ସପ୍ତାହରେ ଭୁବନେଶ୍ୱର ଠାରେ ଆୟୋଜିତ ଏକ ସାହିତ୍ୟ ସଂପର୍କିତ କାର୍ଯ୍ୟକ୍ରମରେ ଯୋଗଦେବାପାଇଁ ନିମନ୍ତ୍ରଣ ପାଇଥାଏ । ତେଣୁ ଦିନକ ଆଗରୁ ଜୟପୁର ଯାଇ ଟିକଟ ଖଣ୍ଡେ ଯୋଗାଡ଼ କରିନେଇଥିଲି । ତେବେ ଗାଁକୁ ଫେରିବା ବେଳେ ମନେ ମନେ ଭାବିଲି ଭୁବନେଶ୍ୱର ତ ନିଶ୍ଚେ ଯିବି । ତମେ ଯଦି ଡାକିବ - ପୁରୀ ଯିବି । ନାହିଁ ଯଦି ଭୁବନେଶ୍ୱରରୁ ଫେରିବି ।

ନିର୍ଦ୍ଦିଷ୍ଟ ଦିନ ଭୁବନେଶ୍ୱରରେ ପହଞ୍ଚିଲି ଏବଂ କାର୍ଯ୍ୟକ୍ରମରେ ଯୋଗ ଦେଲି । ଅପରାହ୍ନ ଚାରିଟାରେ ବରମୁଣ୍ଡାରେ ପହଞ୍ଚିବା ମାତ୍ରେ କେମିତି ଗୋଟେ ଅଦୃଶ୍ୟ ଆକର୍ଷଣରେ ମନ ଉଚ୍ଛନ୍ନ ହୋଇ ଉଠିଲା । ମୁଁ ଯେ ଏଇ ପ୍ରଥମ ଥର ପାଇଁ ଭୁବନେଶ୍ୱର ଆସିଛି, ତା' ନୁହେଁ । ପୂର୍ବରୁ ଏକାଧିକ ଥର ଆସିଥିଲେ ବି ପୁରୀ ଯାଇପାରିନି । ଏଥର କିନ୍ତୁ ମନ ଭିତରେ ପ୍ରବଳ ଆଲୋଡ଼ନ ସୃଷ୍ଟି ହେଲା । ଯୋଗକୁ ବସ୍ ବି ମୋ ସାମ୍ନାରେ ଠିଆ । କାଳବିଳମ୍ବ ନ କରି ବସ୍‌କୁ ଉଠିଲି । ସଂଧ୍ୟା ସାଢ଼େ ଛ'ଟା ସୁଦ୍ଧା ପୁରୀରେ ପହଞ୍ଚି ବଡ଼ଦାଣ୍ଡରେ ଓହ୍ଲେଇବା ମାତ୍ରେ ମନ ଛଟପଟ ହେଲା କେମିତି ଜଗନ୍ନାଥଙ୍କୁ ଥରେ ଦର୍ଶନ କରିବି । ତରତର ହୋଇ ଦକ୍ଷିଣଦ୍ୱାର ନିକଟରେ ଥିବା ରଘୁନାଥ ମଠରେ ପହଞ୍ଚି ରୁମ୍‌ଟିଏ ନେଇ ମୁହଁ ହାତ ଧୋଇଲି ।

ଶ୍ରୀମନ୍ଦିର ସାମ୍ନାରେ ଠିଆହୋଇ ନୀଳଚକ୍ର ଏବଂ ପତିତପାବନ ବାନାକୁ ପ୍ରଣାମ କଲି । ବାଇଶି ପାହାଚ ଦେଇ ଯେତେ ଆଗକୁ ବଢୁଥାଏ, ଆତୁର ଭାବ ସେତେ ବଢୁଥାଏ । କିନ୍ତୁ ସବୁକିଛି ଏପଟ ସେପଟ ହୋଇଗଲା । ଏମିତିରେ ପୁରୀରେ ବଙ୍ଗୀୟ ଯାତ୍ରୀଙ୍କ ଭିଡ଼ ସାରାବର୍ଷ ଲାଗି ରହିଥାଏ । ସେଦିନ ବି ସେଇ ଭିଡ଼ । ଅନେକ ଚେଷ୍ଟା କରି ମଧ ଜଗନ୍ନାଥଙ୍କୁ ଦର୍ଶନ କରିପାରିଲି ନାହିଁ । ଯେତେ ଥର ପାଦେ ଆଗକୁ ଯିବା ଚେଷ୍ଟା କରିଚି, ସେତିକି ପଛକୁ ଫେରିଚି । ବହୁ ଚେଷ୍ଟା ପରେ, ପ୍ରାୟ ପନ୍ଦର କି କୋଡ଼ିଏ ମିନିଟ୍‌ର କସରତ ପରେ ଯାହା ଦେଖିଲି ସେ ଦୃଶ୍ୟ ଏବେ ବି ଆଖି ଆଗରେ ନାଚି ଉଠୁଚି !

ଦୁଇ ଚକାଆଖିରୁ ଗୋଟେ ଦିଶୁଚି - ଦାଉଦାଉ ହେଇ ! ଯେତେ ବ୍ୟାକୁଳ ହୋଇ ଆର ଆଖିଟିକୁ ଦେଖିବାକୁ ଚେଷ୍ଟା କଲି, ତଥାପି... ନା, କିଛି ବି ଦିଶୁନି - କେବଳ ଗୋଟେ ଆଖି !

ଯୋଉଠି ଠିଆ ହୋଇଥିଲି ସେଠୁ ଆଗକୁ, ପଛକୁ, ପୁଣି ବାଁ, ଡାହାଣ, ଯୁଆଡ଼ିକି ଘୁଞ୍ଚିଲି ସେଇ ଗୋଟିଏ ବୋଲି ଆଖି ଯାହା ଦୃଶ୍ୟମାନ ହେଉଥାଏ ।

ଶେଷକୁ କହିଲି, ଆଜି ସିନା ଭେଟ ହେଲାନି ! କାଲି ପୁଣି ଆସିବି । ଭେଟ ନ ହେଇ ଫେରିବିନି । ତା'ପରଦିନ ସକାଳୁ ପୁଣି ଯାଇ ପହଞ୍ଚିଲି । ଭିଡ଼ ବିଶେଷ ନଥାଏ । ଅଳ୍ପକିଛି ବଙ୍ଗୀୟ ଯାତ୍ରୀଙ୍କ ଯିବା ଆସିବା ଲାଗିଥାଏ ।

ଯୋଉଠି ଠିଆହେଲି, ସେଠୁ ସିଧାସଳଖ ଦେଖାଯାଉଥା'ନ୍ତି ଜଗତର ନାଥ କାଳିଆ ସାଆନ୍ତ ! ଭାଇ ଭଉଣୀଙ୍କୁ ନେଇ ବସିଥା'ନ୍ତି ରତ୍ନବେଦୀ ଉପରେ !

ସାମ୍ନାରେ ଠିଆ ହୋଇଥାଏ ହାତଯୋଡ଼ି । ଏତେ ପରିମାଣରେ ଆତ୍ମମଗ୍ନ ହୋଇପଡ଼ିଥାଏ ଯେ, କିଛି ବି କହିପାରୁନଥାଏ ! ତା' ଛଡ଼ା କ'ଣ ବା କହିଥା'ନ୍ତି... !! ମୁଁ ତ କିଛି କହିବାପାଇଁ ସଂକଳ୍ପ କରି ଆସିନଥାଏ । ପୂର୍ବରୁ ଯେତେଥର ଆସିଛି, କିଛି ତ କହିନଥିଲି, ଆଜି ବା କହନ୍ତି କ'ଣ ?

ସମ୍ମୋହନ ପାଖରେ ମୁଁ ବା [illegible] କିଏ ?

ମନ୍ଦିରରୁ ଫେରିବା ପରେ ମୋର ଜନୈକ ଶ୍ରଦ୍ଧେୟ ଛାତ୍ର, ଯାହା ସହିତ ଅନେକ ସମୟରେ ଜଗନ୍ନାଥଙ୍କ ସଂପର୍କରେ ଆଲୋଚନା କରେ, ତାଙ୍କୁ ଫୋନ କଲି, କହିଲି, ବନ୍ଧୁଙ୍କ ସହ ଭେଟ ହେଲା ।

ସେ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, କୋଉ ବନ୍ଧୁ ?

ମୁଁ କହିଲି, ଆଉ କିଏ ? ପୁରୀ ଆସିଛି ଯେତେବେଳେ, ଏଠି ଆଉ ବନ୍ଧୁ କିଏ ?

ସେ ବୁଝିଗଲେ । ପ୍ରଥମ ଦିନ ଏବଂ ପରଦିନର ଅଭିଜ୍ଞତା ସଂପର୍କରେ କହିଲି ଯେତେବେଳେ, ସେ ସାମାନ୍ୟ ହସି କହିଲେ, ସାର୍‌, ଲୁଚକାଳି ନ ଖେଳିଲେ ସେ ଲୋକକୁ ଭଲ ଲାଗେନି ।

ଏବେ ବି ମୁଁ ବୁଝିପାରୁନି - କୋଉ ଭାବ ନେଇ ଜଗନ୍ନାଥ ଏମିତି ଲୁଚକାଳି ଖେଳନ୍ତି ? ଖାଲି ଏକା ମୋ ସାଥିରେ ନା ସମସ୍ତଙ୍କ ସାଥିରେ ?

ବର୍ଷକ ତଳେ ପୁରୀ ଆସିଥାଏ ସସ୍ତ୍ରୀକ । କାର୍ତ୍ତିକ ମାସ । ଦୀପାବଳି ଦୁଇଦିନ ବାକି ଥାଏ । ଦୁହେଁ ମନ୍ଦିରକୁ ଗଲୁ । ଭିତରେ ନାହିଁ ନଥିବା ଭିଡ଼ । ଦର୍ଶନ କରିବା ମୋଟେ ହେଲାନି । ବାହାରକୁ ବାହାରି ଆସିଲୁ ଅନିଚ୍ଛାସତ୍ତ୍ୱେ । ମୁଁ ପ୍ରସ୍ତାବ ଦେଲି, ବଡ଼ଦାଣ୍ଡରେ ବୁଲାବୁଲି କରିବା ପାଇଁ । ପ୍ରାୟ ଘଣ୍ଟାଏ କାଳ ବୁଲିବା ପରେ ପୁଣି ଗଲୁ ମନ୍ଦିର ଭିତରକୁ । ଆଶା ଥିଲା, ଏଥର ଦର୍ଶନ ଟିକିଏ ମିଳିବ । କିନ୍ତୁ ସମ୍ଭବ ହେଲାନି !

ଦୁହେଁ ନିରାଶ ମନରେ ଫେରିଆସିଲୁ । ମୁଁ ସାନ୍ତ୍ୱନା ଦେଇ କହିଲି, ଖାଇପିଇ ଟିକିଏ ବିଶ୍ରାମ ନିଅ । ଉପରବେଳା ଯାଇ ଦର୍ଶନ କରିବା ।

ଚାରିଟା ପରେ ଦୁହେଁ ମନ୍ଦିରକୁ ଯିବାପାଇଁ ପ୍ରସ୍ତୁତ ହେଲୁ । ଜଗନ୍ନାଥ ବୋଧେ ଆମ ଦୁଃଖ ବୁଝିସାରିଥିଲେ । ବିଶେଷକରି ମୋର ପତ୍ନୀ, ଯିଏ ପ୍ରଥମ୍ ଥର ପାଇଁ ଜଗନ୍ନାଥଙ୍କୁ ମନଭରି ଦେଖିବା ପାଇଁ ଏତେ ଦୂରରୁ ଧାଇଁ ଆସିଥିଲେ, ତାଙ୍କ ପାଇଁ ଯେମିତି ଜଗନ୍ନାଥ ସାହାଣମେଲା କରିସାରିଥିଲେ । ଅଳ୍ପ କିଛି ଭକ୍ତଙ୍କ ଚଳପ୍ରଚଳକୁ ଛାଡ଼ିଦେଲେ ଏକଦମ୍ ଫାଙ୍କା । ନିଜ ସାମ୍ନାରେ ରତ୍ନବେଦୀ ଉପରେ ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଦର୍ଶନ କରି ଆଖି ଦୁଇଟି ତାଙ୍କର ଲୁହ ଛଳଛଳ ହୋଇଉଠିଲା ।

ଲୁଚକାଳି ଖେଳିବା ଯାହାର ସଉକ, ସେ ଏତେ ସହଜରେ ଧରାଦିଏନି, ଏହାହିଁ ମୋ ଜୀବନକାଳର ଗଭୀରତମ ଅନୁଭୂତି !!

ବୈପାରିଗୁଡ଼ା, କୋରାପୁଟ
ଭ୍ରାମ୍ୟଭାଷ : ୯୧୭୮୬୪୭୧୩୭



# ଜୟ ଜଗନ୍ନାଥ ସ୍ୱାମୀ

ଚିନ୍ମୟ ସାହୁ

**ସେ** ତ ଅନ୍ତର୍ଯ୍ୟାମୀ, ସବୁ କିଛି ଜାଣି ପାରନ୍ତି । ସେହି କରୁଣାକରଙ୍କୁ କ'ଣ ଅବା ଅଛପା କାହାର ଦୁଃଖ ସୁଖ । ଖାଲି ଯାହା ତାଙ୍କ ଚରଣ ଯୁଗଳରେ ଶରଣ ପଶିଥିଲେ ଭକ୍ତି ଭାବରେ ସେ ହୋଇଯା'ନ୍ତି ଭକ୍ତର ଭାବଗ୍ରାହୀ, ହରି ନିଅନ୍ତି ସବୁ ଦୁଃଖ ଆଉ କଷ୍ଟ, ଭକ୍ତକୁ ଯାହା ଘେରି ବସିଥାଏ ସମୟର ପ୍ଲାବନରେ । ସେଥିପାଇଁ ଭକ୍ତ ସାଲବେଗ ଗାଇ ଉଠିଛନ୍ତି ସେଇ ମହାବାହୁଙ୍କ ଶ୍ରୀମୁଖକୁ ଚାହିଁ...

'ଚାଲ ସଖୀ ଆମ୍ଭେ ଦର୍ଶନ କରିବା, ନୀଳଗିରି କାଳିଆକୁ ।<br>କେଉଁ ସୁରପତି ବେଶ କରିଅଛି, ଗିରିବର ଚୋଳିଆକୁ ।।'

ସେମିତି ଏକ ଭାବ ମୋ ମନରେ ପଶିଲା ଯେତେବେଳେ ସେ କରୁଣାକରଙ୍କ ଦୟାରୁ ମୁଁ ସକୁଶଳ ପୁରୀ ଦର୍ଶନ କରି ଆସିଥିଲି ବିନା ବାଧା ବିଘ୍ନରେ ।

ଏମିତି ଏକ ନିଷ୍ପତ୍ତି ନେଇ ମୁଁ ଏକାକୀ ଥରେ ପୁରୀ ବାହାରି ଯାଇଥିଲି ଜଗତର ନାଥ ଜଗନ୍ନାଥଙ୍କ ଦର୍ଶନ ନିମନ୍ତେ । ଜାଣେନା ସେ କେଉଁ ଉଦ୍ଦୀପନା ଯାହା ମୋତେ ଟାଣୁଥିଲା ସେ ଶଙ୍ଖକ୍ଷେତ୍ରକୁ । ଏକା ମୁଁ କେବେ ଆଗରୁ ପୁରୀ ଯାତ୍ରା କରି ନଥାଏ, ସେଥିପାଇଁ ମନରେ ଡର ଆସିବା ସ୍ୱାଭାବିକ । ଆଜିକାଲି ବାଟଘାଟରେ ଯାହାସବୁ ଘଟୁଛି, ତଥାପି ମୁଁ ଭକ୍ତବତ୍ସଳଙ୍କୁ ସ୍ମରଣ ପୂର୍ବକ ପାଦ ଆଗକୁ ବଢ଼େଇ ଦେଇଥିଲି କେନ୍ଦୁଝର ଠାରୁ । ସେଥିପାଇଁ ମୁଁ ସ୍ଥିର କରିନେଇଥିଲି ଟ୍ରେନ୍ ଯୋଗେ ଯିବାକୁ । ଟ୍ରେନ୍‌ରେ ନିରାପଦ ଯାତ୍ରା ହେଲେ ଟ୍ରେନ୍ ଯାତ୍ରାଟି ମୋ ପାଇଁ ସଂପୂର୍ଣ୍ଣ ନୂଆ । କେନ୍ଦୁଝର ଠାରୁ ୧.୩୦ ଘଟିକାରେ ପୁରୀ ଯିବାକୁ ସେତେବେଳେ ଟ୍ରେନ୍ ଚାଲୁଥିଲା, ତାକୁ ହିଁ ବାଛି ନେଇଥିଲି ମୋ ଯାତ୍ରାର ମାର୍ଗ ।

ପ୍ରଥମେ ପ୍ରଥମେ ମୋତେ ଭାରି ମଜା ଲାଗିଲା । ତା'ପରେ କିଛି ବାଟ ଗଲାପରେ ନାନା ଭାବନାର ଶିକାର ହେଲି ମୁଁ । ପୁରୀ ତ ବାହାରି ଆସିଲି । ଟ୍ରେନ୍ ରାତି ୯ଟା ପାଖାପାଖିରେ ପୁରୀରେ ପହଞ୍ଚିବ; ରହିବି କେଉଁଠି ? ଭଡ଼ାଘର ଏତେ ରାତିରେ ମିଳିବ କି ନାହିଁ ମୋତେ । ହେଲେ ମୋତେ ଜଣେ ସାଙ୍ଗ ମିଳିଗଲେ, କଟକ ଟାଙ୍ଗୀ ଷ୍ଟେସନ ଯାଏଁ, ତାଙ୍କ ଘର ସେଇଠି । ମୁଁ ତାଙ୍କ ସଙ୍ଗେ ଗପ ହୋଇ ନିର୍ଭୟରେ ଟାଙ୍ଗୀ ପର୍ଯ୍ୟନ୍ତ ଯାତ୍ରା କଲି । ତାଙ୍କ ସହ ଚର୍ଚ୍ଚାରେ ତାଙ୍କୁ ପୁରୀ ଯିବା କଥା କହିଲି, ସେ କହିଲେ କିଛି ଡରିବାର ନାହିଁ, ବିନା ଭୟରେ ଯାତ୍ରା କର । ସେ ଓହ୍ଲାଇ ଗଲେ ତାଙ୍କ ଷ୍ଟେସନରେ । ଟ୍ରେନ୍ ଛାଡ଼ିଲା । କିଛିବାଟ ଯାଇଛି କି ନାହିଁ ଟ୍ରେନ୍ ରହିଗଲା ରାତି ୮ଟା

ବେଳକୁ ପ୍ରାୟ ୧ ଘଣ୍ଟା ଯାଏଁ । ସେତେବେଳକୁ ସମୟ ଯେମିତି ଝୁଣି ଖାଉଥାଏ ମୋତେ ନିଜ ପହଞ୍ଚିବାକୁ ନେଇ । କେତେବେଳେ ପହଞ୍ଚିବି, କ'ଣ କରିବି ଏତେ ରାତିରେ ? ହେଲେ ଭାଗ୍ୟକୁ ଦଳେ ରେଳ କମର୍ଚାରୀ ପାଖ ଷ୍ଟେସନରୁ ଚଢ଼ିଲେ । ମୁଁ ଯେଉଁ ବଗିରେ ବସିଥାଏ ସେଇଟିକୁ ତାଙ୍କର ଘରକୁ ଫେରିବାର ଥାଏ ଆପଣାର କାମ ସାରି । ସେମାନେ କଥା ହେଉ ହେଉ ଏମିତି ମୋତେ ପଚାରିନେଲେ ତୁମର କେଉଁଠିକୁ ଯିବାର ଅଛି ? ମୁଁ କହିଲି, ପୁରୀ ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ । ସେମାନଙ୍କ ମଧ୍ୟରୁ ଜଣେ କହିଲେ, ଆଜି ତ ପୁରୀରେ ବିଳମ୍ବରେ ପହଞ୍ଚିବ ଟ୍ରେନ୍ । କାହା ଘରକୁ ଯାଉଛ ନା କ'ଣ ? ମୁଁ କହିଲି, କାହା ଘରକୁ ନୁହେଁ । ସେ କହିଲେ ଏତେ ରାତିରେ ତ ଭଡ଼ାଘର ମିଳିବା କଷ୍ଟକର । ତାହା ଶୁଣି ଯେମିତି ମୋ ଅନ୍ତରରେ ଲାଗି ଯାଇଥିଲା ନିଆଁ । ହେଲେ ସେହି ରେଳ କର୍ମଚାରୀଙ୍କ ମଧ୍ୟରୁ ଜଣଙ୍କର ପୁରୀ ଯିବାର ଥିଲା । ସେ କହିଲେ, ଚାଲ ମୋ ସହିତ ମୁଁ ତୁମପାଇଁ ଭଡ଼ାଘର ଯୋଗାଡ଼ କରିଦେବି । ଯାହାହେଉ ତାଙ୍କର ଏତିକି କଥାରେ ମନରେ ହୋସ୍ ଆସିଲା, ଯେମିତି ଚାତକକୁ ପାଣି ମିଳିଯାଏ । ସେ ମୋ ପାଇଁ ଏକ ଭଡ଼ାଘର ଖୋଜି ଦେଇ ତାଙ୍କ ଘରକୁ ଗଲେ । ମୋତେ ଲାଗିଲା ଯେମିତି ଜଗନ୍ନାଥ ହିଁ ଡାକି ଆଣିଛନ୍ତି ପୁରୀ ତାଙ୍କର ଧାମକୁ ଦେଖିଯିବା ପାଇଁ ସକୁଶଳରେ । ତା' ଆରଦିନ ସକାଳୁ ମୁଁ ଯାଇ ଜଗନ୍ନାଥଙ୍କୁ ଦର୍ଶନ କଲି । କହିଲି, ପ୍ରଭୁ ! ତୁମେ ସାହା ଥିଲେ କାହାକୁ ଆଉ ଡର । ଯାହା ଆଜିବି ମନେ ପଡ଼ିଲେ ମନ 'ଜୟ ଜଗନ୍ନାଥ ସ୍ୱାମୀ' ବୋଲି ଗାଇ ଉଠେ ଭକତି ସହକାରେ ଆପଣାଛାଏଁ ।

**ବୀରବରପୁର, କଂସାରୀ ସାହି**

**କେନ୍ଦୁଝର - ୨**

**ଭ୍ରାମ୍ୟଭାଷ : ୯୪୩୮୪୪୫୦୩୭**



# କାଳିଆ ଦର୍ଶନ ଲୀଳା

## ବିଦ୍ୟାଧର ପଣ୍ଡା

ବର୍ଣ୍ଣନା କରିବାଟା ଧୃଷ୍ଟତା ଜାଣି ବି କରୁଛି ଏଇଥିପାଇଁ ଯେ ବଡ଼ ଅଦ୍ଭୁତ ଓ ଅଭାବିତ ଥିଲା ସେ ଦର୍ଶନ । କାଳିଆ ପାଖକୁ ମୁଁ ସାଧାରଣତଃ ନିଜ ଆଡୁ ଆଗ୍ରହ ପ୍ରକାଶ କରି ଯାଏନାହିଁ । କାରଣ ଜଗନ୍ନାଥ ମତେ କେବେ ବି ବିଶେଷ ଆକର୍ଷଣର ବିନ୍ଦୁ ଭଳି ଲାଗନ୍ତି ନାହିଁ । କାରଣ ବାପାଙ୍କ ନାଁ ସେୟା । ଆମ ଗାଁ ମଝିରେ ତିନି ଭାଇ ଭଉଣୀଙ୍କ ମନ୍ଦିର । ସବୁ ସଞ୍ଜରେ ଆଳତୀ ବେଳେ ଉପସ୍ଥିତ । ଆଉ ସୁଯୋଗ ଥିଲେ ଘଣ୍ଟ ବଜାଇବା ଥିଲା ଏକ ମହାର୍ଘ ଉପଲବ୍ଧି । ରଥଯାତ୍ରାରେ ରଥକୁ ଟାଣି ଟାଣି ଗୁଣ୍ଡିଚା ମନ୍ଦିରକୁ ନେଇଯିବାରେ ପାଉଥିଲି କୈଶୋରର ଚରମ ଆନନ୍ଦ । ଗାଁ ଜଗନ୍ନାଥଙ୍କ ମାୟାରେ ଆଛନ୍ନ ଥାଇ କଟିଗଲା ପୂରା ପିଲାଦିନ । ପିଲାଦିନେ କାଳିଆର ମୋହ ମତେ କେବେ ଉଚ୍ଛନ୍ନ କରିନାହିଁ । ଅବଶ୍ୟ ମନରେ ଏକାନ୍ତ ଭାବନାଟିଏ ଛପି ରହିଥାଏ ଯେ ଶ୍ରୀକ୍ଷେତ୍ରରୁ କାଳିଆ ମତେ ଡାକିଲେ ଯିବି । ମହାପ୍ରଭୁଙ୍କର ବଡ଼ ଭକ୍ତମାନେ ତ କୁହନ୍ତି, କାଳିଆର ଡୋର ଲାଗିଲେ ଶ୍ରୀକ୍ଷେତ୍ରକୁ ଯାଇ ହେବ ନହେଲେ ନାହିଁ । ସେମିତି କେବେ ଘଟିବ କି ଏମିତି ଏକ ଭାବନା ମତେ କେବେ କେମିତି ଉଚ୍ଚାଟିତ କରିଥାଏ ।

ଏମିତିରେ ଯେ ମୁଁ କାଳିଆ ପାଖକୁ ଯାଇନି ତା' ନୁହେଁ । ତେବେ ପିଲାଦିନେ ଶିକ୍ଷକ ଓ ସାଙ୍ଗସାଥୀମାନଙ୍କ ସହ ପୁରୀ ପରିଦର୍ଶନରେ ଯିବାର ସୌଭାଗ୍ୟ ମୋର ଜୁଟି ନଥିଲା । କାରଣ ଘରେ ଦୂର ବାଟକୁ ଯିବାକୁ ଛାଡ଼ନ୍ତି ନାହିଁ । ଅନ୍ୟାନ୍ୟ କାରଣ ମଧ୍ୟ ଅଛି । ଆମ ଘର କଟକ ଜିଲ୍ଲାର ପୂର୍ବତନ ଗଡ଼ଜାତ ଅଞ୍ଚଳ ନରସିଂହପୁରରେ । ପଲ୍ଲୀ ଭୂମି । ସେତେବେଳେ ଅର୍ଥାତ ୧୯୮୦ ଦଶକରେ ଗାଁ ଗହଳକୁ ରାସ୍ତାଘାଟ ସୁବିଧା ଭଲ ନଥିଲା । ଗାଡ଼ି ମୋଟରର ଏତେଟା ସୁବିଧା ସୁଯୋଗ ନଥିଲା । ଘଟଣାକ୍ରମେ ୧୯୯୨ରେ ପ୍ରଥମ ଥର ପାଇଁ ଯାଇଥିଲି ପୁରୀ । କଟକ ଶୈଳବାଳା ମହିଳା ମହାବିଦ୍ୟାଳୟରୁ ସେଇମାତ୍ର ଯୁକ୍ତ ୨ ପାସ୍ କରିଥିବା ମାମୁଁ ଝିଅ ପାଇଁ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଫର୍ମ ପକାଇବା ପାଇଁ ଯାଇଥାଏ । ଘରୁ କଟକ ବାଟ ଦେଇ ପୁରୀରେ ପାଦ ଦେବାବେଳକୁ ଅପରାହ୍ନ । ଭାବିଥିଲି ଫର୍ମ ପକାଇ ଭୁବନେଶ୍ୱର ଫେରି ସାନମାମୁଁଙ୍କ ଘରେ ରହିଯିବି । ସକାଳୁ ଗାଁକୁ ଫେରି ଆସିବି । ହେଲେ ପହଞ୍ଚିବା ବେଳକୁ ଅପରାହ୍ନ ୩ଟା । ଯାହା ମନେ ହେଉଛି ସେଦିନ ଥିଲା ବାହୁଡ଼ା ଯାତ୍ରାର ପରଦିନ ।

କଲେଜ ଖୋଲାଥାଏ ହେଲେ ଦିନ ୨ଟା ପରେ ଫର୍ମ ବିକ୍ରି ବନ୍ଦ । ଅଗତ୍ୟା ସମୁଦ୍ରକୂଳକୁ ଚାଲିଗଲି । ଭୁବନେଶ୍ୱର ଫେରି ଯାଇ ପରଦିନ ପୁଣି ଥରେ ପୁରୀ ଆସିବାକୁ କାହିଁକି କେଜାଣି ମନ ବଳିଲା ନାହିଁ । ବେଳାଭୂମି ଟାଣି ଧରିଲା । ରାତି ପ୍ରାୟ ୮ଟା । ସ୍ୱର୍ଗଦ୍ୱାର ଦେଇ ଚାଲିଚାଲି ପହଞ୍ଚିଲି ସିଂହଦ୍ୱାର ଆଗରେ । ମନ୍ଦିର ଆଗରେ ଉଭା ତିନି ରଥରେ ତିନି ଠାକୁର । ଗହଳଚହଳ ବଡ଼ଦାଣ୍ଡ, ରଥବିଜେ ଶ୍ରୀଜୀଉମାନଙ୍କର ଭୁବନମୋହନ ରୂପ ଦର୍ଶନରେ କେତେ ସମୟ ବିତିଗଲା । ପୁରୀ ଥିଲା ଉତ୍ସବମୁଖର । ରାତିରେ ଭଜନ ସମାରୋହ ଦେଖି ପରଦିନ କଲେଜ ଖୋଲୁ ଖୋଲୁ ଫର୍ମ ପକାଇ ଚାଲିଆସିଲି ।

ସେଇ ଥିଲା ମୋର ମହାପ୍ରଭୁ ଜଗନ୍ନାଥଙ୍କୁ ପ୍ରଥମ ପ୍ରତ୍ୟକ୍ଷ ଦର୍ଶନ । ତା'ପରଠାରୁ କିଛି ବର୍ଷ ପର୍ଯ୍ୟନ୍ତ ଯାଇନଥିଲି ଶ୍ରୀକ୍ଷେତ୍ର । ସେମିତି କାମ ପଡ଼ି ନଥିଲା ବା ଜଗନ୍ନାଥଙ୍କ ଡୋର ଲାଗି ନଥିଲା, ଯାହା ବି କୁହନ୍ତୁ । ଜ୍ୟୋତିବିହାରରେ ମୋ ତଳ ଶ୍ରେଣୀରେ ପଢୁଥିବା ଯାଜପୁରର ଜଣେ ଆଣବିକ ବୈଜ୍ଞାନିକଙ୍କ ସାନ ଭାଇଙ୍କ ବାହାଘରରେ ପୁରୀ ଯାଇଥିଲି ୨୦୦୯ରେ । ହେଲେ ସେଥର ଦର୍ଶନ ଲାଗି ହାତରେ ଜମା ସମୟ ନଥିଲା । ୨୦୧୦ରେ ଠାକୁରଙ୍କର ଏକ ବିଶେଷ ଦର୍ଶନର ସୁଯୋଗ ମିଳିଥିଲା । ଏଥର ଶ୍ରୀଜୀଉମାନେ ଅବସ୍ଥାନ କରୁଥାଆନ୍ତି ଗୁଣ୍ଡିଚା ଘରେ । ସଙ୍ଗୀତ ମହାବିଦ୍ୟାଳୟ ଅଧ୍ୟାପକ ବନ୍ଧୁ ଉପେନ୍ଦ୍ର ଅଚାନକ ଡାକିଲେ, ପୁରୀ ଯିବା । ଖୁବ୍ ନିକଟରୁ ଜନ୍ମବେଦୀରେ ହେଲା ତିନି ଭାଇଭଉଣୀଙ୍କ ଦର୍ଶନ । ଏହା ଭିତରେ ଆଉ ୩ ବର୍ଷ ବିତିଛି ହେଲେ ଯାଇପାରିନି କାଳିଆ ପାଖକୁ । ୨୦୧୨ରେ ରଥଯାତ୍ରା ଓ ବାହୁଡ଼ାରେ କାଳିଆର ପାଖାପାଖି ପିପିଲିରେ ଥିଲି । ଦିବ୍ୟଜ୍ୟୋତି ସେବାଶ୍ରମ ତରଫରୁ ଆୟୋଜିତ ପଥପ୍ରାନ୍ତ ସେବା କାର୍ଯ୍ୟକ୍ରମରେ ସାମିଲ ହୋଇଥିଲି । ପିପିଲିରୁ ଚନ୍ଦନପୁର ଭିତରେ ୫ଟି କ୍ୟାମ୍ପରେ ପଥଚାରୀମାନଙ୍କୁ ଖାଦ୍ୟ, ପାନୀୟ ଓ ଆହତଙ୍କୁ ଚିକିତ୍ସା ଓ ଆମ୍ବୁଲାନ୍ସ ସୁବିଧା ଯୋଗାଇ ଦିଆଯାଇଥିଲା । ଅନୁଷ୍ଠାନର ମୁଖ୍ୟା ଶୈଳବାଳାଙ୍କ ସହ ରୂପାୟନର ତଦାରଖରେ ସହଯୋଗ କରିଥିଲି । ସେଥର ଚନ୍ଦନପୁର ଯାଏଁ ଯାଇଥିଲେ ବି କାଳିଆକୁ ରଥ ଉପରେ ଦର୍ଶନ ସୁଯୋଗ ମିଳିନଥିଲା ।

୨୦୧୩ ଜୁଲାଇରେ କାଳିଆ ପୁଣି ଦେଲା ସ୍ୱତନ୍ତ୍ର ଅନୁଭବ । ଏଥର ବି ବାହୁଡ଼ା ଦିନ ପିପିଲିରେ ଥିଲି । ସେବା ଶିବିର ରାତି ୧୦ଟା ପରେ ସରିଲା, ଭୁବନେଶ୍ୱର ଫେରିବା କଥା । ଉପସ୍ଥିତ ବି.ଏସ୍.ଏନ୍.ଏଲ୍ ଅଧିକାରୀ ବନ୍ଧୁ ସାହୁବାବୁ କହିଲେ ପୁରୀ ଯିବା । ବାହାରୁ ବାହାରୁ ରାତି ଏଗାର । ଡାକ୍ତର ଓ ନର୍ସମାନେ ବି ଆମ ସହ ପୁରୀ ଯିବା କଥା ଥିଲା ।

ସେବାଶ୍ରମ ଗାଡ଼ିରେ ଚତୁର୍ଥ ଶିବିର ଯାଏଁ ଯାଇଛୁ ଫୋନ ଆସିଲା 'ଫେରନ୍ତୁ' । ବଳିଥିବା କଦଳୀ ଓ ପାଣି ପାଉଚ୍ ପୁରୀ ଯିବ, ପରଦିନ ଯାତ୍ରୀଙ୍କୁ ବଣ୍ଟାଯିବ । ଫେରି ଆସି ପୁଣି ଥରେ ସେଇଠି ପହଞ୍ଚିବା ବେଳକୁ ରାତି ସାଢ଼େ ଗୋଟାଏ । ଏହା ଭିତରେ ଡାକ୍ତର ଓ ନର୍ସମାନେ ଅନ୍ୟ ଏକ ଗାଡ଼ିରେ ଦର୍ଶନ କରି ଫେରି ଆସିଲେଣି । ବିଳମ୍ବ ଯୋଗୁ ବ୍ୟସ୍ତ ଲାଗୁଥାଏ । ସକାଳ ୬ଟା ୩୦ରେ ଅଫିସ୍ । ତେଣୁ ଡାକ୍ତରମାନଙ୍କ ଗାଡ଼ିରେ ସେଇଠୁ ଭୁବନେଶ୍ୱର ଫେରି ଯିବାକୁ ମନସ୍ଥ କଲି । ହେଲେ ଶୈଳବାଳା ମାଡାମ୍ କହିଲେ, 'ସମସ୍ତେ ଏକାଠି ଯାଇଥା'ନ୍ତେ । ଏତେ ପାଖକୁ ଆସି କାଳିଆ ଦର୍ଶନ ନକରି ଫେରିଯିବେ ?' ଭାଙ୍ଗି ହେଲାନି ତାଙ୍କ ଅଭିମାନିଆ କଥା । ଚାଲିଲୁ ଚନ୍ଦନପୁର ଅଭିମୁଖେ । ହେଲେ ଆମେ କ'ଣ ଜାଣିଥିଲୁ କୋଶେ ବାଟ ପାଲଟିବ ପଚାଶ କୋଶ ? ଏମିତିକା ନଖରାମୀରେ କାଳିଆ ତ ଓସ୍ତାଦ । କେବେ ନନ୍ଦିଘୋଷ ସୁବିଧାରେ ଗଡ଼ିଯିବ ତ କେବେ ଅଟକିଯିବ ବଡ଼ଦାଣ୍ଡ ମଝିରେ । କାଳିଆ ମଜା ଦେଖିବ !

ଟ୍ରାଫିକ୍ ପରିଚାଳନା ସୁବିଧା ପାଇଁ ରାସ୍ତା ୱାନ୍ ୱେ ହୋଇଥାଏ । କମ୍ ସମୟରେ ଚନ୍ଦନପୁର ପାଖାପାଖି ହେଲୁ । ହଠାତ୍ ୱାନ୍ ୱେ ରାସ୍ତା ଟୁୱେ ହୋଇଗଲା । ସାମନା ପଟୁ ହଜାର ହଜାର ଗାଡ଼ିରେ ରାସ୍ତା ଜାମ୍ । ଦୁଇଟି ଗାଡ଼ି ଯିବାର ରାସ୍ତାରେ ବିପରୀତ ଦିଗରୁ ଗେଞ୍ଜିପେଲି ହୋଇ ଏକାଧାଡ଼ିରେ ୪-୫ ଗାଡ଼ି । ଝିପିଝିପି ବର୍ଷା ରାତି । ଗହଳି ଯୋଗୁ ଅସହ୍ୟ ଗୁଳୁଗୁଳି । ଆମ ସହ ଯାଉଥିବା ସ୍ୱେଚ୍ଛାସେବୀ ଭାଇମାନେ ଗାଡ଼ି ସାଇଡ୍ କରି କରି ଚାଲିଥା'ନ୍ତି । ପ୍ରାୟ ୩ କି.ମି. ରାସ୍ତାକୁ ଲାଗିଲା ୩ ଘଣ୍ଟା । କଷ୍ଟେମଷ୍ଟେ ଚନ୍ଦନପୁର ଟପି ବଡ଼ଦାଣ୍ଡରେ ଗାଡ଼ି ଲାଗିଲା ବେଳକୁ ଭୋର୍ ୪ଟା୪୫ । ସିଂହଦ୍ୱାର ଆଗରେ ତିନି ରଥ । ଚାଲି ଚାଲି ଗଲୁ ସାମନାର ଉଚ୍ଚ ଜାଗାକୁ । ଆହା, ସବୁ କଷ୍ଟ ବ୍ୟର୍ଥ । ତିନି ଠାକୁରଙ୍କ ଆଗରେ ପରଦା । ହରିବୋଲ, ହୁଳହୁଳିରେ ଉଚ୍ଛୁଳୁଛି ପରିବେଶ । ସକାଳ ୫ଟା ୧୫ । ଅଫିସ୍ ସାଢ଼େ ୬ଟାରେ । ପହଞ୍ଚିବି କେମିତି ଭୁବନେଶ୍ୱରରେ ? ହାତ ଟେକିଦେଲି । ଯାହା ହବ ହବ । ତୁରନ୍ତ ଖୋଲିଗଲା ପରଦା । ତୁଳସୀରେ ଛାଇ ଯାଇଥିବା କାଳିଆର ମନଲୋଭା ବେଶ ଦର୍ଶନରେ ପେଟ ପୂରିଗଲା । ସହଯାତ୍ରୀମାନେ ଆଳତୀ କଲେ । ଶ୍ରୀଅଙ୍ଗରେ ଲାଗି ତୁଳସୀ ପାଇଲୁ । ବଳଭଦ୍ର, ସୁଭଦ୍ରାଙ୍କ ଦର୍ଶନ ଲାଗି ଆଉ ସମୟ ନଥିଲା ।

ଟିଲୁବାବୁ କହିଲେ, 'ଅଫିସ ଅଛି, ଆଗୁଆ ବାହାରି ଯାଆନ୍ତୁ' । ଡ୍ରାଇଭର କାର୍ ବୁଲାଇବା ପରେ ଦେଖିଲୁ ଚକା ପଙ୍କଚର୍ । କାଳିଆର ପରୀକ୍ଷା ସରିନି !! ସେଇଠି ସକାଳ ୬ଟା । ଅଫିସ୍ କାମରେ କେବେ ଏମିତି ବ୍ୟତିକ୍ରମ ଘଟି ନଥିଲା ।

ଆଉ କୌଣସି ମତେ ନିର୍ଦ୍ଧାରିତ ସମୟରେ ପହଞ୍ଚି ହେବନାହିଁ ବୋଲି ନିଶ୍ଚିତ ହେବା ପରେ ସହକର୍ମୀ ଧରଣୀଧରଙ୍କୁ ଫୋନ କଲି । ବିଳମ୍ବିତ ରାତିରେ ଅଫିସ୍‌ରୁ ଆସି ଶୋଇଥିଲେ । ଜଗନ୍ନାଥଙ୍କୁ ଦର୍ଶନ ଲାଗି ଆସି ଫସିଥିବା କହିବା ପରେ ପରେ ସତେଜ ହୋଇ କହିଲେ ତୁରନ୍ତ ମୁହଁ ଧୋଇ ଯାଉଛି । ତାଙ୍କ ଆଶ୍ୱାସନା ଆଶ୍ୱସ୍ତ କଲା । କାଳିଆର ଏଇ ଲୀଳା, ଯେତିକି କଷ୍ଟଦାୟକ ଥିଲା ତା'ଠୁ ଥିଲା ଅଧିକ ଆନନ୍ଦଦାୟକ । ପୂର୍ବଦିନ ସକାଳ ୬ଟାରୁ ଉଠି ଅଫିସ୍ ଯିବାରୁ ଭୁବନେଶ୍ୱର ଫେରିବାକୁ ଲାଗିଗଲା ୨୭ ଘଣ୍ଟା । ନଥିଲା ବିଶ୍ରାମର ଅବସର । ଚନ୍ଦନପୁରର ଅସମ୍ଭବ ଭିଡ଼ରେ ହନ୍ତସନ୍ତ ହେବାବେଳେ କାଳିଆ କେତେ ମାଗଣା ଗାଳି ଖାଇଥିଲା ହଜାର ହଜାର ଲୋକଙ୍କଠାରୁ । ହେଲେ ସକାଳୁ ସକାଳୁ କାଳିଆର ସେଇ ଜଗତଜିଣା ରୂପ ଦର୍ଶନ ପରେ ସବୁ ଅସନ୍ତୋଷ ବାଷ୍ପୀଭୂତ ହୋଇଗଲା । ତୁଳସୀମଖା ଶ୍ରୀଅଙ୍ଗର ମହକରେ ମହକିତ ବଡ଼ଦାଣ୍ଡରୁ ଫେରିବାକୁ ମନ ହେଉ ନଥିଲା । କ୍ଳାନ୍ତି ନଥିଲା । ଲାଗୁଥିଲା ବେଶ୍ ତାଜା ତାଜା । ଶ୍ରୀକ୍ଷେତ୍ରରେ ପୁଣି ଲାଗି ଯାଇଥିଲା ଗହଳ ଚହଳ । କାଳିଆର ଲୀଳା କ'ଣ ସରିଥିଲା କି !! ଆମେ ପୁରୀ ଛାଡ଼ିବା ପରେ ପରେ ମୂଷଳ ଧାରାରେ ବୃଷ୍ଟି ବଡ଼ଦାଣ୍ଡକୁ ଜଳାର୍ଣ୍ଣବ କରିଥିଲା । ସୁନାବେଶ ଦେଖିବାକୁ ଆସି ମିଳିଲା କାଳିଆର ଅକଳ୍ପନୀୟ ଦର୍ଶନ । କଷ୍ଟକର ଯାତ୍ରାର କ୍ଳେଶକୁ ଭୁଲାଇ ଦେଇଥିଲା, ନିରୋଳା ପରିବେଶରେ ମହାପ୍ରଭୁଙ୍କର ନିବିଡ଼ ସାନ୍ନିଧ୍ୟର ନିଆରା ଆନନ୍ଦ ।


**ଅଦ୍ୱୈଇଗୁଣ୍ଡି, କାନପୁର**

**କଟକ - ୭୫୪୦୩୭**

ଭ୍ରାମ୍ୟଭାଷ : ୯୮୬୧୨୯୧୭୯୧




# ଫୁଲ ପରି ତୋଳି ନେଲେ

## ପ୍ରଶାନ୍ତ କୁମାର ସାହୁ

ମହାପ୍ରଭୁ ଶ୍ରୀଜଗନ୍ନାଥ ଓଡ଼ିଆ ମାନଙ୍କର ଆରାଧ୍ୟ ଦେବତା । ମହାପ୍ରଭୁଙ୍କୁ ଦର୍ଶନ କରିବା, ତାଙ୍କର କରୁଣା ଲାଭ କରିବା ପାଇଁ ଭକ୍ତ ସର୍ବଦା ବ୍ୟାକୁଳ । ଭକ୍ତ ଓ ଭଗବାନଙ୍କ ସଂପର୍କ ଧେନୁ ଓ ବତ୍ସର ସଂପର୍କ ପରି ନିବିଡ଼ । ସେଇଥିପାଇଁ ତ ବର୍ଷତମାମ ହଜାର ହଜାର ଭକ୍ତ ପୁରୀ ଆସନ୍ତି ଠାକୁରଙ୍କର ଆଶୀର୍ବାଦ ଲାଭ କରିବାପାଇଁ । ପର୍ବପର୍ବାଣିର ଅନୁଭୂତି ତ ନିଆରା ।

ଉକ୍ତ ଲେଖାରେ ଅଧମ ଶ୍ରୀଜଗନ୍ନାଥଙ୍କ ଲୀଳା ସଂପର୍କିତ ଏକ ଅନୁଭୂତି ବର୍ଣ୍ଣନା କରୁଛି । ୧୯୯୬-୯୭ ମସିହାର କଥା । ଶ୍ରୀକ୍ଷେତ୍ରରେ ଶ୍ରୀଗୁଣ୍ଡିଚା ଯାତ ଅନୁଷ୍ଠିତ ହେଉଥାଏ । ଗଜପତିଙ୍କର ଛେରାପହଁରା ପରେ ଚାରମାଳ ଖୋଲା ହେଲା । ପ୍ରଥମେ ବଡ଼ଭାଇଙ୍କ ରଥ ତାଳଧ୍ୱଜ, ତା'ପରେ ଭଉଣୀ ସୁଭଦ୍ରାଙ୍କର ରଥ ଦର୍ପଦଳନ ଟଣାହୋଇ ଗୁଣ୍ଡିଚା ମନ୍ଦିର ଅଭିମୁଖେ ଯାଉଥା'ନ୍ତି । ପଛରେ ଗହଳି ଲଗାଇ କାଳିଆର ରଥ ନନ୍ଦିଘୋଷ ଆସୁଥାଏ । ରଥରେ କାଳିଆର ଦର୍ଶନ କରିବା, ରଥ ଦଉଡ଼ିକୁ ଛୁଇଁବା ପାଇଁ ଭକ୍ତ ବ୍ୟାକୁଳ । ଭିଡ଼ ଭିତରେ ଅଧମ ସାହସ କଲା ରଥ ଟାଣିବ, ଜଗନ୍ନାଥ ମହାପ୍ରଭୁଙ୍କ ରଥ ନନ୍ଦିଘୋଷ । ଘଣ୍ଟ, କାହାଳୀ ବାଜୁଥାଏ । ଘର୍ଘର ନାଦରେ ନନ୍ଦିଘୋଷ ରଥ ଗଡ଼ି ଚାଲିଥାଏ ଆଗକୁ ଆଗକୁ । ଅଧମ ବି ଦୁଇ ହାତରେ ଦଉଡ଼ି ଧରି ଟାଣୁଥାଏ ରଥ । ଏତିକିବେଳେ ଭିଡ଼ ବଢ଼ିଗଲା । ହାତରେ ଦଉଡ଼ି ଧରି ଅଧମ ବଡ଼ଦାଣ୍ଡରେ ରଥର ବେଗରେ ଦଉଡ଼ିବାକୁ ଅକ୍ଷମ ହେଉଥାଏ । ପଛ ପଟରୁ ଅନ୍ୟ ଭକ୍ତମାନେ ଅଧମର ପିଠି ଉପରେ ନଦି ହୋଇ ପଡୁଥା'ନ୍ତି । ଭାରସାମ୍ୟ ହରାଇ ଅଧମ ଭିତର ପଟକୁ ପଲଟି ପଡ଼ିଲା । ତଳେ ପଡ଼ିବା ପୂର୍ବରୁ ଆରକ୍ଷୀ ବାହିନୀ ଅଧମକୁ ଫୁଲପରି ତୋଳିନେଲେ । ନଚେତ୍ ସେଇଠି ଦଳାଚକଟାରେ ଅଧମର ପ୍ରାଣବାୟୁ ତତ୍କାଳ ଉଡ଼ି ଯାଇଥା'ନ୍ତା । ଅଧମ ତିଳେମାତ୍ର ଆଘାତ ପାଇନାହିଁ, ଯନ୍ତ୍ରଣା ବି ଅନୁଭବ କରିନାହିଁ । ଏପରି ଘଟଣା ଘଟିବା ମାତ୍ରେ ରଥର ବେଗ କମିଗଲା । ଅଧମ ମହାପ୍ରଭୁଙ୍କୁ ଚାହିଁ ଦୁଇବାହୁ ମେଲାଇ କୃତଜ୍ଞତା ଜଣାଇଲା । ଏପରି ଅନୁଭୂତିକୁ ଅଧମ ସାରା ଜୀବନ ମନେ ରଖିଥିବ ।

ଏ ଥିଲା ଅଧମ ପାଇଁ ଅମୃତ ଅନୁଭବ ।

ଅର୍ଥନୀତି ବିଭାଗ, ବ୍ରହ୍ମବରଦା ମହାବିଦ୍ୟାଳୟ
ବ୍ରହ୍ମବରଦା, ଯାଜପୁର - ୭୫୫୦୦୫
ଭ୍ରାମ୍ୟଭାଷ : ୯୪୩୭୦୭୩୯୨୧



# ରଖେ ହରି ମାରେ କିଏ

ଡ. ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତ୍ସ)

**ଜୀ**ବନରେ ଦୁଃଖ ଆସିଲେ ମଣିଷ ଠାକୁରଙ୍କର ନିକଟତର ହେଇଯାଏ । ଦୁଃଖ, ଶୋକ, ଅଭାବ, ଅସୁବିଧା ଟଳିଗଲେ ପୁଣି ମନୁଷ୍ୟ ଭାବେ ନିଜେ ସେ ହିଁ ଭଗବାନ । ଠାକୁର ଫାକୁର କିଛି ନାହାନ୍ତି । ସବୁ କିଛି ତା'ର ନିଜର କରାମତି । ଆଉ ଯଦି କାହିଁ କେଉଁଠି ପରମେଶ୍ୱରଙ୍କ କରୁଣାରୁ ତାଙ୍କର ସତ୍ତା ତା' ନିଜର ଅନୁଭୂତିରେ ଆସିଯାଏ ତେବେ ସେ ଏହାକୁ ନିଜସ୍ୱ କର୍ମ ଓ ବୁଦ୍ଧିର କରାମତି ଭାବି ବାହାସ୍ଫୋଟ ମାରିଥାଏ । ସେତେବେଳେ ସେ ମଣିଷ ଏହା କିଛିନା କିଛି କାକତାଳୀୟ ନ୍ୟାୟ ଏମିତି କହି ଏ ଧୂର୍ତ୍ତ ଚତୁର ମଣିଷ ଠାକୁରଙ୍କ କୃପା କଟାକ୍ଷର ଅସ୍ତିତ୍ୱକୁ କଥାରେ କଥାରେ ଭୁଲାଇ ଦେଇ ସେ ସ୍ଥାନରେ ନିଜର ବୁଦ୍ଧିମତ୍ତା କର୍ମବିଭାର ଫଳ ବୋଲି ମନକୁ ବୁଝାଇଦିଏ । ଏହି ଅନୁଭବକୁ ଆମେମାନେ କ'ଣ କହିବା ନାସ୍ତିକ ନା ଆସ୍ତିକ । ପ୍ରକୃତି ହେଉଛି ସର୍ବବ୍ୟାପକ । ପ୍ରକୃତି ହିଁ ବ୍ରହ୍ମ...ଦିବ୍ୟାନୁଭବ-ଆନନ୍ଦମୟ, ସନାତନ । ଜଳ, ବାୟୁ, ଅଗ୍ନି, ତେଜ ଓ ଉତ୍ତାପ ବ୍ରହ୍ମରୂପିଣୀ ପ୍ରକୃତିର ଏକ ଏକ ଅଂଶ । ଏଥିରୁ ଗୋଟାଏ ଶକ୍ତିର ସମକକ୍ଷ ଏ ବ୍ରହ୍ମାଣ୍ଡର ସମସ୍ତ ଜଡ଼ ଜୀବ ହୋଇପାରନ୍ତିନି । ପୁଣି ଏ ସବୁଙ୍କର ମିଳିତ ଶକ୍ତିର ସମକକ୍ଷ କିଏ ହେବ ? ସବୁ ସେଇ ପରମାତ୍ମା ଦେବତା, ଈଶ୍ୱର, ଠାକୁର ରୂପରେ ଜନମାନସରେ ପୂଜିତ । ସେ ଆକୃତିହୀନ ନିରାକାର ପରଂବ୍ରହ୍ମ ହୁଅନ୍ତୁ ବା ଅର୍ଦ୍ଧାବୟବ ଦାରୁଦେବତା ବା ଅନ୍ୟକିଛି ମୂର୍ତ୍ତିମୟ ଅବତାର ହୋଇଥା'ନ୍ତୁ । ସେ ସବୁ ହିଁ ପ୍ରାର୍ଥନାର ବସ୍ତୁ । ପ୍ରକୃତିର ନିୟାମକ, ସୃଷ୍ଟି, ତାରା, ଗ୍ରହ, ନକ୍ଷତ୍ର, ସୂର୍ଯ୍ୟ, ଚନ୍ଦ୍ର ବା ଅଖଣ୍ଡ ମଣ୍ଡଳାକାର ବ୍ୟାପ୍ତଯେନ ଚରାଚରମ୍ ମଧ୍ୟ ସେହି । ମନୁଷ୍ୟର ଅନୁଭବରେ ସେ ଆସନ୍ତି । ବାୟୁ ଭଳି ସେ ସମସ୍ତଙ୍କୁ ଛୁଇଁପାରନ୍ତି । ତେଜ ମାଧ୍ୟମରେ ଅନ୍ଧକାରକୁ ଦୂରେଇ ଦେଇପାରନ୍ତି ସିନା ତାଙ୍କ ରୂପ କଳ୍ପନା କରିହୁଏ ନାହିଁ କିନ୍ତୁ ତାଙ୍କର ଆକାରହୀନ ସର୍ବବ୍ୟାପକତାକୁ ଉପଲବ୍ଧ କରିହୁଏ, ବିଶ୍ୱାସରେ ଓ ବିଶ୍ୱାସର ମାନସିକତାରେ । ଆସନ୍ତୁ ଏପରି କିଛି ଅନୁଭବର ସାମ୍ନା କରିବା ଓ ସେହି ଅଦୃଶ୍ୟ ଅପ୍ରକାଶ ବିଭୂତିର ଚିହ୍ନକୁ ସମଗ୍ର ସୃଷ୍ଟିର ଜୀବ ମଣ୍ଡଳକୁ ପ୍ରସାରିତ କରିବା ।

ବ୍ରହ୍ମପୁରରୁ ସେ ସମୟରେ ପ୍ରି-ୟୁନିଭରସିଟି ସାଇନ୍ସ ପାଶ୍ କରିସାରିଲା ପରେ ପ୍ରଫେସ୍‌ନାଲ ସାଇନ୍ସରେ ଜଏନ୍ କରିବା ଚିନ୍ତାରେ ଥାଉ । ବ୍ରହ୍ମପୁରରେ ପଢ଼ିବି ନା' ପୁରୀରେ ମାମୁଙ୍କ ପାଖେ ରହିପଢ଼ିବି । ମାମୁ ପୁରୀର ପୋଲିସ୍ ଡିପାର୍ଟମେଣ୍ଟର ଜଣେ ଉଚ୍ଚପଦସ୍ଥ ଅଫିସର ଭାବେ ଏସ୍.ପିଙ୍କ ବ୍ୟକ୍ତିଗତ ଇଜିଲାସରେ ରହି କାମ କରୁଥା'ନ୍ତି ।

ଏମିତି ସମୟରେ ମାମୁ ଗାଁକୁ ଆସି ମୋର ପୁରୀରେ ତାଙ୍କରି ପାଖରେ ରହି ପଢ଼ିବା ପ୍ରସ୍ତାବ ଦେଲେ । ଏହି ପ୍ରସ୍ତାବକୁ ଘରେ ସମସ୍ତେ ଏକପ୍ରାଣରେ ଗ୍ରହଣ କରିନେଲେ ଓ ମୋର ପଢ଼ିବା ପୁରୀରେ ଠିକ୍ ହେଲା । ମାମୁଙ୍କ ସହ ପୁରୀ ଆସି ସାମନ୍ତ ଚନ୍ଦ୍ରଶେଖର କଲେଜରେ ଦରଖାସ୍ତ ପକାଇଲି । କୌଣସି ମତେ ସେଠି ମୋର ଆଡ଼ମିଶନ ହୋଇଗଲା ଓ ମୁଁ ଗାଁ, ଘର ପରିବାରବର୍ଗ ସମସ୍ତଙ୍କୁ ଛାଡ଼ି ପୁରୀରେ ମାମୁଙ୍କ ପାଖରେ ରହି ପ୍ରି-ପ୍ରଫେସ୍‌ନାଲ ସାଇନ୍ସ ପଢ଼ା ଆରମ୍ଭ କଲି । ଏ ଥିଲା ୧୯୭୧ ମସିହା କଥା । ଗାଁରେ ଥିଲାବେଳେ ଘର, ଗାଁ, କ୍ଷେତବାଡ଼ି, ନଦୀ, ନାଳ, ପାହାଡ଼, ପର୍ବତ, ଜଙ୍ଗଲ, ଫଳଫୁଲ ଏସବୁ ଆପଣାର ଆପଣାର ଲାଗୁଥିଲା । କିନ୍ତୁ ପୁରୀ ଏ କ୍ଷେତ୍ରରେ ସଂପୂର୍ଣ୍ଣ ନିଆରା । ବହୁତ ବଡ଼ କଲେଜ । ନାଲି ରଙ୍ଗର ଦୁଇ ମହଲା କୋଠା । ବିଜ୍ଞାନ ଶ୍ରେଣୀର ଲାବରୋଟେରୀ, ଗ୍ୟାଲେରୀ ଆଦି ଉନ୍ନତତର । ଆଉ ଦୁଇଟି ପ୍ରଧାନ ଆକର୍ଷଣ ହେଲା ପୁରୀର ସୁନ୍ଦର ସମୁଦ୍ରକୂଳ ବେଳାଭୂମି ଓ ଶ୍ରୀମନ୍ଦିରର ଶ୍ରୀଜଗନ୍ନାଥ । ବିଶ୍ୱର ଅଦ୍ୱିତୀୟ ପୁଣ୍ୟ ପବିତ୍ର ତୀର୍ଥକ୍ଷେତ୍ର ଜଗନ୍ନାଥ ଧାମ । ଭାରତର ଚାରି ଧାମ ମଧ୍ୟରୁ ଅନ୍ୟତମ ପୁଣ୍ୟକ୍ଷେତ୍ର । ଗଞ୍ଜାମ ଜିଲ୍ଲାର ଏକ ନିପଟ ମଫସଲ ଅଞ୍ଚଳରେ ମୋର ପୈତୃକ ଘର ହୋଇଥିବାରୁ ପୁରୀର ସମସ୍ତ ପରିବେଶ ମୋତେ ସଦାସର୍ବଦା ନୈସର୍ଗିକ ମନେ ହେଉଥିଲା । ରଥଯାତ୍ରା ସମୟ କଥା ନିଆରା । ଅସୁମାରୀ ଭକ୍ତଙ୍କ ଭିଡ଼ ବଡ଼ଦାଣ୍ଡରେ । ଅପୂର୍ବ ସେ ଦେବଯାତ୍ରା-ରଥଯାତ୍ରା । ସେହି ବଡ଼ଦାଣ୍ଡ ହିଁ କେବଳ ନନ୍ଦିଘୋଷ, ତାଳଧ୍ୱଜ ଓ ଦେବଦଳନ ରଥକୁ ସମ୍ଭାଳି ପାରେ ତା'ର ପବିତ୍ର ବକ୍ଷରେ । ଆମେ ରଥ ଟାଣିବାକୁ ଦଉଡ଼ି ଧରୁ । ଦଉଡ଼ିର ସ୍ପର୍ଶ ମନରେ ଦେବତ୍ୱ ସଞ୍ଚାର କରେ । ଘୋର ଘର୍ଘର ଶବ୍ଦରେ ନନ୍ଦିଘୋଷ ମେଦିନୀ କମ୍ପାଇ ଗଡ଼ିଚାଲେ ଆଗକୁ ଆଗକୁ । ଜୀବନ ଗଡ଼ିଲା ଭଳି ଦିନ ମାସ ବର୍ଷ ଦଣ୍ଡ ହୋଇ । ଲକ୍ଷ ଲକ୍ଷ ଭକ୍ତଙ୍କ ସମାଗମ ମଧ୍ୟରେ ସୁସଜ୍ଜିତ ତିନୋଟି ରଥ ଏକ ପରେ ଏକ ହୋଇ ଆଗକୁ ଚାଲନ୍ତି ନବଦିନ ଯାତ୍ରା ପାଇଁ । ଠାକୁରମାନେ ଗୁଣ୍ଡିଚା ଘରେ ଆଡ଼ପ ମଣ୍ଡପରେ ରୁହନ୍ତି । ଶ୍ରୀମନ୍ଦିରରେ ସବୁ ଠାକୁର ଥିଲେ ବି ଶ୍ରୀହୀନ ଲାଗେ । ଭକ୍ତଙ୍କ ଧାଡ଼ି ବାହୁଡ଼ା ଯାତ୍ରା ଯାଏଁ ଗୁଣ୍ଡିଚା ମନ୍ଦିରକୁ ଛୁଟେ । ସବୁ କିଛି ଠିକ୍ ଠାକ୍ ଚାଲିଥିଲା ଭଳି ଲାଗେ । ଈଶ୍ୱରଙ୍କ ଅନୁକମ୍ପାରେ ତାଙ୍କରି କ୍ଷେତ୍ରରେ ରହି ତା'ର ପ୍ରତ୍ୟେକ ଦିନର ଚିହ୍ନକୁ ମନ ମଧ୍ୟରେ ସାଇତି ରଖିହୁଏ । ସମ୍ଭବତଃ ୧୯୭୦ ମସିହାର କଥା ହେବ । ପୁରୀର ଗଜପତି ବୀରକିଶୋର ଦେବଙ୍କ ମୃତ୍ୟୁ ପରେ ତାଙ୍କରି ପୁତ୍ର ରାଜକୁମାର ଦିବ୍ୟସିଂହ ଦେବଙ୍କର ରାଜାଭିଷେକ ହେବାର ତିଥି ଆସିଲା । ଜଗନ୍ନାଥଙ୍କ ପ୍ରଥମ ସେବକ ଭାବରେ ଗଜପତି ଦିବ୍ୟସିଂହ ଦେବ ପୁରୀ ଶ୍ରୀମନ୍ଦିର ପ୍ରବେଶ କରିଥାଆନ୍ତି । ପ୍ରଥମ ସେବକ ଗଜପତିଙ୍କୁ ଓ ପରମାରାଧ୍ୟ ଠାକୁରମାନଙ୍କୁ ଦର୍ଶନ କରିବାର

ସୁଯୋଗ ପାଇବା ଆଶାରେ ଶ୍ରୀମନ୍ଦିରରେ ଅସମ୍ଭାଳ ଭିଡ଼ । ଆମେବି ଦୁଇତିନି ଜଣ ସାଙ୍ଗ ହୋଇ ଏହି ସୁଯୋଗ ହାତଛଡ଼ା କରିବାକୁ ଚାହିଁଲୁନି । ମନ୍ଦିର ବେଢ଼ା ପରିକ୍ରମା ପରେ ଠାକୁର ମାନଙ୍କୁ ଦର୍ଶନ କରି ଫେରିଲା ବାଟରେ ମୁକ୍ତିମଣ୍ଡପ ପାଖରେ ଅସମ୍ଭବ ଭିଡ଼ । ସାଙ୍ଗମାନେ କିଏ କୁଆଡ଼େ ଗଲେ । କାହା ସାଥୀରେ କେହି ନାହିଁ । ଲୋକ ଭିଡ଼, ଲୋକ ସ୍ରୋତର ଯେ ଏତେ ଶକ୍ତି ମୁଁ ସେଦିନ ହିଁ ଅନୁଭବ କଲି । ମୁଁ ଆଉ ରାଜାଙ୍କୁ ଦେଖିବାକୁ ଯିବି କ'ଣ, ଭକ୍ତଙ୍କ ଜନସ୍ରୋତ ମତେ ମାଟି ଛୁଇଁଥିବା ପାଦ ଦି'ଟାକୁ ଅଲଗା କରିଦେଲା । ଜନସ୍ରୋତର ପ୍ରବଳ ଶକ୍ତି ଆଗରେ ମୋ ବଳ କେତେ ? ହାତ ପାଦ ଛାଡ଼ି କେମିତି ଏକ ସେହି ସ୍ରୋତର ଉପରେ ଆକ୍ତା ମାକ୍ତା ହୋଇ ପହଁରିବାକୁ ଲାଗିଲି । ମନେ ହେଉଥିଲା କେତେବେଳେ ଯଦି ତଳେ ପଡ଼ିଯିବି ଆଉ ବଞ୍ଚିବାର ଲେଶମାତ୍ର ଆଶା ବି ରହିବ ନାହିଁ । ମାଡ଼ି ଆସୁଥିବା ଏହି ଲକ୍ଷାଧିକ ଜନତାଙ୍କର ସ୍ରୋତ ମୋତେ କୁଦି ପକାଇବେ ଆଉ ମୁଁ ସେମିତି ସମସ୍ତଙ୍କ ପାଦତଳେ ମଛି ହେଇ ଜୀବନ ହାରିବି, ଏଥିରେ ସନ୍ଦେହ ନାହିଁ । ହେଲେ ବି ମୋର ଚାରା ନାହିଁ । କ'ଣ ବା କରବି ! ଏମିତି ସଂଜ୍ଞାହୀନ ଅବସ୍ଥାରେ ଆଠ ଦଶ ହାତ ଦୂରତାରେ ଭକ୍ତ ମାନଙ୍କ ଉପରେ ଉପରେ ରହି ଶୂନ୍ୟ ସ୍ରୋତରେ ଭାସି ଚାଲିଛି । ମନଟା ଡରିଗଲା । ଆଉ ନିସ୍ତାର ନାହିଁ । ମୃତ୍ୟୁ ସୁନିଶ୍ଚିତ । ବଞ୍ଚିବାର ସାହାରା ଆଉ କିଛି ନାହିଁ । ପ୍ରାଣ ବିକଳରେ ହାତ ଦିଓଟି ବଞ୍ଚିବା ପାଇଁ ଆଶ୍ରାଟିଏ ଖୋଜୁଛନ୍ତି । କିଛି ନାହିଁ, କେହି ନାହିଁ । ନିଆଶ୍ରା ଅବସ୍ଥା । ମୋ ବାପା ଦୁଃଖ କଷ୍ଟ ବେଳେ ନିସ୍ତାର ପାଇଁ ଘର ଇଷ୍ଟ ଭୈରବୀ ମା'ଙ୍କୁ ସଦା ସର୍ବଦା ଡାକୁଥାଆନ୍ତି ଓ କହନ୍ତି ମା'ଙ୍କ ପାଖରେ ଆକୁଳ ନିବେଦନ କଲେ ସେ ନିଶ୍ଚୟ ପରିତ୍ରାଣ ଦିଅନ୍ତି । ମୁଁ ମନେ ମନେ ଭୈରବୀଙ୍କୁ ଆକୁଳ ନିବେଦନ କଲି ଓ ମୋ ଅଲକ୍ଷ୍ୟରେ କଳାଠାକୁର ଚକାନୟନ ଶ୍ରୀଜଗନ୍ନାଥ ଓ ଭୈରବୀ ମା'ଙ୍କୁ ଡାକିବାକୁ ଲାଗିଲି । ଲାଗୁଥିଲା ଆଉ ଏଥିରୁ ବଞ୍ଚିବାର ନାହିଁ, ନିଶ୍ଚୟ ମରିବି । କିନ୍ତୁ କ୍ଷଣକେ ଆଶ୍ଚର୍ଯ୍ୟ ହେଲି । ପରବର୍ତ୍ତୀ ଜନସ୍ରୋତର ଲହଡ଼ା ଠେଲି ହୋଇ ମୁକ୍ତିମଣ୍ଡପ ପାଖରେ ଏକ ସୁରକ୍ଷିତ କୋଣରେ ମୋ ପାଦ ଭୂମିସ୍ପର୍ଶ କଲା ଓ ମୁଁ ସୁରକ୍ଷିତ ହେଲି । ପାଦରେ ମୋର ଭୂମିସ୍ପର୍ଶର ଅନୁଭୂତି ମୋତେ ଲାଗିଲା ଯେମିତି ମୋ ଶରୀରରେ ବଞ୍ଚିବାର ଆଶା ଭରିଦେଲା । ମୁଁ ଜୀବନ ପାଇଗଲି ଯେମିତି । ହେ ଭଗବାନ ! ପରମେଶ୍ୱର ତୁମରି ଅନୁକମ୍ପା ପ୍ରଭୁ ! କେମିତି ହେଲା କ'ଣ ହେଲା ମୁଁ ଜାଣିନି । କହିବି ପାରିବିନି, କିନ୍ତୁ ଏତିକି ଜାଣିଛି ଯେ, ମୋର ଶେଷ ସମୟର ଆକୁଳ ନିବେଦନକୁ ଚକାଆଖି ଶୁଣିଛନ୍ତି ଓ ମୁଁ ନିସ୍ତରି ଯାଇଛି । ମୁକ୍ତିମଣ୍ଡପର ଏକ ପ୍ରକାଣ୍ଡ ଝୁଲଣ ମଣ୍ଡପର ସ୍ତମ୍ଭ ମୋତେ ଆଶ୍ରୟ ଦେଇଛି । ତାହାରି ଆଶ୍ରାରେ ଜନସ୍ରୋତର ଶକ୍ତି ପ୍ରତିହତ ହୋଇଯାଇଛି

ଯେମିତି । ମୁଁ ସେଇ ସ୍ତମ୍ଭକୁ ଆଶ୍ରାକରି କିଛି ସମୟ ହତ୍‌ଚକିତ ହୋଇ ଠିଆ ହେଇ ରହିଲି ଓ ନିଶ୍ଚିତ ହେଲି ଯେ, ମୃତ୍ୟୁ ବିପତ୍ତି ଆଉ ନାହିଁ । ଆସନ୍ନ ମୃତ୍ୟୁରୁ ବଞ୍ଚି ପାରିଥିବା ଯୋଗୁଁ ଠାକୁର ଶ୍ରୀଜଗନ୍ନାଥ ଓ ଆମ ଇଷ୍ଟଦେବୀ ମା' ଭୈରବୀଙ୍କ ପାଦତଳେ ମନେ ମନେ ଭକ୍ତିପୂତ ପ୍ରଣାମ ନିବେଦନ କଲି ।

ତା' ପରଦିନ କଲେଜ ସମୟରେ ସମସ୍ତଙ୍କ ସହ ଦେଖା । କେହି କେମିତି ଭିଡ଼ରୁ ବର୍ତ୍ତି ବଞ୍ଚିଯାଇଛନ୍ତି କିନ୍ତୁ ମୋର ଯେଉଁ ଅନୁଭୂତି ତା' ଅନୁଭବୀ ହିଁ ଜାଣିବ । ପୁରୀରେ ପାଠ ପଢ଼ିବା ସମୟରେ ଆଉ ଏକ ଈଶ୍ୱରଙ୍କ ସାନ୍ନିଧ ପାଇବାର ଅନ୍ୟ ଏକ ଘଟଣା । କାର୍ତ୍ତିକ ମାସ ପୂର୍ଣ୍ଣମୀର ତିଥି । କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରତ୍ୟୁଷରୁ ଆମେ ଗାଁରୁ ପାଖ ଗୋପାଳପୁର ସମୁଦ୍ରକୁ ବୁଡ଼ ପକାଇବାକୁ ଯାଇଥାଉ । ମନରେ ଆସିଲା ଏହି ପୂର୍ଣ୍ଣମୀ ଦିନ ପୁରୀ ସମୁଦ୍ରରେ ବୁଡ଼ ପକାଇ ସୂର୍ଯ୍ୟୋଦୟ ଓ ଜଗନ୍ନାଥ ଦର୍ଶନ କରି ଘରକୁ ଫେରିବୁ । ହବିଷ୍ୟାନ୍ନ ସେବନ କରି କାର୍ତ୍ତିକ ପୂର୍ଣ୍ଣମୀର ପବିତ୍ର ତିଥିକୁ ଅନୁଭବ କରିବୁ । ଘରେ ମାମୁ ମାଇଁ ତାଙ୍କରି ଦୁଇ ପୁଅ ମୁନା, ଟିକି ଓ ଝିଅ ମାମୀ । ପିଲାମାନେ ଛୋଟ ଛୋଟ । ତେଣୁ କେହି ରାଜିହେଲେନି ବୁଡ଼ ପକାଇବା ପାଇଁ ସମୁଦ୍ରକୁ ଯିବା ପାଇଁ । ଆଉ ରହିଲେ ମୋର ସାନ ମାଉସୀ, ତମାଳ ନାନୀ, ତାଙ୍କରି ଝିଅ ସଞ୍ଜୁ, ମୁଁ ଓ ଆମ ପାଖରେ ରହି ପୁରୀରେ ପୋଲିସ ଚାକିରି କରୁଥିବା ମୋର ସମାନ ବୟସର ଦୁଇଜଣ ସାଙ୍ଗ । ପୂର୍ବ ରାତ୍ରିରୁ କଦଳୀ ପଟୁଆ, ଘିଅବତୀ ସଳିତା, ଧୂପଦୀପ, ନୈବେଦ୍ୟାଦି ସଜାଇ ରଖାଗଲା । ରାତି ଚାରିଟା ବେଳେ ସଭିଏଁ ଉଠି ନିତ୍ୟକର୍ମ ସାରି ପୂଜାସାମଗ୍ରୀ ସହ ବୋଇତ ଭସାଣର ଦ୍ରବ୍ୟ ନେଇ ଆମେ ବାହାରିଲୁ ପାନ୍ଥ ନିବାସ ପାଖ ଅପେକ୍ଷାକୃତ ନିଛାଟିଆ ସମୁଦ୍ର ବେଳାଭୂମିକୁ । ସମୁଦ୍ରରେ ବୁଡ଼ ପକାଇବାରେ ଅସରନ୍ତି ଆନନ୍ଦ । ସମସ୍ତେ ସ୍ନାନ ପାଇଁ ସମୁଦ୍ର ଜଳ ଢେଉରେ ପଶିଲୁ । ମାଉସୀ ଓ ଅନ୍ୟମାନେ ପାଖ ପାଣିରେ ଗାଧୋଇ ବୋଇତ ଛାଡ଼ିବାକୁ ଲାଗିଲେ । ମୁଁ ଓ ଅନ୍ୟ ଦୁଇ ଜଣ ସାଙ୍ଗ ଇଚ୍ଛା କଲୁ ଆଉଟିକେ ଭିତର ପାଣିରେ ଡଙ୍ଗା ଭସାଇବୁ । ଲହଡ଼ି ଡେଇଁ ଆଗକୁ ଆଗକୁ ଚାଲିଲୁ । ମୁଁ ଦେଖିଲା ବେଳକୁ ଅନ୍ୟ ଦୁଇଜଣ ସାଙ୍ଗଙ୍କ ହାତରୁ ବୋଇତ ଦିଓଟିକୁ ସମୁଦ୍ରର ଅମାନିଆ ଢେଉ ଝାମ୍ପିନେଇ ଯାଇଛି ଓ ସେମାନେ ଶୂନ୍ୟ ହସ୍ତରେ ସମୁଦ୍ରର ନୀଳ ଢେଉର ଉତ୍ତାଳ ଜଳରେ ପହଁରୁଛନ୍ତି । ଏତିକିବେଳେ ମୋତେ ଏକ ବଡ଼ ଢେଉ ତଡ଼ିଦେଲା କୂଳଆଡ଼କୁ । ମୁଁ କୌଣସି ମତେ ତାକୁ ଠିଆ ହୋଇ ବିରୋଧ କରିପାରିଲିନି । କିନ୍ତୁ ଏକ ଆଶ୍ଚର୍ଯ୍ୟ କଥା ନିଶା ଖାଇଥିବା ମଣିଷ ଭଳି ଟଳଟଳ ହେଉଥିବା ଅସ୍ଥିର ମୋ'ଶରୀର ପାଦ ବାଲିକୁ କାମୁଡ଼ି ସ୍ଥିର ହେବାକୁ ଚାହୁଁଥିଲା ବେଳେ ପାଦ ତଳର ବାଲିସବୁ ସମୁଦ୍ରର ଲେଉଟାଣି ଢେଉରେ ସ୍ରୋତଭଳି ମୋତେ ସମୁଦ୍ରର ଅତଳ ଗହ୍ୱର

ଆଡକୁ ପୁଣି ଭିଡ଼ିବାରେ ଲାଗିଲା । ମୁଁ ଜାଣିନଥିଲି ସମୁଦ୍ର ଅନ୍ତଃସ୍ରୋତର ଏତେ ଶକ୍ତି । ମୁଁ ସମୁଦ୍ରର ଲୁଣିଆ ପାଣି ପିଇ ସାରିଲିଣି । ଆଖି ଆଗରେ ଆଉ ବଞ୍ଚିବାର ଆଶା ନାହିଁ ଜାଣିବି ମନଟା କେମିତି ବିକଳରେ ଶେଷଥର ପାଇଁ ଜଗନ୍ନାଥଙ୍କୁ ଡାକିବାରେ ଲାଗିଲା । ମୋ ନିସ୍ତେଜ ଶରୀର ସମୁଦ୍ରର ଅନ୍ତଃସ୍ରୋତରେ ପଡ଼ି ନିଶେଷ ହେଇଯାଉଥିବା ମୋର ଶ୍ରାନ୍ତକ୍ଲାନ୍ତ ଶରୀର କେମିତି କେଜାଣି ପୁଣି ଅନୁଭବ କଲା, ବିଶାଳ ସମୁଦ୍ରର ଅତଳ ଗର୍ଭରୁ ମୋତେ ଟେକି ଧରି କୂଳ ଆଡ଼କୁ କେହି ଜଣେ ବିଶାଳ ବ୍ୟକ୍ତିର ଅଦୃଶ୍ୟ ଶରୀର ଫୋପାଡ଼ି ଦେଇଛି ଓ ମୁଁ ମୋ ବନ୍ଧୁମାନଙ୍କ ଠାରୁ ପ୍ରାୟ ପଚାଶ ମିଟର ଦୂରରେ ଆକ୍ତାମାକ୍ତା ହୋଇ ବାଲି ଉପରେ ପଡ଼ିଛି । ମୋତେ କୂଳରେ ଫୋପାଡ଼ି ଫେରି ଯାଉଥିବା ସମୁଦ୍ର ଢେଉ ନୀଳ ନୀଳ ପ୍ରତୀତ ହେଉଥିଲା ଓ ତନ୍ମଧ୍ୟରୁ କେବଳ ଦୁଇଟି କଳା କଳା ଜ୍ୟୋତିର୍ମୟ ଆଖି ମୋତେ ହିଁ ଏକାଲୟରେ ଚାହିଁ ରହିଥିଲା । ମୋ ପାଖରୁ ଲହଡ଼ିର ପାଣି ତଳକୁ ଖସି ଯାଇଥିଲା । ଦେଖିଲି, ମୁଁ ବାଲି ଭଉଁରୀର ସ୍ରୋତରେ କିଛିଟା ଖଣ୍ଡିଆ ଖାବରା ହୋଇଥିଲେ ବି ଏବେ ବିପଦମୁକ୍ତ । ମୋ' ଆଖିରେ ଶ୍ରୀମନ୍ଦିରର ନୀଳଚକ୍ର ହିଁ ଦିଶୁଥିଲା । ପ୍ରଭୁ ଜଗନ୍ନାଥ ଓ ତାଙ୍କ ନୀଳଚକ୍ର ହିଁ ସମୁଦ୍ରକୁ ଯେମିତି ଆକଟ କରି କହିଥିଲେ ମୋତେ ମୃତ୍ୟୁର ବିଭୀଷିକାରୁ କୂଳରୁ ଫେରାଇ ଆଣିବା ପାଇଁ । ମୁଁ କିଛି ସମୟ ପରେ ଆସ୍ତେ ଆସ୍ତେ ଫେରିଆସିଲି ମୋ ବନ୍ଧୁମାନଙ୍କ ପାଖକୁ, ଯେଉଁମାନେ ମୋତେ ହତ୍‌ଚକିତ୍ ହୋଇ ଚାହିଁ ରହିଥିଲେ । ପ୍ରଭୁ ପରମେଶ୍ୱର ଲୀଳାମୟ ସର୍ବନିୟନ୍ତା କଳାଠାକୁରଙ୍କ ମାୟା ତ ଦେବଙ୍କୁ ଅଗୋଚର... ମୁଁ ବା ତା'ରି କି କଳନା କରିବି ! କାହାକୁ କିଛି ନ କହି ସମସ୍ତଙ୍କ ସହ ମୁଁ ମନ୍ଦିର ଗଲି । ପରମେଶ୍ୱର ପରମାତ୍ମାଙ୍କ ଦର୍ଶନ କଲାବେଳେ ଅନୁଭବ କଲି କାଳିଆ ଠାକୁର ମୋତେ ଚାହିଁ ଚାହିଁ ନୀରବରେ ହସି କହୁଛନ୍ତି 'ରଖେ ହରି ମାରେ କିଏ, ମାରେ ହରି ରଖେ କିଏ ?'

ପ୍ରାକ୍ତନ ଅଧ୍ୟକ୍ଷ, ସଂସ୍କୃତି ସଦନ
ବୟାଳୀ, ପୋ. - ମନ୍ଦିଡ଼ି
ଭାୟା - ବ୍ରହ୍ମପୁର, ଜିଲ୍ଲା - ଗଞ୍ଜାମ, ପିନ୍ - ୭୬୧୦୦୮
ଦୂରଭାଷ : ୯୪୩୮୧୫୬୬୦୩



# ଲାଗିଛି ଡୋରି ଯିବି ମୁଁ ପୁରୀ

## ଅଶୋକ କୁମାର ନାୟକ

**ସେ**ଦିନ ପୌଷର ଏକ ଅଳସ ସଞ୍ଜ । ଭ୍ରାମ୍ୟଭାଷରେ ଆଳାପ ପ୍ରସଙ୍ଗରେ ବନ୍ଧୁ ଆଡ଼ଭୋକେଟ୍ ଶ୍ରୀକାନ୍ତ ମହାନ୍ତିଙ୍କ 'ଅନୁଭୂତିରେ ଶ୍ରୀଜଗନ୍ନାଥ' ଶୀର୍ଷକରେ ଲେଖାଟିଏ ପାଇଁ ଆଗ୍ରହକୁ ହଁ କରିଦେଲି । ଅଥଚ କେଉଁ ଭାବରେ କିପରି ଲେଖା ଆରମ୍ଭ କରିବି ଜାଣି ନ ପାରି ଚୁପ୍‌ଚାପ୍ ବସୁଥିଲି ।

ଅସିତ ଗିରିସମଂସ୍ୟାତ୍ କଜ୍ଜଳଂ ସିନ୍ଧୁପାତ୍ରେ<br>
ସୁରତରୁବର ଶାଖା ଲେଖନୀ ପତ୍ରମୁର୍ବୀ ।<br>
ଲିଖତି ଯଦି ଶାରଦା ଗୃହୀତ୍ୱା ସର୍ବକାଳଂ<br>
ତଦପି ତବଗୁଣାନା ମୀଶଂ ପାରଂ ନ ଯାତି ।।

ସମଗ୍ର ସମୁଦ୍ର ଯଦି କାଳି ହୁଏ, ହିମଗିରି ହୁଏ ଲେଖନୀ ଏ ଚରାଚର ବ୍ୟାପ୍ତ ପୃଥିବୀ ଯଦି ହୁଏ ଲେଖାଫର୍ଦ୍ଦ ସ୍ୱୟଂ ଶାରଦା ଯଦି ହୁଅନ୍ତି ଲିପିକାର ତେବେ ମଧ ପ୍ରଭୁ ତୁମର ଲୀଳାକୁ ବର୍ଣ୍ଣନା କରିବାରେ ସେ ଅସମର୍ଥ ।

ତେବେ ସେଇ ଲୀଳାବନ୍ତ ମର୍ଯ୍ୟାଦା ପୁରୁଷୋତ୍ତମ ପରଂବ୍ରହ୍ମ, ଜଗତର ନାଥ କାଳିଆ ସାଆନ୍ତକୁ ନେଇ ମୋର ବା କେଉଁ ଅନୁଭୂତି ଅଛି ଯେ ଯାହାକୁ ମୁଁ ଅଭିବ୍ୟକ୍ତ କରିଦେବି । ଅଥଚ ଜଗନ୍ନାଥଙ୍କୁ ବାଦ୍ ଦେଇ ଜୀବନର ଅନୁଭୂତି ବା କ'ଣ ହୋଇପାରେ !

'ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ-ମେ'

ନେତ୍ର ପଥରେ ନାଚି ଉଠୁଥିଲା କାଳିଆ ଠାକୁରର ଚକା ଚକା ଆଖି ଯୋଡ଼ିକ । ମହମହ ତୁଳସୀ ଦୟଣାର ବାସ୍ନାରେ ଆମୋଦିତ ହୋଇ ଉଠୁଥିଲା ମନପ୍ରାଣ ।

ଜଗତର ନାଥ ଆହେ ଜଗନ୍ନାଥ<br>
ଭକତ ଜନ ଭାବଗ୍ରାହୀ,<br>
ହଜିଯାଏ ମୁଁ ଯେ ମଜିଯାଏ ମୁଁ ଯେ<br>
ତୋ ରୂପ ମାଧୁରୀ ଚାହିଁ ।

ମାତ୍ର ନାଁ ମୁଁ ଦେଖି ପାରୁଥିଲି ତା ରୂପ ମାଧୁରୀକୁ, ନାଁ ହଜି ପାରୁଥିଲି ତା'ର ଭାବରେ ।

ମନେ ପଡୁଥିଲା ପିଲାଦିନର କଥା । ମୋତେ ପାଞ୍ଚ କି ଛଅ ବର୍ଷ ହେବ । ସେଦିନ ଜେଜେ ଗାଧୋଇ ସାରି କୋଥଳି ସେବା କରୁଥା'ନ୍ତି । ପାଖରେ ବସି ଚନ୍ଦନ ଟୋପାଟେ ମୁଣ୍ଡରେ ମାରି ନିର୍ମାଲ୍ୟ ଟିକିଏ ପାଟିରେ ପକାଇ ମୁଁ ଚୁପ୍‌ଚାପ୍ ଦେଖୁଥିଲି କୋଥଳି

ଭିତରେ ଧଳା କନାରେ ଗୁଡ଼ା ହୋଇ ସଯତ୍ନରେ ଥିବା ଜଗନ୍ନାଥଙ୍କ ଛୋଟିଆ ଫଟୋଚିତ୍ରକୁ । ଟିକି ଫଟୋଟିକୁ ଟିକି ହାତରେ ଧରିବାର ପ୍ରବଣତା ମୋତେ ବିହ୍ୱଳ କରୁଥିଲା । ଅଥଚ ମୋର କୌତୂହଳକୁ ମୁଁ ପ୍ରକାଶ କରିପାରୁନଥିଲି ।

ଜଗନ୍ନାଥଙ୍କ ଫଟୋକୁ ଦେଖି ଜେଜେ ଏତେ ଖୁସି ହୁଅନ୍ତି କାହିଁକି ? ଏ ପ୍ରଶ୍ନର ଉତ୍ତରରେ ବାପା କହିଥିଲେ, 'ସର୍ବମଙ୍ଗଳ ଜଗନ୍ନାଥ' । ଜଗନ୍ନାଥ ହେଉଛନ୍ତି ଆମ ଓଡ଼ିଆ ଜାତିର ପରିଚୟ, ଓଡ଼ିଆର ଠାକୁର । ଏକଥା ଗୁଡ଼ାକ ମୋତେ ଆଦୌ ଭଲ ଲାଗୁନଥିଲା ।

'ହଉ ହେଲା, ଜଗନ୍ନାଥଙ୍କୁ ପୂଜା କଲେ କ'ଣ ହେବ' ? ଉତ୍ତରରେ, ପରୀକ୍ଷାରେ ଭଲ ହେବ, ସବୁ କାମ ସୁରୁଖୁରୁରେ ହୋଇଯିବ ।

କଥାଟା ମନକୁ ପାଇଥିଲା । 'ଜଗନ୍ନାଥ କେଉଁଠି ରୁହନ୍ତି' - ପୁରୀରେ । ତା'ହେଲେ, ଆମେ କେବେ ପୁରୀ ଯିବା ! ଯିବା ଯେବେ ତା' ଡୋରି ଲାଗିବ । କଥାଗୁଡ଼ାକ ଖୁବ୍ ଦୁର୍ବୋଧ ମନେ ହେଉଥିଲା । ନାନୀକୁ ପଚାରିଲି - 'ଏ ଡ଼ୋରି କ'ଣ କି ?' ସିଏ କହିଲା, 'ଜଗନ୍ନାଥ ତାଙ୍କ ପାଖକୁ ଡାକିଲେ ଆମେ ଯିବା' । ଏତେ କଥାର ମାନେ ବୋଉ ସହଜରେ ବୁଝାଇଦେଲା । 'ଦଶହରା ଛୁଟିରେ ଜଗନ୍ନାଥଙ୍କ ପାଖକୁ ଯିବା' ।

ଆମେ ଦିନ ଗଣୁ ଗଣୁ ଖରାଦିନ ସରି ବର୍ଷା ବି କେତେବେଳେ ସରିଗଲା ଜଣାନାହିଁ । ଭରା ଭୋଦୁଅର ଜନ୍ମାଷ୍ଟମୀରେ ବୋଉ ତିଆରି କରୁଥିଲା ପୁରୀ, କାକରା, ମଣ୍ଡା, କ୍ଷୀରି । ବାପା ଆଣିଥିଲେ ଜିଲାପି, ଛେନାଗଜା, ରସଗୋଲା, ଲଡ୍ଡୁ । ଠାକୁର ଘରେ ଭାଗବତ ପଢ଼ାହେଲା । ସବୁ ବଡ଼ଲୋକ (ବୟସ୍କ) ମାନେ ବସି ଏକସ୍ୱରରେ ଭାଗବତ ପଢୁଥିଲେ । 'କହଇ ବିପ୍ର ଜଗନ୍ନାଥ, ହରି ଚରିତ ଭାଗବତ' । କୃଷ୍ଣଜନ୍ମରେ ଜଗନ୍ନାଥଙ୍କ ନାଁ ଶୁଣି ବାପାଙ୍କୁ ପଚାରିଲି ତ ବାପା ବୁଝାଇଦେଲେ, କୃଷ୍ଣ ଯିଏ ଜଗନ୍ନାଥ ସିଏ । ଆଜି ଜଗନ୍ନାଥ ଜନ୍ମ ହେଉଛନ୍ତି । ସେଥିପାଇଁ ଚାରିଆଡ଼େ ଏତେ ଆନନ୍ଦ । ଭୋଗଥାଳିର ବାସ୍ନାରେ ମୋ ପାଟିରୁ ଲାଳ ବୋହିଲାଣି । କୃଷ୍ଣ ହେଉ ବା ଜଗନ୍ନାଥ, ଶୀଘ୍ର ଜନ୍ମ ହୋଇଗଲେ ସୁଆଦିଆ ଭୋଗ ଖାଇବାର ପ୍ରବଳ ଇଚ୍ଛାରେ ମୁଁ ଅନାଇଛି ଭୋଗ ଥାଳିକି ତ ମାଆ ମୋତେ ବାଆଁରେଇ ନେଇଯାଉଛି ଅନ୍ୟଆଡ଼େ ।

ଚାହୁଁ ଚାହୁଁ ଦଶହରା ଆସିଗଲା ପସରା ମେଲାଇ । ବାଡ଼ିପଟ ଶେଫାଳିର ମହ ମହ ବାସ୍ନାରେ ପୂରିଉଠୁଛି ମନ । ଜାତି ଜାତି ଚିତାରେ ଝଟକୁଛି ଲିପାପୋଛା ମାଟିକାନ୍ଥ । ସପ୍ତମୀ ଦିନ ସକାଳୁ ସକାଳୁ ପୁରୀ ଯିବାପାଇଁ ବୋଉ ସଜାଡୁଥାଏ ଗଣ୍ଠିଲି । ଆମେ ଭାଇଭଉଣୀ ତିନିଜଣ ନାଚୁଥାଉ ଖୁସିରେ ।

ସକାଳୁ ସକାଳୁ ବସିପଡ଼ିଲୁ ବସ୍‌ରେ । କଟକରେ ରେଳରେ ବସି ପୁରୀରେ ପହଞ୍ଚିଲା ବେଳକୁ ସଞ୍ଜ । ବାଟରେ କ'ଣ ଖାଇଥିଲୁ ମନେନାହିଁ । ଭୋକରେ ଆଉଟୁ ପାଉଟୁ ହେଲିଣି ।

ଷ୍ଟେସନରୁ ରିକ୍ସାରେ ଗୁଣ୍ଡିଚା ମନ୍ଦିର । ସେଠୁ ପୁଣି ରିକ୍ସାରେ ବଳଗଣ୍ଡି ଛକ । ସେଠାରେ ଖଗେଶ୍ୱର ବେହେରାଙ୍କ ଘର । ଆମ ଗାଁର ଜଣକର କ୍ୱାଇଁ । ଗୁଡ଼ିଆ ଘର । ତାଙ୍କରି ଘରେ ବ୍ୟାଗପତ୍ର ରଖି ବାପା, ବୋଉ, ନାନୀ, ଟୁକୁନି (ସାନଭାଇ) ଓ ମୁଁ ଚାଲିଲୁ ଶ୍ରୀମନ୍ଦିର ।

ଏଡ଼େ ବଡ଼ ବଡ଼ କୋଠା । ଏତେ ସୁନ୍ଦର ଆଖିଝଲସା ଆଲୁଅ । (ଗାଁରେ ବିଜୁଳି ଆଲୁଅ ନଥାଏ) ରାସ୍ତା କଡ଼ରେ ମାଳମାଳ ଦୋକାନ । ଖେଳଣା ଜାତି ଜାତିର । ଜଗନ୍ନାଥଙ୍କ କେତେ ଭଙ୍ଗୀର ଫଟୋ । ଆଖି ଲାଖି ଯାଉଥାଏ । ସତରେ ଜଗନ୍ନାଥ ଖୁବ୍ ବଡ଼ ଠାକୁର, ବହୁତ ବଡ଼ ଲୋକ । ନାନୀ ହସିଲା । ୭ ବର୍ଷର ଜ୍ଞାନରେ ବି ବେଶ୍ ବୁଝାଇଦେଲା ମୋତେ । ହଁ, ଜଗନ୍ନାଥ ନା ବହୁତ ବଡ଼, ସବୁଠାରୁ ବଡ଼ ଠାକୁର । କ'ଣ ଆମ ଗଙ୍ଗେଶ୍ୱରଙ୍କ ଠାରୁ ବି ? (ଆମ ଗାଁର ପ୍ରସିଦ୍ଧ ଶିବ ମନ୍ଦିର । ସାଲେପୁର ଠାରୁ କୁଆଁପାଳ ରାସ୍ତାରେ ୭ କି.ମି. ଦୂରରେ ଅବସ୍ଥିତ) ଉତ୍ତର ମିଳିଲା ହଁ ।

ସିଂହଦ୍ୱାରରେ ପହଞ୍ଚିଲୁ । ସିଂହଦ୍ୱାରରେ ଗୋଡ଼ହାତ ଧୋଇ ଶ୍ରୀମନ୍ଦିରର ବାଇଶି ପାହାଚରେ । ବାପାଙ୍କ କାନ୍ଧରେ ମୁଁ, ବୋଉ କାଖରେ ଟୁକୁନି, ନାନୀ ବୋଧେ ଚାଲିଥିଲା । ମନ୍ଦିର ଭିତରେ, ବୋଧହୁଏ ସାହାଣମେଲା ଥିଲା । ଖୁବ୍ ପାଖରୁ ଜଗନ୍ନାଥଙ୍କୁ ଦେଖୁ ଦେଖୁ - 'ବାପା କାନ୍ଦୁଥିଲେ, ବୋଉବି ।' ଅଥଚ ଜଗନ୍ନାଥଙ୍କ ବିରାଟ ସ୍ୱରୂପକୁ ଦେଖି ଭୟରେ ଆଖିବୁଜି ଦେଲି ମୁଁ । ମୁଁ ଆଉ ତାଙ୍କୁ ଦେଖିନାହିଁ ।

ମହାପ୍ରସାଦର ମହମହ ବାସ୍ନାରେ ଆଖି ଖୋଲିଗଲା ମୋର । ବୋଉ ଖୁଆଇଦେଲା ମୋତେ । ସକ ମାଳପୁଆ ଗୋଟାଏ ବାଣ୍ଟି ବାଣ୍ଟି ଖାଇଦେଲୁ ମୁଁ ଓ ନାନୀ । ଜଗନ୍ନାଥଙ୍କର ଯେ ଗୋଟାଏ ବଡ଼ ହୋଟେଲ ଅଛି ଯେଉଁଠି କେତେ ରକମର ସୁଆଦିଆ ଖାଇବା ଜିନିଷ ମିଳେ ଏତିକି ବୁଝିଲି ମୁଁ । ଆଉ ଚାରି ଦିନର ରହଣି ଭିତରେ ପେଟଭରି ସୁଆଦିଆ ଖାଇବାରେ ପାଟି ଚକ୍‌କଣ କରିଥିଲି ମୁଁ । ଯଦିଓ ତା'ର ତ ପାଟି ନାହିଁ, ହାତ ବି ନାହିଁ, ସିଏ ଏତେ ଭୋଗ ଖାଉଛି କେମିତି ? ପ୍ରଶ୍ନର ଉତ୍ତରରେ - ତୁ ବଡ଼ ହେଲେ ସବୁ ବୁଝିବୁ । ବାପାଙ୍କର ସଂକ୍ଷିପ୍ତ ଉତ୍ତରଟି ମୋ ପାଇଁ ଏ ଯାବତ୍ ରହିଗଲା ଏକ ଅନୁତ୍ତରିତ ପ୍ରଶ୍ନ ହୋଇ, ଅନୁଦ୍‌ଘାଟିତ ରହସ୍ୟ ହୋଇ ।

ଅବଶ୍ୟ ଜଗନ୍ନାଥ ହିଁ ଆମର ସବୁକିଛି । ସବୁଠୁ ବଡ଼ । ସବୁ ଠାକୁରଙ୍କ ଠାକୁର ଏମିତି ଧାରଣାଟିଏ ମନର କେଉଁ ସୂକ୍ଷ୍ମ କେନ୍ଦ୍ରରେ ସେହିଦିନୁ ରହିଗଲା ଦୀପ୍ତିମନ୍ତ ସ୍ଥିର ବିନ୍ଦୁଟିଏ ହୋଇ ।

ସତେତ, ରାସ୍ତା କାମ ଚାଲିଥାଏ ପୁରୀରେ । ମେଞ୍ଚାଏ ତରଳା ପିଚୁକୁ ମଣ୍ଟୁ (ଗାଁ ଝିଅ ନାନୀର ପୁଅ) ସହ ଆଣି ଘର ମଝିରେ ଚକାଡ଼ୋଳା ତିଆରି କରିଦେଇ, ରାତିକୁ ଭାଇ ଖାଇଲାବେଳେ ତାଙ୍କ ଲୁଗାରେ ପିଚୁ ଲାଗିଗଲା ତ ବାପାଙ୍କଠୁ ଗାଳିଖାଇ, ମୁଁ

ଯେ ଜଗନ୍ନାଥଙ୍କୁ କେତେ ଗାଳି ଦେଲି, ତାହା ସ୍ପଷ୍ଟ ନ ହେଲେ ବି, ପିତୁ ଅଙ୍କିତ ଜଗନ୍ନାଥଙ୍କର ସେ କମନୀୟ ମୂର୍ତ୍ତିଟି ଏବେ ମଧ୍ୟ ସ୍ମୃତିପଟରେ ଝଲସି ଉଠୁଛି ଦ୍ୱିତୀୟା ଚନ୍ଦ୍ରର କ୍ଷୀଣ ରେଖାଟିଏ ପରି ।

ଯା' ପରେ ଆମେ ଆଉ କେବେ ଏକାଠି ଆସିନାହୁଁ ପୁରୀ ।

ପିଲାଦିନର ସେ ଅଭୁଲା ସ୍ମୃତି ଯା' ଭିତରେ ଧୀରେ ଧୀରେ ଝାପ୍‌ସା ହୋଇଆସିଲାଣି ମାନସ ପଟରେ । ସ୍ନାତକ ସମାପ୍ତି ପରେ ୧୯୮୯ରେ ମୁଁ ବାହାରିଲି ଏକାକୀ ପୁରୀ ରେଳ ବିଭାଗର ଏ.ଏମ୍.ଏମ୍ ପରୀକ୍ଷା ପାଇଁ । ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ ମୋର ପରୀକ୍ଷା କେନ୍ଦ୍ର । ପୂର୍ବଦିନ ସଂଧ୍ୟାରେ ପହଞ୍ଚିଗଲି । ସେଦିନ କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ ।

ବଡ଼ଦାଣ୍ଡରେ ଜନସମୁଦ୍ର । ନାନୀ ଘରେ ବ୍ୟାଗ୍ ରଖି ମୁଁ ଚାଲିଲି ଜଗନ୍ନାଥଙ୍କୁ ଦେଖିବା ପାଇଁ । ଏବେ ଜଗନ୍ନାଥଙ୍କୁ ଦେଖିବାର ବ୍ୟାକୁଳତା ଭିନ୍ନ । ସେଦିନ ଗୀତା ପାରାୟଣ ପ୍ରବଚନରେ ଗୁରୁ ପଦ୍ମଚରଣ ସ୍ୱାଇଁଙ୍କ ଓମିତ୍ୟେକାକ୍ଷର ବ୍ରହ୍ମର ବ୍ୟାଖ୍ୟାନରୁ ଜଗନ୍ନାଥ ଯେ ମୂର୍ତ୍ତିଭୂତ ଓଁକାର, ବିଗ୍ରହୀଭୂତ ପୁରୁଷୋତ୍ତମ ହିଁ ଜଗନ୍ନାଥ, ସମସ୍ତ ସାଧନାର ଚରମ ଉପଲବ୍ଧି, ପରମପ୍ରାପ୍ତି ହିଁ ଜଗନ୍ନାଥ, ଆଉ ପୁରୁଷୋତ୍ତମ କ୍ଷେତ୍ର ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର ତେତ୍ରିଶକୋଟି ଦେବତାଙ୍କ ବାସଭୂମି ମର୍ତ୍ତ୍ୟବୈକୁଣ୍ଠ ଏକଥା ଶୁଣି, ଜଗନ୍ନାଥଙ୍କୁ ଶ୍ରୀମନ୍ଦିରରେ ଦେଖିବାର ପ୍ରବଳ ଇଚ୍ଛାଟି ଫଳବତୀ ହେବାକୁ ଯାଉଛି । ଏ ପ୍ରକାର ଧାରଣାରେ ମୁଁ ଚାଲିଛି ମନ୍ଦିର ।

ଦୂରରୁ ଫରଫର ଉଡୁଥିବା ପତିତପାବନ ବାନାକୁ ଦେଖୁ ଦେଖୁ, ମୁଁ ଆତ୍ମହରା ହୋଇଗଲି । 'ପତାକା ଅଞ୍ଚଳ ଚଞ୍ଚଳ ଡାକେ ପାପୀଙ୍କି ଅବା, ଏ ନୀଳନଗନଗରକୁ ଆସ ଭଲ କରିବା' ମୋର ସମସ୍ତ ଦୁର୍ଭାବନା କୁଆଡ଼େ ଉଡ଼ିଗଲା ଜଣାନାହିଁ । ଏକ ଅପୂର୍ବ ଶୂନ୍ୟତାରେ ଜନ ସମୁଦ୍ରରେ ଭାସିଯାଇ କଳାଚାନ୍ଦର ରଙ୍ଗିମା ଅଧରରେ ହସକୁ ଦେଖୁ ଦେଖୁ, ଆଖିକୋଣରୁ ଝରିପଡ଼ିଲା ଦୁଇଟୋପା ଅଶ୍ରୁ । କାନରେ ଗୁଞ୍ଜରି ଉଠିଲା ସବୁଦିନ ସଂଧ୍ୟାରେ ବାପା ଗାଉଥିବା ଭଜନ -

'ନୀଳ ନବଘନ ସୁନ୍ଦର ବଦନ ଶ୍ରୀମୁଖ ମାଧୁରୀ ଅତି ଶୋଭା
ଶିରେ ଶିଖିଚୂଳ ମାଳତୀ ବକୁଳ ଝଙ୍କାରି ମଧୁପ କୁଳପ୍ରଭା ।'
ଅଳକାବଳୀ କି ଅଳି ଶିଶୁପନ୍ତି ଶ୍ରୀମୁଖ ନବନଳିନ ଜାଣି
କପାଳେ ଚନ୍ଦନ ବିନ୍ଦୁ ଶୋଭାବନ ଉଦେ ହୋଇଛି କି ନିଶାମଣି ।
ଭ୍ରୂଲତା ସୁନ୍ଦର କିଏ କାମ କର କୋଦଣ୍ଡ ରଖିଛି ପ୍ରତେହୁଏ
ବିକଚ କମଳ ପ୍ରାୟେ ବେନିଡ଼ୋଳା ଲହରୀ ଖେଳଇ କର୍ଣ୍ଣଯାଏ ।
ମନୋହର ନାସାପୁଟେ ସୁଘଟିତ ବର୍ତ୍ତୁଳ ଗଜ ମୁକୁତାବର
ବିମ୍ବଫଳ-ଜ୍ୟୋତି ଅଧରପଲ୍ଲବ ମନ୍ଦହାସ ମୋହେ ତିନିପୁର ।'

ଏକ ବର୍ଣ୍ଣନାତୀତ ଆବେଗରେ ବୁଡ଼ିଗଲି ମୁଁ । ଶିହରି ଉଠିଲା ସମସ୍ତ ଦେହ । ଆଚ୍ଛନ୍ନ ହୋଇଗଲା ମନ ପ୍ରାଣ ଚେତନା । କି ଏକ ଅପୂର୍ବ ଜ୍ୟୋତିରେ ଉଦ୍‌ଭାସିତ ହେଉଛି ନୀଳନବଘନ ସୁନ୍ଦର ବଦନ ।

ଆଃ... ।

ଯା'ପରେ କ'ଣ ହେଲା ମୁଁ ଜାଣିନି । ଦେଖିଲାବେଳକୁ ବାବୁ (ନାନୀର ସାନପୁଅ) ମୋତେ ଡାକୁଚି ଘରକୁ ।

ଯା' ଭିତରେ ବିତିଗଲା ଅନେକ ବର୍ଷ । ଜଞ୍ଜାଳ ଜାଲ ନିପୀଡ଼ିତ ମୁଁ ପୁତ୍ର ସନ୍ତାନର ଜନକ ହୋଇ ସାରିଥାଏ । ୨୦୦୧ ମସିହା ମେ ମାସ । ବାହାରି ପଡ଼ିଲି ଜଗନ୍ନାଥଙ୍କ ପାଖକୁ । ଟାଣଟୁଣ ବଜେଟ୍‌ରେ ସ୍କୁଟର ଧରି ପୁତ୍ର ସହ ସପତ୍ନୀକ । ଭଲ ପେଣାଏ କଦଳୀ ଧରିଲି କଳ୍ପନା ଛକରୁ । ଠାକୁରଙ୍କ ପାଖରେ ପହଞ୍ଚିଲି ୧୦ଟା ପାଖାପାଖି । ଯୋଗକୁ ସାହାଣମେଲା । ଦର୍ଶନ ମିଳିଗଲା । ପରମତୃପ୍ତିରେ ଚକାନୟନକୁ ଚାହୁଁ ଚାହୁଁ... ।

ମହାପ୍ରସାଦ ସେବନ କଲୁ । ଘର ଖୋଜିବାକୁ ଗଲି ମୁଁ । ଦକ୍ଷିଣ ଦ୍ୱାର ସମ୍ମୁଖ ଧର୍ମଶାଳା । କଷ୍ଟେମଷ୍ଟେ ଦୁଇ ଦିନର ରହଣି । କେବେ ସମୁଦ୍ରକୂଳ, ଲୋକନାଥ ମନ୍ଦିର ପୁଣି ଶ୍ରୀମନ୍ଦିର । ଜଗନ୍ନାଥଙ୍କୁ ଦର୍ଶନ କରି, ଦକ୍ଷିଣ ବେଢ଼ାରେ ଥଣ୍ଡା ପବନ ଖାଇ ଦିନକଟାଇ, ଫେରିଆସିଲୁ ପୁରୀରୁ ଦିବ୍ୟାନନ୍ଦର ନିସ୍ୟନ୍ଦିନୀରୁ ସଂସାର ଘୋର ବୈତରଣୀକୁ ।

ଭାବଥିଲେ ତ ଥାଏ ଅନୁଭବ । ଅଭାବରେ ତାକୁ କିଏ ବୁଝିଛି କି ? ବିନା ଭାବରେ ତେଲଲୁଣର ହିସାବ କରି ଚାଲିଆସିଲି ମୁଁ । 'ଦୈବୀହ୍ୟେଷା ଗୁଣମୟୀ ମମମାୟା ଦୁରତ୍ୟୟା' - ତା'ର ଦୁରତିକ୍ରମଣୀୟ ମାୟାରେ ମୋହାଚ୍ଛନ୍ନ ହୋଇଗଲି ମୁଁ ପୁଣି ଅନେକ ବର୍ଷ ଧରି ନବରଙ୍ଗପୁର-ରାୟଗଡ଼ା ଦେଇ ପହଞ୍ଚିଗଲିଣି ନୟାଗଡ଼ରେ ଜୀବନ-ଜଞ୍ଜାଳ ଯାତ୍ରାର ସୁଦୀର୍ଘ ପଥ ଅତିକ୍ରମ କରି ।

ଆହା ହା । ୨୦୧୦ ମସିହା । କାଳିଆର ଆକର୍ଷଣ ବାରମ୍ବାର ଟାଣିଲା ମୋତେ ତା'ପାଖକୁ । ଫେବୃଆରୀ ୧୨ ତାରିଖ ଶୁକ୍ରବାର । ଭୋର ୫ଟାରୁ ବସ୍‌ରେ ବସିପଡ଼ିଲୁ ପୁରୀ ଅଭିମୁଖେ । ପାଖାପାଖି ଦିନ ୧୨ଟା । 'ଚନ୍ଦନପୁରରୁ ପତିତପାବନ ଅଳପ ଅଳପ ଦିଶେ' - ପାଖେଇ ଆସୁଛି ଶ୍ରୀମନ୍ଦିର । ଶୁଭୁଛି ଆର୍ତ୍ତତ୍ରାଣ ନିନାଦର ଧ୍ୱନି । ଗମ୍ଭୀର ହେଉଛି ବଡ଼ଦାଣ୍ଡର ଗହଳି ଚହଳି । ବସ୍‌ରୁ ଓହ୍ଲାଇ ପଡ଼ି ପଶ୍ଚିମପଟ 'ବିଷ୍ଣୁ ଭବନ' ଲଜ୍‌ରେ ବ୍ୟାଗ୍‌ପତ୍ର ରଖିଦେଇ ଚାଲିଆସିଲୁ ଶ୍ରୀମନ୍ଦିର ।

ଦର୍ଶନ ମିଳିଗଲା । ଆଜି ଅନେକ ଦିନ ପରେ ଆଖିରୁ ଝରିଗଲା ଲୁହ । କାଳିଆ ଓଠରେ ନାଲିଆ ହସ । ଜଗତକୁ ମୋହିନେବାର ଅପୂର୍ବ ମୋହିନୀ ମାୟା । 'ମାମେବ

ଯେ ପ୍ରପଦ୍ୟନ୍ତେ ମାୟାମେତାଂ ତରନ୍ତିତେ' - ହାତ ଯୋଡ଼ିଛି ମୁଁ । କଳାମଚମଚ ବଦନାରବିନ୍ଦରେ ଆରତ୍ରିକର ଦୀପ୍ତଦ୍ୟୁତି, ଅଜ୍ଞାନ ତିମିର ନାଶନର ପ୍ରଦୀପ୍ତ ପ୍ରଭାପୁଞ୍ଜ ।

ନୀଳାଦ୍ରୌ ଶଂଖମଧ୍ୟେ ଶତଦଳକମଳେ ରତ୍ନସିଂହାସନସ୍ଥଂ
ସର୍ବାଳଙ୍କାରଯୁକ୍ତଂ ନବଘନରୁଚିରଂ ସଂଯୁତଂ ଚାଗ୍ରଜେନ ।
ଭଦ୍ରାୟାଃ ବାମଭାଗେ ରଥଚରଣଯୁତଂ ବ୍ରହ୍ମରୁଦ୍ରେନ୍ଦ୍ରବନ୍ଦ୍ୟଂ
ବେଦାନାଂ ସାରମୀଶଂ ସ୍ୱଜନ-ପରିବୃତଂ ବ୍ରହ୍ମଦାରୁଂ ନମାମି ।।

ପ୍ରଣତିଟିଏ ବାଢ଼ିଦେଲି । ବାହାରି ଆସି ବେଢ଼ା ପରିକ୍ରମା ସାରି ମହାପ୍ରସାଦ ଖଳାରେ ବସିଛି । ଶ୍ୱାସର ପ୍ରକୋପ ଜଣାପଡ଼ିଲା । ଏଣେ ପ୍ରବଳ ଗହଳି । ମହାପ୍ରସାଦ ଆଣିବି କିପରି ? ମନେ ମନେ ବିକଳ ହୋଇ ପ୍ରଭୁଙ୍କୁ ଡାକୁଛି । ହଠାତ୍ ଜଣେ ନନା ପହଞ୍ଚିଗଲେ । ଆପଣ କେତେ ଜଣ ? ଦୁଇଜଣ ଓ ଛୁଆଟି । ଆପଣ ଏଇଠି ବସନ୍ତୁ ସବୁ ଆଣି ଦେଇଦେବି । ଅନ୍ନ, ବେସର, ଡାଲି, ମହୁର, ଶାଗ, ଖଟା । ଶହେ ଟଙ୍କାରେ ଶତଜନ୍ମର ପାତକଧ୍ୱଂସୀ ମହାପ୍ରସାଦ । ସତରେ ଅପୂର୍ବ । ଖାଇସାରି ଗଡ଼ିପଡ଼ିଲି ସ୍ନାନମଣ୍ଡପରେ । ଛାଇନିଦ ଲାଗିଆସିଛି । କା'ର କରସ୍ପର୍ଶରେ ନିଦ ଭାଙ୍ଗିଗଲା । କାହିଁ କେହିତ ପାଖରେ ନାହାନ୍ତି । ଚମକି ଉଠି ଏମାନଙ୍କୁ ନ ପାଇ ଧାଇଁଲି ତ ମା' ପୁଅ ପିଉଛନ୍ତି ଟଙ୍କ ତୋରାଣି । ମୁଁ ବି ପିଇଦେଲି ଦି କୁଡୁଆ । ପୁଣି ଠାକୁର ଦର୍ଶନ ସାରି ଚାଲିଗଲୁ ସମୁଦ୍ରକୂଳ । ଫେରି ଆସୁ ଆସୁ ମିଳିଗଲା ଘିଅ ଅନ୍ନ ଡାଲମା । ପେଟେ ଖାଇଦେଲି ।

ତିନି ଦିନର ରହଣିରେ, ଏତିକି ବୁଝିଲି ଜଗନ୍ନାଥ ମୋ ଜାତିର ଠାକୁର, ମୋ ପ୍ରାଣର ଠାକୁର, ପ୍ରିୟ ପ୍ରିୟତର ଅତି ପ୍ରିୟତମ ମୋର ।

ବାସ୍ତବିକ୍ ଯା ପରର ଅନୁଭୂତି ଥିଲା ମୋ ପାଇଁ ଅନନ୍ୟ । ଯଦିଓ ୮ ମେ, ୪ ଜୁନ୍‌ରେ ଯାଇଛୁ ପୁରୀ କିନ୍ତୁ ୧୪.୧୦.୨୦୧୦ର ଯାତ୍ରା ।

ହଠାତ୍ ବାହାରିପଡ଼ିଲୁ ଦିନ ୨ଟାରେ ପୁରୀ । ବାଇକ୍ ଧରି ରଣପୁରରେ ପହଞ୍ଚିଛୁ ଗାଡ଼ିର ପଛଟ୍ୟୁବ୍ ଲିକ୍ ହେଲା । କ'ଣ କରିବି ? ସଜାଡୁ ସଜାଡୁ ୫ଟା ୧୫ । ଦୀର୍ଘ ୨ ଘଣ୍ଟାର ରାସ୍ତା । ରାସ୍ତା ବହୁତ ଖରାପ । ନାଁ ଫେରିଯିବା । ଭାବୁଭାବୁ ମନକୁ ଆସିଲା ସାହସ । ତା' ପାଖକୁ ଆସିଛେ ମାନେ ଯିବା । ବାଟକଥା ସମ୍ଭାଳିବ ସିଏ ।

ସତକୁ ସତ ଆକସ୍ମିକ ଭାବେ ବାଟରେ ମିଳିଗଲେ ସହଯୋଗୀ । ସୁରୁଖୁରୁରେ ପୁରୀରେ ପହଞ୍ଚିଲୁ ୮ଟା ୧୫ରେ । ଅଥଚ ଲଜ୍ ମିଳୁନି । କ'ଣ କରିବି ? ହାତ ଯୋଡ଼ିଛି । ଦେଖାହେଲେ ଜଣେ ଶିକ୍ଷକ ବନ୍ଧୁ । ସାଦରରେ ପାଛୋଟି ନେଲେ ତାଙ୍କ ଘରକୁ । ଗାଡ଼ି ରଖି ଚାଲି ଚାଲି ଆସିଲୁ ଶ୍ରୀମନ୍ଦିର । ପ୍ରଭୁଙ୍କ ଦର୍ଶନ ମିଳିଗଲା । ବନ୍ଧୁଙ୍କ ଗୃହରେ ରାତ୍ରଭୋଜନ କଲୁ । ତା'ପରଦିନ ଠାକୁରଙ୍କୁ ଯଥାବିଧି ଦର୍ଶନ କଲୁ । ଶ୍ରୀମନ୍ଦିରରେ

ବସି ମହାପ୍ରସାଦ ସେବନ ଠାରୁ ଆରମ୍ଭ କରି ରାତ୍ରି ଭୋଜନ ସାରି ବନ୍ଧୁ ଗୃହକୁ ଗଲୁ ରାତ୍ର ଶୟନ ପାଇଁ ।

ଫେରିଲା ଦିନ । କହୁଥିଲି ମହାପ୍ରସାଦ ସେବନ କରି ଆସିବାପାଇଁ । ଅଥଚ ବିଳମ୍ବରେ ମହାପ୍ରସାଦ ବାହାରୁଥିବାରୁ ହୋଟେଲରେ ଖାଇ ଫେରିବୁ ଭାବି ଯେଉଁ ହୋଟେଲରେ ପହଞ୍ଚିଲୁ ପାଟିରେ ଦାନାଗଲାନି । ରଣପୁରରେ ପହଞ୍ଚି ଜଳଖିଆ ଖାଇଲୁ । ଛୋଟିଆ ଅଥଚ ଗୁରୁତ୍ୱପୂର୍ଣ୍ଣ ଅନୁଭବଟି ହେଲା - ଶ୍ରୀକ୍ଷେତ୍ରରୁ ମହାପ୍ରସାଦ ଅବମାନନା କଲେ ଦାନା ମିଳେ ନାହିଁ ।

ହଁ, ପୁରୀ ଯାଇଥାଏ ଜୁନ୍ ୪ରେ ଏକ କାର୍ଯ୍ୟକ୍ରମ ପାଇଁ । ହୋଟେଲରେ ରହିବାର ବ୍ୟବସ୍ଥା ହୋଇଥାଏ, କାର୍ଯ୍ୟକ୍ରମ ସରିଲା ୫ଟାରେ । ଜଣେ ବନ୍ଧୁ ଡାକିଲେ, ଆସ ମୋ ଗାଡ଼ିରେ ମନ୍ଦିର ଯିବା । ଠାକୁର ଦର୍ଶନ କରି ଫେରି ଆସିବା । ଅଥଚ ଆମ ଜିଲ୍ଲାରୁ ଯାଇଥିବା ବନ୍ଧୁମାନଙ୍କ ସହ ଯିବାକୁ ଠିକ୍ କରି ମୁଁ ତାଙ୍କ ସହ ଗଲିନାହିଁ । ସାଙ୍ଗମାନେ ସମୁଦ୍ର କୂଳ ଦେଇ ଶ୍ରୀମନ୍ଦିର ଯିବାକୁ ଠିକ୍ କଲେ । ଶ୍ରୀମନ୍ଦିରରେ ପହଞ୍ଚିଲୁ ୬ଟା ୧୫ରେ ।

ଠିକ୍ ଗରୁଡ଼ ସ୍ତମ୍ଭ ପାଖକୁ ଯାଇଛୁ ପହଡ଼ ପଡ଼ିଗଲା । ସାଥୀମାନଙ୍କର ଧୈର୍ଯ୍ୟ ନଥିଲା ଅପେକ୍ଷା କରିବାକୁ । ଫେରିଆସିଲୁ । ଅନୁତାପରେ ଛଟପଟ ହେଲି ମୁଁ । ଜଗନ୍ନାଥଙ୍କୁ ଦର୍ଶନ କରିବାକୁ ହେଲେ ଭାବ ଲୋଡ଼ା । ସାଙ୍ଗସାଥୀମେଳ ଖୋଜିଲେ ତା'ର ଦର୍ଶନ ମିଳେନା ।

ଅନ୍ତରର ଅନେକ ଅନ୍ୱେଷା ତା' ପାଖରେ ସମାଧାନ ହୁଏ । ତାକୁ ଦେଖିଦେଲେ ମନରେ ସୃଷ୍ଟି ହୁଏ ଅସରନ୍ତି ପ୍ରଶ୍ନ । ମୁଁ ତାକୁ କେବେବି ବୁଝିପାରେନା । ଏମିତି ଅଧାବୁଝା ସ୍ୱପ୍ନ ମଧ୍ୟରେ ମନରେ ଉଙ୍କିମାରେ ପ୍ରଶ୍ନଟିଏ - ଏ ହୃଦୟ ମୋର ଢାଳିଦେଲି ଆଜି ତୁମରି ପାଦେ ହେ ନାଥ । ବାପା ଜଗନ୍ନାଥଙ୍କର ତ ପାଦ ନାହିଁ । ହୃଦୟକୁ କେମିତି କେଉଁଠି ଢାଳିବି, କିପରି ଢାଳିବି । ମିମିର ଏଇ ଅନୁତ୍ତରିତ ପ୍ରଶ୍ନଟି ଏବେ ମଧ୍ୟ ଅନୁତ୍ତରିତ ହୋଇ ରହିଯାଏ ମୋ ପାଇଁ ।

ଖାଲି ପଦୁଟିଏ କହିପାରେ -

ଜଗନ୍ନାଥ ତୁ ମୋର, ତୁହି ମୋର ଏକାନ୍ତ ନିଜର,<br>ତୋର ପାଦପଦ୍ମରେ ଏ ଦୀନର ଆତ୍ମପଦ୍ମକୁ ସମର୍ପି ଦେଇ...<br>ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।

ଅଧ୍ୟାପକ, ଶିକ୍ଷକ ଶିକ୍ଷା ମହାବିଦ୍ୟାଳୟ<br>ବାଲେଶ୍ୱର - ୭୫୬୦୦୧<br>ଭ୍ରାମ୍ୟଭାଷ : ୯୧୨୪୫୦୧୭୫୧



# ଆକାଶ, ସମୁଦ୍ର ନୀଳ ନୀଳ : ପତିତପାବନ ଫର ଫର

ଦୀନବନ୍ଧୁ ସାହୁ

ଜଗତକୁ ଦେଖି, ପରଖି ଓ ଭଲପାଇ, ଜଗନ୍ନାଥଙ୍କ ପ୍ରତି 'ଆସ୍ପୃହା' ମୋର ଅନେକ ଦିନରୁ । ରଢ଼ିବାଦ ପ୍ରଥାଗତ ଭାବେ ପୂଜାପାଠ, ଭଜନ ଜଣାଣ ପ୍ରବଚନ ଗୀତା ଭାଗବତ ଶୁଣି, ଈଶ୍ୱରଙ୍କ ପ୍ରତି ମନ ସାମାନ୍ୟ ଢ଼ଳିଯିବା ଏକ ସାଧାରଣ କଥା । ଯେମିତି ଶ୍ମଶାନ ବୈରାଗ୍ୟ । କିନ୍ତୁ ଜଗନ୍ନାଥଙ୍କ ପ୍ରତି ଦୃଢ଼ ବିଶ୍ୱାସ, ନିଷ୍ଠା, ଐକାନ୍ତିକ ଭକ୍ତି କେତେ ଯେ ବଳବତ୍ତର, ତାହା କହି ହେବ ନାହିଁ । ଭାବରୁ ଭକ୍ତି, ପୁଣି ଭକ୍ତିରୁ ଅନୁଭୂତି ଯେ କୌଣସି ବ୍ୟକ୍ତିବିଶେଷ ପାଇଁ ବଡ଼ ଦୁର୍ଲଭ । ଏଣୁ ଜଗନ୍ନାଥଙ୍କ ପ୍ରତି ଏଇ 'ଆସ୍ପୃହା', ମୋ' ପାଇଁ ଅନ୍ତର୍ମନର ଏକ ଯାତ୍ରା । ଏହାର ଶେଷ କେଉଁଠି, ମୁଁ ବି ଜାଣେନା । ଯାହାର ମନରେ ଯେତେ ଆଲୋଡ଼ନ, ହୃଦୟରେ ଯେତେ ବ୍ୟାକୁଳତା ଓ ପ୍ରାଣରେ ପୀଡ଼ାର ଗଭୀରତା ଯେତେ ଅଧିକ, ସେ ହିଁ ଏ ଦୁର୍ଗମ ପଥର ନିଃସଙ୍ଗ ଯାତ୍ରୀ । ଏଠି ଉପଲବ୍ଧି ଓ ଅନୁଭବର ସାନ୍ଦ୍ରତା, ତା' ପାଇଁ ଏକ ଆହ୍ୱାନ ଓ ପ୍ରାଣର ସମ୍ବଳ ହୋଇଥାଏ ।

'ଗଛର ଛାଇ ଅଛି । ମୋର ଛାଇ ନାହିଁ । ହେ ପ୍ରଭୁ ମୋ ପିଲାଙ୍କୁ ଘଣ୍ଟ ଘୋଡ଼ାଇ ରଖ । ଠାକୁର ଘରୁ ମୋ' ବିଧବା ମାଆର ଏ କରୁଣ ପ୍ରାର୍ଥନା ପ୍ରାୟ ପିଲାଟି ବେଳରୁ ମୁଁ ଶୁଣି ଆସୁଥାଏ । ସଂଧ୍ୟାରେ ପ୍ରତିଦିନର ଭାଗବତ ପଢ଼ା, ମୋ' ଅବୁଝା ଆଖିରେ, କେତେଥର ଲୁହ ଆଣି ଦେଇଛି । ମାଟ୍ରିକ୍ ପାଶ୍ ପରେ ମୋ' ପାଠପଢ଼ାରେ ଡୋରି । ଅଭାବ ଅନାଟନ ଲାଗି ରହିଥାଏ । ମୋ'ଠାରୁ ପ୍ରାୟ ଆଠ ବର୍ଷ ବଡ଼, ମୋର ବଡ଼ଭାଇ ବହୁ ଆଗରୁ ଜୀବନ ଜୀବିକା ଦାୟରେ ଶ୍ରୀକ୍ଷେତ୍ର ପୁରୀରେ ରହୁଥା'ନ୍ତି । ମାଟ୍ରିକ ପାଶ୍‌ର ପ୍ରାୟ ଚାରି ପାଞ୍ଚ ବର୍ଷ ପରେ ୧୯୮୯ ମସିହା ବେଳକୁ, ମୁଁ ମଧ୍ୟ ପୁରୀ ଚାଲିଆସିଲି, ଭବିଷ୍ୟତ ଆଶାରେ । ପୁରୀରେ ଘରୋଇ ଶିକ୍ଷାଦାନର ସ୍ୱଳ୍ପ ରୋଜଗାରରେ ଚଳିଯିବା କଥା । ଏଠି ସବୁକିଛି ନୂଆ ନୂଆ । ଚିହ୍ନା ଜଣା ନଥାଏ । କିନ୍ତୁ ବଡ଼ଦାଣ୍ଡରେ ଥରେ ବୁଲି ଆସିଲେ, ପେଟ ପୂରିଯାଏ । ଏଇଠୁ ମୋ' ଜୀବନର ମୋଡ଼ ଆରମ୍ଭ ହୁଏ । ବାସେଳୀ ସାହିରେ, ଓଡ଼ିଆ ମଠର ଏକ ଭଡ଼ାଘରେ ରହୁଥାଏ ଭାଇ ଭାଉଜଙ୍କ ସହ । ପ୍ରତିଦିନ କର୍ମକ୍ଷେତ୍ରରୁ ଫେରିବା ବେଳେ, ସିଂହଦ୍ୱାର ନିକଟରେ, ନୀଳଚକ୍ର ପତିତପାବନଙ୍କୁ ଦର୍ଶନ କରି, ଦୁଇବାହୁ ତୋଳି ଶାନ୍ତି ଅନୁଭବ କରେ । ଲକ୍ଷ୍ମୀବଜାର ଦେଇ ଗଲାବେଳେ,

ଲୋକମାନଙ୍କ କୋଳାହଳ ବଡ଼ ଅଜବ ଲାଗେ । ଧୀରେ ଧୀରେ କିଛି କିଛି ଲୋକଙ୍କ ସହ ସଂପର୍କ ହୁଏ । ସମସ୍ତଙ୍କ ମୁହଁରେ ଯେମିତି ଚେନାଏ ହସ । ସତେ ଯେମିତି ଶ୍ରୀରଙ୍ଗା ଅଧରର ଚେନାଏ 'ଜଗନ୍ନାଥିଆ' ହସ । ଶୁଣିଛି, ଏଠି କୀଟଠୁ ବ୍ରହ୍ମ, ଜଡ଼ଠୁ ଜୀବନ, ସବୁ ଜଗନ୍ନାଥମୟ । ମଣିଷମାନଙ୍କ ଭାବଭଙ୍ଗୀ, ଚାଲିଚଳଣି, ନିଷ୍କପଟ ଆତିଥ୍ୟତା, ବାର ମାସରେ ତେର ପର୍ବ, ଲୋକ ସଂସ୍କୃତି, ପରଂପରା ସବୁଠି ନିଆରା ଶୈଳୀ । ଚାଲିରେ ମତ୍ତଗଜ ଚାଲି, ଭାବଭଙ୍ଗୀରେ ରସିକଠାଣି, ଭାଷାରେ ମଣି, ରଜା, ମହାର୍ଜା ! ସବୁ କଥାରେ ଉପମା, ଅଳଙ୍କାର, ସିମିଲ୍ ମେଟାଫର୍‌ର ପ୍ରୟୋଗ । ସବୁ ଜାତି, ଧର୍ମ, ଭାଷା, ବର୍ଣ୍ଣ ଓ ସଂପ୍ରଦାୟର ଅପୂର୍ବ ସମନ୍ୱୟ ଯେପରି । ସାଙ୍ଗ, ଭାଙ୍ଗ, ସଙ୍ଗୀତ, ପଙ୍ଗତ, ଗୋଟିପୁଅ, ଓଡ଼ିଶୀ, ଜାଗାଘର, ମଠ, ମନ୍ଦିରର ସହର ପୁରୀ ସହର । ୟା' ଭିତରେ ମୁଁ କେତେବେଳେ ଖୋଦ୍ 'ପୁରୀଆ' ବନି ସାରିଥାଏ, ମୋତେ ଜଣା ନାହିଁ । ବହୁ ବର୍ଗର ବନ୍ଧୁ ଜୁଟିଲେ । ରାଜନୀତିଜ୍ଞ, ଗବେଷକ, ସଙ୍ଗୀତଜ୍ଞ, ନାଟ୍ୟକାର, କବି ଓ କଳାକାରଙ୍କ ଗହଣରେ ନିଜର ଦୁଃଖ କଷ୍ଟ ଭୁଲି ଯାଉଥିଲି ।

ସତ କହିବାକୁ ଗଲେ, ଏଇ ଗୁଣୀ, ଜ୍ଞାନୀ, ବିଜ୍ଞ, ଭାବୁକ, ପଣ୍ଡିତଙ୍କ ଭଳି ସଜ୍ଜନମାନେ ହିଁ ମୋ' ପାଇଁ ଜଗନ୍ନାଥଙ୍କ ସାକ୍ଷାତ ପ୍ରତିନିଧି । ଏତେ ଅଭାବ ଭିତରେ ଥାଇ ବି ମୁଁ ନିଜକୁ ଭାଗ୍ୟବାନ ମନେ କରୁଥିଲି । ପୁରୀ ସମୁଦ୍ର କୂଳରେ ଥିବା ଭାରତ ସେବାଶ୍ରମର ଲାଇବ୍ରେରୀ କକ୍ଷରେ ଚାଲିଥାଏ, ଶନିବାର ସାହିତ୍ୟ ସଂଧ୍ୟା । ସେଠି କିଛି ପ୍ରତିଭାବାନ କବିଙ୍କ ସହ ବନ୍ଧୁତା ସ୍ଥାପନ ହୁଏ । ଲେଖାଲେଖିରେ ନିଶା ଏଇଠୁ ଆରମ୍ଭ । ଅନ୍ନପୂର୍ଣ୍ଣା, ଗୋପାଳି ଜାଗା, କଲେକ୍ଟରିଏଟ୍ କକ୍ଷ, ସର୍କିଟ୍ ହାଉସ୍ ସବୁଠି ପହଞ୍ଚିଯାଏ । ବନ୍ଧୁମାନଙ୍କ ସହ ଚା'ପିଆ, କବିତା ପାଠ, ଗୁଲିଖଟି । ମଣିଷକୁ, ଜୀବନକୁ, ସମୟକୁ, ଈଶ୍ୱରଙ୍କୁ ଖୁବ୍ ନିକଟରୁ ଦେଖିବା ଓ ଭଲ ପାଇବାର ଏକ ନିବିଡ଼ ଉପଲବ୍ଧି ଓ ଅନୁଭବ ଯେମିତି । ୧୯୯୨ ମସିହା ବେଳକୁ ଲବଣିଖିଆ ଛକ, ନୂଆମଠରେ କବିବନ୍ଧୁ ପବିତ୍ର ଓ ମୁଁ ଏକାଠି ରହୁଥାଉ । ଏସ୍.ସି.ଏସ୍ କଲେଜରେ ବି.ଏ.ର ଶେଷ ବର୍ଷ । ଜଗନ୍ନାଥ ବଲ୍ଲଭ ଲାଇବ୍ରେରୀକୁ ନିୟମିତ ପଢ଼ିବାକୁ ଯାଏ । ସେଠି ବହୁ ଉପାଦେୟ, ଦୁର୍ଲଭ ପୁସ୍ତକ ପଠନର ସୁଯୋଗ ପାଇଲି । ଜୀବନରେ ଭଲ ବନ୍ଧୁ, ଭଲ ପୁସ୍ତକ ପଠନର ପ୍ରାପ୍ତି, ଈଶ୍ୱରଙ୍କ କୃପାବିନା ସମ୍ଭବ ନୁହେଁ । ପୁରୀର କିଛି ଏଜୁକେସନ୍ କଂପ୍ଲେକ୍ସରେ ଶିକ୍ଷାଦାନ କରି କଷ୍ଟେମଷ୍ଟେ ଚଳି ଯାଉଥାଏ । ମଝିରେ ମଝିରେ ଗାଁ କଥା, ମାଆ କଥା ମନେ ପଡ଼ି କେମିତି ଛଟପଟ ଲାଗୁଥାଏ । ପରୀକ୍ଷା ଶେଷ ହେଇ

ସାରିଥାଏ । ଠିକ୍ ଏଇ ସମୟରେ ମୋର ଶରୀର ହଠାତ୍ ଅସୁସ୍ଥ ହୋଇପଡ଼ିଲା । ଭୀଷଣ ଜ୍ୱର । ଔଷଧ ଖାଇ ବି ଜ୍ୱର ବହୁଦିନ ରହିଲା । ଦେହ ମନ ଦୁର୍ବଳ । ଅତ୍ୟଧିକ ମାନସିକ ଚାପ । ମନସ୍ଥ କଲି, ପୁରୀ ଛାଡ଼ି ଗାଁକୁ ଯିବି । ପୁରୀ ଛାଡ଼ିବାର ଠିକ୍ ପୂର୍ବଦିନ ରାତିରେ । ବଡ଼ଦାଣ୍ଡରେ ଏକା ଠିଆ ହୋଇଥାଏ, ଦିଗହରା, ଅବ୍ୟବସ୍ଥିତ ଜୀବନ ଜୀବିକାକୁ ନେଇ ଏକ ପ୍ରକାର ଭାଙ୍ଗି ପଡ଼ିଥାଏ । ମୋ' ଆଖିରୁ ଦୁଇଟୋପା ଲୁହ ଝରିଗଲା । ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ପ୍ରାଣ କାନ୍ଦି ଉଠିଲା । 'ହେ ଶରଣ ରକ୍ଷଣ ମହାବାହୁ ! ମୋ ପାଇଁ ତୁମର କ'ଣ କିଛି ବିଚାର ନାହିଁ ?'

ନିରାଶରେ ଫେରିଲି ଗାଁକୁ । କିଛିଦିନର ବିଶ୍ରାମ ପରେ ସବୁକିଛି ଠିକ୍‌ଠାକ୍ ଲାଗିଲା । ଘରେ ସତୁରି ବର୍ଷର ମାଆ ବୁଢ଼ୀଟି । ମତେ ଦେଖି କାନ୍ଦିଲା । କହିଲା, 'ଧନରେ, ପୁରୀରେ ତୋ' ଦେହ ପା' ଭଲ ରହୁନି । ତୁ ଏଇଠି, ମୋ' ପାଖରେ ରୁହ ।' ସବୁକିଛି ସ୍ୱାଭାବିକ, ସ୍ଥିର ହେଇ ଆସିବା ବେଳକୁ, ହଠାତ୍ ଜଗନ୍ନାଥଙ୍କୁ ନେଇ ଏକ ଅଦ୍ଭୁତ, ଅବିସ୍ମରଣୀୟ ଘଟଣାଟିଏ ଘଟିଲା । ତାହା ପୁଣି ସ୍ୱପ୍ନ ମାଧ୍ୟମରେ । ୧୯୯୩ ମସିହା, ମାର୍ଚ୍ଚ ମାସର କଥା । ବୋଧହୁଏ, କୌଣସି ଏକ ଶୁକ୍ରବାରର ପାହାନ୍ତି ପ୍ରହର । ଗଭୀର ନିଦ୍ରିତ ଅବସ୍ଥାରେ ମୁଁ ସ୍ୱପ୍ନ ଦେଖୁଚି, ପୁରୀ ସମୁଦ୍ର କୂଳରେ ମୁଁ ଏକାକୀ ଠିଆ ହୋଇଥାଏ । ହଠାତ୍ ସମୁଦ୍ରର ଉତ୍ତାଳ ଲହଡ଼ି ସବୁ ମାଡ଼ି ଆସି, ମୋତେ ଭସାଇ ନେଲା । ସେ ଲହଡ଼ିରେ ମୁଁ ଭାସି ଯାଉ ଯାଉ, ଦେଖିଲି, ନୀଳ ନୀଳ ଲହଡ଼ି ସବୁ ଦିଗ୍‌ବଳୟ ଟପି ଆକାଶ ଆଡ଼କୁ ମାଡ଼ି ଚାଲିଛନ୍ତି ଏବଂ ଆଶ୍ଚର୍ଯ୍ୟ ଭାବେ, ଆକାଶର ଲହଡ଼ି ଦୁଇ ଭାଗ ହୋଇଯାଉଛି । ତା'ମଝିରେ ମହାପ୍ରଭୁଙ୍କ ଶ୍ରୀମନ୍ଦିରର ଦଧିନଉତି, ନୀଳଚକ୍ର ଓ ପତିତପାବନ ବାନା ଫର ଫର ହୋଇ ଉଡ଼ିବାର ଅପୂର୍ବ ଦୃଶ୍ୟ । ଏହିଭଳି ସେ ଦୃଶ୍ୟ ଶୂନ୍ୟରେ ବାରମ୍ବାର ଘଟିଚାଲିଛି । ହଠାତ୍ ମୋର ନିଦ ଭାଙ୍ଗିଗଲା । ମୁଁ ସଂପୂର୍ଣ୍ଣ ପ୍ରକୃତିସ୍ଥ ଅବସ୍ଥାରେ । ତଟସ୍ଥ, ବିମୂଢ଼ ଓ ବିସ୍ମୟାଭିଭୂତ । ଆଉ ଶୋଇପାରିଲି ନାହିଁ । ଆଖିରେ ଲୁହ ଆସିଗଲା । ଯା'ର ରୂପ ନାହିଁ, ତା'ର ପୁଣି ରୂପ ଅନେକ ! ଯେମିତି, ତାଙ୍କ ରୂପ - ମହାକାଶ ନୀଳ ଶୂନ୍ୟତାର/ତାଙ୍କ ସ୍ଥିତି - ଅଛି ନାହିଁ, ସ୍ଥିତିହୀନ ନିରାଧାରେ, ଆରମ୍ଭ କି ଶେଷ ନାହିଁ ଯା'ର !! ସାରାଦିନ ସେ ଦୃଶ୍ୟ ମନକୁ ଆଚ୍ଛନ୍ନ କରି ରଖିଥାଏ । ମୋ' ଭିତରେ ଅଫୁରନ୍ତ ଉତ୍ସାହ, ବଳ, ସାହସ, ବିଶ୍ୱାସ ଓ ଆନନ୍ଦ ଖେଳି ଯାଇଥିଲା । ହୃଦୟର ଆଲୋଡ଼ନ, ଉଦ୍‌ବେଳନ ବୋଲ ମାନୁ ନଥାଏ । ପ୍ରାୟ ଛୟାଳିଶ ଧାଡ଼ିର

ଏକ କବିତା ଲେଖି ହୋଇଗଲା । ପରେ କଲିକତାରୁ ନିୟମିତ ପ୍ରକାଶ ପାଉଥିବା ସାହିତ୍ୟ ପତ୍ରିକା 'ପ୍ରତିବେଶୀ'ର ୧୯୯୫, ଜାନୁଆରୀ ସଂଖ୍ୟାରେ 'ପୁରୀ' ଶୀର୍ଷକରେ ଏଇ କବିତାଟି ପ୍ରକାଶ ପାଇ, କିଛି ପାଠକୀୟ ଆଦୃତି ଲାଭ କରିଥିଲା । 'ପୁରୀ' କବିତାର ପ୍ରଥମରୁ କେତୋଟି ଧାଡ଼ି ଉଲ୍ଲେଖ କରିବାକୁ ଉଚିତ୍ ମନେ କରୁଛି । ଯେପରି -

ଯେତେଥର ନିବିଡ଼ ଭାବେ କୋଳେଇ ନେଇଚି
ତା' ସାମୁଦ୍ରିକ ଢେଉ ମାନଙ୍କୁ
ସେତେ ଥର ଆତ୍ମହତ୍ୟା ଲୋଡ଼ିଚି
ଅନନ୍ତ ଶୋଷରେ,
ଏବଂ ପୁନଶ୍ଚ ଜଳର ହିରଣ୍ୟ ଗର୍ଭରୁ
କେହି ଜଣେ ସ୍ୱପ୍ନଚାରୀ ଶିଶୁଟିଏ ଭଳି
ମୋତେ ତୋଳି ଧରିଚି
ଆଶ୍ଚର୍ଯ୍ୟ ଭାବେ, ତା' ଅଦୃଶ୍ୟ ବାହୁ ବନ୍ଧନୀରେ !!

ମନକଥା, ମନରେ ରହିଗଲା । ଏ ସ୍ୱପ୍ନର କଥା, ମୁଁ ଆଜିଯାଏଁ କାହାକୁ କହିନି । ପ୍ରତି ମୁହୂର୍ତ୍ତରେ ଅନୁଭବ କରିଚି ଯେ, ମୋର ଯେତେ ସବୁ ଭାବନା, କଳ୍ପନାର ରୂପକାର, ସେ ନିଜେ ! ସେ ଯେତିକି ଲୌକିକ, ସେତିକି ଅଲୌକିକ । ପୁଣି ସେତିକି ରହସ୍ୟମୟ ଓ ବର୍ଣ୍ଣନାନୀତ । ହେ ଜଗନ୍ନାଥ ସ୍ୱାମୀ, ତମେ ହିଁ ମୋର ଅତୀତ, ଭବିଷ୍ୟତ, ବର୍ତ୍ତମାନ । ମୋର ପ୍ରତିଟି ଅସହାୟତା, ଉତ୍ସାହ, ଭଙ୍ଗୁରତା, ସୃଜନଶୀଳତା, ସାମର୍ଥ୍ୟ ଓ ଅସାମର୍ଥ୍ୟର ଉତ୍ସ, ତମେ ହିଁ ତମେ, କେବଳ ତମେ ! ସର୍ବମଙ୍ଗଳ ଜଗନ୍ନାଥଙ୍କ କୃପାରୁ ମୁଁ ଆଜି ବେଶ୍ ଭଲରେ, ଶାନ୍ତିରେ ଅଛି । ବୟାନବେ ବର୍ଷର ମାଆ ମୁହଁରେ ହସ, ଆଜି ପ୍ରଭୁଙ୍କର ଆଶୀର୍ବାଦ ଓ କରୁଣା ହୋଇ ଝରିପଡୁଚି, ମୋ' ଉପରେ । କିଛି ପାର୍ଥିବ ସଫଳତା ଓ ଅପାର୍ଥିବ ଆନନ୍ଦର ପ୍ରାପ୍ତି, ମୋତେ ମିଳିପାରିଚି । କିନ୍ତୁ ସ୍ୱପ୍ନରେ ଦେଖିଥିବା ସେ ଦିନର ସେଇ ଦୃଶ୍ୟ କଥା ମନେ ପଡ଼ିଲେ, ଦେହ ଶିହରି ଉଠୁଚି, ମନ, ପ୍ରାଣ ଉଦ୍‌ଭାସି ଉଠୁଚି, ଆଜି ବି ଅସରନ୍ତି ପୁଲକରେ, ବିସ୍ମୟରେ !!

ପଦ୍ମାବତୀ (କାମନା ସାହି)
ନୟାଗଡ଼ - ୭୫୨୦୬୩
ଭ୍ରାମ୍ୟଭାଷ : ୯୧୭୮୫୮୫୦୦୮



# ଜୟ ଜୀବନ

## ମହେନ୍ଦ୍ର କୁମାର ତ୍ରିପାଠୀ

(ମଣିଷ ଜୀବନ କେଡ଼େ ତୁଚ୍ଛ ହେ ମହାବାହୁ ! ନିଃଶ୍ୱାସ-ପ୍ରଶ୍ୱାସ ପବନକୁ ତୋଳଉଛ ତ ତମେ ! ସେଇ ପବନ ଟିକକ ତ ତମ ଦୟା-ତମ ଅବଦାନ ! ପ୍ରାଣସାରା ସଞ୍ଚରୁ ଥିବା ପବନ ମଣିଷ ପାଇଁ ମହାର୍ଘ ଦାନ ହେ ସାଆନ୍ତେ ! ଭକ୍ତର ନିଃଶ୍ୱାସରେ ବିଶ୍ୱାସ ଭରି, ଇହ ଜଗତରେ ଲୀଳା-ଖେଳା ପାଇଁ ପୁଣି ଛାଡ଼ିଦେବା, ପୃଥିବୀର ବିଷର୍ଣ୍ଣ ମୁହଁରେ ପୁଣି ହସ ଉକୁଟି ଉଠିବା ଏ ସବୁତ ପ୍ରଭୁଙ୍କ ମହିମା-ମହାନତା । ଜୀବନ ଫେରିବା କ'ଣ ଏତେ ସହଜ ଯେ ଜଗତ ନିୟନ୍ତା । ତମ କରୁଣା ନହେଲେ କିଏ ବା ଫେରିପାଇବ ତୁଟି ଯାଇଥିବା ବିଶ୍ୱାସ, ନିଃଶବ୍ଦ ହେଇ ଆସୁଥିବା ନିଃଶ୍ୱାସ, ମହମହ ମହକୁଥିବା ଜୀବନ-ସୁବାସ !)

ଡକ୍ଟର ହେମନ୍ତ କୁମାର ଛୋଟରାୟ ଜଣେ ଜଗନ୍ନାଥ ଭକ୍ତ ଓ ଆଧ୍ୟାତ୍ମିକ ପୁରୁଷ । ଅଧୁନା ସରକାରୀ ପାଠ୍ୟପୁସ୍ତକ ମୁଦ୍ରଣ କାର୍ଯ୍ୟାଳୟ, ଭୁବନେଶ୍ୱରରେ କର୍ତ୍ତବ୍ୟରତ । ସାହିତ୍ୟ କ୍ଷେତ୍ରରେ ଅନନ୍ୟ ପାରଦର୍ଶିତା । 'ପିଲାଙ୍କ ଜଗନ୍ନାଥ' ପୁସ୍ତକ ତାଙ୍କର ବେଶ୍ ଆଦୃତ । 'ଚନ୍ଦ୍ରଶେଖର ରଥଙ୍କ ସାହିତ୍ୟରେ ରହସ୍ୟବାଦ' ଶୀର୍ଷକରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସମ୍ମାନଜନକ ଡକ୍ଟରେଟ୍ ଉପାଧି ପାଇଥିବା ବ୍ୟକ୍ତିତ୍ୱ ଡକ୍ଟର ହେମନ୍ତ କୁମାର ଛୋଟରାୟ ।

ସବୁଦିନ ପରି ସେଦିନ ବି ବିଭିନ୍ନ ସଭା-ସମିତି କରି ସଂଧ୍ୟାରେ ଘରକୁ ଫେରିଲେ । ପବିତ୍ର ଶ୍ରୀକ୍ଷେତ୍ରର ନବକଳେବର ରୋଡ଼ ସ୍ଥିତ ମଧୁବନରେ ତାଙ୍କର ଘର । ଛାତିରେ ଟିକିଏ ପୀଡ଼ା ଅନୁଭବ କଲେ । ହ, କ'ଣଟେ ହେଉଥିବ ! ଏମିତି ତ କେତେ କେତେ ପୀଡ଼ା ଏ ଦେହରେ ମରିଛି । କିନ୍ତୁ ସେ ପୀଡ଼ା ବଢ଼ିଲା କ୍ରମଶଃ । ଶାନ୍ତିରେ ଶୋଇପାରିଲେ ନାହିଁ ଆଦୌ । ଭାରି ଅଶ୍ୱସ୍ତି ଲାଗୁଛି । ରାତିରେ ଘର ଭିତରଟା ସାରା କେତେ ବୁଲିବେ ଯେ ! କଷ୍ଟ ବଢ଼ିବାରୁ ଶେଯ ଧରିଲେ । ରାତି ଦୁଇଟା ବେଳକୁ ଛାତି ଜାକି ଧରି ତଳେ ଗଡ଼ିଗଲେ । ଅଣନିଃଶ୍ୱାସୀ ଲାଗୁଛି । ଦେହସାରା ଝାଳ । ଶ୍ରାବଣ ବର୍ଷାପରି । ପରିବାର ଲୋକେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଘର ସାମ୍ନାରେ ଶ୍ରୀକୃଷ୍ଣ ଘରୋଇ ଚିକିତ୍ସାଳୟ । ଡାକ୍ତର ଅର୍ଜୁନ ଦାସଙ୍କ ଘରୋଇ ଚିକିତ୍ସାଳୟ ।

ଜଣେ ସହାନୁଭୂତିଶୀଳ ପ୍ରତିବେଶୀ ଭାବରେ ପରାମର୍ଶ ଦେଲେ ଆଦିତ୍ୟ କେୟାର ହସ୍‌ପିଟାଲ, ଭୁବନେଶ୍ୱର ନେବା ପାଇଁ । ତାଙ୍କରି ଆମ୍ବୁଲାନ୍ସରେ ଭୁବନେଶ୍ୱର ଆଦିତ୍ୟ କେୟାର ହସ୍‌ପିଟାଲ ନିଆଗଲା । ପହଞ୍ଚିବା ବେଳକୁ ଭୋର୍ ହେଇଆସୁଛି । ତାଙ୍କୁ

ତୁରନ୍ତ ବେଡ଼ ମିଳିଗଲା ଓ ସିଧା ଇଣ୍ଟେନସିଭ୍ କେୟାର ୟୁନିଟ (ଆଇ.ସି.ୟୁ)କୁ ନିଆଗଲା । କେବଳ ନାଡ଼ି ଚାଲିଛି ଯାହା । ମୃତବତ୍ ପଡ଼ି ରହିଛନ୍ତି ଡକ୍ଟର ଛୋଟରାୟ । ଡାକ୍ତରୀ ଉପଚାର ପରେ ଅବସ୍ଥା ଭଲ ଆଡ଼କୁ ଆସିଲା । ଦୁଇଦିନ ପରେ କଥାବାର୍ତ୍ତା କଲେ । ଆଇ.ସି.ୟୁ. ରୁ ଡାକ୍ତର ଛାଡ଼ କରି ସାଧାରଣ ୱାର୍ଡ଼ରେ ରଖିଲେ ଓ ଚିକିତ୍ସା ଚାଲିଲା । ତର୍ଜମାରୁ ଜଣାପଡ଼ିଲା ମୁଖ୍ୟ ରୂପରେ ହୃଦ୍‌ବିକାର ରୋଗ ଓ ଦ୍ୱିତୀୟରେ ଫୁସ୍‌ଫୁସ୍‌ରେ ପାଣି ଜମା ହୋଇଯାଇଛି । ଏଣୁ ଏକକାଳୀନ ଦୁଇ ଦୁଇଟି ରୋଗର ଚିକିତ୍ସା ଚାଲିଲା । ହୃଦ୍‌ବିକାର ରୋଗ ପାଇଁ ଔଷଧ ସହିତ କେବେ ଅପରେସନ୍ ହେବ ତା'ପାଇଁ ତାରିଖ ସ୍ଥିର ହେବା ପାଇଁ ବିଚାର ବିମର୍ଶ ଚାଲିଲା ଓ ଫୁସ୍‌ଫୁସ୍‌ରେ ଜମା ହୋଇଥିବା ପାଣି ବାହାର କରିବା ପାଇଁ ଡାକ୍ତର ବିନ୍ଧାଣୀଙ୍କୁ ଦାୟିତ୍ୱ ଦିଆଗଲା । ସେହିପରି ଜେନେରାଲ ୱାର୍ଡ଼ରେ ରହି ସିରଞ୍ଜରେ ଫୁସ୍‌ଫୁସ୍‌ରୁ ପାଣି ବାହାରିବାର ବ୍ୟବସ୍ଥା ହେଲା ।

ସେଦିନ ଡାକ୍ତର ବିନ୍ଧାଣୀ ପ୍ରସ୍ତୁତ । ସିରିଞ୍ଜ ପ୍ରସ୍ତୁତ ଓ ରୋଗୀ ବି ପ୍ରସ୍ତୁତ । ରୋଗୀ ଏବେ ସମ୍ବାଦପତ୍ର ବି ପଢ଼ିଲେଣି । ଭଲ ଭାବରେ କଥା ବି ହେଲେଣି । ପିଠି ପଟେ ଫୁସ୍‌ଫୁସ୍‌କୁ ସିରିଞ୍ଜ ପ୍ରବେଶ କଲା ଓ ଡାକ୍ତର ବିନ୍ଧାଣୀ ପିଷ୍ଟନ୍ ଟାଣିଲେ । ପ୍ରଥମ ଥର ସିରିଞ୍ଜରେ ସିରିଞ୍ଜିଏ ପାଣି ବାହାରି ଆସିଲା । ପରେ ପୁଣି ଥରେ ସିରିଞ୍ଜରେ ଟାଣିଲେ । ଏଥର ଲାଲ ବର୍ଣ୍ଣର ରସ କିଛି ଆସିଲା । ରୋଗୀ ପାଖରେ ଅହରହ ପହରା ଦେଉଥିବା ତାଙ୍କ ସାନ ଭାଇ ସୁଶାନ୍ତ ଏକଥା ଦେଖି ଡାକ୍ତର ବିନ୍ଧାଣୀଙ୍କୁ ପାଣି ବଦଳରେ ଏହା କ'ଣ ବୋଲି ପଚାରିବାରୁ ସେ କିଛି ନୁହେଁ ବୋଲି ଡକ୍ଟର ବିନ୍ଧାଣୀ କହିଲେ । ଏଥିରୁ ହିଁ ପ୍ରକୃତ ଦୁଃଖ ଆରମ୍ଭ ହୁଏ ।

ସିରିଞ୍ଜରେ ରକ୍ତ ଟାଣିବା ପରେ ହେମନ୍ତ ବାବୁଙ୍କ ଚାରିଦିଗ ଅନ୍ଧାର ଦିଶିଲା । ସେ ପଢୁଥିବା ସମ୍ବାଦପତ୍ରଟିର ଅକ୍ଷର ଗୁଡ଼ାକ କ୍ରମଶଃ ଅସ୍ପଷ୍ଟ ଦିଶିଲା । ଦେହରୁ ଗମ୍‌ଗମ୍ ଝାଳ ବାହାରିଲା । ଛାତି କ'ଣ ହେଇଯାଉଛି ବୋଲି ଚିତ୍କାର କଲେ । ତା'ପରେ ସଂଜ୍ଞାହୀନ । ତୁରନ୍ତ ତାଙ୍କୁ ଜେନେରାଲ ୱାର୍ଡ଼ରୁ ପୁଣି ଆଇ.ସି.ୟୁ.କୁ ନିଆଗଲା । ପରୀକ୍ଷା-ନିରୀକ୍ଷା ଚାଲିଲା । ଯେଉଁ ବନ୍ଧୁ-କୁଟୁମ୍ବମାନେ ରୋଗୀର ଉନ୍ନତ ସ୍ୱାସ୍ଥ୍ୟାବସ୍ଥା ଦେଖି ସ୍ୱ ସ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କରିଥିଲେ ଓ ଆଶ୍ୱସ୍ତି ପ୍ରକାଶ କରିଥିଲେ ସେମାନେ ସମସ୍ତେ ପୁଣି ଆଦିତ୍ୟ-କେୟାର ହସ୍‌ପିଟାଲକୁ ଧାଇଁଲେ । ଡାକ୍ତର କହୁଛନ୍ତି କେବଳ ରକ୍ତ ଦରକାର । ଫୁସ୍‌ଫୁସ୍ କଣା ହେଇ ରକ୍ତ ଝରୁଛି ଓ ଫୁସ୍‌ଫୁସ୍ ସାରା ରକ୍ତ ଜମା ହେଇଗଲାଣି । ରୋଗୀ ସିରିୟସ୍ । ବଞ୍ଚେଇ ରଖି ହବନି ! ହେ ଭଗବାନ ! ହୃଦ୍ ବିକାର ରୋଗ ପରେ ପୁଣି କ'ଣ ଫୁସ୍‌ଫୁସ୍‌ରେ କଣା ! ବଞ୍ଚିବାର ଆଶା ନେଇ,

ଜୀବନର କିରଣ ସଞ୍ଚାର କରି ପୁଣି ଅମାବାସ୍ୟାର ଅନ୍ଧାର ପ୍ରଭୁ ! ପ୍ରିୟ ପରିଜନଙ୍କ ମୁଣ୍ଡ କାମ କରୁନି । ଡାକ୍ତରମାନେ ପରାମର୍ଶ ଦେଉଛନ୍ତି କେବଳ ଜଗନ୍ନାଥଙ୍କୁ ଡାକ । ତାଙ୍କ ବିନା ଗତ୍ୟନ୍ତର ନାହିଁ, ଏ ଦାରୁଣ-ତିରୋଟ ଅବସ୍ଥାରେ । ଡକ୍ଟର ଛୋଟରାୟଙ୍କ ଜୀବନ ଏକ ସଙ୍ଗୀନ ମୋଡ଼ ଦେଇ ଗତି କରୁଛି । ଦୈବୀ କୃପା ନହେଲେ ବଞ୍ଚେଇ ରଖିବା କଷ୍ଟକର ।

ସାନଭାଇ ସୁଶାନ୍ତ ବିକଳରେ ରକ୍ତ ଖୋଜି ଖୋଜି ଛଅ ନମ୍ବର ଡାକ୍ତରଖାନା ଯାଇଛି । ରକ୍ତ ଭଣ୍ଡାରର ପରିଚାଳକ ତାଙ୍କୁ ଫେରଉଛନ୍ତି ! ଅନୁନୟ ବିନତିକୁ ଶୁଣିବା ଉପରେ ନାହାନ୍ତି ସେ ! ରକ୍ତ ବଦଳରେ ରକ୍ତ ଦେବାଟାକୁ ସେ ଗ୍ରହଣ କଲେ ।

ଠିକ୍ ସେଇ ସମୟରେ ସତ୍ୟବାଦୀ ବିଧାୟକ ପ୍ରସାଦ ହରିଚନ୍ଦନ କୌଣସି ସୂତ୍ରରୁ ଖବର ପାଇ ଆଦିତ୍ୟ କେୟାର ହସ୍‌ପିଟାଲକୁ ଯାଇଛନ୍ତି ସୌଜନ୍ୟ ସାକ୍ଷାତ୍ ପାଇଁ । ଅବସ୍ଥା ଭଲ ଆଡ଼କୁ ଯାଇଛି ବୋଲି ତାଙ୍କ ପାଖରେ ଖବର ଅଛି । ତା'ପରେ ଅବସ୍ଥା ବିଗିଡ଼ି ଯାଇଛି ବୋଲି ସେ ଜାଣିନାହାନ୍ତି । ପରିବାର-ପରିଜନମାନେ ଧାଁ ଧାଉଡ଼ - ବ୍ୟସ୍ତ ବିବ୍ରତରେ ରକ୍ତ ସଂଗ୍ରହ ପାଇଁ ବ୍ୟାକୁଳ । ଏ ପରିସ୍ଥିତିରେ ମାନ୍ୟବର ବିଧାୟକ ମହୋଦୟ କଥାଟାକୁ ହୃଦୟଙ୍ଗମ କରି ଛଅ ନମ୍ବର ଡାକ୍ତରଖାନାକୁ ଫୋନ କରିବାରୁ ରକ୍ତଟାଏ ବିନା ବଦଳରେ ମିଳିଗଲା । ଏହିପରି ଦୁଇଟା ରକ୍ତ ଧରି ସୁଶାନ୍ତ ଡାକ୍ତରଖାନାକୁ ଆସିବା ପରେ ଚିକିତ୍ସା ଆରମ୍ଭ ହେଲା । ଡାକ୍ତର କହୁଛନ୍ତି ଆଉ ରକ୍ତ ଦରକାର, ଆଉ ! କାରଣ ଫୁସ୍‌ଫୁସ୍‌ର କଣାଟି ସବୁ ରକ୍ତକୁ ଜମା କରି ଦେଉଛି ଫୁସ୍‌ଫୁସ୍ ଭିତରେ । କମ୍ପ୍ୟୁଟର ସ୍କ୍ରିନ୍, ପଲ୍‌ସ ରିଡ଼ିଂ, ଇଣ୍ଟରକମ୍ ପ୍ରୋଗ୍ରେସ ଓ ରିଡ଼ିଙ୍ଗସ୍ ସହିତ କାର୍ଡ଼ିଆକ୍ ଗ୍ରାଫିକ୍ସ ଉପରେ ବି ନଜର ରଖାଯାଇଛି । ପରିସ୍ଥିତି ସ୍ଥିର ହେଲେ ସିନା ଅପରେସନ୍ ହେବ । ବନ୍ଧୁ-ବାନ୍ଧବ, ପ୍ରିୟ-ପରିଜନମାନଙ୍କ ଧାଡ଼ି ଛୁଟିଲା ରକ୍ତ ବଦଳରେ ରକ୍ତ ସଂଗ୍ରହ କରିବାକୁ । ବୋତଲ ବୋତଲ ରକ୍ତ ଆସୁଥାଏ, ଦିଆଯାଉଥାଏ । ଅବସ୍ଥାର ପରିବର୍ତ୍ତନ କିନ୍ତୁ ଘଟୁ ନଥାଏ । ସଙ୍କଟାପନ୍ନ ।

ଧର୍ମପତ୍ନୀ ନିର୍ମଳା ଫତେସିଂ, ଜଗନ୍ନାଥ ତତ୍ତ୍ୱଦର୍ଶୀ ଓ ପ୍ରବଚିକା । ତିନୋଟି ଛୋଟ ଛୋଟ ଝିଅ, ବାପା ବାବାଜୀ ବୃନ୍ଦାବନ ଆଦିତ୍ୟ କେୟାର ହସ୍‌ପିଟାଲର ତଳକୁ ଓହ୍ଲେଇ ଆସିଲେ । ଛାତତଳେ ଶ୍ରୀଜଗନ୍ନାଥ, ଶ୍ରୀ ବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କର ଉତ୍ତୁଙ୍ଗ ମୂର୍ତ୍ତି । ରାଜାରାଜେଶ୍ୱର ବେଶରେ ଛିଡ଼ା ହୋଇଛନ୍ତି ଚତୁର୍ଦ୍ଧା ମୂର୍ତ୍ତି । ଗଛ କାଟର ଦୀପଟେ ଜଳୁଛି ଅହରହ । ନିରୁପାୟ ହୋଇ ଲୋଟି ପଡୁଛନ୍ତି ଠାକୁରଙ୍କ ପାଦତଳେ । ଠାକୁରେ ବଞ୍ଚାଅ ! ପବିତ୍ର ଶ୍ରୀକ୍ଷେତ୍ରରୁ ଆସିଛି । ତମର ଜୟ ଜୟକାର କରିଛି । ତମ ଗାରିମାକୁ ମହିମାମଣ୍ଡିତ କରି ପ୍ରବଚନ ଦେଇଛି । ଜଗନ୍ନାଥ ତତ୍ତ୍ୱକୁ ଗାଁ-ଗଣ୍ଡା, ସହର-

ବଜାରରେ ପ୍ରଚାର କରିଛି । ଶଙ୍ଖା-ସିନ୍ଦୂର ମୋର ଯେମିତି ଅମଳିନ ରହୁ ! ଏଇଠୁ ତୋ ଧାମକୁ ଦୁଃଖୀ, ଅକିଞ୍ଚନ ହେଇ ନ ଫେରେ ! ତମେ ବଞ୍ଚାଅ ଠାକୁର ! ନିରିମାଖୀ, ନିରୀହା ମୁଁ, ପ୍ରବଚନ ସଭାରେ ତମ ମହିମା କୀର୍ତ୍ତନ କରିଛି ରାତାରାତି । ନିରପରାଧ ସ୍ୱାମୀ ଓ ପରିବାରକୁ ଦଣ୍ଡ ଦିଅନି ଠାକୁର !

ଗଳାରେ ମଣ୍ଡିତ ଗେଣ୍ଡୁମାଳଟା ଧଡ୍ କିନା ତଳକୁ ଖସିଲା । ନିଆଁରେ ଘିଅ ପଡ଼ିବା ପରି ଦୀପଟା ଚକ୍ ଚକ୍ ହେଇ ଜଳିବାକୁ ଲାଗିଲା ଜୋର୍‌ରେ । ଚଉଦିଗ ଝୁଣା, ଦୟଣା, ଚନ୍ଦନ, ତୁଳସୀ ବାସ୍ନାରେ ମହକି ଉଠିଲା । ଜଗନ୍ନାଥ ରତ୍ନ ସିଂହାସନ ଉପରୁ ଓହ୍ଲେଇ ଆସୁଛନ୍ତି କି ? ଚଟାଣରେ ଢ଼ୋ ଢ଼ୋ ମୁଣ୍ଡ ପିଟୁଛି ନିର୍ମଳା । କାନ୍ଦି କାନ୍ଦି ଲୋଟି ଗଡୁଛି ବାରଣ୍ଡାଯାକ ।

ପରିଚାଳନା ନିର୍ଦ୍ଦେଶକ (ଏମ୍.ଡ଼ି) ଡାକ୍ତର ମହେନ୍ଦ୍ର ପ୍ରସାଦ ତ୍ରିପାଠୀଙ୍କର ବି ମୁଣ୍ଡ କାମ କରୁନି । ସେ ମୋବାଇଲ୍ ଫୋନଟାକୁ ଧରି ଟିପାଟିପି କରୁଛନ୍ତି ଓ ବ୍ୟସ୍ତଥିବା ପରି ଜଣାପଡୁଛନ୍ତି । ସମସ୍ତଙ୍କ ମୁହଁରେ ବ୍ୟସ୍ତତା । ଏରୋଡ୍ରମ୍ ପଡ଼ିଆରେ ଅଷ୍ଟ୍ରେଲିଆରୁ ଆସିଥିବା ଏରୋପ୍ଲେନ୍‌ଟା ଅବତରଣ କଲା । ସେଥିରୁ ସହାସ୍ୟ ବଦନରେ ଓହ୍ଲେଇ ଆସୁଛନ୍ତି ସର୍ଜରୀ ସ୍ପେଶାଲିଷ୍ଟ ଡାକ୍ତର ବିପିନ ମହାନ୍ତି ।

ଯଦିଓ ଡାକ୍ତର ବିପିନ ମହାନ୍ତି ଅଷ୍ଟ୍ରେଲିଆରୁ ଫେରିବାର ତାରିଖ ହୋଇନଥିଲା ତଥାପି କାହିଁକି କେଜାଣି ସେ ଫେରିଆସିଲେ । କ୍ଳାନ୍ତଶ୍ରାନ୍ତ ଯାତ୍ରୀଟି ତା'ର ଯାତ୍ରା ଶେଷ ହେବାପରେ ବିଶ୍ରାମ ପାଇଁ ଚାହେଁ । ମାତ୍ର ସେ ତାଙ୍କ କାର୍ ଡ୍ରାଇଭରକୁ ଆଦେଶ ଦେଲେ ଆଦିତ୍ୟ କେୟାର ହସ୍‌ପିଟାଲକୁ ନେବା ପାଇଁ । ଆଦିତ୍ୟ କେୟାର ହସ୍‌ପିଟାଲରେ ସେ ହେଉଛନ୍ତି ଅତିଥି ଡାକ୍ତର । ମାସକରେ ୨-୪ ଥର ଆସନ୍ତି । ସୁପର ହାର୍ଟ ସ୍ପେଶାଲିଷ୍ଟ ଇନ୍ ସର୍ଜରୀ ।

ହସ୍‌ପିଟାଲରେ ପହଞ୍ଚିବା ବେଳକୁ ଜଗନ୍ନାଥଙ୍କ ପାଦତଳେ ଗୁଡ଼ାଏ କ୍ରନ୍ଦନରତ ମଣିଷ ମୁଣ୍ଡ ପିଟୁଛନ୍ତି । ସେ ସିଧା ଚାଲିଲେ ଉପର ମହଲାକୁ । ଯେଉଁଠି ଜେନେରାଲ ୱାର୍ଡ଼ ଓ ଆଇ.ସି.ୟୁ । ଡାକ୍ତର ମହାନ୍ତିଙ୍କୁ ଦେଖି ପରିଚାଳନା ନିର୍ଦ୍ଦେଶକ ମହେନ୍ଦ୍ର ତ୍ରିପାଠୀଙ୍କର ଆଖି ଅବିଶ୍ୱସନୀୟତାରେ ଝଲ୍‌ସି ଉଠିଲା । ମୃତ ପ୍ରାଣରେ ଜୀବନର ସଞ୍ଚାର ହେଲା କି ? ଏଣୁ କାଳବିଳମ୍ବ ନ କରି ତାଙ୍କୁ ହେମନ୍ତ ବାବୁଙ୍କ ବେଡ଼ ପାଖକୁ ନେଇଗଲେ । କାର୍ଡ଼ିଓଲୋଜିକାଲ୍ ଯନ୍ତ୍ରରେ ଟିକିନିଖି ଦେଖିସାରିବା ପରେ ଅପରେସନ୍ ପାଇଁ ସଜବାଜ ଚାଲିଲା । ରକ୍ତ ସେମିତି ବୁହା ଚାଲିଥାଏ ବୋତଲ ବୋତଲ । ଫୁସ୍‌ଫୁସ୍‌ରୁ ନଳୀ ସଂଯୋଗ କରି ଜମା ହୋଇଥିବା ରକ୍ତ ଗୁଡ଼ାକୁ ନଳୀବାଟେ ବାହାର କରି ଦିଆଗଲା । ଅପରେସନ୍ ବି ଚାଲିଲା । ଅପରେସନ୍ ସଫଳ ହେବ କି ନା ଏ ବି ଗୋଟେ ଚିନ୍ତା ।

ପ୍ରଭୁ ଜଗନ୍ନାଥଙ୍କ ପାଦତଳ ଛାଡ଼ି କେହି କୁଆଡ଼େ ଘୁଞ୍ଚୁନଥା'ନ୍ତି । ବାସ୍ ଅପରେସନ୍ ସକ୍‌ସେସ୍ । ତଥାପି ଅବଜରଭେସନ୍ ପରେ ଯାହା କିଛି କରିହେବ । ମାତ୍ର କିଛି ଘଣ୍ଟା ପରେ ରୋଗୀ ଆଖି ଖୋଲିଲା ଓ କଥା କହିଲା । ସରିଯାଉଥିବା ଜୀବନ ପୁଣି ଆୟୁଷ ବଳ ପାଇ ବଞ୍ଚି ଉଠିଲା ଓ କୀର୍ତ୍ତିରାଜିରେ ମହମହ ମହକେଇ ଯିବାକୁ ସଜାଗ ହେଲା ସାରା ସଂସାରକୁ । ଡକ୍ଟର ହେମନ୍ତ ଛୋଟରାୟ ପୁଣି ସଂସାରର କୋଳାହଳରେ ନିଜକୁ ସାମିଲ୍ କରିନେଲେ । ପ୍ରଭୁ ଜଗନ୍ନାଥଙ୍କ କୃପାରୁ ସେ ନିରୋଗ-ନିରାମୟ ଜୀବନଯାପନ କରନ୍ତୁ । ଜଗନ୍ନାଥଙ୍କ କରୁଣା ବିନା ଏତେବଡ଼ କଥା ସମ୍ଭବ ହେଇଥା'ନ୍ତା କି ସୁଧୀଜନେ !

ଏହା କାହାଣୀ ନୁହେଁ । ଏହା ଏକ ସତ୍ୟ ଅନୁଭୂତିର କଥା । ଆଦିତ୍ୟ କେୟାର ହସ୍‌ପିଟାଲ, ଭୁବନେଶ୍ୱର ଏବେ ଯାଇ ପଚାରି ବୁଝିହେବ ଏବଂ ବିଶ୍ୱାସର ଚିହ୍ନ ବି ମିଳିବ ଠାକୁରଙ୍କ ଚରଣ ତଳେ । ଚରମ ଭକ୍ତି-ନିଷ୍ଠାର ଫଳଶ୍ରୁତି ଅସାଧ୍ୟ ସାଧନ କରିବାରେ ବାଧକ ହୁଏ ନାହିଁ ।

ସାଧନା ସଦନ
ତ୍ରିଲୋଚନପୁର, ଡେଲାଙ୍ଗ - ୭୫୨୦୧୫
ପୁରୀ, ଓଡ଼ିଶା
ଭ୍ରାମ୍ୟଭାଷ : ୯୯୩୭୩୭୭୫୦୦



# ସେ ଦିନର ଅନୁଭୂତି

## ଶମ୍ଭୁନାଥ ଖୁଣ୍ଟିଆ

ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଛାମୁ ଖୁଣ୍ଟିଆ ସେବକ ଭାବେ ଦୀର୍ଘ ଅଠର ବର୍ଷ ହେଲା ମୁଁ ସେବା କରି ଆସୁଅଛି । ଅନେକ ଘଟଣା, ଦୁର୍ଘଟଣା ମୋ ଜୀବନରେ ସେବା କରିବା ସମୟରେ ଉପୁଜିଥିଲେ ମଧ୍ୟ କରୁଣାମୟଙ୍କର ଆଶୀର୍ବାଦ କ୍ରମେ ତାହା ମତେ ଦୋଷମୁକ୍ତ କରି ପରବର୍ତ୍ତୀ ମୁହୂର୍ତ୍ତରେ ଆଜି 'ଅମୃତ ଅନୁଭବ' ପୁସ୍ତକରେ ପୃଷ୍ଠା ମଣ୍ଡନ କରିବାକୁ ଯାଉଛି ।

୨୦୦୩ ମସିହା, ଅଗଷ୍ଟ ମାସ । ତାରିଖ ମୋର ମନେ ନ ପଡୁଥିଲେ ବି ଘଟଣାଟି ମୋର ସ୍ୱଷ୍ଟ ମନେ ଅଛି । ମୁଁ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ସେବାରେ ଥାଏ, ଅବକାଶ ପରେ ଶ୍ରୀମନ୍ଦିରରେ ପ୍ରତ୍ୟେକ ଦିନ ସାହାଣ ମେଲା ଦର୍ଶନ ଆରମ୍ଭ ହୁଏ । ଏହି ଦର୍ଶନ ପାଇଁ ହଠାତ୍ ଅନେକ ଦର୍ଶନାର୍ଥୀ ଆସିଯା'ନ୍ତି, କାରଣ ଏହା ମାଗଣାରେ ଦର୍ଶନ ବ୍ୟବସ୍ଥାରେ ସରକାରଙ୍କର ଏକମାତ୍ର ବ୍ୟବସ୍ଥା । ଏହି ସମୟରେ ଜଣେ ବୃଦ୍ଧ ବ୍ୟକ୍ତିଙ୍କର ପକେଟମାର ହୋଇଗଲା । ଦଶ ହଜାରରୁ ଊର୍ଦ୍ଧ୍ୱ ଟଙ୍କା କେହି ଦୁର୍ବୃତ୍ତ ନେଇଗଲା । ମୁଁ ଦେଖିଲି ସେହି ପକେଟମାର୍ ଯୁବକକୁ । ତାକୁ ଧରି ହଜିଥିବା ଲୋକ ପାଖରେ ପହଞ୍ଚିଲି । ସମୁଦାୟ ଟଙ୍କା ବୃଦ୍ଧ ବ୍ୟକ୍ତି ଫେରିପାଇ ମତେ ପାଞ୍ଚ'ଶ ଟଙ୍କା ଯାଚିଲେ । କିନ୍ତୁ ମୁଁ ଯେତେବେଳେ ଶୁଣିଲି ଏହି ବୃଦ୍ଧ ବ୍ୟକ୍ତି ନିଜ ଝିଅ ବାହାଘର ପାଇଁ ଅବଢ଼ା ବରାଦର ଅଗ୍ରୀମ ଟଙ୍କା ନେଇ ଆସିଛନ୍ତି, ତେଣୁ ଟଙ୍କା ନେବା ପାଇଁ ଏକ ପ୍ରକାର ଇଚ୍ଛାଥିଲେ ବି ପାଞ୍ଚ'ଶ ଟଙ୍କା ନ ନେଇ ହାତ ଯୋଡ଼ିଦେଲି । ପକେଟମାର୍‌କୁ ପୋଲିସ ଏବଂ ବୃଦ୍ଧ ବ୍ୟକ୍ତି ପରିବାର ସହିତ ଶ୍ରୀମନ୍ଦିରରୁ ଚାଲିଗଲା ପରେ ଗୋଟେ ବିଜୟର ଆନନ୍ଦ ଓ ଗର୍ବରେ ମୁଁ ଫାଟିପଡ଼ିଲି । ପ୍ରଭୁଙ୍କୁ ମୁଁ ମୋର କରିତ୍‌କର୍ମା ପଣିଆ ଦେଖାଇଲି ବୋଲି ଭାବି ବୁଲି ବୁଲି ସମସ୍ତଙ୍କୁ କହିଲି । ସମସ୍ତଙ୍କ ମୁହଁରେ ମୋର ପ୍ରଶଂସା । ବାଃ, ବାଃ, ଶମ୍ଭୁ !!

ଦିନ ସରି ରାତି ଆସିଲା । ବଡ଼ସିଂହାର ବେଶ ପାଇଁ ପ୍ରାକ୍ ପ୍ରସ୍ତୁତି ଚାଲିଥାଏ । କରପଲ୍ଲବ, ଗୁଣା, ଅଳକା, ଚନ୍ଦ୍ରିକାକୁ ଅଲଗା କାଢ଼ି ରଖୁଥାଏ । ସକାଳର ତାଜା ଘଟଣାଟି ରାତିରେ ହଠାତ୍ 'ଭାରତ ରତ୍ନ' ପାଇବା ପରି ଲାଗୁଥାଏ । ଏହି ସମୟରେ ଥାନାରୁ ଦୁଇ ଜଣ ପୋଲିସ ଆସି ମତେ ଡାକି କହିଲେ, 'ତମକୁ ବଡ଼ ବାବୁ ଡାକୁଛନ୍ତି । ବଡ଼ସିଂହାର ବେଶ ଚାଲିଥିବାରୁ ମୁଁ ଯିବା ପାଇଁ ମନାକଲି । ପରେ ସେହିକଥା ଶ୍ରୀମନ୍ଦିର ପୋଲିସ ମଧ୍ୟ ସେମାନଙ୍କୁ କହିଲେ । 'ପହୁଡ଼ ନ ସରିବା ପର୍ଯ୍ୟନ୍ତ ଖୁଣ୍ଟିଆ ଯାଇ ପାରିବେ

ନାହିଁ ।' ଏକଥା ଶୁଣି ପୋଲିସ ବାବୁଙ୍କର ଅକଲ ଗୁଡୁମ୍ । ସମାନ୍ତରାଳ ଭାବେ ମୋର ଅକଲ ବି ରସାତଳକୁ ଖସିବାକୁ ଲାଗିଲା । ସେବାରେ ମନ ଲାଗିଲା ନାହିଁ । ଶେଷରେ ଜାଣିବାକୁ ପାଇଲି ଯେ, ଚୋରଟି ମୋ ନାଁରେ ଏତଲା ଦେଇଛି, ତା'ର ଟଙ୍କା ମୁଁ ନେଇ ମୋର ଲୋକକୁ ଦେଇଛି । ପୋଲିସ ମଧ ସେଇଆ କହିଲା, କାଗଜପତ୍ର ନକରି ହଜିଥିବା ଲୋକକୁ ଟଙ୍କା ଫେରାଇବା ଆଇନସମ୍ମତ ନୁହେଁ, ଆଇନକାନୁନ୍ ବିଷୟରେ ଏକ ଲମ୍ବା ଭାଷଣ ଶୁଣି ପାଦତଳୁ ମାଟି ଖସିଗଲା, ଚିନ୍ତା ବଢ଼ିଗଲା । ପହୁଡ଼ ହେଲେ ଥାନାକୁ ଯିବାକୁ ପଡ଼ିବ ବୋଲି ଜାଣିଲା ପରେ ଆଖି ମୋର ଲୁହ ଛଳ ଛଳ ହୋଇଗଲା । ଚନ୍ଦନଲାଗି ବେଳେ ଛାମୁ ଖୁଣ୍ଟିଆ ପ୍ରତ୍ୟେକ ଦିନ 'ମଣିମା' ଡାକ ପକେଇଥା'ନ୍ତି, ସେ ସମୟ ଯେତେବେଳେ ଆସିଲା, ମୁଁ 'ମଣିମା' ଡାକ ପକାଇଲା ବେଳେ, ଉଚ୍ଚ ସ୍ୱରରେ ରଡ଼ିକଲି, ଯାହା ସ୍ୱର୍ଗତ ନରସିଂହ ଦାସ ମହାପାତ୍ରଙ୍କର କହିବାନୁସାରେ, ସେଦିନ 'ମଣିମା' ଡାକ ବାଇଶି ପାହାଚ ପର୍ଯ୍ୟନ୍ତ ଶୁଭୁଥାଏ । ମଣିମା ଡାକ ଭିତରେ ଥିବା ମୋର ଆକୁଳ ପ୍ରାର୍ଥନା ବୋଧହୁଏ ସେଦିନ ଏକ କୋହର ରୂପ ନେଇଥିଲା । ପହୁଡ଼ ବେଳେ ଜୟ-ବିଜୟ ଦ୍ୱାର ପାଖରେ ସୁବାସିତ ଫୁଲ ପୁଷ୍ପାଞ୍ଜଳି ଦେଇ ଖାଲି ଏତିକି କହିଲି, 'ପ୍ରଭୁ ମୋର ଦୋଷ ଥିଲେ ମତେ ଦଣ୍ଡ ନିଶ୍ଚୟ ଦେବ ।'

ଯମ ଭଳିଆ ସେତେବେଳକୁ ପୋଲିସ ଦେଖାଯାଉଥା'ନ୍ତି । ରାତି ଅଧରେ ପୁଣି ଥାନା, ସେବା ପରେ ଏ ପ୍ରକାର ଅପ୍ରତ୍ୟାଶିତ ପୁରସ୍କାର ସହଜରେ ହଜମ ହେଉନଥିଲା । ଗୋଟିଏ ପରେ ଗୋଟିଏ ପାହାଚ ଓହ୍ଲାଇ ବାଇଶି ପାହାଚରୁ ଗଲାବେଳେ, ପୋଲିସ ମାନଙ୍କର ମହାପୁରୁଷ ବାଣୀ ନିଜର କାର୍ଯ୍ୟଦକ୍ଷତାକୁ ଅଙ୍ଗୁଳି ନିର୍ଦ୍ଦେଶ କରୁଥାଏ । ହଠାତ୍ ଯାହା ଘଟିଲା, ମୁଁ କେବେ ସ୍ୱପ୍ନରେ ଭାବି ନଥିଲି । ଟଙ୍କା ହଜିଥିବା ଲୋକଟି ପତିତପାବନଙ୍କ ପାଖରେ ଦେଖାହୋଇ ମୋ ପାଦ ତଳେ ପଡ଼ିଗଲା । ମୋ ଯୋଗୁ ତା'ର ଝିଅ ବାହାଘର ପାଇଁ ଅବଢ଼ାର ବ୍ୟବସ୍ଥା ସହ ଅଗ୍ରୀମ ଦେଇଥିବା ସୂଚନା ମତେ ଦେବାମାତ୍ରେ ମୋ ଦେହରେ ସତେ ଯେପରି ଏକ ବୈଦ୍ୟୁତିକ ତରଙ୍ଗ ପ୍ରବାହିତ ହେଲା । ଆଖିରେ ଲୁହ ଓ କୋହକୁ ଚାପି ପତିତପାବନଙ୍କୁ ଚାହିଁ ରହିଲି । ଠିକ୍ ସେତିକିବେଳେ ପୋଲିସ ବାବୁ କହିଲେ, 'ଜଗନ୍ନାଥଙ୍କ ସେବକ ତୁମେ' ! ଦେଖ, ନହେଲେ ରାତି ଅଧରେ ଏ ବୁଢ଼ା ଆସି ସଫେଇ ଦେଲା କେମିତି ? ସେତେବେଳକୁ ନା ମତେ ପୋଲିସର କଥା ଶୁଭୁଥାଏ ନା ଶୁଭୁଥାଏ ବୃଦ୍ଧ ବ୍ୟକ୍ତିଙ୍କର ଆଶୀର୍ବାଦର ଧ୍ୱନି । ଶୁଭୁଥାଏ ମୋ କାନରେ ଗୋଟିଏ କଥା -

'କରି କରାଉଥାଏ ମୁହିଁ, ମୋ ବିନୁ ଅନ୍ୟ ଗତି ନାହିଁ ।'

ମଣିକର୍ଣ୍ଣିକା ସାହି, ହକୁରୀ ଲେନ୍, ପୁରୀ-୨
ଭ୍ରାମ୍ୟଭାଷ : ୯୭୭୬୨୭ ୮୪୩୩

ତ ତ

# ଜୟ ଜଗନ୍ନାଥ

## ବଳରାମ ମହାରଣା

ଜଗତର ନାଥ ଶ୍ରୀଜଗନ୍ନାଥ ହେଉଛନ୍ତି ସୃଷ୍ଟିକର୍ତ୍ତା, ରକ୍ଷାକର୍ତ୍ତା । ତାଙ୍କ ବିଷୟରେ ମୁଁ ବା କ'ଣ ଜାଣିଛି ଲେଖିବି ? ଜାତିରେ ବଢ଼େଇ, ମହାରଣା କାମ କରି ପେଟ ପୋଷିବା ମୋର ବ୍ୟବସାୟ । ମୋ ବାପା ସ୍ୱର୍ଗତ ବାଳକୃଷ୍ଣ ମହାରଣା ଜଣେ ସଚ୍ଚୋଟ ଆଦର୍ଶ କାରିଗର ଥିଲେ । ଆଜି ମୁଁ ତାଙ୍କ ପାଖେ ପାଖେ ରହି କାରିଗରି କାମ ଶିଖି ସମସ୍ତଙ୍କର ପ୍ରିୟ । ମୁଁ ଜାଣେ ମଣିଷର ସତ୍ ଓ ନିଷ୍ଠା ଥିଲେ ସେ ସବୁ କାମ ସହଜରେ କରିପାରିବ । ଠକିବା, ମିଛ କହିବା ଅଭ୍ୟାସ ଥିଲେ ଭଗବାନଙ୍କର ଆଶୀର୍ବାଦ ମିଳିପାରିବ ନାହିଁ । ଏହା ମୁଁ ମୋ ଜୀବନରେ ଅନୁଭୂତିରୁ ଜାଣି ପାରିଛି ।

ମୋର ବଢ଼େଇ କାମର ନିଖୁଣ ଓ ନିପୁଣତା ଦେଖି ଜଗନ୍ନାଥଙ୍କର ଶ୍ରୀମୂର୍ତ୍ତି ଗଠନ କରିବା ପାଇଁ କଟକରେ ଜଗନ୍ନାଥ ମନ୍ଦିରରୁ ଡାକରା ପାଇଛି । ସ୍ନାନ ପୂର୍ଣ୍ଣମୀ ଦିନ ଠାରୁ ଘର ଠାରୁ ଦୂରରେ ମନ୍ଦିର ବେଢ଼ାରେ ରହି ହବିଷାନ୍ନ କରି ଦିଅଁ ଗଢ଼ିବାକୁ ଆଦେଶ ପାଇଲି କର୍ତ୍ତୃପକ୍ଷଙ୍କ ଠାରୁ । ମୋତେ ନୂଆ ଯୋଡ଼ ଦେଇ ସମ୍ମାନିତ କଲେ । ୧୯୯୬ ମସିହା ନବକଳେବର ପୂର୍ବରୁ ଏହି ଆଦେଶ ମତେ ମିଳିଲା । ମନଖୁସିରେ ତାଙ୍କ ଆଦେଶ ଗ୍ରହଣ କଲି । ମୋ ମନ ଭିତରୁ ଆନନ୍ଦର ଜୁଆର କହିଲେ ନସରେ । ଦିଅଁ ଗଢ଼ା ଯଥା ସମୟରେ ସରିଲା । ରଙ୍ଗ ତୂଳୀରେ ତିନି ଠାକୁର ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ଦେବୀ ସୁଭଦ୍ରା ଚିତ୍ରିତ ହେବେ । ଘର କବାଟ ଦେଇ ଠାକୁରଙ୍କ ତିଆରି ଓ ରଙ୍ଗ କାମ କରାଯାଏ । ରଙ୍ଗ କାମ ଆରମ୍ଭ କଲି ସତ, କିନ୍ତୁ କାଳିଆର କଳା ରଙ୍ଗ ପାଉଁଶିଆ ଦିଶିଲା । ସେଦିନ ରାତିରେ ଠାକୁରଙ୍କ ପାଖରେ ଅଧିଆ ପଡ଼ିଲି, ମୋ ଭୁଲ୍ କେଉଁଠି ରହିଲା ଗୁହାରି ଜଣାଇଲି । ତା'ପରଦିନ ସକାଳୁ ଗାଧୋଇ ସାରି ଆସିବା ପରେ କବାଟ ବନ୍ଦ କରି ରଙ୍ଗ କାମ ଆରମ୍ଭ କଲି । ସେଦିନ କାମଟି ଖୁବ୍ ସୁନ୍ଦର ଢଙ୍ଗରେ ରଙ୍ଗ ହେଲା । ମୁଁ ଜାଣିଲ ନଟ୍‌ଖଟ୍ କାଳିଆର ଏଇ ସବୁ ନାଟ । ମୋତେ ପରୀକ୍ଷା କରିଛନ୍ତି । ମୋର କାମକୁ ନୁହେଁ, ମୋର ତାଙ୍କ ପ୍ରତି ଭକ୍ତି ଭାବକୁ ।

ଆଉ ଥରକର ଘଟଣା । ଠାକୁରଙ୍କ ବ୍ରହ୍ମ ନୂତନ ଘଟକୁ ପରିବର୍ତ୍ତନ କରାଯିବ । ପୂଜକ ତ ଆଖିରେ ଅନ୍ଧପୁଟୁଳି ବାନ୍ଧି ଜୀବନ ଘଟ (ବ୍ରହ୍ମ) ନୂଆ କଳେବରରେ ସ୍ଥାପନ କରିବେ । କିନ୍ତୁ କେଉଁଠାରେ ସେ ପିଣ୍ଡ ରହିଛନ୍ତି ପୁରୁଣା କଳେବରରୁ ଜାଣିପାରିଲେ ସିନା ମୁଁ ସେହି ସ୍ଥାନ ଖୋପ ରୂପେ ତିଆରି କରିବି । ଠାକୁରଙ୍କୁ ଚାରି ଦିଗକୁ ବୁଲାଇ

ବୁଲାଇ କିଛି ଜାଣିପାରିଲିନି । ଶେଷରେ କାଳିଆ ଠାକୁରଙ୍କ ପାଖରେ ଅଧିଆ ପଡ଼ିଲି । ପରେ ସକାଳେ ସ୍ଥାନ ଜାଣିବା ଆଭାସ ପାଇଲି । ମନୁଷ୍ୟର ବ୍ରହ୍ମସ୍ଥାନ ହୃଦୟ (ବକ୍ଷସ୍ଥଳେ)ରେ ଥାଏ । କିନ୍ତୁ ସେଇ ଠାକୁରଙ୍କ ମସ୍ତକ ପଛ ପାଖରୁ ଖଟ୍ ଶବ୍ଦ ଶୁଣାଗଲା । ସେଇ ଶବ୍ଦକୁ ଅନୁମାନ କରି ଗାତ୍ର ତିଆରି କଲି । ମନରେ ପ୍ରଶ୍ନ, ମୁଁ ତ ବ୍ରହ୍ମ ଦେଖିନାହିଁ କିପରି ଓ କେତେବଡ଼ କରିବି ? ଯାହାହେଉ ସେ କାମ ସମୟ ଭିତରେ କରିପାରିଥିଲି । ସେଇ କେବଳ କାଳିଆର ଆଶୀର୍ବାଦରେ ।

ଏଥର ସ୍ନାନ ପୂର୍ଣ୍ଣମୀକୁ ମୋର ଅର୍ଡ଼ର ଆସିଛି ଠାକୁରଙ୍କ ନବକଳେବର ପାଇଁ ଶ୍ରୀମୂର୍ତ୍ତି କରିବାକୁ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କର । ତାଙ୍କରି ଆଶୀର୍ବାଦରୁ ମୁଁ ଏଇ ଗୁରୁ ଦାୟିତ୍ୱ ସହଜରେ ତୁଲାଇ ପାରିବି ବୋଲି ମୋର ବିଶ୍ୱାସ ।

'ଜୟ ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ' ।

**ବନ୍ଧି ବଜାର**
**ବଢ଼େଇ ସାହି, କଟକ**



# ମୋ ଅନୁଭୂତିର କଥା

## ରାମଚନ୍ଦ୍ର ଦାସ ମହାପାତ୍ର

ଏଇବର୍ଷ ନବକଳେବର ଦାରୁ ସନ୍ଧାନ ସମୟର କଥା । ଶ୍ରୀଜଗନ୍ନାଥଙ୍କ ବାଡ଼ଗ୍ରାହୀ ଜଗନ୍ନାଥ ସ୍ୱାଇଁ ମହାପାତ୍ର ଓ ଉପ-ଦଳପତି ଗଣେଶ ଦାସ ମହାପାତ୍ରଙ୍କ ସହ ମୁଁ ବନଯାଗ ଦଳରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦାରୁ ସନ୍ଧାନରେ ଯାଇ ଜଗତସିଂହପୁର ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଦାରୁ ଅନ୍ୱେଷଣ କରି ଫେରୁଥାଉ । ହଠାତ୍ ଦୁଇଜଣ ଯୁବକ ମୋଟର ସାଇକେଲ୍‌ରେ ଆସି ଆମକୁ ରାସ୍ତାରେ ଅଟକାଇ କହିଲେ, 'ଆସନ୍ତୁ ଦାରୁ ଦେଖିବେ' । ଆମେ ସେହି ଦୁଇ ଯୁବକଙ୍କ ସହ ଯାଇଥିଲୁ । ସେମାନେ ଆମକୁ ଗୋଟିଏ ଜଗନ୍ନାଥ ମନ୍ଦିରକୁ ନେଇ ଯାଇଥିଲେ । ସେଠାରେ ଦାରୁଯୋଗ୍ୟ କିଛି ବୃକ୍ଷ ନଥିଲା । ଆମେ ରାଗରେ ଫେରିଆସିଲୁ । ଦୁଇ ଯୁବକ ସେଠାରୁ ଚାଲି ଯାଇଥିଲେ ।

ସଞ୍ଜ ନଇଁ ଆସୁଥିବାରୁ ଆମେ ଦେଉଳି ମଠକୁ ଦ୍ରୁତଗତିରେ ଫେରୁଥାଉ । ହଠାତ୍ ରାସ୍ତାକଡ଼ ବିଲ ଭିତରୁ ପଗଡ଼ି ପିନ୍ଧିଥିବା ଦୁଇଜଣ ଅଚିହ୍ନା ବ୍ୟକ୍ତି ବାହାରି ଆସି ଆମକୁ ରାସ୍ତାରେ ଠିଆ ହୋଇ ବାଟ ଓଗାଳିଲେ । କହିଲେ, ଆସନ୍ତୁ ଦେଖିବେ ଦାରୁଯୋଗ୍ୟ ନିମ୍ବ ବୃକ୍ଷ । ଏହି ନିକଟରେ ରହିଛି । ସେମାନେ ଆମକୁ ଦାରୁବୃକ୍ଷ ନିକଟକୁ ବାଟ କଢ଼ାଇ ନେଲେ । ଆମ୍ଭେମାନେ ନିକଟକୁ ଯାଇ ନିମ୍ବ ବୃକ୍ଷକୁ ପରଖିବା ସମୟ ମଧ୍ୟରେ ସେ ଦୁଇଜଣ କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ । ପଛକୁ ଚାହିଁ ଦେଖିଲା ବେଳକୁ ସେଠାରେ କେହି ନାହାନ୍ତି । ସେ ଦୁଇଜଣଙ୍କୁ ଯେତେ ଖୋଜାଖୋଜି କଲୁ ପାଇଲୁ ନାହିଁ । ଏହି ଘଟଣାର ପ୍ରତ୍ୟକ୍ଷ ସାକ୍ଷୀ ହେଉଛନ୍ତି ଆମ ସହିତ ଯାଇଥିବା ରଘୁନାଥପୁର ଥାନା ଅଧିକାରୀ । ସେ ମଧ୍ୟ ଦୁହିଁଙ୍କୁ ଆଖପାଖରେ ବହୁତ ଖୋଜିଲେ, କିନ୍ତୁ ପାଇଲେ ନାହିଁ । ଦାରୁର ସମସ୍ତ ଲକ୍ଷଣ ଦେଖି ଆମେ ଶିହରି ଉଠିଲୁ । ମନ ଭରିଗଲା ଅପୂର୍ବ ଆନନ୍ଦରେ । ବୃକ୍ଷର ଅବସ୍ଥିତି, ପରିବେଶ ଆମକୁ ମୋହିତ କଲା । ସେହି ନିମ୍ବ ବୃକ୍ଷରେ ଆମ ଆଖି ଲାଗି ରହିଗଲା । ସେତେବେଳକୁ ବନଯାଗ ଦଳର ଯାତ୍ରା ପର୍ଯ୍ୟାୟରେ ପୁରୀ ଜିଲ୍ଲାର କଣାସ ଠାରେ ମା' ସୁଭଦ୍ରାଙ୍କ ଦାରୁଯୋଗ୍ୟ ସମସ୍ତ ଲକ୍ଷଣ ଥିବାର ଏକ ନିମ୍ବ ବୃକ୍ଷ ପରଖି ଆମେ ଫେରିଥିଲୁ । ମନସ୍ଥ କରିଥିଲୁ ମା' ସୁଭଦ୍ରା କିମ୍ବା ଶ୍ରୀବଳଭଦ୍ରଙ୍କ ଦାରୁଯୋଗ୍ୟ ବୃକ୍ଷ ହୋଇପାରେ । ତେବେ ଜଗତସିଂହପୁର ବିରିଡ଼ି ବ୍ଲକ୍ ଅନ୍ତର୍ଗତ ମଦୁରାଇ ଅଡ଼ଙ୍ଗଗଡ଼ ସ୍ଥିତ ଦାରୁ ଦେଖିବା ପରେ ମନର ଭାବନା ବଦଳିଗଲା ।

ସେହି ନିମ୍ବ ବୃକ୍ଷରେ ମା' ସୁଭଦ୍ରାଙ୍କ ଦାରୁଯୋଗ୍ୟ ଅନେକ ଦିବ୍ୟ ଲକ୍ଷଣ ରହିଥିବା ଆମେ ଦେଖିବାକୁ ପାଇଥିଲୁ । ସେତେବେଳକୁ ବଡ଼ ଠାକୁରଙ୍କ ଦାରୁ ସନ୍ଧାନ ଦଳପତି

ତଥା ବାଡ଼ଗ୍ରାହୀ ହଳଧର ଦାସ ମହାପାତ୍ର କରି ସାରିଥିଲେ । ତେଣୁ କଣାସ ଠାରେ ସନ୍ଧାନ ହୋଇଥିବା ନିମ୍ବବୃକ୍ଷ ଦାରୁ ତାଲିକାରୁ ବାଦ୍ ଦେଇ ଅଢ଼ଙ୍ଗଷ୍ଠିତ ଦାରୁକୁ ମା’ ସୁଭଦ୍ରାଙ୍କ ପାଇଁ ଚୂଡ଼ାନ୍ତ କରିଥିଲୁ । ଏହି ଦାରୁ ବୃକ୍ଷର ଅନତି ଦୂରରେ ଏକ ବିରାଟ ଉଇହୁଙ୍କା, ବିଲ୍ୱ ଓ ବକୁଳ ବୃକ୍ଷ, ପୁଷ୍କରିଣୀ, ଶୈବପୀଠ ଶ୍ରୀ ନୀଳକଣ୍ଠେଶ୍ୱର ମନ୍ଦିର ଏବଂ ଶ୍ମଶାନ ରହିଥିଲା । ସେତେବେଳେ ଯାହା ଦେଖିଥିଲୁ ପରେ ଦେଖିବା ବେଳକୁ ଅଢ଼ଙ୍ଗଷ୍ଠିତ ଦାରୁବୃକ୍ଷର ଦିବ୍ୟ ଲକ୍ଷଣ ଗୁଡ଼ିକ ଦେଖି ଆମେ ବିସ୍ମିତ ହୋଇଗଲୁ । କାରଣ ମା’ ଭୁବନେଶ୍ୱରୀଙ୍କ ମୁଖ ବୃକ୍ଷରେ ସମ୍ପୂର୍ଣ୍ଣ ରୂପେ ବାରି ହୋଇ ପଡୁଥିଲା । ପଞ୍ଚପାଖୁଡ଼ା ବିଶିଷ୍ଟ ପଦ୍ମଫୁଲ ବି ଦାରୁ ବୃକ୍ଷରେ ଶୋଭା ପାଉଥିଲେ । ବୃକ୍ଷର ବକଳର ରଙ୍ଗ ଈଷତ୍ ହଳଦିଆ ପଡ଼ିଯାଇଥିଲା । ଶଙ୍ଖ ଚିହ୍ନ ବି ଦାରୁ ବୃକ୍ଷରେ ଦେଖିବାକୁ ମିଳିଥିଲା । ଆହୁରି ସର୍ବୋତ୍ତମ ଲକ୍ଷଣ ହେଉଛି ଏହାର ପତ୍ର ତିକ୍ତ ପରିବର୍ତ୍ତେ ମଧୁର ଥିଲା । ଏହାହିଁ ଇଙ୍ଗିତ କଲା ମା’ଙ୍କ ଦାରୁ ଚୟନରେ ମା’ ନିଜେ ମାର୍ଗ ଦେଖାଇଛନ୍ତି । ମନେହେଲା ସତେ ଯେମିତି ବଡ଼ ଠାକୁର ବଳଭଦ୍ର, ସାନଭାଇ ଜଗନ୍ନାଥଙ୍କ ସହ ଆସି ତାଙ୍କର ଅଲିଅଳି ଭଉଣୀଙ୍କ ଦାରୁ ଚିହ୍ନେଇ ଦେଇ ଅନ୍ତର୍ଦ୍ଧାନ ହୋଇଗଲେ ।

ଏହା ହେଉଛି ନବକଳେବର ସମୟର ମୋର ପ୍ରତ୍ୟକ୍ଷ ଅନୁଭୂତି ।

ମା’ ସୁଭଦ୍ରାଙ୍କ ବାଡ଼ଗ୍ରାହୀ
ଦୋଳମଣ୍ଡପ ସାହି, ପୁରୀ - ୧
ଭ୍ରାମ୍ୟଭାଷ : ୯୪୩୭୪୨୨୮୪୪



# ମୋ ଘର କେବେ ହେବ ?

## ମହେନ୍ଦ୍ର କୁମାର ଦାଶ

**ମଣିଷ** ସ୍ୱପ୍ନ ଦେଖେ । ଆତ୍ମବିଭୋର ହୁଏ । ଆକାଶର ରଙ୍ଗକୁ ଚୋରାଇ ଆଣି ବୋଳିଦିଏ ମନର ମାଟିରେ । ଫୁଲର ରଙ୍ଗ, ପକ୍ଷୀମାନଙ୍କର ରଙ୍ଗରେ ରଙ୍ଗେଇ ଫୁଲେଇ ହେଉଥାଏ । ତା' ଚାରିପଟର ପୃଥିବୀକୁ ସେ ଦେଖି ନିଜ ଭିତରେ କଥା ହୁଏ । ସବୁକୁ ନିଜର କରିବାକୁ ମନ ତା'ର ଉଜାଣି ଯମୁନା ପରି କୂଳ ଲଙ୍ଘିଯାଏ । ପିଲାଦିନର ବାପା ମାଆଙ୍କ ଭଲ ପାଇବା, ପସନ୍ଦ ଅପସନ୍ଦ ସବୁକିଛି ଲହଡ଼ି ଭାଙ୍ଗୁଥାଏ, ତା' ମନର ବେଳାଭୂମି ପରେ । ସକାଳର ସୂର୍ଯ୍ୟୋଦୟ ଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ବାପା ମାଆଙ୍କର କଥା, ଆଦେଶ ଉପଦେଶ ସେମାନଙ୍କର କଷ୍ଟ ପିଲାମାନଙ୍କୁ ବଡ଼ କରିବାର ଅଦମ୍ୟ ଚେଷ୍ଟା ସବୁକିଛି ଚଳଚ୍ଚିତ୍ରର ଦୃଶ୍ୟ ପରି ନାଚୁଥାଏ । ଗାଁର ଆମ୍ବତୋଟା, ପୋଖରୀରେ ପହଁରା, ଡାଳି ମାଙ୍କୁଡ଼ିର ଖେଳ ସହ କୁମାର ପୂର୍ଣ୍ଣିମାର ଚାନ୍ଦିନୀ ରାତିରେ ଦାଣ୍ଡ ଧୂଳିରେ ଡିଆଁ ଦୌଡ଼ା ଏମିତି ଅନେକ ଅନୁଭବ ବାନ୍ଧି ରଖିଥାଏ ତାକୁ ତା'ର ଯୌବନରେ । ପିତାମାତାଙ୍କର କଥା ଯେମିତି ଈଶ୍ୱରଙ୍କର ଆଦେଶ ପାଳଚିଥାଏ । ଯାହାସବୁ ଏବେ ବି ମତେ ଆନ୍ଦୋଳିତ କରେ । ମୁଁ ବା ଏଥିରୁ ବାଦ୍ ଯିବି କେମିତି !

ପାଠପଢ଼ା ଶେଷ ହୋଇଥାଏ । ସେଭିଂ ଆଣ୍ଡ ଇନ୍‌ଭେଷ୍ଟମେଣ୍ଟ କମ୍ପାନୀ ଚାକିରିରେ ନବେ ଦଶକରେ ଆଠରୁ ଦଶ ହଜାରର ରୋଜଗାର । ସେତେବେଳେ ଗାଁରେ ସାଙ୍ଗମାନେ ବେକାର ହୋଇ ବୁଲୁଥିବା ବେଳେ ମୁଁ ମୋ ନିଜ ପଇସାରେ କିଣିଥାଏ ବଜାଜ ସ୍କୁଟର । ମୋଟର ସାଇକେଲ୍‌ର ଯୁଗ ଆରମ୍ଭ ହୋଇନଥାଏ । ସେଇଟା ତ ମୋ ସ୍କୁଟର ନଥିଲା, ସତେ ଯେମିତି ସେଇଟା ଥିଲା ଅନେକଙ୍କର ସାହା ଭରସାର ମାଧ୍ୟମ । ରାତି ଅଧରେ କାହାର ଝାଡ଼ାବାନ୍ତି, କାହା ସ୍ତ୍ରୀର ଡେଲିଭରି, କାହାପାଇଁ ଝିଅ-ବ୍ୱାଇଁ ଖୋଜା, ସବୁକିଛିର ସାକ୍ଷୀ ଥାଏ ମୋର ବଜାଜ ସ୍କୁଟର । ମୋ ନନା (ବାପା) ଆମ ଅଞ୍ଚଳର ସେ ବେଳର ଗ୍ରାଜୁଏଟ୍ । ପ୍ରଥମେ ଫୁଡ୍ ଇନ୍‌ସପେକ୍ଟର ପରେ ସାନିଟାରି ଇନ୍‌ସପେକ୍ଟର । ସେତେବେଳର ଦୁଇ ହଜାର-ତିନି ହଜାର ଟଙ୍କାର ଦରମା ବି କିଛି କମ୍ ନୁହେଁ । ଆମ ପାଞ୍ଚ ଭାଇ ଭଉଣୀଙ୍କୁ ପାଠ ପଢ଼ାଇବା, ଜମିକିଣା, ଘର ତିଆରି ଏପରିକି ତିନି ଝିଅଙ୍କ ବିବାହରେ ସବୁଶେଷ । ଗାଡ଼ିଟିଏ କିଣି ନଥିଲେ ନନା । ମୋ ସ୍କୁଟରରେ ବସିଲେ ସିଏ ବହୁତ ଖୁସି ହୁଅନ୍ତି । ସବୁଠୁ ବେଶୀ ଖୁସି ହୁଅନ୍ତି ସଂଧ୍ୟା ସାତଟାରେ ଘରୁ ବାହାରି ସୁନାବେଶ ଦେଖି ରାତି ବାରଟା ପରେ ସ୍କୁଟରରେ ଘରକୁ ଫେରିବା ବେଳେ । କଥାଛଳରେ କୁହନ୍ତି, ମୋ ଜୀବନରେ ପୁରୀରେ ଘର ଖଣ୍ଡିଏ କରି ପାରିଲିନି । ନନାଙ୍କ କଥାରେ

ମୋ ଆଖି ଲୁହରେ ଓଦା ହେଇଯାଏ । ଜୀବନସାରା ଜଣେ ବାପାର କର୍ତ୍ତବ୍ୟ କେମିତି ପାଳନ କରିଛନ୍ତି ସିଏ, ନିଜ ପାଇଁ କୌଣସି ଭଲ ଜିନିଷର ଆବଶ୍ୟକତା ନାହିଁ ତାଙ୍କର । କେବଳ ତ୍ୟାଗ ହିଁ ତ୍ୟାଗ । ବୋଧହୁଏ 'ବାପା' ଶବ୍ଦର ଅର୍ଥ ହିଁ ଏଇଆ । ଏବେ ମୁଁ ବୁଝୁଛି ମୋ ପିଲାଙ୍କ ପାଇଁ କିଛି କାମ କରିବାବେଳେ । ଯେତେବେଳେ ନନା ମୋ ଘରକୁ ଆସନ୍ତି ଇଚ୍ଛା ହୁଏ ଦୁନିଆର ସବୁ ଖୁସି ଅଜାଡ଼ି ଦିଅନ୍ତି କି ସେଇ ଯୋଗୀ, ତ୍ୟାଗୀଙ୍କ ଚରଣରେ । ଏବେ ବି ମନେପଡ଼େ ଗାଁରେ ତାଙ୍କ କାମର କଥା । ସଂଧ୍ୟାରେ ଭାଗବତ ଘରେ ଭାଗବତ ପାଠ, ଗୀତ ଗୋବିନ୍ଦ ଶୁଣିଲେ ଠାକୁର ଶୋଇବେ । ଯେତେ କାମ ଥିଲେ ମଧ୍ୟ ରାତି ସାତଟାରେ ଭାଗବତ ଘରକୁ ନିଶ୍ଚୟ ଯିବେ । ଭୁବନେଶ୍ୱରରେ ଝିଅ ବାହାଘରର ମାର୍କେଟିଂ ଅଧା କରି ସାତଟା ମଧ୍ୟରେ ଗାଁକୁ ଫେରୁଥିଲେ ସିଏ କେବଳ 'ଗୀତଗୋବିନ୍ଦ' ବୋଲିବା ପାଇଁ । ପୁଣି ପଛେ ପରଦିନ ଭୁବନେଶ୍ୱର କଷ୍ଟରେ ଯାଉଥିଲେ । ଘରେ ଗୀତାପାଠ, ଭାଗବତ ଟୁଙ୍ଗୀରେ ଭାଗବତ ପାଠ, ଗୀତଗୋବିନ୍ଦର ପଦ ଲାଳିତ୍ୟ କେଜାଣି କାହିଁକି ମତେ ଟାଣି ନେଉଥିଲା ଈଶ୍ୱରଙ୍କ ନିକଟକୁ । ବନ୍ୟା, ବାତ୍ୟା ଭଳି ପ୍ରାକୃତିକ ବିପର୍ଯ୍ୟୟ ସମୟରେ ମଧ୍ୟ ଶୁଭୁଥିଲା ଭାଗବତ ଘରେ 'କେଶବଧୃତ...' ସହ ଝାଞ୍ଜମାଡ଼ର ସେ ଅପୂର୍ବ ସ୍ୱର । ସତରେ ଜୀବନ କହିଲେ କିଏ କ'ଣ ବୁଝେ କେଜାଣି ମୁଁ କିନ୍ତୁ ବୁଝେ ଈଶ୍ୱରଙ୍କ ନିକଟବର୍ତ୍ତୀ ହେବାହିଁ ଜୀବନର ପରମ ତୃପ୍ତି ।

କଥାରେ ଅଛି, 'ପିତାମାତାଙ୍କ ସୁକୃତରୁ ପୁତ୍ର ହୁଏ ସୁଖୀ' ମୋ ନନାଙ୍କର ଈଶ୍ୱରଭକ୍ତି, ନିଷ୍କପଟତା, ସରଳ ଜୀବନ ଯାପନ ପ୍ରଣାଳୀ ଯୋଗୁଁ ବୋଧହୁଏ ଆମେ ସ୍ୱାମୀ-ସ୍ତ୍ରୀ ଦି'ଜଣ ଏକାବେଳେ ଚାକିରି ପାଇଲୁ । ପ୍ରଥମ କର୍ତ୍ତବ୍ୟ ନନାଙ୍କ ଇଚ୍ଛା ପୂରଣ କରିବାକୁ ହେବ । ଗାଁରେ ନନାଙ୍କ ଅଧୁରା ଘର ତିଆରି, ଭଉଣୀ ବିବାହ, ପରେ ପୁରୀରେ ଶ୍ରୀକୃଷ୍ଣଙ୍କ ଦୟାରୁ ଜାଗାଟିଏ ମିଳିଲା । ନନା ଶୁଣି ବହୁତ ଖୁସି ହେଲେ । 'ରଥଯାତ୍ରା' ନିଜ ଘରେ ରହି ଦେଖିବେ । ନନା, ବୋଉ ଦୁହେଁ ପୁରୀରେ ଘର ତିଆରିରେ ଲାଗିପଡ଼ିଲେ । ମୁଁ କେବଳ ଶନିବାରେ ଆସି ଘର ତିଆରିର ଉପକରଣ କିଣିବା ସହିତ ମିସ୍ତ୍ରୀଙ୍କୁ ପଇସା ଦେଉଥାଏ । ଚଉଦ ମାସ କାଳ ଲାଗି ସଂପୂର୍ଣ୍ଣ ମାର୍ବଲରେ ଘରଟିଏ ତିଆରି ହେଲା । ସେସବୁ ପାଇଁ ନନା ଓ ମୋ ବୋଉର ତ୍ୟାଗ ମୁଁ ଜୀବନସାରା ସୁଝି ପାରିବିନି । ଘରକାମ ଯେମିତି ହେଉ, ମିସ୍ତ୍ରୀମାନେ ଯାହା କରନ୍ତୁ ପଛେ ନନାଙ୍କ ମନ୍ଦିର ଯାଇ ଜଗନ୍ନାଥ ଦର୍ଶନ ବନ୍ଦ ନଥାଏ । ଆଜି ଠାକୁର ଏମିତି ଦିଶୁଥିଲେ, କାଲି ଏମିତି କାଳିଆ ଚାହିଁଥିଲା ବଖାଣି ହୁଅନ୍ତି ସବୁବେଳେ ।

ସେଦିନ ଥାଏ ଶନିବାର । ମୁଁ ବାରଟାରେ ପୁରୀରେ ପହଞ୍ଚିଲି । ବୋଉର ଭାତ, ଡାଲମା ସହିତ ଶାଗଟା ନିଶ୍ଚିତ, ଖାଇଦେଇ ଭଡ଼ା ଘରୁ ଆସି ନୂଆ ଘରେ ମସିଣାଟିଏ ପକେଇ ତଳେ ଶୋଇଗଲି । ଦକ୍ଷିଣା ପବନରେ ନିଦ ଜୋର୍‌ରେ ଲାଗିଥାଏ । ହଠାତ୍ ଚନ୍ଦନ ଅଗୁରୁର ମହମହ ବାସ୍ନାରେ ପୂରିଗଲା ସାରାଘର । କେହି ତ ଯେମିତି ମତେ କହୁଥିଲା 'ମୋ ଘର କେବେ ହେବ ।' 'ହେଇ ମୁଁ କ'ଣ ରହିବିନି' । ଦିନ ତିନିଟା ହେବ । ନିଦରୁ ଉଠି ବସିଲି । ଘରସାରା ସେମିତି ବାସ୍ନା ଲାଗି ରହିଥାଏ । ଘର ଆରମ୍ଭ ଦିନ ଘରେ ନନା ରଖିଥିଲେ 'ଜଗନ୍ନାଥ'ଙ୍କ ଫଟୋଟିଏ । ଚାହିଁଲି, ସତେ କି ଖିଲି ଖିଲି ହସୁଛନ୍ତି କାଳିଆ ଠାକୁର । ନନା ଆସି ପହଞ୍ଚିଲେ, ସବୁକଥା ଶୁଣିଲେ । କହିଲେ, ବାହୁଡ଼ା ଆଉ ଚାରି ଦିନ ରହିଲା । ଏହାମଧ୍ୟରେ ଘର ପ୍ରତିଷ୍ଠା ନ କଲେ ଆଉ ଶୁଭବେଳା ନାହିଁ । ତୁ ମଧ୍ୟ ଠାକୁରଙ୍କ ଘରଟା ଏ ପର୍ଯ୍ୟନ୍ତ ତିଆରି କଲୁ ନାହିଁ । ତେଣୁ 'ଜଗନ୍ନାଥ' ତୋତେ ତାଙ୍କ ଘର ଶୀଘ୍ର ତିଆରି କରିବାପାଇଁ କହିଗଲେ । ବହୁତ ବଡ଼ ପାପ କରିଛି ଭାବି ଭୋ ଭୋ କାନ୍ଦୁଥିଲି ମୁଁ । ସିଧାସିଧା ଚାଲିଲି ମାର୍ବଲ ମିସ୍ତ୍ରୀ ଘରକୁ । ରାତି ମଧ୍ୟରେ ମାର୍ବଲରେ ଠାକୁରଙ୍କ ମନ୍ଦିର ତାଙ୍କ ଘରେ ତିଆରି ହେଲା । ପିତଳର ମୂର୍ତ୍ତି ସହିତ କାଳିଆ ଠାକୁରଙ୍କ ମୂର୍ତ୍ତିଙ୍କୁ ଯଥାବିଧି ନନା ପୁରୋହିତ ମାନଙ୍କ ସହିତ ଘର ପ୍ରତିଷ୍ଠା ଓ ଠାକୁର ପ୍ରତିଷ୍ଠା କାମ ସମାପନ କଲେ । ସେ ଦିନର ନିଛାଟିଆ ଦ୍ୱିପ୍ରହରର ଦକ୍ଷିଣା ପବନର ଶୀତଳତା ଓ ଅଗୁରୁ ଚନ୍ଦନର ବାସ, ଠାକୁର ଘର ଦ୍ୱାର ଖୋଲିଲେ ଭାସିଆସେ ସେଇ ସ୍ୱର 'ମୋ ଘର କେବେ ହେବ ? ମୁଁ କ'ଣ ରହିବିନି ?' ସିଏ ତ ଭାବର ଠାକୁର, ଭକ୍ତିର ଠାକୁର । ସିଏ ଥାଆନ୍ତି ଭକ୍ତର ହୃଦୟରେ । ସରଳ ନିଷ୍କପଟ, ମଣିଷ ପଣିଆ ଭିତରେ । ସିଏ ଯେତେବେଳେ ରତ୍ନ ସିଂହାସନରୁ ଓହ୍ଲାଇ ଆସନ୍ତି ସାଧାରଣ ମଣିଷର ଘରକୁ ସେତେବେଳେ ଘର ପାଲଟିଯାଏ 'ଶ୍ରୀମନ୍ଦିର' ।

**ନରେନ୍ଦ୍ର କୋଣ, ଦେବୀଘାଟ, ପୁରୀ**
**ଭ୍ରାମ୍ୟଭାଷ : ୯୭୭୮୭୩୪୫୯୯**



# ଜଗନ୍ନାଥ ମୋର ଭାବର ଠାକୁର

## ଦୟାନିଧି ତ୍ରିପାଠୀ

ମୋ ପ୍ରଭୁ ଶ୍ରୀଜଗନ୍ନାଥ ମୋ ପାଖେ ପାଖେ ସର୍ବଦା ଅଛନ୍ତି ଏହା ମୁଁ ଖୁବ୍ ପିଲାଦିନୁ ଅନୁଭବ କରିଥିଲି, କିନ୍ତୁ କଅଁଳ ମନରେ ସେ ଅନୁଭବର ବିଶାଳତାକୁ ମୁଁ ମାପି ପାରିନଥିଲି । ତଥାପି ମନେ ପଡ଼େ ଛୋଟ କଥାଟିଏ ଅବଶ୍ୟ । ପାତ୍ର ପାତ୍ରୀ ସମୟ ସବୁ ମୁଁ ଭୁଲିଯାଇଛି ଖାଲି ଅନୁଭବଟି ହିଁ ସାଇତି ରଖିଛି ହୃଦୟର ସ୍ୱତନ୍ତ୍ର ଜାଗାରେ । ସ୍ମୃତିକୁ ଉଜାଗର କଲେ ଜାଗିଉଠୁଛି ଏକ ଅପୂର୍ବ ଅମୃତ ଅନୁଭବର ସ୍ପନ୍ଦନ ।

ବୟସ ସେତେବେଳେ ୧୦-୧୨ ବର୍ଷ । ମୁଁ ମୋର ଅଜା ପଣ୍ଡିତ ରତ୍ନାକର କରଶର୍ମାଙ୍କ ପୁରୀ ମାଟିମଣ୍ଡପ ସାହିସ୍ଥ ବାସଭବନରେ ରହୁଥାଉ । ନୂଆକରି ନାମ ଲେଖାଇଥାଏ 'ବିଶ୍ୱମ୍ଭର ବିଦ୍ୟାପୀଠ'ରେ । ସାଙ୍ଗସାଥୀ ଖୁବ୍ କମ୍ ଥା'ନ୍ତି । ନାଁ ମନେ ନଥିଲେ ମଧ୍ୟ ସେବାୟତ ପରିବାରର ଗୋଟିଏ ପିଲା ମୋର ସହପାଠୀ ଥାଏ । ମୋର ମାମୁଁ ସେତେବେଳେ ମୋ ପାଇଁ ଖେଳଛୁଟିରେ ଜଳଖିଆ ଖାଇବାର ବନ୍ଦୋବସ୍ତ ଗୋଟିଏ ଠେଲାଗାଡ଼ି ଜଳଖିଆ ଦୋକାନ ପାଖରେ କରିଥା'ନ୍ତି । ତାଙ୍କର ନିର୍ଦ୍ଦେଶ ଥାଏ ସର୍ବାଧିକ ୫୦ ପଇସାର ଜଳଖିଆ ମୁଁ ପ୍ରତିଦିନ ଖାଇପାରିବି । ୧୯୬୭-୬୮ ମସିହା କଥା । ତେଣୁ ୫୦ ପଇସାରେ ମଧ୍ୟ ପେଟପୂରା ଜଳଖିଆ ମିଳୁଥାଏ । ସମୟ ସମୟରେ ଆମେ ଦୁଇ ସାଙ୍ଗ ମଧ୍ୟ ମିଶିକରି ଖାଉ । ଏମିତି ଅନ୍ତରଙ୍ଗତା ବଢ଼ିବା ପରେ ଥରେ ଥରେ ମୋ ସାଙ୍ଗ ତାଙ୍କର ଦୋଳମଣ୍ଡପ ସାହିସ୍ଥ ନିଜ ଘରକୁ ମତେ ଡାକିନିଏ । ଉଚ୍ଚା ଉଚ୍ଚା ପିଣ୍ଡା ପଥରର ଗଳି ଘର ମତେ ମନ୍ଦିର ଭଳି ଲାଗେ ଏବଂ ପ୍ରାୟତଃ ତାଙ୍କ ଘରେ ଶୁଖିଲା ମହାପ୍ରସାଦ ଖାଇବାକୁ ମିଳେ । ତେଣୁ ତାଙ୍କ ଘରକୁ ଯିବାର ମୋର ଏକ ଆକର୍ଷଣ ଥାଏ । କିନ୍ତୁ ଏହି ଆକର୍ଷଣରେ ଭଟ୍ଟା ପଡ଼ିଲା ସେହିଦିନ, ଯେଉଁଦିନ ଜଗନ୍ନାଥଙ୍କ ଏକ ଛୋଟ ମୂର୍ତ୍ତି ପାଇଁ ମୋର ମୋହ, ମୋ ସାଙ୍ଗର ପିତାଙ୍କ ଦ୍ୱାରା ପ୍ରତ୍ୟାଖ୍ୟାତ ହେଲା । ଖୁବ୍ କଠୋର ଭାଷାରେ ସେ ମୋ ସାଙ୍ଗକୁ କହିଲେ ଘରୁ କୌଣସି ମୂର୍ତ୍ତି ତୋ ସାଙ୍ଗକୁ ଦେବୁନି । ଅନେକ ମନସ୍ତାପ ନେଇ ଫେରିଆସିଥିଲି ତାଙ୍କ ଘରୁ ଆଉ ଅନେକ ଅନୁରୋଧକୁ ମଧ୍ୟ ପ୍ରତ୍ୟାଖ୍ୟାନ କରିଥିଲି ଓ ମୋ ସାଙ୍ଗ ଘରକୁ ଯାଇନଥିଲି । ୯[illegible] ମୂର୍ତ୍ତିରେ କ'ଣ ଏମିତି ଥିଲା ଯେ ମଉସା ମୋ ସାଙ୍ଗକୁ ମନାକଲେ ମତେ ଦେବାପାଇଁ ? ଏ ପ୍ରଶ୍ନ ମୋର ଅନେକ ଦିନ ମନକୁ ଆନ୍ଦୋଳିତ କଲା । ପ୍ରାୟ ୭-୮ ମାସ ପରେ ହଠାତ୍ ଦିନେ ମୋ ସାଙ୍ଗ ମତେ ପାଖକୁ ଡାକିଲା ଓ ଖୁବ୍ ଯତ୍ନରେ କାଗଜରେ ବନ୍ଧା

ଏକ ମୂର୍ତ୍ତି ମତେ ପ୍ରଦାନ କଲା ଆଉ ଧୀରେ କହିଲା, 'ତୁ ଯେଉଁ ମୂର୍ତ୍ତି ପାଇଁ ମନଦୁଃଖ କରିଛୁ ଇଏ ସେହି ମୂର୍ତ୍ତି' । ମୁଁ ତଟସ୍ଥ ହୋଇଗଲି । କହିଲି, ତୁ କ'ଣ ଘରୁ ଲୁଚେଇ କରି ଆଣି ଦେଇଛୁ । ମୋ ସାଙ୍ଗ କହିଲା, ନା' ବାପା ନିଜେ ଡାକିକରି ଦେଲେ କହିଲେ ଆରେ ତୋ ସାଙ୍ଗ ଏମାର ମଠ ତଳେ 'ନୀଳାଚଳ ପୁସ୍ତକ ଭଣ୍ଡାର' କରିଥିବା ପଣ୍ଡିତ ରତ୍ନାକର କରଙ୍କ ନାତି, ମୁଁ ଏକଥା ଜାଣିନଥିଲି, ସେଇଥିପାଇଁ ମନାକଲି ଏବେ ନେଇଯା ତାକୁ ଏ ମୂର୍ତ୍ତି ଦେବୁ ଆଉ କହିବୁ ମନଲଗେଇ ପୂଜା କରିବ । ମୁଁ କହିଲି ମୁଁ ତ ପୂଜା ଜାଣିନି ଖାଲିରେ ଏ ମୂର୍ତ୍ତି କାହିଁକି ନେବି ଯଦି କିଛି ଖରାପ ହେବ । ମୋ ସାଙ୍ଗ ହସିଲା, କହିଲା ଆଉ ସେତେବେଳେ କ'ଣ ମାଗୁଥିଲୁ ଖେଳିବା ପାଇଁ ! ମୁଁ କହିଲି ନା ଯେ ମତେ ଭାରି ଭଲ ଲାଗିଲା ତ ତେଣୁ ମାଗିଦେଲି । ଯଦି କିଛି ଅସୁବିଧା ଅଛି ତେବେ ଥାଉ ମୁଁ ନେବିନି । ଅସୁବିଧା କିଛି ନାହିଁ ଯେ ଇଏ ଘର ସଜେଇବା ମୂର୍ତ୍ତି ନୁହେଁ 'ଦାରୁ ବିଗ୍ରହ' । ତେଣୁ ନିଷ୍ଠା ଓ ପୂଜା ଦରକାର । ତୁ ନେ ନହେଲେ ତୋ ଅଜାଙ୍କୁ ଦେବୁ, ସେ ପୂଜା କରିବେ ।

ମନର ଉତ୍କଣ୍ଠା ଓ ସେ ବିଗ୍ରହ ପ୍ରତି ଥିବା ମୋର ମୋହ ମୋତେ ସେ ବିଗ୍ରହକୁ ଆଣିବାକୁ ପ୍ରବର୍ତ୍ତାଇଲା ଓ ମୁଁ ମୋ ସାଙ୍ଗ ପାଖରୁ ତାହା ଗ୍ରହଣ କଲି । ଚାରି ଆଙ୍ଗୁଳି ଉଚ୍ଚତାର ଅତି କମନୀୟ ମୂର୍ତ୍ତିଟିଏ ତା'ର ପ୍ରାପ୍ତିର ଆନନ୍ଦ ସେତେବେଳେ ଥିଲା ଅବର୍ଣ୍ଣନୀୟ । ମୋ ପଢ଼ା ମୁଣିରେ ତାକୁ ରଖିଥାଏ । ଯେତେବେଳେ ଇଚ୍ଛା ହେଉଥାଏ ଖୋଲି ଦେଖୁଥାଏ ପୁଣି ରଖିଦେଉଥାଏ । ସେ ବିଗ୍ରହକୁ ନିଜର କରିବାର ମୋହ ମତେ ଏତେ ଘାରିଲା ଯେ ମୁଁ ତାଙ୍କର ପୂଜାର୍ଚ୍ଚନା କଥା ଭୁଲିଗଲି । ମୋ ସାଙ୍ଗବି ମୋତେ ସେ ବିଷୟରେ କିଛି ପଚାରୁ ନଥାଏ । ତେଣୁ ସେ ବିଗ୍ରହ ମୋର ପଢ଼ାସାଥୀ ପାଲଟିଗଲେ । ପ୍ରତିଦିନ ସ୍କୁଲ ପୁଣି ଘର, ପୁଣି ଘର ଓ ସ୍କୁଲ ସତରେ କେତେ ଯନ୍ତ୍ରଣା ମୁଁ ଦେଉଥାଏ ମୋ ପ୍ରଭୁଙ୍କୁ । ମୋ ପ୍ରଭୁ କିନ୍ତୁ ନିର୍ବିକାର । ଦିନେ ହଠାତ୍ ସ୍କୁଲରେ ବହିଖାତା କାଢୁ କାଢୁ ମୋ ପ୍ରଭୁ ଭୂଇଁରେ ଲୋଟିପଡ଼ିଲେ । ମୋ ସାଙ୍ଗ ଏହାଦେଖି ମତେ ଖୁବ୍ ରାଗିଲା । କହିଲା ବାପା କହିଥିଲେ ପୂଜା କରିବାପାଇଁ, ତୁ ଏ ପର୍ଯ୍ୟନ୍ତ ବସ୍ତାନିରେ ଧରି ବୁଲୁଛୁ । ତୋର ଖରାପ ହେବ । ଆଜି ଗଲେ ଗଙ୍ଗା ପାଣି ଛିଞ୍ଚି ଖଟୁଲିରେ ରଖିଦେବୁ । ମନରେ ଛନକା ପଶିଲା, ସତରେ ପ୍ରଭୁଙ୍କୁ କେତେ କଷଣ ଦେଲିଣି କ'ଣ କିଛି ଅଘଟଣ ଘଟିବ । ସେଦିନ ଘରକୁ ଫେରୁ ଫେରୁ ମୋର ଆଈ ଭବାନୀ ଦେବୀଙ୍କୁ ସବୁକଥା କହିଲି ଓ ତାଙ୍କ ପରାମର୍ଶ ଅନୁସାରେ ଠାକୁର ଘର ଖଟୁଲିରେ ନରଖି ତାଙ୍କ ଶୋଇବା ଘରେ ଥିବା ଅନ୍ୟ ଏକ ଛୋଟ ଖଟୁଲିରେ ସେ ବିଗ୍ରହକୁ ଉପବେଶନ କରାଗଲା । ମୋ ଆଈ ମଧ୍ୟ ପ୍ରତିଦିନ ସକାଳ ସଂଧ୍ୟାରେ ଧୂପ ଦୀପ ଦେଇ ପୂଜା କଲେ ।

ମୋ ମନରେ ଥିବା ମୋହ ଯୋଗୁ ମୁଁ ବାରମ୍ବାର ଯାଇ ସେ ବିଗ୍ରହକୁ ନିରୀକ୍ଷଣ କରୁଥାଏ । ଆଈ ମଧ୍ୟ ଥଟ୍ଟାରେ କହୁଥା'ନ୍ତି ଦେଖୁତ ପୁଣି ଏତେ ଦେଖୁଛୁ କ'ଣ ? ପିଲା ବୁଦ୍ଧିରେ କହିଲି ମୋତେ ଭଲ ଲାଗୁଛି ତେଣୁ ବାରମ୍ବାର ଦେଖୁଛି । ଆଈ ମୋ କଥା ଶୁଣି କହିଲେ ଆରେ ହେ ମୋ ନାତିଟା କାଳିଆ ପ୍ରେମରେ ପଡ଼ିଗଲାଣିରେ । ହଉ ଭଲ ହେଲା ସବୁଦିନ ତାଙ୍କୁ ଦେଖି, ତାଙ୍କ ସହ କଥାବାର୍ତ୍ତା କରେ, ହେଲେ ପୁଣି ନେଇକରି ବହି ବସ୍ତାନି ଭିତରେ ପୁରାନା । ଅନ୍ତତଃ ମୁଁ ଏଠି ଧୂପ ଦୀପଟିଏ ଦେଉଛିତ । ମୁଁ ଟିକିଏ ଡରିଗଲି ଭାବିଲି ଆଈ ମୋ ମନକଥା ଜାଣିଲେ କିପରି ! ସତ କହୁଛି ଖଟୁଲିରେ ସିନା ରଖିଲି ହେଲେ ମୋ ମନ ଭିତରେ ଥାଏ ତାଙ୍କୁ ବହି ବସ୍ତାନିରେ ରଖି ସାଙ୍ଗରେ ଧରି ବୁଲିବାକୁ । ୩-୪ ମାସ ଏମିତି କଟିଗଲା, ଆଈଙ୍କ ଖଟୁଲିରେ ମୋ ପ୍ରଭୁ ବସିଥା'ନ୍ତି । ମୁଁ ଯେତେବେଳେ ଇଚ୍ଛା ହେଉଥାଏ ଯାଇ ଦେଖି ଆସୁଥାଏ । ତା'ପରେ ଖରାଦିନ ଛୁଟି ହେଲା । ସ୍କୁଲ ବନ୍ଦ ରହିବାରୁ ମୁଁ ଅଜାଙ୍କ ଘରୁ ଗାଁକୁ 'ଲଳିତା ପାଟପୁର ଶାସନ' ଆସିଲି । ଗଜପତି ମହାରାଜାଙ୍କ ଏହା ଏକ କରବାଡ଼ ଶାସନ ଅର୍ଥାତ୍ ମହାରାଣୀ ଲଳିତା ପାଟମହାଦେଈଙ୍କ ଦ୍ୱାରା ପ୍ରଦତ୍ତ ଶାସନ । ତେଣୁ ପ୍ରତ୍ୟେକ ଶାସନ ଗ୍ରାମ ଭଳି ରାସ୍ତା ଖୁବ୍ ଚୌଡ଼ା ଗୋଟିଏ ପଟେ ମଲାଗୁଣି ନଦୀର ଶାଖା ସାହାଡ଼ାଯୋଡ଼ି ନଦୀ ତା' ପାଖରେ ବୃନ୍ଦାବନେଶ୍ୱରଙ୍କ ମନ୍ଦିର, ଅନ୍ୟପଟେ ପୁଷ୍କରିଣୀ ଗମା ଗାଡ଼ିଆ ଓ ତା' ନିକଟରେ ଦ୍ୱୋଳବେଦୀ, ପ୍ରତ୍ୟେକ ଘର ସାମନାରେ ନାରିକେଳ ବୃକ୍ଷ । ୬୦-୬୫ ଘର ବିଶିଷ୍ଟ ଛୋଟ ଗାଁଟିଏ । ତଥାପି ଅନେକ ଆନନ୍ଦ ସେଠି, ମୋର ଜେଜେ ବାପା ଶ୍ରୀ ଚନ୍ଦ୍ରଶେଖର ତ୍ରିପାଠୀ ବ୍ରିଟିଶ ଅମଳର ସରବରାକାର, ମା' ପଦ୍ମାବତୀ ଦେବୀ ଖୁବ୍ ସରଳ, ନିଷ୍କପଟ ଓ ପ୍ରାଣବନ୍ତ । ନଈରେ ଗାଧୁଆ, ଗାଁ ଦାଣ୍ଡରେ ଖେଳ ସାଙ୍ଗକୁ ମାଛଧରା, ଆମ୍ବ ତୋଳା, ତୋଟାରେ ଖରାବେଳେ ଆମ୍ବ ଗଛ ଡାଳରେ ଦୋଳି ଖେଳ ସବୁ ଆଜିବି ମନେ ପଡ଼େ । ମନେବି ପଡ଼େ ଗାଁକୁ ବିକ୍ରି ଆସୁଥିବା ବରା ଘୁଘୁନି, ଗାଁ ମଝି କୂଅର ଚାନ୍ଦିନୀରେ ସଙ୍ଗୀତ ଆସର ଏବଂ ବର୍ଷେ ବର୍ଷେ ଗାଁରେ ଅନୁଷ୍ଠିତ ହେଉଥିବା ନାଟକ ଇତ୍ୟାଦି । ତେଣୁ ଗାଁକୁ ଯିବାପାଇଁ ମୁଁ ଖୁବ୍ ତତ୍ପର ହୋଇପଡ଼ିଲି ଓ ସବୁ ସଜାଡ଼ି ନେଲି । ନନା ଆସି ମତେ ସାଙ୍ଗରେ ବହି ବସ୍ତାନି ଧରିବାକୁ କହିଲେ । ଖାଲି ନ ବୁଲି ଖରାଛୁଟିରେ କିଛି ପାଠ ପଢ଼ିବା ପାଇଁ ଉପଦେଶ ଦେଲେ । ତାଙ୍କ ଉପଦେଶ ମାନି ବହି ବସ୍ତାନି ଧରି ମୁଁ ପହଞ୍ଚିଲି ଗାଁରେ ନନାଙ୍କ ସାଙ୍ଗରେ । ପ୍ରଥମ ଦିନଟି ନନା ରହୁଥିବାରୁ ସଂଧ୍ୟାରେ ବହି ବସ୍ତାନି ଖୋଲିଲି, କିନ୍ତୁ ଏ କ'ଣ ମୋ ବସ୍ତାନି ଭିତରେ ଆଈଙ୍କ ଖଟୁଲିରେ ରଖିଥବା 'ବିଗ୍ରହ' । ଖୁସିରେ ଆତ୍ମହରା ହୋଇଗଲି । ମନେ ମନେ ଆଈଙ୍କୁ ଧନ୍ୟବାଦ ଦେଲି । ଭାବିଲି ମୋର ବିଗ୍ରହଙ୍କ ପ୍ରତି ଲୋଭ ଜାଣିପାରି ଆଈ

ବୋଧହୁଏ ମୋ ବହି ବସ୍ତାନି ଭିତରେ ଏହା ରଖି ଦେଇଛନ୍ତି । ତା'ପରେ ସେ ବିଗ୍ରହ ମୋର ଖେଳ ସାଥୀ ପାଲଟିଗଲେ । ବହି ବସ୍ତାନିରୁ କାଢ଼ି ମୁଁ ତାଙ୍କୁ ପ୍ୟାଣ୍ଟ ପକେଟରେ ରଖିଲି । ଗାଁ ଦାଣ୍ଡ ଧୂଳି ଖେଳରେ ସେ ମୋ ସାଙ୍ଗରେ ଖେଳିଲେ, ନଈ କୂଳରେ ମୋ ଜାମା ପେଣ୍ଟ ଭିତରେ ରହି ମୋର ନଈ ପହଁରା ଦେଖିଲେ । ବନଶୀ ଖାଡ଼ି ଧରି ମାଛ ମାରିଲା ବେଳେ ବି ରହିଲେ ମୋ ପାଖରେ । ମୁଁ ଭୁଲିଗଲି ସେ ଠାକୁର ଆଉ ମୁଁ ତାଙ୍କ ସେବକ ବୋଲି । ଭକ୍ତି କ'ଣ ଜାଣିନଥିଲି, କିନ୍ତୁ ଅନ୍ତରରେ ଭଲ ପାଉଥିଲି । ଭାବ କ'ଣ ଜାଣିବା ପୂର୍ବରୁ ତାଙ୍କ ଭାବର ଡୋରିରେ ବାନ୍ଧି ହୋଇଯାଇଥିଲି । ସେହି ଛୋଟ ବିଗ୍ରହଙ୍କୁ ପାଖରେ ରଖିଲେ ଲାଗୁଥିଲା ସତେ ଯେପରି ମୋର ଅତି ଅନ୍ତରଙ୍ଗ କିଏ ମୋ ପାଖରେ ଅଛନ୍ତି । ୧୫-୨୦ ଦିନ କଟିଗଲା । ତା'ପରେ ପୁଣି ଫେରିଲି ପୁରୀ ଅଜାଙ୍କ ଘରକୁ । ପହଞ୍ଚୁ ପହଞ୍ଚୁ ଆଈଙ୍କୁ ଧନ୍ୟବାଦ ଦେବାକୁ ଦୌଡ଼ିଗଲି । କିନ୍ତୁ ମୋତେ ଦେଖୁ ଦେଖୁ ଆଈ କହିଲେ ହଇରେ 'କୁତୁରୁପିଆ' ନାତି ଟୋକା ଦେଇଥିଲୁ ତ ନେଇଗଲୁ କାହିଁକି ? ମୋର ଆଉ ଅବୁଝା କିଛି ରହିଲାନି । ମୁଁ ଜାଣିପାରିଲି ଆଈ ସେହି ବିଗ୍ରହ କଥା କହୁଛନ୍ତି । ତେଣୁ ମୁଁ କହିଲି ମୁଁ କେତେ ବେଳେ ନେଲି ତୁମେ ବୋଧହୁଏ ମୋ ବହି ବସ୍ତାନିରେ ରଖି ଦେଇଥିଲ । ମୋ କଥା ଶୁଣି ଆଈ ଅବାକ । କହିଲେ ହଇରେ ମିଛୁଆ ତୋ ଅଜାଙ୍କଠୁ ଏଇ ମିଛ କହିବା ଶିଖିଲୁଣି କି ? ମୁଁ ଟିକିଏ ଡରିଯାଇ କହିଲି ସତ କହୁଛି ଆଈ ମୁଁ ନେଇନି, କିନ୍ତୁ ମୋ ବହି ବସ୍ତାନିରେ ସେ ବିଗ୍ରହ ଥିଲେ । ସେଇଥିପାଇଁ ତ ମୁଁ ତୁମକୁ ଧନ୍ୟବାଦ ଦେବାକୁ ଆସିଥିଲି । ଏଇ ନିଅ ପୁଣି ଗଙ୍ଗା ପାଣି ଛିଞ୍ଚି ଖଟୁଲିରେ ବସେଇଦିଅ । ଗାଁରେ ମୋ ସହିତ ଖୁବ୍ ମଜା କରିଛନ୍ତି । ମୋ କଥାକୁ ବିଶ୍ୱାସ କରି ନପାରି ଆଈ ଟିକିଏ ଗମ୍ଭୀର ହୋଇଗଲେ ଓ ବିଗ୍ରହଙ୍କୁ ଯଥାବିଧି ଖଟୁଲିରେ ସ୍ଥାପନ କଲେ । ସପ୍ତମ ଶ୍ରେଣୀ ପରେ ମୁଁ ନନାଙ୍କ ସାଙ୍ଗରେ ତାଙ୍କରି ଚାକିରି ଜାଗା ଟିଟିଲାଗଡ଼କୁ ଚାଲିଗଲି । ସେଠାରେ ଟିଟିଲାଗଡ଼ ହାଇସ୍କୁଲରେ ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲି । ସେଠି କୁମୁଡ଼ା ପାହାଡ଼ ଓ ଅନେକ ସାଥୀ ସାଙ୍ଗ ମେଳରେ ମୁଁ ଭୁଲିଗଲି ମୋ ଅନ୍ତରଙ୍ଗ ବିଗ୍ରହଙ୍କୁ । ମାଟ୍ରିକ ପରେ ପୁଣି ଅଜା ଘରକୁ ଆସିଲି ଓ ଖୋଜିଲି ଆଈଙ୍କ ଖଟୁଲିରେ ସେ ବିଗ୍ରହଙ୍କୁ, କିନ୍ତୁ ମିଳିନଥିଲେ ମୋ ପ୍ରଭୁ । ଆଈଙ୍କୁ ପଚାରିବାରୁ କହିଲେ ମୁଁ ଯିବାପରେ ପରେ କିଏ ଗୋଟିଏ ଛୋଟପିଲା ଆସି ମୋର ପରିଚୟ ଦେଇ ବା ନିଜକୁ ମୋର ସାଙ୍ଗ ବୋଲି କହି ସେ ବିଗ୍ରହ ମାଗି ନେଲେ । ମନେ ମନେ ଭାଙ୍ଗି ପଡ଼ିଲି । ଦୁଃଖରେ କହିଲି, ମୁଁ ବଡ଼ ହୋଇଗଲି ବୋଲି ନୂଆ ଖେଳ ସାଥୀଟିଏ ବାଛି ନେଲ ପ୍ରଭୁ । ସତରେ ସେ ବିଗ୍ରହ କେବେ ଖଟୁଲିରେ ବସି ପୂଜା ପାଇବାର ବିଗ୍ରହ ନଥିଲେ, ସେ ଥିଲେ ଭାବ ବିନୋଦିଆ ଖେଳ ସାଥୀଟିଏ ।

ଆଜି ଯେତେବେଳେ ପ୍ରଭୁଙ୍କ ଉଦ୍ଦେଶ୍ୟରେ ଜଣାଣଟିଏ ଲେଖୁଥିଲି, ଲେଖିବାକୁ ଇଚ୍ଛା ହେଲା -

ଭାବର ଠାକୁର ଭାବରେ ବିଭୋର
ହୋଇ ରହିଲକି ଆଉ,
ଖାଲି ପଡ଼ିଅଛି ହୃଦ ସିଂହାସନ
ଫେରିବକି ମହାବାହୁ ।

ଜାଣି ମୁଁ ନଥିଲି ତୁମରି ମହିମା
ସଙ୍ଗେ ରଖିଥିଲି ତୁମରି ପ୍ରତିମା
ସାଥୀଟିଏ ହୋଇ ଆହେ ଭାବଗ୍ରାହୀ
ଭାବେକି ବାନ୍ଧିବ ଆଉ
ଭାବର ଠାକୁର... ।। ୧ ।।

ପିଲା ଖେଳସାଥୀ ହୋଇଥିଲ ତୁମେ
ପାଇଛି ଆନନ୍ଦ ତୁମ ସାନ୍ନିଧରେ
ଏ ବୃଦ୍ଧ ବୟସ ଆହେ ଜଗଦୀଶ
ତବ କୃପା ମିଳିଯାଉ
ଭାବର ଠାକୁର... ।। ୨ ।।

ଏହି ଅମୃତ ଅନୁଭବଟିର ସ୍ମୃତି ଏତେ ଦିନ ପରେ ମୋ ମନକୁ ଆନ୍ଦୋଳିତ କରିବାର କାରଣ ହେଲା ଅନ୍ତର ଆତ୍ମାରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉପଲବ୍ଧି । କେବଳ ଶ୍ରୀମନ୍ଦିରରେ ଶ୍ରୀବିଗ୍ରହ ଦର୍ଶନ, ଶ୍ରୀଜଗନ୍ନାଥଙ୍କ ଦର୍ଶନର ପୂର୍ଣ୍ଣତା ନୁହେଁ । କାରଣ ଶ୍ରୀଜଗନ୍ନାଥ ସଚରାଚର ଜଗତରେ ପରିବ୍ୟାପ୍ତ ବ୍ରହ୍ମସତ୍ତା, ସର୍ବବ୍ୟାପୀ, ସର୍ବସାକ୍ଷୀ ଓ ଚେତନ ସ୍ୱରୂପ । ସାଧାରଣ ମନୁଷ୍ୟ ମଧ ସ୍ୱୀୟ ସାଧନା ବଳରେ ଏହି ବ୍ରହ୍ମସତ୍ତାର ଉପଲବ୍ଧି କରିପାରିବ । ଆଉ ତାଙ୍କୁ ଉପଲବ୍ଧି କରିବାପରେ ଆଉ ଅଧିକ କିଛି ଜାଣିବାକୁ ବା ଉପଲବ୍ଧି କରିବାକୁ ବାକି ରହିବ ନାହିଁ । ଅପ୍ରାପ୍ତି, ଅଶାନ୍ତି, ଦୁଃଖ, ଏସବୁ ତୁଚ୍ଛ ହୋଇଯିବ । କାରଣ ମନ ମଜ୍ଜିଯିବ ସେ ବିଭୁ ପ୍ରେମରେ, ଶାଶ୍ୱତ ପ୍ରେମରେ, ସ୍ମୃତିରେ ସ୍ମୃତିରେ, ଶାନ୍ତିରେ ଓ ଶାନ୍ତିରେ... ତେଣୁ ଉପନିଷଦରେ କୁହାଯାଇଛି 'ଯସ୍ମିନ୍ ବିଜ୍ଞାତେ ସର୍ବମିଦଂ ବିଜ୍ଞାତଂ ଭବତି ।'

ସହକାରୀ ବନ ସଂରକ୍ଷକ
ରାଜ୍ୟ ଉଦ୍ଭିଦ ଉଦ୍ୟାନ, ନନ୍ଦନକାନନ
ବାରଙ୍ଗ, ଖୋର୍ଦ୍ଧା
ଭ୍ରାମ୍ୟଭାଷ : ୯୪୩୭୦୩୭୧୩୦



# ଶ୍ରୀଜୀଉଙ୍କ ଦିବ୍ୟ ଦର୍ଶନ

## ଉଦୟନାଥ ତ୍ରିପାଠୀ

ଆଷାଢ଼ ମାସ । ମେଘ ମେଦୁରିତ ଆକାଶ । ମଝିରେ ମଝିରେ ଅସରାଏ ଅସରାଏ ବର୍ଷା । ଧରାବକ୍ଷରେ ମୟୂରଙ୍କ ନୃତ୍ୟ । ଗ୍ରୀଷ୍ମ ପରେ ବର୍ଷାର ଶୀତଳ ପବନ । ପ୍ରାଣୀମାନଙ୍କ ମନରେ ନବ ଉନ୍ମାଦନା, ଅଫୁରନ୍ତ ପୁଲକ । ପୁଣି ଏହି ସମୟରେ ଶ୍ରୀଜୀଉଙ୍କର ପୁରୀ ଧାମରେ ରଥଯାତ୍ରା ଆଣିଦିଏ ଏ ସଂସାରୀ ମନୁଷ୍ୟ ପ୍ରାଣରେ ଅନିର୍ବଚନୀୟ ଆନନ୍ଦ ।

ପ୍ରଭୁଙ୍କ ଶ୍ରୀଚରଣରେ ନମ୍ର ନିବେଦନ ସବୁ ମନୁଷ୍ୟଙ୍କ ଭାଗ୍ୟରେ ଆଣେ ନାହିଁ ତୃପ୍ତି । କେବଳ ପ୍ରଭୁ ଜଗନ୍ନାଥଙ୍କ କୃପା ବର୍ଷା ନ ହେଲେ ଏହା ସମ୍ଭବପର ହୁଏନା । ଏହାହିଁ ଅନୁଭବୀ ସିଦ୍ଧ ମନୁଷ୍ୟଙ୍କର ମତ ।

ମୁଁ ଜଣେ ସାଧାରଣ ଲୋକ । ଗୃହ ଜଞ୍ଜାଳରେ ସର୍ବଦା ଲିପ୍ତ । ଶ୍ରୀଗୁଣ୍ଡିଚାର ଅସୁମାରି ଜନ ଗହଳିରେ ଦର୍ଶନ ଲାଭକୁ ଆଶା କରି ଦର୍ଶନ ନ କରିପାରିବାର ବ୍ୟର୍ଥତାରେ ମଗ୍ନ ହୋଇ ବସିଥାଏ ଭୁବନେଶ୍ୱରସ୍ଥ ଆଦିମାତା କଲୋନୀର ସ୍ୱଗୃହରେ ସଂଧ୍ୟା କାଳରେ । ଠିକ୍ ସାତଟା ସମୟରେ ମୋର ଜଣେ ପରିଚିତ ବନ୍ଧୁ ହଠାତ୍ ଦେବଦୂତ ଭଳି ପ୍ରବେଶ କରିଥିଲେ ମୋ ବିଶ୍ରାମରତ ଗୃହ ମଧ୍ୟକୁ । କ'ଣ ତ୍ରିପାଠୀ ବାବୁ ! ଆଜି ଆଷାଢ଼ ମାସର କେଉଁ ତିଥି ଜାଣନ୍ତି କି ? ମୁଁ ଉତ୍ତର ଦେଲି, ନାଁ । କାହିଁକି ଏତେ ବ୍ୟଗ୍ରତାରେ ପଚାରି ବସିଲେ ଏ ଅପ୍ରାସଙ୍ଗିକ ପ୍ରଶ୍ନଟିକୁ ଜାଣିପାରେ କି ? ସେ ହସି ହସି ପ୍ରତ୍ୟୁତ୍ତର ଦେଲେ, ଦିନଟିକୁ ଅପ୍ରାସଙ୍ଗିକ ବୋଲି କୁହନ୍ତୁ ନାହିଁ । ଏହା ହେଉଛି ଏକ ମହତ୍ତ୍ୱପୂର୍ଣ୍ଣ ଦିନ । ଆଷାଢ଼ ମାସ ନବମୀ ତିଥି । ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର ଓ ମା' ସୁଭଦ୍ରାଙ୍କ ପାଇଁ ଶେଷ ରହଣି ଦିନ ଶ୍ରୀଗୁଣ୍ଡିଚା ମନ୍ଦିର ମଧ୍ୟରେ । ଆସନ୍ତାକାଲି ପ୍ରତ୍ୟାବର୍ତ୍ତନ କରିବେ ଶ୍ରୀଜୀଉମାନେ ବଡ଼ ଦେଉଳ ଅଭିମୁଖେ । ଏହିଦିନ ଯେଉଁ ଭକ୍ତମାନେ ଶ୍ରୀଜୀଉଙ୍କ ଦର୍ଶନର ସୁଯୋଗ ଲାଭ କରନ୍ତି ସେମାନେ ମୋକ୍ଷପ୍ରାପ୍ତ ହୁଅନ୍ତି । ପ୍ରଭୁ ସେମାନଙ୍କ ହୃଦୟରୁ ସମସ୍ତ ପାପ, ତାପ, କଳୁଷ ଦୂର କରନ୍ତି ବୋଲି ଜଗନ୍ନାଥପ୍ରେମୀ ଭକ୍ତ ମାନଙ୍କର ବିଶ୍ୱାସ । ଏ କଥା ତ ମୁଁ ଶୁଣିଛି କହିଲେ ତ୍ରିପାଠୀ ବାବୁ । ମାତ୍ର ରାତ୍ରି ଆଗତ ପ୍ରାୟ । ଆଉ କେତେ ଘଣ୍ଟା ପରେ ପ୍ରଭୁଙ୍କର ବାହୁଡ଼ା ଯାତ୍ରା ଆରମ୍ଭ ହେବ । ଏଣୁ ପ୍ରଭୁଙ୍କ ଦର୍ଶନ ଆଶା ଏ ମୁହୂର୍ତ୍ତରେ ଚିନ୍ତା କରିବା ମୋ ପାଇଁ ସଂପୂର୍ଣ୍ଣ ଅର୍ଥଶୂନ୍ୟ ବୋଲି ମୁଁ ଭାବୁଛି ।

ଭାବୁଛନ୍ତି କାହିଁକି କହିଲେ ବନ୍ଧୁ ଶ୍ରୀଧର ମିଶ୍ର ଆପଣେ । ଯଦି ପ୍ରଭୁଙ୍କର ଡୋରି ଲାଗିବ, ତେବେ ସେ ଆପଣଙ୍କ ଅଣ୍ଟାରେ ଡୋରି ବାନ୍ଧି ଟାଣି ଟାଣି ନେଇଯିବେ ପୁରୀ ବଡ଼ଦାଣ୍ଡର ଅନ୍ତିମ ଭାଗରେ ଥିବା ଶ୍ରୀଗୁଣ୍ଡିଚା ଆଡ଼ପ ମଣ୍ଡପ ସ୍ଥଳୀକୁ, ଯେଉଁଠି ପ୍ରଭୁ ଚତୁର୍ଦ୍ଧାମୂର୍ତ୍ତି ବିରାଜମାନ । ସେ ସୌଭାଗ୍ୟ ମୁଁ ଆପଣଙ୍କ ପାଇଁ ନେଇ ଆସିଛି ଏ ସଂଧ୍ୟା କାଳରେ ଆପଣଙ୍କ ପାଖକୁ । ଆମେ ଛଅ ଜଣ ବନ୍ଧୁ ସ୍ଥିର କରିଛୁ ଏହି ମୁହୂର୍ତ୍ତରେ ପୁରୀ ଯାତ୍ରା ଆରମ୍ଭ କରିବାକୁ । ସେମାନେ ମୋତେ ପ୍ରତିନିଧି ହିସାବରେ ପଠାଇଛନ୍ତି ଆପଣଙ୍କ ପାଖକୁ । ଆମ ଗାଡ଼ିରେ ଆଉ ମାତ୍ର ଗୋଟିଏ ସ୍ଥାନ ଖାଲି ଅଛି । ଆପଣ ଲୁଗାପଟା ଶୀଘ୍ର ପିନ୍ଧି ମୋ ସାଥୀରେ ଏ ବାଇକ୍‌ରେ ବସି ପଡ଼ନ୍ତୁ । କାଳ ବିଳମ୍ବ କରନ୍ତୁନି, ସମୟର ସ୍ୱଳ୍ପତାକୁ ହୃଦୟଙ୍ଗମ କରି ।

ମୁଁ କ୍ଷଣଙ୍କ ପାଇଁ ସ୍ତବ୍ଧ ହୋଇ ବସି ପଡ଼ିଥିଲି ବନ୍ଧୁଙ୍କ ଏପରି ଉକ୍ତି ଶୁଣି । ସେ ମୋର ଦ୍ୱନ୍ଦ୍ୱ ଓ ଦ୍ୱିଧା ଭାବକୁ ଲକ୍ଷ୍ୟ କରି ଦୃଢ଼ତାର ସହିତ କହିଥିଲେ, ଆଉ ଅଧିକ କିଛି ନ ଭାବି ଆସନ୍ତୁ ମୋ ସାଥୀରେ । ମୁଁ ବାଧ୍ୟ ଶିଶୁଟିଏ ପରି ପୋଷାକ ପରିଧାନ କରି କାଳକ୍ଷେପଣ ନୀତିକୁ ଭ୍ରୂକ୍ଷେପ କରି ବାହାରି ପଡ଼ିଲି ପୁରୀ ଧାମକୁ ଶ୍ରୀଜୀଉଙ୍କର ଦର୍ଶନ ପାଇଁ । ଗାଡ଼ିଟି ଅପେକ୍ଷାରତ ଥିଲା ବାଣୀବିହାରରେ । ଅନ୍ୟ ବନ୍ଧୁମାନେ ମୋର ଅପେକ୍ଷାରତ ଥିଲେ ବୋଲେରୋ ଗାଡ଼ିଟିରେ । ମୁଁ ଆସନ ଗ୍ରହଣ କଲାପରେ ଗାଡ଼ିଟିର ଚକାମାନେ ଚଳଚଞ୍ଚଳ ହୋଇଥିଲେ ରାଜରାସ୍ତାରେ, ପୁରୀ ଅଭିମୁଖେ । ବନ୍ଧୁମାନେ ଡ୍ରାଇଭରକୁ ପ୍ରଥମରୁ ସତର୍କ କରିଦେଇଥିଲେ, ସମୟର ସ୍ୱଳ୍ପତାକୁ ନେଇ ଦ୍ରୁତ ଗତିରେ ଗାଡ଼ି ଚଳାଇବା ପାଇଁ । ସମସ୍ତେ ସମସ୍ୱରରେ କହି ଉଠିଥିଲେ, କୌଣସି ମତେ ୮ଟା ୩୦ ମଧ୍ୟରେ ଆମ୍ଭମାନଙ୍କୁ ପହଞ୍ଚିବାକୁ ହେବ ଶ୍ରୀଗୁଣ୍ଡିଚା ମନ୍ଦିରରେ । ୮ଟା ୩୦ ପରେ ଶ୍ରୀଜୀଉଙ୍କର ଦର୍ଶନ ମିଳିବ ନାହିଁ । ଏ କଥାକୁ ଧ୍ୟାନରେ ରଖି ଗାଡ଼ିଟିକୁ ଦ୍ରୁତ ଗତିରେ ଚଳାନ୍ତୁ ଡ୍ରାଇଭର ବାବୁ । ଛୋଟ ହଁ ଟିଏ ମାରି ଡ୍ରାଇଭର ଗାଡ଼ି ଚାଳନା ଆରମ୍ଭ କରି ଦେଇଥିଲେ ।

ସଂଧ୍ୟା କାଳ । ରାଜଧାନୀର ରାସ୍ତା ଜନାକୀର୍ଣ୍ଣ । ହଜାର ହଜାର ଲୋକ ଓ ଗାଡ଼ିମାନଙ୍କର ଗହଳି । ବିଚରା ଡ୍ରାଇଭର ଗାଡ଼ି କିପରି ଚଲାଇ ପାରନ୍ତା ଦ୍ରୁତ ଗତିରେ ଏ ଗହଳି ଭିତରେ । ତଥାପି ନିଜର ଉଦ୍ୟମ ଜାରି ରଖି କୌଣସି ମତେ ଅଧ ଘଣ୍ଟାକ ମଧ୍ୟରେ ରାଜଧାନୀ ପାରି ହୋଇ ଉତ୍ତରା ଛକରେ ପହଞ୍ଚିଥିଲା ଆମ୍ଭମାନଙ୍କୁ ଗାଡ଼ିରେ ବସାଇ । ସେଠାରେ ଶୁଣିଲୁ ଖଣ୍ଡେ ଦୂରରେ ଘଟିଛି ଏକ ଗାଡ଼ି ଦୁର୍ଘଟଣା । ଏକଥା ଶୁଣି ବୁଦ୍ଧିଶୂନ୍ୟ ହୋଇ ପଡ଼ିଥିଲୁ ଆମ୍ଭେମାନେ । ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରିବାର ଆଶାର କୁସୁମ ହଠାତ୍ ମଉଳି ପଡ଼ିଥିଲା । ଆମ୍ଭେମାନେ ହୋଇ ପଡ଼ିଥିଲୁ ବାକ୍‌ଶୂନ୍ୟ ।

ପ୍ରଭୁ ବଳିଆର ଭୁଜ, ଶ୍ରୀଜଗନ୍ନାଥଙ୍କର ଡୋରି ଯେଉଁଠି ଲାଗିଛି, ତାହା କିପରି ଛିନ୍ନ ହୋଇପାରେ ଏ ମାନବୀକୃତ ମାୟାଜାଲରେ ? ଜଣେ ପଥପ୍ରାନ୍ତରେ ଦଣ୍ଡାୟମାନ ଅଜ୍ଞାତ ବ୍ୟକ୍ତି ଆମ୍ଭମାନଙ୍କର ଅସହାୟତାର ଖବର ଶୁଣି ଆଗେଇ ଆସିଥିଲେ । ଆମ୍ଭମାନଙ୍କର ବୋଲେରୋ ଗାଡ଼ି ନିକଟକୁ । କହିଲେ, ନିରାଶ ହୁଅନ୍ତୁ ନାହିଁ ଆଜ୍ଞା । ଉତ୍ତରା ଛକରୁ ଗୁଡ଼ିଆ ପୋଖରୀ ଗାଁ ମଧ୍ୟ ଦେଇ ଏକ ମାଟି ରାସ୍ତା ଲମ୍ବିଛି ପିପିଲି ନିକଟକୁ । ସେହି ରାସ୍ତାରେ ଗାଡ଼ି ଚଲାଇଗଲେ, ଆପଣ ଅକ୍ଳେଶରେ ପିପିଲିରେ ପହଞ୍ଚି ପାରିବେ ଏବଂ ସେଠାରୁ ଆପଣମାନେ ପୁରୀ ଯାଇପାରିବେ । ଅଭିଜ୍ଞ ବ୍ୟକ୍ତିଙ୍କ ଠାରୁ ସନ୍ଦେଶ ପାଇ ଆମ ଡ୍ରାଇଭର ଅଳ୍ପ ସମୟ ମଧ୍ୟରେ ପିପିଲିରେ ପହଞ୍ଚିବାକୁ ସମର୍ଥ ହୋଇଥିଲେ । ଆମ୍ଭେମାନେ ମନେ ମନେ ଜଗନ୍ନାଥଙ୍କୁ ସ୍ମରଣ କରି ଆଗେଇ ଚାଲିଥିଲୁ ପୁରୀ ଅଭିମୁଖେ । ଆମ୍ଭମାନଙ୍କ ମଧ୍ୟରୁ କିଛି ସାଥୀ ଆନନ୍ଦରେ ଅଭିଭୂତ ହୋଇ ସମସ୍ୱରରେ ଆରମ୍ଭ କରି ଦେଇଥିଲେ ଜଗନ୍ନାଥ ଭଜନାବଳୀ । ମୁଁ ମଧ୍ୟ ସମସ୍ୱରରେ ଗାଇବା ଆରମ୍ଭ କରି ଦେଇଥିଲି - 'ଏନା ତୋ ଭକତ ଜୀବନ, ଭକତ ନିମନ୍ତେ ତୋର ଶଙ୍ଖ ଚକ୍ର ଚିହ୍ନ' । ଏହିପରି ଜଣକ ପରେ ଜଣେ ପର୍ଯ୍ୟାୟକ୍ରମେ ଗାଡ଼ିର ଗତିପଥରେ ବିଭିନ୍ନ ଭଜନ ଗାନରେ ବ୍ୟସ୍ତ ଥିବା ବେଳେ ଦେଖିଲୁ ଆମର ଗାଡ଼ି ଗୁଣ୍ଡିଚା ମନ୍ଦିର ନିକଟରେ ପହଞ୍ଚି ଯାଇଛି ୮ଟା ୪୫ ମିନିଟ୍‌ରେ । ଦ୍ୱାର ଦେଶରେ ଉପସ୍ଥିତ ଥିଲେ ଜଗନ୍ନାଥଙ୍କ ସେବକମାନେ । ଆମ୍ଭମାନଙ୍କୁ ଦେଖି, ମୁଖରେ ବିଷଣ୍ଣତାର ଭାବ ପ୍ରକଟ କରି ସମସ୍ୱରରେ କହି ଉଠିଥିଲେ, ଆଜ୍ଞା ପାଞ୍ଚ ମିନିଟ୍ ପୂର୍ବରୁ ପ୍ରଭୁଙ୍କ ଦର୍ଶନ କାର୍ଯ୍ୟ ବନ୍ଦ ହୋଇଯାଇଛି ଭକ୍ତଙ୍କ ପାଇଁ । ଆପଣମାନେ ଏତେ କଷ୍ଟ ସ୍ୱୀକାର କରି ଭୁବନେଶ୍ୱରରୁ ଧାଇଁ ଆସିଛନ୍ତି ପ୍ରଭୁଙ୍କ ଦର୍ଶନ ପାଇଁ । ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ବସିଥାନ୍ତି ପୁରୀ ଜିଲ୍ଲାପାଳ । ଯଦି କୃପା କରି ଅନୁମତି ଦିଅନ୍ତି, ତେବେ ଆପଣମାନେ ଜୀଉମାନଙ୍କର ଦର୍ଶନ ପାଇପାରିବେ । ଆପଣ ତାଙ୍କୁ ସାକ୍ଷାତ କରି ନିଜର ଦର୍ଶନ କରିବାର ଇଚ୍ଛା ଓ ମନୋଭାବ ଜଣାନ୍ତୁ । ଆମ୍ଭେମାନେ କାଳବିଳମ୍ବ ନ କରି ଧାଇଁ ଯାଇଥିଲୁ ଜିଲ୍ଲାପାଳଙ୍କ ନିକଟକୁ । ସେତେବେଳକୁ ଯାତ୍ରୀ ଓ ଭକ୍ତମାନେ ପ୍ରାୟ ମନ୍ଦିରରୁ ଫେରି ଯାଇଥିଲେ । ଆମ୍ଭେମାନେ ଯୋଡ଼ ହସ୍ତରେ ଆମର ବିଳମ୍ବର କାରଣ ଓ ପ୍ରଭୁଙ୍କ ଦର୍ଶନ କରିବାର ଇଚ୍ଛାବ୍ୟକ୍ତ କଲୁ । ଜିଲ୍ଲାପାଳ ସାହେବ, ଦୁଇ ମିନିଟ୍ ମନେ ମନେ  କିଛି ଚିନ୍ତା କରି, ଆମ୍ଭମାନଙ୍କୁ ଦର୍ଶନ କରିବା ପାଇଁ ଅନୁମତି ପ୍ରଦାନ କରିଥିଲେ । ସେତେବେଳକୁ ସମୟ ରାତି ନଅଟା । ଆମ୍ଭେମାନେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ଶ୍ରୀସୁଦର୍ଶନଙ୍କର ଦର୍ଶନ ଲାଭ କରି ନିଜକୁ କୃତାର୍ଥ ମନେ କଲୁ ଏବଂ ପ୍ରଭୁଙ୍କ ଅପାର କରୁଣା ବାରି

ଆମ୍ଭମାନଙ୍କ ଉପରେ ବର୍ଷା ହେଉଛି ବୋଲି ହୃଦୟଙ୍ଗମ କଲୁ । ଏହାପରେ ଦେଖିଲୁ ସଦ୍ୟ ପ୍ରସ୍ତୁତ ଅବଢ଼ା ଜଣେ ସୁପକାରଙ୍କ ପାଖରେ ମହଜୁଦ୍ ରହିଛି ।

ସେ କହିଲେ ଏହି ମହାପ୍ରସାଦ ଜଣେ ବଙ୍ଗାଳୀ ଭଦ୍ରବ୍ୟକ୍ତିଙ୍କ ପାଇଁ ପ୍ରସ୍ତୁତ ହୋଇଥିଲା । ମାତ୍ର ସେ ନିର୍ଦ୍ଦିଷ୍ଟ ସମୟ ଭିତରେ କଟକରୁ ପୁରୀ ପହଞ୍ଚି ପାରି ନାହାନ୍ତି, ତାଙ୍କ ଗାଡ଼ିର ଇଞ୍ଜିନ ଖରାପ ହୋଇଯିବାରୁ । ସେ ରାସ୍ତାରେ ଅଟକି ଯାଇଛନ୍ତି । ସେ ମହାପ୍ରସାଦକୁ ଅନ୍ୟ କେଉଁ ଭକ୍ତଙ୍କୁ ବିକ୍ରୟ କରି ଦେବାକୁ ଫୋନ ଯୋଗେ ଏବେ ଏବେ ଜଣାଇଛନ୍ତି । ଏଣୁ ଆପଣଙ୍କୁ ଏହି ମହାପ୍ରସାଦ ପାଇବାର ସୁଯୋଗ ପ୍ରଭୁ ଜଗନ୍ନାଥ ଯୋଗାଇ ଦେଲେ ବୋଲି ଭାବି ନିଅନ୍ତୁ । ଆମ୍ଭେମାନେ ଆନନ୍ଦିତ ହୋଇ କହିଲୁ ସମସ୍ୱରରେ, ହଁ ହଁ ନନା, ଏହା ହେଉଛି ପ୍ରଭୁଙ୍କର ଇଚ୍ଛା । ଆମ୍ଭେମାନେ ତାଙ୍କର ଆଜ୍ଞାକାରୀ ମାତ୍ର । ତା'ନ ହୋଇଥିଲେ ଆମ୍ଭଙ୍କୁ ଏପରି ଦିବ୍ୟ ମହାପ୍ରସାଦ ପ୍ରାପ୍ତ ହେବାର ସୁଯୋଗ ମିଳିନଥା'ନ୍ତା ।

ଆମ୍ଭେମାନେ ସମସ୍ତେ ଗୁଣ୍ଡିଚା ମନ୍ଦିର ବେଢ଼ାରେ ବସିଯାଇଥିଲୁ । ସୁପକାର ଆମ୍ଭମାନଙ୍କୁ ଖୁସିରେ କଦଳୀପତ୍ର ପକାଇ ମହାପ୍ରସାଦ ବିତରଣ କରିଥିଲେ । ଆମେ ସମସ୍ତେ ଅତ୍ୟନ୍ତ କ୍ଷୁଧାର୍ତ୍ତ ଥିଲୁ । ପେଟ ଭରି ମହାପ୍ରସାଦ ଖାଇ ଆତ୍ମତୃପ୍ତି ଲାଭ କଲୁ । ସୁପକାରଙ୍କୁ ମହାପ୍ରସାଦର ମୂଲ୍ୟ ଦେଇ, ପୁଣି ପ୍ରଭୁଙ୍କୁ ପ୍ରଣାମ ଜଣାଇ, ଭୁବନେଶ୍ୱର ଫେରି ଆସିଲୁ । ପ୍ରଭୁଙ୍କ ଦିବ୍ୟ ଦର୍ଶନ ଏପରି ମହତ୍ତ୍ୱପୂର୍ଣ୍ଣ ଦିନ (ନବମୀ ତିଥିରେ) ପାଇଥିବାରୁ ନିଜକୁ ଭାଗ୍ୟବାନ ମନେ କରିଥିଲୁ ।


୪୬୯୩/୫୮୫୪, ଆଦିମାତା କଲୋନୀ<br>
ମଞ୍ଚେଶ୍ୱର ରେଳବାଇ କଲୋନୀ<br>
ଭୁବନେଶ୍ୱର - ୭୫୧୦୧୭<br>
ଭ୍ରାମ୍ୟଭାଷ : ୯୪୩୯୭୩୨୩୧୭




# ଏକ ଅଲଭ୍ୟ ଦର୍ଶନ

## ଶ୍ୟାମସୁନ୍ଦର ତ୍ରିପାଠୀ

ଉତ୍ତର, ଦକ୍ଷିଣ, ପୂର୍ବ ଓ ପଶ୍ଚିମ ଦିଗରେ ଭାରତର ଚାରୋଟି ଧାମ ରହିଛି । ଉତ୍ତରରେ ବଦ୍ରିନାଥ (ବିଷ୍ଣୁ), ଦକ୍ଷିଣରେ ରାମେଶ୍ୱର (ଶିବ), ପଶ୍ଚିମରେ ଦ୍ୱାରକାଧୀଶ (କୃଷ୍ଣ), ପୂର୍ବରେ ଶ୍ରୀଜଗନ୍ନାଥ ପୁରୁଷୋତ୍ତମ କ୍ଷେତ୍ରରେ ବିଦ୍ୟମାନ । ଶ୍ରୀଜଗନ୍ନାଥଙ୍କ ରୂପ ଅବର୍ଣ୍ଣନୀୟ । କିଏ କହେ ସେ କୃଷ୍ଣ, କିଏ କହେ ସେ ରାମ । ଶ୍ରୀଜଗନ୍ନାଥ ଭିନ୍ନ ଭିନ୍ନ ଭକ୍ତଙ୍କ ଭକ୍ତି ଓ ବିଶ୍ୱାସ ଆଧାରରେ ବିବିଧ ରୂପରେ ସେମାନଙ୍କୁ ଦର୍ଶନ ଦେଇଛନ୍ତି । ଯଥାର୍ଥରେ -

'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ତଥୈବ ଭଜାମ୍ୟହମ୍ ।'

ମାନସ କଳ୍ପନାର ପ୍ରତିଫଳନ । ତାଙ୍କର ଆକୃତି ପ୍ରକୃତି ମାନବ ସଦୃଶ । ଲୀଳା ଖେଳାବି ମଣିଷ ପରି । ସେ ଏକ ଜୀବନ୍ତ ଠାକୁର । ଏକ ଅର୍ଥପୂର୍ଣ୍ଣ ସାଙ୍କେତିକ ରୂପ । ଯେଉଁ ରୂପରେ ପାଦ ନାହିଁ କିନ୍ତୁ ସେ ସ୍ଥାନ ପରବର୍ତ୍ତନ କରିପାରନ୍ତି । କାନ ନାହିଁ କିନ୍ତୁ ସେ ଆର୍ତ୍ତର ଦୁଃଖ ଯନ୍ତ୍ରଣା ଲାଘବ କରିପାରିନ୍ତି । ଯଥାର୍ଥରେ ଆର୍ତ୍ତତ୍ରାଣ । ନାସା ଥିଲେ ବି ସେଥିରେ ରନ୍ଧ୍ର ନାହିଁ । ମାତ୍ର ନାନା ପ୍ରକାର ସୁଗନ୍ଧିତ ଦ୍ରବ୍ୟ ଚନ୍ଦନ, କର୍ପୂର, କସ୍ତୁରୀ, ତୁଳସୀ, ଦୟଣା ଭୂଷିତ । ଅଧରୋଷ୍ଠ ବର୍ଜିତ ମୁଖମଣ୍ଡଳରେ ସେ ଷାଠିଏ ପଉଟି ଆଧାର ଗ୍ରହଣ କରନ୍ତି । ଦାରୁବ୍ରହ୍ମ ହେଲେବି ସେ ଜଡ଼ ନୁହନ୍ତି, ଚେତନାର ସମଷ୍ଟି । ମୁଖମଣ୍ଡଳରେ ଦୁଇଟି ବିସ୍ଫାରିତ ଚକ୍ଷୁ ମାତ୍ର ନିର୍ନିମେଷ । ଅବିରତ ଜାଗ୍ରତ । ବ୍ରହ୍ମ ଆଧାରିତ । ତାଙ୍କର ଲୀଳାଖେଳା ମାନବ ସଦୃଶ । ଭାଗବତ ବର୍ଣ୍ଣିତ - 'ମର୍ତ୍ତ୍ୟ ମଣ୍ଡଳେ ଦେହ ବହି, ଦେବତା ହୋଇଲେ ମରଇ' । ଏଇ ଚିରନ୍ତନ ସତ୍ୟର ପ୍ରତୀକ । ତାଙ୍କ ମୁଖ ନିଃସୃତ ବାଣୀକୁ (ସାଂଖ୍ୟ ଯୋଗ, ଶ୍ରୀମଦ୍ ଭଗବତ୍ ଗୀତା ଶ୍ଲୋକ ୨୨)

'ବାସାଂସି ଜୀର୍ଣ୍ଣାନି ଯଥା ବିହାୟ,
ନବାନି ଗୃହ୍ଣାତି ନରୋପରାଣି,
ତଥା ଶରୀରାଣି ବିହାୟ ଜୀର୍ଣ୍ଣା -
ନ୍ୟନ୍ୟାନି ସଂଜାତି ନବାନି ଦେହୀ ।'

ସେ ଅକ୍ଷରେ ଅକ୍ଷରେ ପାଳନ କରନ୍ତି । ତାଙ୍କର ହସ୍ତ ଦୁଇଟି ପ୍ରସାରିତ । ଜୀବଜଗତରୁ କୋଳାଗ୍ରତ କରିବାରେ ସର୍ବଦା ଚେଷ୍ଟିତ, କିନ୍ତୁ ସେ ଦୁଇଟି କର୍ମ କରିବାପାଇଁ ଅକ୍ଷମ । ନିଜେ କିଛି କରନ୍ତି ନାହିଁ, ମାତ୍ର ଭକ୍ତର ହୃଦୟରେ ରହି ତାକୁ କର୍ମତତ୍ପର କରାନ୍ତି । ନିଜେ କିନ୍ତୁ ଅକର୍ତ୍ତା । ତାଙ୍କର ଆଦି ନାହିଁ ଅନ୍ତ ନାହିଁ । ଅନାଦି ପରଂବ୍ରହ୍ମ

ବିଶ୍ୱବ୍ରହ୍ମାଣ୍ଡକୁ ଏବଂ ସମସ୍ତ ଜୀବସତ୍ତାକୁ ପରିଚାଳିତ କରୁଥିବା ଏକ ସାଙ୍କେତିକ ବିଗ୍ରହ । ସେ ବିଗ୍ରହର ଦର୍ଶନ ମନର ସମସ୍ତ ଗ୍ଲାନି ଅବସାଦ ମୁହୂର୍ତ୍ତକ ମଧ୍ୟରେ ଦୂର କରେ । ହୃଦୟ ପୁଲକିତ ହୁଏ । ନୂତନ ଆଶା ଉଦ୍ଦୀପନା ଜାଗ୍ରତ କରାଏ । ତାଙ୍କ ପାଖକୁ ଯାଇ ଅନେକ ସମୟରେ ଦର୍ଶନ ମିଳେନା, ମିଳିଲେ ବି ମନଭରି ହୁଏନା । ସେ ରୂପକୁ ଏକାନ୍ତରେ ଦର୍ଶନ କଲେ ଯେତେ ଆତ୍ମତୃପ୍ତି ମିଳେ ସପରିବାରରେ ମିଳେନା, କାରଣ ଦୃଷ୍ଟି ଏକ କେନ୍ଦ୍ରିକ ନ ହୋଇ ବିକେନ୍ଦ୍ରିକ ହୋଇଯାଏ । ସେ ରୂପର ମନଭରି ଦର୍ଶନ ପ୍ରଭୁଙ୍କ କରୁଣା ଉପରେ ଆଧାରିତ । ଚକାଆଖିର ଦିବ୍ୟ ଦର୍ଶନ କ୍ଷୁଧା ତୃଷା ବ୍ୟଥା କ୍ଷଣିକ ମଧ୍ୟରେ ଦୂର କରେ । ଏସବୁ କେବେଳ ଅନୁଭବୀର ଅନୁଭବ, ବର୍ଣ୍ଣନାତୀତ ।

ଡିସେମ୍ବର ୨୭, ୨୦୧୪ ଶନିବାର । ଶନିବାର ଦିନଟି ମୋ ଜୀବନରେ ବହୁ ସୌଭାଗ୍ୟ ଦେଇଛି । ନୂତନ ବର୍ଷର ଆଗମନ ଉପଲକ୍ଷେ ମୋର ଜଣେ ବନ୍ଧୁ ଏକ ପାରିବାରିକ ଭୋଜିଭାତ ଓ ବନ୍ଧୁ ମିଳନର ବ୍ୟବସ୍ଥା ମୋର ଅତି ନିକଟ ସମ୍ପର୍କୀୟଙ୍କ ଘରେ ଆୟୋଜିତ କରି ମୋତେ ନିମନ୍ତ୍ରଣ କରିଥାଆନ୍ତି । ମୁଁ କିନ୍ତୁ ନୂଆବର୍ଷରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଆଶା ମନରେ ରଖିଥାଏ । ଡିସେମ୍ବର ୩୧ ଓ ଜାନୁଆରୀ ପହିଲା ଏପରିକି ଜାନୁଆରୀ ପ୍ରଥମ ସପ୍ତାହ ଶ୍ରୀକ୍ଷେତ୍ରରେ ପ୍ରଭୁଙ୍କ ଦର୍ଶନ ଲାଗି ପ୍ରବଳ ଜନଗହଳି ହୁଏ । ମୁଁ ସେ ଜନଗହଳି ମଧ୍ୟରେ ପୁରୀ ଯାଇ ଠାକୁରଙ୍କୁ ଦର୍ଶନ କରିବାର ଶାରୀରିକ ସାମର୍ଥ୍ୟ ମୋର ନାହିଁ, ତେଣୁ ନୂଆବର୍ଷ ଆସିବା ପୂର୍ବରୁ କାଳିଆ ଠାକୁରଙ୍କୁ ଦର୍ଶନ କରି ଫେରିବା ପାଇଁ ମନସ୍ଥ କଲି । ସହଧର୍ମିଣୀଙ୍କୁ ପାରିବାରିକ ଭୋଜିରେ ଯୋଗ ଦେବାକୁ କହି ପୁରୀରେ ମୋର କାମ ଅଛି କହି ସେଦିନ ବସ୍‌ରେ ପୁରୀ ଚାଲିଲି । ବଡ଼ ଡାକ୍ତରଖାନା ଛକରେ ବସ୍‌ରୁ ଓହ୍ଲାଇ ଅଟୋ ଧରି ଶ୍ରୀମନ୍ଦିର ଗଲି । ସିଂହଦ୍ୱାରରେ ପହଞ୍ଚି ଦେଖିଲି ଅସମ୍ଭବ ଭିଡ଼ । ବଙ୍ଗାଳୀ ଯାତ୍ରୀ, ଗଙ୍ଗା ସାଗର ମେଳାକୁ ଆସିଥିବା ଯାତ୍ରୀ ଭରପୁର ।

ସିଂହଦ୍ୱାରରୁ ଲାଇନରେ ଯାଇ ସାତ ପାହାଚ ପାଖରେ ପହଞ୍ଚିଲି । ପରିମାଣିକ ଦର୍ଶନ ବନ୍ଦ ଥାଏ । ଠାକୁରଙ୍କ ଭୋଗ ପର୍ବ ଚାଲିଥାଏ । ଦର୍ଶନାର୍ଥୀ ଅସଂଖ୍ୟ । ଠେଲି ପେଲି ଆଗକୁ ଯିବା ପାଇଁ ସମସ୍ତେ ଚେଷ୍ଟିତ । ଆଗରେ ପୋଲିସ କର୍ଡ଼ନ । ମୁଁ ବହୁତ ପଛରେ ଥାଏ । ବୟସାଧିକ ହେତୁ ମୋ ଡାହାଣ ଆଣ୍ଠୁରେ ଯନ୍ତ୍ରଣା ଅନୁଭବ କରୁଥାଏ । ଏ ଭିଡ଼ ମଧ୍ୟରେ ମୁଁ ଝାଳନାଳ ହୋଇଯାଇଥାଏ । ପ୍ରଭୁଙ୍କ ଦର୍ଶନ ମୋ ଭାଗ୍ୟରେ ଜୁଟିବ ଏ ଆଶା ମନ ଭିତରେ ନଥାଏ । ପଛକୁ ଫେରିବାର ବାଟ ନଥାଏ । ମଝିରେ ମଝିରେ ନୀଳଚକ୍ର ଓ ପତିତପାବନ ବାନାକୁ ଚାହିଁ ଠାକୁରଙ୍କୁ ମନ ମଧ୍ୟରେ ସ୍ମରଣ

କରୁଥାଏ । ୩୦-୪୦ ମିନିଟ୍ ପରେ ସାତ ପାହାଚ ଉପରେ ଥିବା ଦ୍ୱାର ଖୋଲିଲା । ମନ ମଧ୍ୟରେ ଚକାଆଖିର ଦର୍ଶନ ପାଇଁ ପ୍ରବଳ ଇଚ୍ଛା । ପ୍ରଥମ ଦଫାରେ ପୋଲିସ କିଛି ଭକ୍ତଙ୍କୁ ଭିତରକୁ ଛାଡ଼ିଲା । ୨୦-୨୫ ମିନିଟ୍ ପରେ ଦ୍ୱିତୀୟ ଦଫା, ମୁଁ ଥାଏ ତୃତୀୟ ଦଫାରେ । ସହଜରେ ବୟୋଜ୍ୟେଷ୍ଠ । ସାତ ପାହାଚର ଅବସ୍ଥିତି ଏ ଗହଳି ଠେଲାପେଲା ମଧ୍ୟରେ ମୋତେ ଜଣାପଡୁନଥାଏ । ଅନୁମାନ କରି ପାଖ ଦର୍ଶନାର୍ଥୀଙ୍କୁ ଲକ୍ଷ୍ୟ କରି ପାଦ ପକାଉଥାଏ । ଅଜାଗାରେ ପଡ଼ିଗଲେ ଗୋଡ଼ ମୋଡ଼ି ହୋଇ ତଳେ ପଡ଼ିଯିବାର ଭୟ । ବେଳେବେଳେ ଗୋଡ଼ ତଳେ ଲାଗୁନଥାଏ । ଚକାଡ଼ୋଳାଙ୍କ କରୁଣା ଉପରେ ମୁଁ ସମର୍ପିତ ହୋଇ ଆଗକୁ ଚାଲୁଥାଏ । ଗରୁଡ଼ ସ୍ତମ୍ଭ ପାଖରେ କୌଣସି ମତେ ପହଞ୍ଚି ଦେଖିଲି ପୋଲିସ ଗୋଟିଏ ଲାଇନରେ ଦର୍ଶନାର୍ଥୀଙ୍କୁ ଭିତର ଗମ୍ଭୀରା ଦିଗକୁ ଛାଡୁଛି । ମୁଁ ଲାଇନରେ ଆଗକୁ ଚାଲିଲି । ଠାକୁର ଦର୍ଶନ ସମ୍ଭବ ଆଶାରେ ଉଲ୍ଲସିତ ହେଲି । ଭିତର କାଠପାଖେ ପହଞ୍ଚି ଦେଖିଲି ଉପର କାଠ ତଳକୁ ଖସାଇ ଦିଆଯାଇଛି, ସାହାଣ ମେଲା । ଭକ୍ତମାନେ ଧାଡ଼ିବାନ୍ଧି ରତ୍ନ ସିଂହାସନ ଦିଗକୁ ଚାଲୁଛନ୍ତି । ବଡ଼ ଠାକୁରଙ୍କ ପଛ ଦେଇ ଜଗନ୍ନାଥଙ୍କ ସିଂହାସନ ତଳେ ବାହାରୁଛନ୍ତି । ଏସବୁ ଦେଖି ମୋ ମନ ଆନନ୍ଦରେ ଭରିଗଲା । ପ୍ରଭୁଙ୍କୁ ଏତେ ପାଖରେ ଦେଖିପାରିବି ବୋଲି ଆଶା ନଥିଲା । ରତ୍ନବେଦୀ ଉପରେ ତିନି ଠାକୁରଙ୍କୁ ପରିକ୍ରମା କରିବା ସୌଭାଗ୍ୟ କ୍ୱଚିତ୍ ମିଳେ । ମୁଁ ବି ଧାଡ଼ିରେ ବଡ଼ ଠାକୁରଙ୍କ ସିଂହାସନ ପଛଦେଇ ଅନ୍ଧାର ଭିତରେ ଚାଲି ଜଗନ୍ନାଥଙ୍କ ସିଂହାସନ ତଳେ ବାହାରି ପଡ଼ିଲି । ଠିକ୍ ଏହି ସମୟରେ ଜଗନ୍ନାଥଙ୍କ ପାର୍ଶ୍ୱରେ ଠିଆ ହୋଇଥିବା ପଣ୍ଡା ମହାଶୟ ଅଯାଚିତ ଭାବେ ମୋ ହାତରେ କିଛି ଚନ୍ଦନ ତୁଳସୀ ଦେଲେ । ଅନେକ ସମୟରେ ଯେଉଁ ଚନ୍ଦନ ତୁଳସୀ ଟିକିଏ ପାଇବା ପାଇଁ ମାଗି ନିରାଶ ହେବାକୁ ପଡ଼ିଥାଏ, ଆଜି ପ୍ରଭୁଙ୍କ କରୁଣା ପାଇଁ ଅଯାଚିତ ମିଳିଗଲା । କୋଟି ସମ୍ପତ୍ତି ମିଳିଗଲା ପରି ଲାଗିଲା । ସମ୍ମୁଖରୁ ତିନି ଠାକୁରଙ୍କୁ ଦର୍ଶନ କରି ମୁଣ୍ଡିଆ ମାରି ଅନ୍ୟ ଭକ୍ତଙ୍କ ସହ କଣ୍ଠ ମିଳାଇ ଜୟ ଜଗନ୍ନାଥ ଜୟ ଜଗନ୍ନାଥ ଗାଇ ମୁକ୍ତିମଣ୍ଡପ ନିକଟରେ ପହଞ୍ଚି ପ୍ରକୃତିସ୍ଥ ହେଲି । ଅପାସୋରା ସେ ଅମୃତ ଦର୍ଶନ । ଚକ୍ଷୁରୁ ଅନାନ୍ଦାଶ୍ରୁ ଝରି ପଡ଼ିଲା । ହେ ପ୍ରଭୁ ! ବିଚିତ୍ର ତୁମେ ବିଚିତ୍ର ତୁମ ଲୀଳା । ବେଢ଼ାବୁଲି ଶ୍ରୀ ଗଣେଶ, ମା' ବିମଳା, ମହାଲକ୍ଷ୍ମୀଙ୍କୁ ଦର୍ଶନ କରି ଉତ୍ତର ଦ୍ୱାର ଦେଇ ମନ୍ଦିର ଛାଡ଼ିଲି । ଏଭଳି ଦର୍ଶନ କେବେ ମୋ ଭାଗ୍ୟରେ ଜୁଟି ନଥିଲା । ଠାକୁରଙ୍କ ଉଦ୍ଦେଶ୍ୟରେ କୃତଜ୍ଞତାରେ ମନ ପୂରି ଉଠିଲା । ଚନ୍ଦନ ତୁଳସୀ ଟିକିଏ ପାଇ ଅବଶିଷ୍ଟାଂଶକୁ ସହଧର୍ମିଣୀଙ୍କ ପାଇଁ ରୁମାଲରେ ବାନ୍ଧିଲି । ପେଟରେ ଭୋକ ନଥାଏ । ଦର୍ଶନର ସୌଭାଗ୍ୟରେ ମୋର କ୍ଷୁଧା

ତୃଷା ମରିଯାଇଥାଏ । ବଡ଼ଦାଣ୍ଡକୁ ଆସି କିଛି ଫଳ କିଣି ଖାଇଲି । ରାମଚଣ୍ଡୀ ସାହିରେ ଥିବା ମୋ ଘରଟିର ମରାମତି କାମ ଦେଖି ଭୁବନେଶ୍ୱର ଫେରିଲି । ଭୁବନେଶ୍ୱର ଘରେ ପହଞ୍ଚି ଦେଖିଲି ମୋ ସହଧର୍ମିଣୀ ଭୋକିଲୁ ଫେରି ଆସିଛନ୍ତି । ଧଡ଼ପଡ଼ ହୋଇ ରୁମାଲ ଗଣ୍ଠି ଫିଟାଇ ଚନ୍ଦନ ତୁଳସୀ ଟିକକ ତାଙ୍କ ହାତକୁ ବଢ଼ାଇ ଠାକୁର ଦର୍ଶନର ସୌଭାଗ୍ୟ କହିଲି । ସେ ସଙ୍ଗେ ସଙ୍ଗେ ମୋତେ କହିଲେ, ତୁମେ ଏକା ଦର୍ଶନ କଲନାହିଁ ଯେ ମୋତେ ଦର୍ଶନ କଲାପରି ଲାଗୁଛି । ଠାକୁରଙ୍କ ଏଭଳି ଦର୍ଶନ ଭାଗ୍ୟରେ ଥିଲେ ମିଳେ ।

ପ୍ରଭୁ ! ଏ ମନ ଏ ପ୍ରାଣ ଜୀବ ଥିବାଯାଏ ଶ୍ରୀଚରଣ ତଳେ ସର୍ବଦା ରହୁ, ଏତିକି ମୋର ପ୍ରାର୍ଥନା ।

ସ୍ନେହାଳୟ
୧୦୪୧, ପ୍ରଶାନ୍ତି ବିହାର, ବରମୁଣ୍ଡା
ଭୁବନେଶ୍ୱର - ୭୫୧୦୦୩
ଭ୍ରାମ୍ୟଭାଷ : ୯୭୭୭୮୮୪୦୭୩



# ମୋ ଜୀବନରେ ଶ୍ରୀଜଗନ୍ନାଥ

## ନଟବର ରାଉଳ

ପିଲାଦିନେ ଗାଆଁ ସ୍କୁଲରେ ପଞ୍ଚମ ଶ୍ରେଣୀରେ ପଢୁଥିବା ବେଳେ ଆମ ଗାଆଁଦାଣ୍ଡକୁ ଜଣେ ଫଟୋ ବିକାଳି ଆସିଥାଏ । କାହିଁକି କେଜାଣି ସେହି ଫଟୋମାନଙ୍କ ମଧ୍ୟରୁ ନାରାୟଣଙ୍କ ଫଟୋଟି କିଣିବାକୁ ବୋଉ ପାଖରେ ମୁଁ ଜିଦ୍ କଲି । କିନ୍ତୁ ବୋଉ ମନା କରିବାରୁ ମୁଁ କାନ୍ଦିବାର ବାହାନା କରି ଦାଣ୍ଡଧୂଳିରେ ଗଡ଼ି ଯାଇଥିଲି । ଶେଷରେ ମୋର ଜିତାପଟ ହେବାରୁ ବୋଉ ମୋତେ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ପୀତ ବସନ ପରିହିତ ନାରାୟଣଙ୍କ ଫଟୋଟି କିଣି ଦେଇଥିଲା । ସେହି ଫଟୋର ସ୍ମୃତି ଏବେବି ମୋ ମନରେ ଅଛି । ସେହିଦିନରୁ ମୁଁ ବିଷ୍ଣୁ, କୃଷ୍ଣ, ନୀଳମାଧବ, ନାରାୟଣ, ଜଗନ୍ନାଥ ଆଦି ସହସ୍ରନାମଧାରୀ ଭାବବିନୋଦିଆ ଠାକୁରଙ୍କ ପ୍ରେମରେ ପଡ଼ି ଯାଇଥିଲି । ନାନା ଅଭାବ ଅସୁବିଧା ଦେଇ ମୋର କୈଶୋର କଟିଲା । ମେଟ୍ରିକ ପରେ ମୁଁ ଚାକିରି ଖୋଜି ୧୯୭୩ ମସିହା ଜୁଲାଇ ୧୪ ତାରିଖରେ ଭୁବନେଶ୍ୱର ଆସିଲି । ପ୍ରତିଦିନ ରାତିରେ ଶୋଇବା ପୂର୍ବରୁ ଜଗବନ୍ଧୁଙ୍କୁ ଡାକୁଥିଲି, 'ଜଗବନ୍ଧୁ ହେ ରକ୍ଷା କର' । ପ୍ରଭୁ ଜଗନ୍ନାଥଙ୍କ ଦୟାରୁ ୧୯୭୮ ମସିହାରେ ମୁଁ ଚାକିରି ପାଇଲି । ୨୦୦୯ ମସିହା ଜୁନ୍ ୨୬ରେ ମୋର କଲିକତାର ସଲ୍ଟ ଲେକ୍‌ରେ ଆକ୍ସିଡ଼େଣ୍ଟ ହୋଇଥିଲା । ସେ ସମୟରେ ମୁଁ ପାଞ୍ଚ ଦିନ କୋମାରେ ଥିଲି । ମୋର ଚେତା ଆସିବାର ଅବ୍ୟବହିତ ପୂର୍ବରୁ ମୁଁ ମନଶ୍ଚକ୍ଷୁରେ ଦାରୁବ୍ରହ୍ମ ପ୍ରଭୁ ଜଗନ୍ନାଥଙ୍କୁ ଦେଖି ମୋ ଜୀବନର ଗତିପଥ ସଂପୂର୍ଣ୍ଣ ଭାବେ ବଦଳିଗଲା । ମୋତେ ବିପଦରୁ ରକ୍ଷା କରିବା ସହିତ ଜଗବନ୍ଧୁ ମୋର ଅନେକ ଆଶା ପୂରଣ କରିଛନ୍ତି ବୋଲି ମୁଁ ମନେ କରେ । ସେଥିରୁ ୩ଟି ଘଟଣା ମୁଁ ଏଠାରେ ଅବତାରଣା କରିବାର ଲୋଭ ସମ୍ବରଣ ନ କରି ରହି ପାରୁନାହିଁ ।

୧୯୯୯ ମସିହା ଅକ୍ଟୋବର ୨୯ ତାରିଖକୁ କେହି ଭୁଲିପାରିବେ ନାହିଁ । ସେ ଦିନର ପ୍ରଳୟଙ୍କରୀ ବାତ୍ୟା, ବର୍ଷା ଓ ସମୁଦ୍ର ଜୁଆରର କୂଳ ଲଙ୍ଘନ ଓଡ଼ିଶାର ଜନ ମାନସକୁ ଦୋହଲାଇ ଦେଇ ଚିରଦିନ ପାଇଁ ସଭିଙ୍କ ମନରେ ସଂଜୀବିତ ରହିଛି । ସେଦିନ ସକାଳ ୯ଟାରେ ମୁଁ ମୋର କର୍ମକ୍ଷେତ୍ର ବାରଙ୍ଗ ୟୁକୋ ବ୍ୟାଙ୍କକୁ ଯାଉଥାଏ । ସେତେବେଳକୁ ବର୍ଷା ଓ ପବନର ବେଗ ବଢ଼ି ଚାଲିଥାଏ । ପବନର ତୀବ୍ରତା ଯୋଗୁଁ ମୁଁ ଚଳଉଥିବା ସ୍କୁଟରଟି ଟଳମଳ ହେଉଥିବାରୁ ମୋତେ ଡର ଲାଗୁଥାଏ । ଅଫିସ୍‌ରେ ପହଞ୍ଚିବା ପରେ ୧୧ଟା ଠାରୁ ବର୍ଷା ପବନ ତୀବ୍ରତର ହେଲା । ସଞ୍ଜ ଯାଇ ରାତିସାରା ମହାପ୍ରଳୟ ସଂଗଠିତ ହେଲା । ଆମେ ୫ଜଣ ଅଫିସରେ ଥାଉ । ପାଖ ଘରୁ ଚୁଡ଼ା

ଦି'ଟା ଖାଇ ସେ ରାତି କଟାଇଲୁ । ରାତିସାରା ବର୍ଷା ଓ ବାତ୍ୟା ଯୋଗୁଁ ଗଛ ମଡ଼ ମଡ଼ ହୋଇ ଭାଙ୍ଗିଯିବା ଓ ଚାଳଘର ଛାତ ଉଡ଼ିଯିବା କଥା ଜାଣୁଥିଲୁ । ରେଡ଼ିଓରୁ ଏହି ପ୍ରଳୟଙ୍କରୀ ବାତ୍ୟା ଓ ସମୁଦ୍ର ଜୁଆର ମାଡ଼ି ଆସିବା କଥା ଶୁଣି ଆମ ମନରେ ଭୀତିସଞ୍ଚାର ହେଉଥାଏ । ରେଡ଼ିଓରୁ ଶୁଣିଲୁ କଟକ, ଜଗତସିଂହପୁର ଆଉ କେନ୍ଦ୍ରାପଡ଼ା ଜିଲ୍ଲାର ଗୋଟିଏ ଗୋଟିଏ ଗାଁ ନିଶ୍ଚିହ୍ନ ହୋଇଯାଇଛି । ପରେ ପରେ ରେଡ଼ିଓ ପ୍ରସାରଣ ବି ବନ୍ଦ ହୋଇଗଲା । ଏଭଳି କାଳ ରାତିରେ ମୁଁ ଭାବୁଥିଲି କେନ୍ଦ୍ରାପଡ଼ା ଜିଲ୍ଲାରେ ଥିବା ମୋ ଗାଆଁ ସିକୋ କଥା । ମୁଁ ଭାବୁଥିଲି ସମୁଦ୍ର ଜୁଆର ଆଉ ବାତ୍ୟାରେ ଆମ ଗାଆଁ ବୋଧେ ଆଉ ନଥିବ । ମୋ ବାପା ବୋଉ ଭାଇ ପରିବାର ଆମ ଗ୍ରାମବାସୀ ମାନେ ଆଉ କେହି ବଞ୍ଚିନଥିବେ । ଏଭଳି ବିପଦ ସମୟରେ ଖାଲି ପ୍ରଭୁ ଜଗନ୍ନାଥଙ୍କୁ ପ୍ରାର୍ଥନା କରୁଥିଲି, ଏ ବାତ୍ୟା,ବନ୍ୟା ଦାଉରୁ ଆମ ଗାଆଁକୁ ତୁମେ ରକ୍ଷା କର ଠାକୁର । ଏ ବନ୍ୟା ବାତ୍ୟା ଯଦି ଆମ ଗାଆଁ ଆଡ଼କୁ ଯାଇଥାଏ ତେବେ ତୁମ ଆଜ୍ଞାରେ ତା'ର ଦିଗ ପରିବର୍ତ୍ତନ କରଦିଅ ପ୍ରଭୁ । ଆମ ପରିବାର ଆଉ ଆମ ଗ୍ରାମବାସୀଙ୍କ କଥା ଭାବି ଭାବି ଉଜାଗରରେ ମୋର ରାତି ପାହିଲା । ସମସ୍ତେ କହୁଥାଆନ୍ତି କେନ୍ଦ୍ରାପଡ଼ା ଜିଲ୍ଲାରେ ତୁମ ଗାଆଁର ଚିହ୍ନବର୍ଣ୍ଣ ନଥିବ । ମୋ ସହିତ ଥିବା ଶ୍ରୀଯୁକ୍ତ ଚିତ୍ତରଞ୍ଜନ ମିଶ୍ରଙ୍କ ସହ ମୋ ସ୍କୁଟର ପେଲି ପେଲି ମୁଁ ଭୁବନେଶ୍ୱର ଫେରୁଥାଏ । ରାସ୍ତାସାରା ଗଛ ପଡ଼ିଥିବାରୁ ଗାଡ଼ିକୁ ଟେକି ଟେକି ଓ ନନ୍ଦନକାନନର ଖାଲୁଆ ରାସ୍ତାରେ ଆଣ୍ଠୁଏ ପାଣିରେ ସ୍କୁଟର ପେଲି ଠେଲି ଦିନ ୯ଟାରେ ମୁଁ ଶୈଳଶ୍ରୀ ବିହାରରେ ପହଞ୍ଚିଲି । ଦି'ତିନି ଦିନ ପରେ ଖବର ପାଇଲି କେନ୍ଦ୍ରାପଡ଼ା ଜିଲ୍ଲାର ରାଜକନିକା ବ୍ଲକ୍‌ରେ ଅବସ୍ଥିତ ମୋ ଗାଆଁ ସିକୋର ବନ୍ୟା ବାତ୍ୟା କିଛି କ୍ଷତି କରି ନଥିଲା । କେବଳ ସାମାନ୍ୟ ପବନ ଯାହା ହୋଇଥିଲା । ଏହା ମୁଁ ବିଶ୍ୱାସ କରିପାରୁନଥିଲି । ମହାପ୍ରଭୁ ମୋ ପରିବାର ଆଉ ମୋ ପ୍ରିୟ ଗାଆଁକୁ ଘଣ୍ଟ ଘୋଡ଼ାଇ ରକ୍ଷା କରିଥିଲେ । ବାରଙ୍ଗର ସେହି ବାତ୍ୟା ବିଧ୍ୱସ୍ତ କାଳରାତି ଓ ପ୍ରଭୁ ଜଗନ୍ନାଥଙ୍କ ଅପାର କରୁଣା କଥା ମୋର ଅଭୁଲା ହୋଇ ରହିଯାଇଛି ।

କେନ୍ଦ୍ରାପଡ଼ା ଜିଲ୍ଲାର ଆଳି ନିର୍ବାଚନ ମଣ୍ଡଳୀରେ ନଈନାଳ ଘେରା ତଳମାଳ ଅଞ୍ଚଳରେ ଅବସ୍ଥିତ ମୋ ଗାଆଁ ସିକୋ । କେଉଁ ଆଦିମ କାଳରୁ ଆମ ଗାଆଁ ପାଖରେ ବୋହି ଚାଲିଛି ଚୁଲବୁଲି ନଈ 'ଖରସ୍ରୋତା' । ପ୍ରାୟ ତିନି କିଲୋମିଟର ଲମ୍ବ ବିଶିଷ୍ଟ ଆମ ଗାଆଁ ଠାରୁ ଏହି ନଈ ଆମ ଘର ଠାରୁ ୫୦୦ ମିଟର ଦୂରରେ ଥିଲା । ମେ. ପିଲାଦିନର ଏହି ସବୁ ନଈଟି ଏବେ ଏକ ଓସାରିଆ ନଈରେ ପରିଣତ ହୋଇଯାଇଛି । କିଶୋର ବୟସରେ ମୁଁ ଏହି ନଈରେ ପହଁରି ପହଁରି ଆରପାରି ଡିଆକୁ ଗାଈପାଳି ନେଇ ଯାଉଥିଲି । ପିଲାଦିନୁ ଏଯାବତ୍ ବର୍ଷାଦିନେ ଆମ ଗାଆଁକୁ ବଢ଼ିପାଣି ଆସେ ।

ପ୍ରତିବର୍ଷ ନଈ ଖାଇ ଖାଇ ଗାଆଁ ନଈ ଓସାରିଆ ହୋଇଯାଉଥିବାରୁ ଆମ ଗ୍ରାମବାସୀଙ୍କ ଚିନ୍ତା ବଢ଼ିଲା ଯେ ସିକୋ ଗ୍ରାମ ଦିନେ 'ଖରସ୍ରୋତା' ନଦୀରେ ଲୀନ ହୋଇଯିବ । ଗାଆଁକୁ ରକ୍ଷା କରିବାପାଇଁ ନଈ କୂଳରେ ପଥର ପ୍ୟାକିଂ କିମ୍ୱା ସ୍ପର କରାଯିବା ପାଇଁ ଗ୍ରାମବାସୀମାନେ ବ୍ଲକ୍ ତଥା ସରକାରୀ ସ୍ତରରେ ଥରକୁ ଥର ଆବେଦନ କରୁଥିଲେ । କିନ୍ତୁ କିଛି ଫଳ ହେଉନଥାଏ । ଆମର ଆଳି ନିର୍ବାଚନ ମଣ୍ଡଳୀରେ ଦୀର୍ଘ ୪୦ ବର୍ଷ ହେଲା ଗୋଟିଏ ରାଜନୈତିକ ଦଳ ଭୋଟ ପାଇ ପ୍ରତିଥର ଜିତୁଥିବା ବେଳେ ପ୍ରତି ନିର୍ବାଚନ ପ୍ରଚାର ବେଳେ ଏଥର ନଦୀରେ ସ୍ପର ହୋଇଯିବ ନହେଲେ ପଥର ପ୍ୟାକିଂ ହୋଇଯିବ ବୋଲି ଖାଲି ଯାହା ମିଛ ପ୍ରତିଶ୍ରୁତି ଦେଇ ଆସୁଥିଲେ ।

ମୁଁ ସପ୍ତମ ଶ୍ରେଣୀରେ ପଢୁଥିବା ବେଳେ ଗୋଟିଏ ନିର୍ବାଚନରେ ସେହି ଦଳର ପ୍ରାର୍ଥୀ ନିଜ ଦଳବଳ ନେଇ ଭୋଟ ପ୍ରଚାରକୁ ଆସିଥିବାବେଳେ ଆମ ପଡ଼ୋଶୀ ଜଣେ ବୁଢ଼ାଲୋକ ଶ୍ରୀଯୁକ୍ତ ଖଟୁ ବେହେରା, ଆମ ଗାଆଁ ଠାକୁରାଣୀ ଗୋଠରେ ତାଙ୍କ ଗୋଡ଼ତଳେ ପଡ଼ି ଉଚ୍ଚ ସ୍ୱରରେ କାନ୍ଦି କାନ୍ଦି କହୁଥାଆନ୍ତି, ସରକାର ନଂ ଚାହିଁଲେ ଆମ ଗାଆଁ କିଛି ବର୍ଷ ଭିତରେ ନଈରେ ଚାଲିଯିବ ଆଜ୍ଞା, ଆପଣ ଆମ ଗାଆଁ ଆଉ ଏ ଗ୍ରାମବାସୀଙ୍କୁ ରକ୍ଷା କରନ୍ତୁ ଆଜ୍ଞା । ପ୍ରାର୍ଥୀ ଜଣକ ତାଙ୍କୁ ତକୁ ଉଠାଇ ଛାତିରେ ଲଗାଇ କହିଲେ ମଉସା, ମୁଁ ଏ ନିର୍ବାଚନରେ ଜିତିଲେ ନିଶ୍ଚୟ ତୁମ ଗାଆଁ ନଈ କୂଳରେ ସ୍ପର କିମ୍ୱା ପଥର ପ୍ୟାକିଂ କରାଇଦେବି । ପ୍ରାର୍ଥୀ ଜଣକ ଏଭଳି ପ୍ରତିଶ୍ରୁତି ଦେଇ ଚାଲିଗଲେ । ପ୍ରତି ନିର୍ବାଚନରେ ସେହି ଦଳର ମିଛ ଆଶ୍ୱାସନା ଶୁଣି ଶୁଣି ମୁଁ ବଡ଼ ହେଲି ଓ ଆମ ଗାଆଁ ନଈ ଆମ ବାଡ଼ି ପୋଖରୀ ପାଖକୁ କଚ୍ଛପ ଗତିରେ ପ୍ରତିବର୍ଷ ଖାଇ ଖାଇ ଆସୁଥାଏ । ସେ ବେଳର ଖଟୁ ବେହେରା କେବେଠୁଁ ଆରପାରିକୁ ଚାଲିଗଲେଣି । ଏହାଭିତରେ ମୁଁ ବଡ଼ ହୋଇ ଭୁବନେଶ୍ୱରରେ ଚାକିରି କଲି, ଘର କଲି । ମଝିରେ ମଝିରେ ମୁଁ ଗାଆଁକୁ ଗଲେ ଆମ ଗାଆଁରେ ପ୍ରତିବର୍ଷ ଆମ ବାଡ଼ି ପାଖକୁ ନିକଟତର ହେଉଥିବାର ଦେଖି ଦୁଃଖିତ ହେଉଥାଏ । ମୋ ଗାଆଁ ଦିନେ ଖରସ୍ରୋତା ନଦୀରେ ଲୀନ ହୋଇଯିବାର ଡର ମୋ ମନରେ ବସା ବାନ୍ଧିଥାଏ । ଦୁଇ ବର୍ଷ ତଳେ ମୁଁ ଦିନେ ଗାଆଁକୁ ଯାଇଥାଏ । ବାଡ଼ିକୁ ଯାଇ ଦେଖିଲି ନଈ ଆମ ବାଡ଼ି ପୋଖରୀ ଠାରୁ ୨୫ ହାତ ଦୂରରେ ଅଛି । ସାଙ୍ଗରେ ମୋ ବୋଉ ଥାଏ । ଦୀର୍ଘଶ୍ୱାସ ଛାଡ଼ି ବୋଉ କହୁଥାଏ, ତୁ ତ ଭୁବନେଶ୍ୱରରେ ଘରଦ୍ୱାର କରି ପିଲାଛୁଆ ନେଇ ରହିଲୁ, ଦିନେ ଶୁଣିବୁ ଆମ ଘର ଆଉ ଗୋଟେ ଘର ଛାଡ଼ିଥିବା ତୋ ମାମୁଁ ଘର ଓ ଏ ସାରା ଗାଆଁ ଦିନେ ନଈରେ ଚାଲିଯାଇଛି । ସରକାର ତ କିଛି କରୁନି ଆମର ସେହି ଜଗନ୍ନାଥେ ଭରସା । ସିଏ ଚାହିଁଲେ କ'ଣ ନ ହୋଇପାରେ । ସିଏ ଚାହିଁବାରୁ ସିନା ତୁ ଚାକିରି କଲୁ, ଭୁବନେଶ୍ୱରରେ

ବାସ ପାଇଲୁ । ସବୁ ଅସମ୍ଭବକୁ ସେଇହିଁ ସମ୍ଭବ କରନ୍ତି । ଦୁଇଦିନ ରହି ମୁଁ ଭୁବନେଶ୍ୱର ଫେରିଲି । ଦିନେ ରାତିରେ ଶୋଇଥିବା ବେଳେ ବୋଉର ସେଇ ପଦିଏ କଥା 'ଆମ ଘର ଆଉ ମୋ ପ୍ରିୟ ଗାଆଁ ନିଶ୍ଚିହ୍ନ ହୋଇଯିବ ଓ ମୋର ପ୍ରିୟ ପରିଜନ ଏବଂ ଚିହ୍ନାଲୋକ ସବୁ ବାସହୀନ ହୋଇଯିବେ' ଭାବି ମୁଁ ଲୁହ ନୁହେଁ ରକ୍ତ କାନ୍ଦୁଥିଲି । ଅସହଣି ଦୁଃଖରେ ମୁଁ ଆମ ବାଲ୍‌କୋନିରେ ଥିବା ଜଗନ୍ନାଥଙ୍କ ଫଟୋ ପାଖରେ ହାତ ଟେକି ଦେଇ କହିଲି, 'ତୁମେ ନ ଚାହିଁଲେ ମୋ ଗାଆଁ ଭାସିଯିବ, ଠାକୁରେ ମୋ ପ୍ରିୟ ଗାଆଁ ନିଶ୍ଚିହ୍ନ ହୋଇ ଆମ ପରିବାର ଓ ଗ୍ରାମବାସୀ ମାନେ ବାସହୀନ ହୋଇଗଲେ ମୁଁ କ'ଣ ଶାନ୍ତିରେ ବଞ୍ଚିପାରିବି ଠାକୁରେ ।' ବିପଦ ଆପଦରେ ପଡ଼ିଲେ କିମ୍ବା ଅତି ଦୁଃଖ ଭୋଗିଲେ ମୁଁ ଜଗବନ୍ଧୁଙ୍କ ପାଖରେ କାନ୍ଦି ପକାଏ ।

ଏବେ ବର୍ଷକ ତଳେ ମୁଁ ଗାଆଁକୁ ଯାଇଥାଏ । ଆମ ବାଡ଼ିକୁ ଯାଇ ମୁଁ ନଈ କୂଳକୁ ଗଲି । ଯାହା ଦେଖିଲି ସେଥିରେ ମୋ ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଆମ ବାଡ଼ି ପୋଖରୀ ଠାରୁ ୨୦ ହାତ ଦୂରରେ ଆମ ଗାଆଁ ନଈକୂଳେ କୂଳେ ମଜଭୁତ୍ ପଥର ପ୍ୟାକିଂ ହୋଇ ଯାଇଥିଲା । କାଚକେନ୍ଦୁ ଭଳି ନୀଳ ପାଣିରେ ମୋ ଗାଆଁର ପୁରୁଣା ନଈ ଲହଡ଼ି ଭାଙ୍ଗୁଥିଲା । ଆମ ନଈପଠା ନାନାଜାତି ଫସଲର ଶାଗୁଆ ଶାଢ଼ୀ ପିନ୍ଧିଥିଲା । ପାନଭାଇ ନିରଞ୍ଜନ ଠାରୁ ଶୁଣିଲି ଦୀର୍ଘ ୪୦ ବର୍ଷ ଧରି ନିର୍ବାଚନ ଜିତି ଯେଉଁ ରାଜନୈତିକ ଦଳ ଆମ ଗ୍ରାମବାସୀଙ୍କୁ ଭୁଆଁ ବୁଲେଇ ଚାଲିଥିଲା, ସେହି ଦଳ ଗତ ନିର୍ବାଚନରେ ଅତି ଦୟନୀୟ ଭାବେ ପରାଜିତ ହେବାରୁ ଗୋଟିଏ ନୂଆ ଦଳ ପ୍ରଥମ ଥର ପାଇଁ ଆମ ଅଞ୍ଚଳରେ ବିପୁଳ ଭୋଟରେ ଜୟଯୁକ୍ତ ହୋଇଥିଲା । ସେହି ନୂଆ ଦଳ ଆମ ଗାଆଁ ନଈ କୂଳେ କୂଳେ ମଜଭୁତ ପଥର ପ୍ୟାକିଂ କରାଇଦେଇ ଆମ ପରିବାର ଓ ମୋ ପ୍ରିୟ ଗାଆଁକୁ ନଦୀ କ୍ଷୟରୁ ରକ୍ଷା କରି ନେଇଥିଲା । ସେହି ନଈକୂଳରେ ୨ ବର୍ଷ ତଳେ ମୋ ବୋଉ କହିଥିବା ପଦିଏ କଥା 'ଜଗନ୍ନାଥ ଚାହିଁଲେ କ'ଣ ବା ହୋଇ ନ ପାରେ' ମୋ ମନରେ ପ୍ରତିଧ୍ୱନିତ ହେଉଥିଲା । କିନ୍ତୁ ବିଡମ୍ବନାର ବିଷୟ ଏହି ଯେ, ପୁଣି ଥରେ ଦୀର୍ଘ ୪୦ ବର୍ଷ ଆମ ଗାଆଁ ଲୋକଙ୍କୁ ଭଣ୍ଡି ଆସିଥିବା ସେହି ରାଜନୈତିକ ଦଳ ଏ ବର୍ଷ ନିର୍ବାଚନରେ ଜିତିଛି । ଠାକୁରେ ଗୋଟିଏ ନୂଆ ଦଳକୁ ପ୍ରଥମ ଥର ପାଇଁ ଜିତାଇ ଆମ ପରିବାର ଓ ମୋ ଗାଆଁକୁ ନଦୀ ଦାଉରୁ ରକ୍ଷା କରିଦେଇଥିବାରୁ କୃତଜ୍ଞତାରେ ମୋ ମଥା ନଇଁ ଯାଉଥିଲା । ଏଭଳି କରିପ୍ପା କେବଳ ମହାପ୍ରଭୁ ଜଗନ୍ନାଥ ହିଁ କରିପାରନ୍ତି ।

୨୦୧୫ ମସିହା ଅପ୍ରେଲ ୮ ତାରିଖରେ ଅଫିସ ଯିବାବେଳେ ଆମ ଘରପାଖ ଶୈଳଶ୍ରୀ ବିହାର ଛକରେ ମୋର ଗୋଟିଏ ସ୍କୁଲ ବସ ସହିତ ଆକ୍‌ସିଡ଼େଣ୍ଟ ହେଲା । ମୁଁ କ୍ଷତବିକ୍ଷତ ହୋଇ କିଛିଦିନ ଘରେ ରହି କିମ୍‌ସ ହସ୍‌ପିଟାଲରେ ଚିକିତ୍ସିତ ହେଉଥିଲି ।

ମୋର ଛୁଟି ନ ଥିବାରୁ ହାତ ବାନ୍ଧି ମୁଣ୍ଡରେ ବ୍ୟାଣ୍ଡେଜ କରି ମୁଁ ଅଫିସ୍ ଯାଉଥାଏ । ଏ ଖବର ଶୁଣି ମୋତେ ଦେଖିବାକୁ ଆମ ଅଫିସର ଶ୍ରୀଯୁକ୍ତ ପ୍ରୀତିଶ ଚନ୍ଦ୍ର ବାସା ଓ ଶ୍ରୀଯୁକ୍ତ ଅଜୟ ରାଉତରାୟ ଆସିଥିଲେ । ମୋତେ ଦେଖୁ ଦେଖୁ ଅଜୟ ବାବୁ ପାଟିକରି କହିଲେ, 'ହଇଓ ରାଉଳ ବାବୁ, କଲିକତାରେ କାର ଆକ୍ସିଡ଼େଣ୍ଟ ପୁଣି ଭୁବନେଶ୍ୱରରେ ବସ୍ ଆକ୍ସିଡ଼େଣ୍ଟରେ ପଡ଼ିଲେ । ଆପଣଙ୍କର କ'ଣ ଶୀଘ୍ର ଆରପାରିକୁ ଯିବାକୁ ଇଚ୍ଛା ହେଲାଣି ନା କ'ଣ ? ତାଙ୍କ କଥାଶୁଣି ବାସା ବାବୁ କହିଲେ, ତା'ର କିଛି ହେବନି, ଜଗନ୍ନାଥ ପରା ତା ପାଖେ ପାଖେ ଅଛନ୍ତି । ଅଳ୍ପ ହସି ଉତ୍ତର ଦେଲି, ୨୦୧୫ର ନବକଳେବର ରଥଯାତ୍ରା ନ ଦେଖି ମୁଁ ଚାଲିଯିବି ନା କ'ଣ ? ସେଥିପାଇଁ ତ ସେ ମୋତେ ଅଳ୍ପ କଷ୍ଟ ଦେଇ ବଞ୍ଚାଇ ରଖିଛନ୍ତି । ଦାରୁ ଅନ୍ୱେଷଣ ପାଇଁ ବନଯାଗ ଯାତ୍ରା ଆରମ୍ଭ ହୋଇଗଲାଣି । ରଥଯାତ୍ରା ପୂର୍ବରୁ ମୁଁ ସୁସ୍ଥ ହୋଇ ଯାଇଥିବି । ସେମାନେ ବିଦାୟ ନେଲେ । ସତକୁ ସତ ଗୋଟାଏ ମାସରେ ମୁଁ ସଂପୂର୍ଣ୍ଣ ସୁସ୍ଥ ହୋଇଯାଇଥିଲି ।

୨୦୧୫ ନବକଳେବର ରଥଯାତ୍ରା ପାଖେଇ ଆସିଲାଣି । ଘୋଷଯାତ୍ରା ଦେଖିବାକୁ ମନ ଉଚ୍ଛନ୍ନ ହେଲାଣି । ମନଶ୍ଚକ୍ଷୁରେ ମୁଁ ଦେଖୁଥିଲି, ନବକଳେବର ହୋଇ ପହଣ୍ଡି ବିଜୟ କରି କରି ଭକ୍ତ ଆଉ ଦଇତାଙ୍କ କୋଳା କଚଡ଼ା ଖାଇ ଭାଇ ଭଉଣୀଙ୍କୁ ଆଗରେ ପଠାଇ ପଛରେ ଗହଳି ଲଗାଇ ଢ଼ଳି ଢ଼ଳି ଆସୁଛନ୍ତି ଭାବଗ୍ରାହୀ ଶ୍ରୀଜଗନ୍ନାଥ । ପ୍ରଭୁ ନନ୍ଦିଘୋଷରେ ବିଜେ ହେଲା ପରେ ଗୁଡ଼ ଖଣ୍ଡକୁ ପିମ୍ପୁଡ଼ି ଘେରିଲା ପରି ଘେରିଛନ୍ତି ଲକ୍ଷ ଲକ୍ଷ ଭକ୍ତ ଜନେ । ବଡ଼ଦାଣ୍ଡର ଜନସମୁଦ୍ର ଭିତରେ ସଭିଙ୍କୁ କୋଳେଇ ନେବା ମୁଦ୍ରାରେ ଥାଇ ପଦ୍ମନେତ୍ରରେ ଚାହିଁ ରଙ୍ଗ ଅଧରରେ ପ୍ରଭୁ ମୁରୁକି ମୁରୁକି ହସୁଛନ୍ତି । ଦର୍ଶନାଭିଳାଷୀ, ମୁକ୍ତିକାମୀ ଲକ୍ଷ ଲକ୍ଷ ଭକ୍ତଙ୍କ ଗହଳିରେ ମୁଁ କଣଠେସା ହୋଇ ବଡ଼ଦାଣ୍ଡର କେଉଁ ଏକ କୋଣରୁ ଚାହିଁ ରହିଛି କୋଟି କନ୍ଦର୍ପଜିଣା କଳାଶ୍ରୀମୁଖକୁ । ମୋ ମୁଖରୁ ଶବ୍ଦାୟିତ ହେଉଛି ସେହି ମହାମନ୍ତ୍ର 'ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ' ଆଉ ମହାପ୍ରଭୁଙ୍କ ଭାବାବେଗରେ ସମ୍ମୋହିତ ହୋଇ ମୁଁ ଗାଇ ଚାଲିଛି, ବନମାଳୀଙ୍କର ସେହି ଭକ୍ତିପ୍ଲୁତ ଭଜନ 'ମହାବାହୁ ଏଇ କଥାରେ ମୋ ମନ, ନିତି ଦେଖୁଥିବି ନୀଳାଦ୍ରି ମଣ୍ଡପେ କଞ୍ଜ ସୁନ୍ଦର ବଦନ' ।

ଭି.ଆଇ.ଏମ୍ ୨୯୦
ଶୈଳଶ୍ରୀ ବିହାର, ଭୁବନେଶ୍ୱର-୨୧
ଭ୍ରାମ୍ୟଭାଷ : ୯୬୬୮୬୯୬୩୯୦



# ଶ୍ରୀଜଗନ୍ନାଥଙ୍କର ମହାଦାରୁ ଦର୍ଶନ

## ଡା. ରବୀନ୍ଦ୍ର ନାରାୟଣ ସାମନ୍ତ

**ଶ୍ରୀ**ଜଗନ୍ନାଥ ମହାପ୍ରଭୁଙ୍କର ବିଷୟରେ କିଛି ଲେଖିବା ବା କହିବା ବାହୁଲ୍ୟ ମାତ୍ର । କାରଣ ତାଙ୍କ ବିଷୟରେ କିଛି ଲେଖିବା ଅର୍ଥ ସୂର୍ଯ୍ୟଙ୍କୁ ଏକ ଛୋଟ ଆଲୋକ ଦେଖାଇବା ସଦୃଶ । ଯେଉଁମାନେ ମହାପ୍ରଭୁଙ୍କୁ ସ୍ନେହ କରନ୍ତି, ଶ୍ରଦ୍ଧା କରନ୍ତି, ମାନନ୍ତି ଓ ଭକ୍ତି କରନ୍ତି ସେମାନେ ତାଙ୍କର ମହିମା ଓ କରୁଣା ବିଷୟରେ ମୋ ଠାରୁ ବହୁତ ଅଧିକ ଜାଣିଥିବେ ଓ ଅନୁଭବ ମଧ୍ୟ କରିଥିବେ । ମୁଁ ନିଜକୁ ଏମାନଙ୍କ ଭିତରେ ଥିବା ଭଳି ମୋତେ ଲାଗେନାହିଁ । ବହୁତ ଡେ଼ରିରେ ଜାଣିଲି ଯେ ଜଗନ୍ନାଥଙ୍କର ପୂଜା ପାଇଁ ତାଙ୍କର ନିଜର କୌଣସି ମନ୍ତ୍ର ନାହିଁ । ତାଙ୍କୁ ନୃସିଂହ ମନ୍ତ୍ରରେ ପୂଜା କରାଯାଏ । ଏହି ଉକ୍ତି ସତ କି ନାହିଁ ମୁଁ କୌଣସି ଜ୍ଞାନୀ ଲୋକଙ୍କୁ ପଚାରି ନାହିଁ । ହୁଏତ ଏହା ସଂପୂର୍ଣ୍ଣ ଭୁଲ୍ ହୋଇପାରେ ।

ମୁଁ ନିଜକୁ ଅନେକ ନ୍ୟୁନ ଭାବେ ଭାବିବାର କାରଣ ଅଛି, ମୁଁ କୌଣସି ଗୋଟିଏ ହେଲେ ମନ୍ତ୍ର ଜାଣେନା । ଏ ପରିଣତ ବୟସରେ ଧ୍ୟାନ କରିବା ପାଇଁ ମନ୍ତ୍ର ତ ଦରକାର । କିନ୍ତୁ ମୁଁ କେବେ ଚେଷ୍ଟା କରିନି କି ମନେ ରଖିନି । ଆଉ ଏବେ କ'ଣ କରିବି ? ଧ୍ୟାନ କରିବା ଶିଖିନାହିଁ । ଆଖି ବନ୍ଦ କରି ପ୍ରଣାମ କରିବା ବେଳେ ଅନେକ ପ୍ରକାର କଥା ମନରେ ଆସେ ଓ ଆଖି ଖୋଲିଲେ ତା'ଠାରୁ ବେଶୀ ଆସେ । ଆଜିସୁଦ୍ଧା ମୁଁ ମହାପ୍ରଭୁଙ୍କୁ କେବଳ 'ହାଲୋ-ହାଏ' କରି ଚଳୁଛି ।

ଜଗନ୍ନାଥ ମହାପ୍ରଭୁଙ୍କ ସହ ସେମିତି କିଛି ଖାସ୍ ସଂପର୍କ ରଖିପାରିନାହିଁ । କିନ୍ତୁ ସେ ମୋତେ କେବେ ଛାଡ଼ି ନାହାନ୍ତି । ମୁଁ କେବଳ ଦରକାର ବେଳେ ତାଙ୍କୁ ଡାକି ପୂର୍ଣ୍ଣ ସମର୍ପଣ କରିଛି ନିଜକୁ । ମୋ ଜୀବନରେ ତାଙ୍କର ଉପସ୍ଥିତି ପ୍ରତ୍ୟେକ ଅସୁବିଧାରେ ଅନୁଭବ କରିଛି । ତାଙ୍କ ଠାରୁ ପାଇଥିବା ଆଶୀର୍ବାଦ ମୋତେ ଓ ମୋ ପରିବାରଙ୍କୁ ଶଙ୍ଖରେ ପୂରାଇ ଚକ୍ର ଢ଼ାଙ୍କି ରଖିଛନ୍ତି । ମୋ ସ୍ତ୍ରୀ ଦୁଇ ଦୁଇ ଥର ମୃତ୍ୟୁ ମୁଖରୁ ବଞ୍ଚି ଫେରିଛନ୍ତି, ଯେତେବେଳେ ସମସ୍ତ ଡାକ୍ତର ନାସ୍ତିବାଣୀ ଶୁଣାଇଛନ୍ତି । ସେ ବିଷୟରେ ଲେଖିଲେ ସେ ବୋଧହୁଏ ଏକ ବହି ହେବ । ମୁଁ ଏଇ ନିକଟରେ ଘଟିଥିବା ତାଙ୍କର ମାୟା ଓ ଦୟା ବିଷୟରେ ଲେଖୁଛି ।

ମୁଁ ଆଗରୁ କହିଛି ମୁଁ ଭକ୍ତ ନୁହେଁ ବା ଭକ୍ତି କରିବା ଜାଣିନାହିଁ । ସମସ୍ତ ମହାପ୍ରଭୁ ମାନଙ୍କର ନବକଳେବର ପାଇଁ ମହାଦାରୁ ଚିହ୍ନଟ ହେବା ପରେ, ମୋ ସ୍ତ୍ରୀ ମୋତେ ସବୁବେଳେ କହୁଥିଲେ ମହାଦାରୁ ଦର୍ଶନ କରିବା ପାଇଁ । ମୋର ସେଥିପାଇଁ ଟିକିଏ ମଧ୍ୟ ଆଗ୍ରହ ନଥିଲା । ଖରାଦିନ, ବହୁତ ବାଟ ଚାଲିବାକୁ ହେବ, ବହୁତ ଭିଡ଼ । ଏତେ

ଝାମେଲା ପାଇଁ ମୋର କୌଣସି ଇଛା ନଥିଲା । ତେଣୁ ମୁଁ କିଛି କହୁନଥିଲି ଓ ମନା ମଧ୍ୟ କରୁଥିଲି ।

କିନ୍ତୁ ମୋ ଚାହିଁବାରେ କ'ଣ ଅଛି ? ସେ ତ ନଛୋଡ଼ବନ୍ଧା, ଜଗନ୍ନାଥଙ୍କର ମାୟା ସେ ହିଁ ଜାଣନ୍ତି । ସବୁ ମାୟା ତାଙ୍କୁ ହିଁ ଜଣା । ଋଷି, ମୁନି ଓ ମହାପୁରୁଷମାନେ ତାଙ୍କର ମାୟା ଓ ଦୟାର କାଣିଚାଏ ଜାଣିପାରନ୍ତି ନାହିଁ । ମୁଁ ବା କିଏ ? ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଦୟାରୁ ମୁଁ ୨୦୧୦ ମସିହା ଏପ୍ରିଲ ମାସରେ କିଟ୍ ବିଶ୍ୱବିଦ୍ୟାଳୟ ଅଧୀନରେ ଥିବା 'କିମ୍ସ' ର ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ ଭାବରେ ଯୋଗ ଦେଲି । ତାଙ୍କରି କରୁଣାରୁ ବହୁତ ଥର ତାଙ୍କର ଦର୍ଶନ ପାଇବାର ସୁଯୋଗ ପାଇଲି ।

ମୋର ନିଜ ବାସସ୍ଥଳୀ 'କଳରାବାଙ୍କ' ଗାଁ । ଏହା ରଘୁନାଥପୁର ଠାରୁ ମାତ୍ର ୧ କି.ମି. ଦୂରରେ । ପରମ ସୌଭାଗ୍ୟବଶତଃ ଶ୍ରୀଜଗନ୍ନାଥ, ବଡ଼ ଠାକୁର ବଳଭଦ୍ର ଓ ଦେବୀ ମା' ସୁଭଦ୍ରାଙ୍କ ମହାଦାରୁ ଜଗତସିଂହପୁର ଜିଲ୍ଲାରେ ମିଳିଲା ଓ ଏହା ଆମ ଗ୍ରାମଠାରୁ ଅଳ୍ପ ଦୂରରେ । ସବୁଠାରୁ ପାଖରେ ଅଛି ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ମହାଦାରୁ, ମାତ୍ର ୨ ରୁ ୨.୫ କିଲୋମିଟର ଦୂର । ଗତ ୨୦୧୫ ମଇ ୨ ତାରିଖ ଦିନ ଆମ ଗ୍ରାମରେ ହେଉଥିବା ଯଜ୍ଞର ସମାପନ ହେଉଥାଏ । ସେଥିରେ ଭାଗ ନେବାପାଇଁ ଓ ପ୍ରସାଦ ସେବନ କରିବାପାଇଁ ମୁଁ ଏବଂ ମୋର ସ୍ତ୍ରୀ ମନସ୍ଥ କଲୁ ଓ ଉପରବେଳା ୪ଟା ବେଳେ ବାହାରିବା ପାଇଁ ଠିକ୍ କଲୁ । ହଠାତ୍ ମହାପ୍ରଭୁ ମୋ ମନରେ ପ୍ରବେଶ କଲେ । ଭାବିଲି ଗାଁକୁ ଯିବି । ସେଠାରୁ ମୋଟେ ୨ ବା ୨.୫ କିଲୋମିଟର ରାସ୍ତା । ତେଣୁ ଟିକିଏ ମହାଦାରୁଙ୍କୁ ଦର୍ଶନ କଲେ ହୁଅନ୍ତା । ଶୁଣିଛି ବହୁତ ଭିଡ଼ । ବହୁତ ବାଟ ଚାଲିବାକୁ ପଡୁଛି । ତେଣୁ ଇଛା କେବଳ ମନରେ ରହିଲା । ମୋ ସ୍ତ୍ରୀକୁ ମଧ୍ୟ କିଛି କହିଲି ନାହିଁ । ସେ ଜାଣିଲେ ଆମେ ଯଜ୍ଞ ଦେଖି ପ୍ରସାଦ ସେବନ କରି ଫେରିବା, ତା'ପରେ ଯିବାର ମଧ୍ୟ ଠିକ୍ ନଥିଲା । ଉଚ୍ଚ କର୍ତ୍ତୃପକ୍ଷଙ୍କର ଅନେକ କାମର ତାଗିଦା ଥିଲା । ଯାହାହେଉ ଭାବିଲି ମହାପ୍ରଭୁଙ୍କ ଦାରୁ ରଘୁନାଥପୁରରୁ ବାହାରିଛି । ସେମାନଙ୍କର କିଛି ପାରିବା ଲୋକଙ୍କୁ କହିଲେ ସୁବିଧା କରିଦିଅନ୍ତେ । ଦୁଇ ଜଣଙ୍କୁ ଫୋନ ମାଧ୍ୟମରେ କଥା ହେଲି । ସେମାନେ ମୋତେ ପ୍ରତିଶ୍ରୁତି ଦେଲେ ଯେ ସେମାନେ ସମସ୍ତ ସୁବିଧା କରିଦେବେ । ମାତ୍ର ୫୦ ରୁ ୧୦୦ ମିଟର ଚାଲିବାକୁ ହେବ । ମନେ ମନେ ଖୁବ୍ ଖୁସି ହୋଇଗଲି । କିନ୍ତୁ ତା' ସତ୍ତ୍ୱେ ଶ୍ରୀମତୀଙ୍କୁ କିଛି କହିଲି ନାହିଁ, କାଳେ ନ ହେବ ।

ଉପରବେଳା ୫.୩୦ ମିନିଟ୍‌ରେ ଗାଁରେ ପହଞ୍ଚିଲୁ । ଖୁବ୍ ଯାକଜମକରେ ପୂର୍ଣ୍ଣାହୁତି ବିଧି ଚାଲିଥାଏ । ମନ ଭିତରେ ଦାରୁ ଦର୍ଶନର ଇଚ୍ଛା ବଢୁଥାଏ ତା' ମଧ୍ୟ ସୁବିଧାରେ । ଯେଉଁ ଦୁଇଜଣ ଲୋକଙ୍କ ସହ କଥା ହୋଇଥିଲି, ସେମାନଙ୍କ ମଧ୍ୟରୁ ଜଣେ ସେଠି ଉପସ୍ଥିତ ଥିଲେ । ମୁଁ ପଚାରିବାରୁ କହିଲେ ପୂର୍ଣ୍ଣାହୁତି, ତା'ପରେ ଧର୍ମସଭା । ତା'ପରେ ଯିବା । ରାତି ୮ଟା ହେଲା । ମନ ଭିତର ବହୁତ ଉଚ୍ଚାଟ ହେଉଥାଏ । ଧର୍ମସଭା ଓ ଯଜ୍ଞକୁ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ଆସିଥାଆନ୍ତି । ଏହା ମଧ୍ୟରେ ମୁଁ କଥା ହୋଇଥିବା ଦ୍ୱିତୀୟ ଲୋକ ମଧ୍ୟ ଆସି ପହଞ୍ଚିଲେ । ମୋତେ ଦେଖି କହିଲେ, 'ସାର୍ ଆପଣ ମୋତେ ଫୋନ କଲେନି । ଯେଉଁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କ ସହିତ ଆପଣଙ୍କୁ ପୋଲିସ ସହିତ ନେବାର ଥିଲା ସେ ଦର୍ଶନ କରି କଟକ ଚାଲିଗଲେ । ଏବେ ଯିବା କଷ୍ଟ । କେବଳ ଲାଇନ୍‌ରେ ଯିବାକୁ ହେବ ।' ମନ ଭାଙ୍ଗିଗଲା । ଧର୍ମସଭାରେ ବସିଥିଲେ ମଧ୍ୟ ମନଭଲ ଲାଗୁନଥାଏ । ରାତି ପ୍ରାୟ ୮ଟା ହୋଇଥାଏ । ଠିକ୍ କଲି ଶ୍ରୀମତୀଙ୍କୁ ଧରି କଟକ ଚାଲି ଆସିବି । ଧର୍ମସଭା ଛାଡ଼ି ଉଠିଲି ସ୍ତ୍ରୀଙ୍କୁ ଡାକିବା ପାଇଁ । ଦେଖିଲି ଜଣେ ପଦସ୍ଥ ପୋଲିସ ଅଫିସର ଯଜ୍ଞ ପାଇଁ ଆସିଛନ୍ତି ଓ ମୋ ସହ କଥା ହୋଇଥିବା ଦୁଇ ଜଣଙ୍କ ମଧ୍ୟରୁ ଜଣେ ଓ ମୋର ଆଉ ଜଣେ ପରିଚିତ ଲୋକ ତାଙ୍କ ସହ କଥା ହେଉଛନ୍ତି । ହଠାତ୍ ମୋତେ ଦେଖି ତାଙ୍କୁ କହିଲେ, 'ସାର୍, ଡା. ସାମନ୍ତ ଓ ତାଙ୍କ ସ୍ତ୍ରୀଙ୍କୁ ଟିକିଏ ଦାରୁଙ୍କ ପାଖକୁ ନେଇଯାଆନ୍ତୁ ।' ମୁଁ ପାଖରେ ଶୁଣୁଥାଏ, ସେ ମନା କଲେ । କହିଲେ ମୁଁ ଯଜ୍ଞ ଦେଖିଆସିଛି ଓ ଏଠି ବହୁତ କାମ ଅଛି । ମୋର ପରିଚିତ ତୃତୀୟ ବ୍ୟକ୍ତି ଆଉଥରେ ଅନୁରୋଧ କଲେ । ହଠାତ୍ ମୋତେ ପଚାରିଲେ ଆପଣ କେଉଁଥିରେ ଆସିଛନ୍ତି । ମୁଁ କହିଲି, ମୁଁ ମୋର ଗାଡ଼ି ନେଇ ଆସିଛି । ହଠାତ୍ କହିଲେ, ଠିକ୍ ଅଛି ଆପଣଙ୍କ ଗାଡ଼ି ମୋର ଗାଡ଼ି ପଛରେ ଆସୁ, ମୁଁ ଆପଣଙ୍କୁ ଦାରୁ ପାଖରେ ଛାଡ଼ିଦେବି ।'

ସେ ସମୟର ମନର ଅବସ୍ଥା ଲେଖାରେ ବ୍ୟକ୍ତ କରିବା ସଂପୂର୍ଣ୍ଣ ଅସମ୍ଭବ । ସ୍ତ୍ରୀ ଗପୁଥିବା ସ୍ଥାନରୁ ଉଠାଇ ଆଣି ଗାଡ଼ିରେ ବସାଇଲି ଓ ବସିବା ପର୍ଯ୍ୟନ୍ତ କିଛି କହିନଥିଲି । ସେ ଭାବିଲେ ଆମେ ଭୁବନେଶ୍ୱର ଫେରିବୁ । ଗାଡ଼ିରେ ବସିବା ପରେ ମୁଁ ତାଙ୍କୁ କହିଲି, ସେ ପ୍ରଥମେ ବିଶ୍ୱାସ କଲେ ନାହିଁ, କିନ୍ତୁ ବ୍ୟବସ୍ଥା ଦେଖି ସବୁ ବୁଝିପାରିଲେ ।

ଏହାପରେ ଯାହା ଘଟିଲା ତାହାର ତାତ୍ପର୍ଯ୍ୟ ଲେଖାରେ ବ୍ୟକ୍ତ କରିବା ବୋଧହୁଏ ସମ୍ଭବ ହେବନି । ସେ ଯାହାହେଉ ସେହି ପୋଲିସ ଅଫିସର ଏକ ସ୍ୱତନ୍ତ୍ର ରାସ୍ତାରେ ନେଇ ଦାରୁ ବିଗ୍ରହଙ୍କ ଅତି ପାଖରେ ଛାଡ଼ିଦେଲେ । ଆମେ ସ୍ତମ୍ଭୀଭୂତ ହୋଇ ଛିଡ଼ା ହୋଇଥିଲୁ । ଆମ ସମ୍ମୁଖରେ ସ୍ୱୟଂ ପରମବ୍ରହ୍ମ ମହାଦାରୁ ରୂପରେ ଦଣ୍ଡାୟମାନ ।

ଅପଲକ ଓ ସତୃଷ୍ଣ ନୟନରେ କିଛିସମୟ ଦେଖିଲୁ । ଶଙ୍ଖ, ଚକ୍ର, ଗଦା, ପଦ୍ମ ଓ ହାତୀ କି ଆନନ୍ଦ ! ତା' ପରେ ଦାରୁ ପ୍ରଦକ୍ଷିଣ କରି ଭୁବନେଶ୍ୱର ଫେରିଲୁ । ଫେରିଲା ବାଟରେ ମା' ସୁଭଦ୍ରାଙ୍କର ଭୂପତିତ ଦାରୁ ଦର୍ଶନ କରି ଫେରିଲୁ ।

ଏହା କିପରି ସମ୍ଭବ ହେଲା ? ମୋର ପୂର୍ଣ୍ଣବିଶ୍ୱାସ, ପୋଲିସ ଅଫିସର ଓ ମୋ ସହିତ ଆଗରୁ କଥା ହୋଇନଥିବା ତୃତୀୟ ବ୍ୟକ୍ତି ଜଗନ୍ନାଥଙ୍କ ବାହକ ହୋଇ ଆସିଥିଲେ ମୋତେ ବାଟ କଢ଼ାଇ ନେଇ ଦର୍ଶନ ଦେବାପାଇଁ । ଏହା ଶତ ପ୍ରତିଶତ ସତ୍ୟ ।

ଧନ୍ୟ ଜଗନ୍ନାଥ
ଧନ୍ୟ ତୁମ କରୁଣା
ଧନ୍ୟ ତୁମ ମହିମା ।

ମୁଖ୍ୟ କାର୍ଯ୍ୟନିର୍ବାହୀ ଅଧିକାରୀ
କଳିଙ୍ଗ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ମେଡ଼ିକାଲ ସାଇନ୍ସ
ଶିଶୁ ବିହାର, ପଟିଆ
ଭୁବନେଶ୍ୱର - ୭୫୧୦୨୪
ଭ୍ରାମ୍ୟଭାଷ : ୯୪୩୭୦୫୨୮୯୨



# ଯାତନା ଜୁଇରେ ଆଶ୍ୱାସନା ବାରି

## ନନ୍ଦିକେଶ୍ୱରୀ ନାଥ

**ସଂ**ସାର ରୂପୀ ଶ୍ରୀକ୍ଷେତ୍ରର ଅଧିଷ୍ଠାତା ଜଗତର ନାଥ ଶ୍ରୀଜଗନ୍ନାଥ । ସେ ନିରାକାର ପରଂବ୍ରହ୍ମ, ସେ ହିଁ ସାକାର ଦେବତା ପତିତପାବନ ଜଗନ୍ନାଥ । ପିତା-ମାତା, ବନ୍ଧୁ-ସଖା, ପୁତ୍ର-କନ୍ୟା ସବୁ ସମ୍ବନ୍ଧରେ ହିଁ ଭକ୍ତ ତାଙ୍କୁ ଅନୁଭବ କରିଥାଏ । କିନ୍ତୁ ଦୁଃଖ-ସୁଖ ଭରା ସଂସାର ତାଙ୍କର ଅସ୍ତିତ୍ୱକୁ ସ୍ପର୍ଶ କରି ପାରେନି । ସଂସାର ମୁକ୍ତ ଥାଇ ବି ସମସ୍ତ ଜୀବଜଗତ, ଜଡ଼, ପ୍ରକୃତିରେ ତାଙ୍କର ସ୍ଥିତି ଅନୁଭୂତ ହୁଏ । ନାମ ରୂପର ଊର୍ଦ୍ଧ୍ୱରେ ଥାଇ ବି ସେ ସର୍ବନାମ ।

ଅବସ୍ଥା ସ୍ଥଳେ ଭକ୍ତର ନିଷ୍ଠାରେ ଅନୁକମ୍ପା ବହି ସେ ଅଲୌକିକତା ପ୍ରଦର୍ଶନ କରିଥା'ନ୍ତି କିମ୍ବା ଅନ୍ଧାରରେ ବାଡ଼ି ବୁଲାଉଥିବା ଦିଗହରା ପଥିକକୁ ସତ୍‌ପଥର ସନ୍ଧାନ ଦେବାକୁ ଯାଇ ଅଲୌକିକତା ଦ୍ୱାରା ଭକ୍ତ ବନାଇ ଦେଇଥା'ନ୍ତି । ସତରେ ତାଙ୍କ ଦୟାର ପଟାନ୍ତର ନାହିଁ । କରୁଣାର ସାଗର ଜଗତନାଥଙ୍କ ଅସୀମ କରୁଣାକୁ ବର୍ଣ୍ଣନା କରିବା ଧୃଷ୍ଟତା ମାତ୍ର । ଦୟା, କ୍ଷମାର ବଡ଼ ପଣିଆରେ ସମସ୍ତ ପାପ-ତାପକୁ ଧୋଇନେଇ ସେ ଦୁଃଖୀର ଆର୍ତ୍ତମୋଚନ କରନ୍ତି ।

ପରମ କାରୁଣିକ ପ୍ରଭୁଙ୍କର ସ୍ପର୍ଶାନୁଭୂତି ମୋ ଜୀବନର ଏକ ଅଭୁଲା ସ୍ୱର୍ଣ୍ଣିମ ମୁହୂର୍ତ୍ତ, ଯାହାକି ମୋର ସ୍ମୃତିର ଫରୁଆରେ ଅମୂଲ୍ୟ ସମ୍ପତ୍ତି ରୂପେ ସାଇତା ହୋଇ ରହିଛି ଓ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ ରହିଥିବ ।

ଦୁଇହଜାର ଆଠ ମସିହାରେ ମୁଁ ଦୁରାରୋଗ୍ୟ 'କର୍କଟ' ବ୍ୟାଧିରେ ଆକ୍ରାନ୍ତ ହେଲି । ମୋର ଈଶ୍ୱରଙ୍କ ଉପରେ ବହୁତ ଭରସା ଥାଏ । ଅତିଶୟ ଅଧର୍ଯ୍ୟ ନ ହେଲେ ବି ବେଳେବେଳେ ମନ ଦବି ଯାଏ, ପୁଣି ଦୁର୍ବଳ ମନକୁ ଈଶ୍ୱରଙ୍କ ବାଣୀ ଶୁଣାଇ ସାନ୍ତ୍ୱନା ଦିଏ, ସାହସ ବଢ଼ାଏ । କାଖରେ ହୋଇଥିବା ଟ୍ୟୁମର କଟକରେ ଅପରେସନ୍ ହେଲା । ବମ୍ବେ ଟାଟା ମେମୋରିଆଲରେ କେମୋ ଦିଆହେଲା । ବମ୍ବେ ଯିବା ଆସିବା ସମୟରେ କିଛି ବ୍ୟକ୍ତିମାନଙ୍କ ସହିତ ଭେଟ ହୁଏ ଯେଉଁମାନେ କି କ୍ୟାନ୍‌ସର ପୀଡ଼ିତ ହୋଇ ଚିକିତ୍ସା ହେଉଥିଲେ । ସମଦୁଃଖୀଙ୍କୁ ଦେଖି ମନରେ ବଳ ଆସୁଥାଏ କି ମୋ ଭଳି ଅନେକ ଲୋକ ଏହି ବ୍ୟାଧିର ଯନ୍ତ୍ରଣାକୁ ଭୋଗୁଛନ୍ତି ।

ବମ୍ବେରେ ଆମ ଓଡ଼ିଆ ମାନଙ୍କ ତରଫରୁ 'ଜଗନ୍ନାଥ ସେବା ସମିତି' ଗଢ଼ାଯାଇଥାଏ । ସମିତିର ସଭ୍ୟମାନେ ଟାଟା ମେମୋରିଆଲରେ ଓଡ଼ିଆ ମାନଙ୍କୁ ବହୁତ ସେବା ଯୋଗାଇ ଦେଉଥା'ନ୍ତି । ଅନ୍ୟ ସ୍ଥାନର ଲୋକମାନେ ମଧ୍ୟ ଅନୁଷ୍ଠାନ ଗଢ଼ି ତାଙ୍କ

ଅଞ୍ଚଳର ଲୋକଙ୍କୁ ସହାୟତା ପ୍ରଦାନ କରୁଥା’ନ୍ତି । ବଢ଼ିପାଣିରେ ଭାସିଗଲା ବେଳେ କୁଟାଖିଅକୁ ଆଶ୍ରା କଲାଭଳି ସେବା ସମିତିର ଭାଇ ଓ ଭଉଣୀମାନେ ସେତେବେଳେ ଦେବଦୂତ ଭଳି ଉଭା ହୁଅନ୍ତି । ଏସବୁ ଦେଖି ମନରେ ଆସେ ଓଡ଼ିଆଙ୍କ ପ୍ରାଣ ଶ୍ରୀଜଗନ୍ନାଥ ଏଠାରେ ବି ସହାୟତାର ହାତ ବଢ଼ାଇ ଦେଇଛନ୍ତି ତାଙ୍କର ପ୍ରିୟ ଓଡ଼ିଆମାନଙ୍କ ପାଇଁ ।

ଅନେକ ସମୟରେ ଅକଥନୀୟ କଷ୍ଟ ମନୁଷ୍ୟକୁ ଈଶ୍ୱରାଭିମୁଖୀ କରାଇଥାଏ । ମୋତେ ଛଅଟି କେମୋ ଦିଆଗଲା । ଦ୍ୱିତୀୟ କେମୋ ବେଳକୁ ମୋ ମୁଣ୍ଡର ବାଳ ସବୁ ଉପୁଡ଼ି ଗଲା । ଦେହରୁ ଲୋମ ଉପୁଡ଼ି ଯାଇ ଚର୍ମ, ନଖ ଓ ଦାନ୍ତ କଳାପଡ଼ି କୁରୂପ ଦେଖାଗଲା । ପାଟି ସ୍ୱାଦହୀନ ହୋଇ ଧୀରେ ଧୀରେ ଯନ୍ତ୍ରଣା ବଢ଼ିବାକୁ ଲାଗିଲା ଓ ମୋତେ ଲାଗିଲା ମୁଁ ଯେପରି ମୃତ୍ୟୁ ଆଡ଼କୁ ପାଦେ ପାଦେ ଅଗ୍ରସର ହେଉଛି । କେମୋ ଚାଲିଥିଲାବେଳେ ହଠାତ୍ ମୋର ଜନ୍ମଦାତା ପିତା ଓ ଜନ୍ମଦାତ୍ରୀ ମାଆ ଆଗପଛ ହୋଇ ଏ ମର ସଂସାରରୁ ବିଦାୟ ନେଲେ । ସେ ସମୟର କଷ୍ଟ ଆହୁରି ବଳି ପଡ଼ିଲା । ସତରେ ଦୁଃଖ ଆସିଲାବେଳେ ଭାଇ, ବନ୍ଧୁ, କୁଟୁମ୍ବ ସହିତ ଆସେ ଅଗ୍ନି ପରୀକ୍ଷା ନେବାଲାଗି । କେମୋ ପରେ ବାଙ୍ଗାଲୋର ଆପୋଲୋ ହସ୍‌ପିଟାଲରେ ମୋର ତେତିଶି ଥର ଲାଇଟ୍ ପଡ଼ିଲା । ଦିନକୁ ଦିନ କଷ୍ଟ ଅସହ୍ୟ ଲାଗୁଥାଏ । କାଖ ପିଠି ସିଝି ଫୋଟକା ହୋଇ ବହୁତ ଯନ୍ତ୍ରଣା ହେଉଥାଏ । ଦୁର୍ବିସହ ଜୀବନ ନେଇ ମୁର୍ଦ୍ଦାର ଭଳି ବଞ୍ଚିଥିଲା ବେଳେ ମୋର ପରିଚିତ ପୀଡ଼ିତ ସମଭୋଗୀ ତିନିଜଣ ଏ ଇହଜଗତରୁ ବିଦାୟ ନେଲେ । ଯେଉଁମାନଙ୍କ ସହିତ ଟ୍ରେନରେ ଯିବାବେଳେ, ଟାଟା ମେମୋରିଆଲ୍‌ରେ ଚିକିତ୍ସା ହେଲାବେଳେ, ଶିରିଡ଼ି ସାଇ ମନ୍ଦିରକୁ ଯିବାବେଳେ ଓ ଢ଼େଙ୍କାନାଳରେ ଚଳପ୍ରଚଳ ହେଲା ସମୟରେ ରୋଗ ବିଷୟରେ ବହୁତ ସୁଖ ଦୁଃଖର ଆଲୋଚନା କରି ଅନେକ ଆଶ୍ୱାସନା ଦେଇଛି ଓ ପାଇଛି ମଧ୍ୟ । ସେମାନଙ୍କ ମୃତ୍ୟୁ ମୋତେ ଆହୁରି ହତୋତ୍ସାହିତ କରିଦେଲା ।

ସମୟ ଗଡ଼ି ଚାଲିବା ସହିତ ରୋଗର କଷ୍ଟ ବଢ଼ି ଚାଲିଥାଏ । ଆଶା ନିରାଶାର ଦ୍ୱନ୍ଦ୍ୱରେ ଛଟପଟ ଲାଗୁଥାଏ । କେତେବେଳେ ବଞ୍ଚିବାର ଆଶା ଦୁର୍ବାର ହେଲାବେଳେ କେବେ କେବେ ମୃତ୍ୟୁର ଆଶଙ୍କା କବଳିତ କରିଦିଏ ହେଲେ ସବୁ ସମୟରେ ଅନ୍ତରର ନିଭୃତ କୋଣରେ ସେହି ଜଗତର ନାଥ ପରଂବ୍ରହ୍ମ କରୁଣାମୟଙ୍କୁ ଆପଣାର କରି ଜାବୁଡ଼ି ଧରିଥାଏ । ତାଙ୍କୁ ହିଁ କେନ୍ଦ୍ରକରି ହୃଦୟ କନ୍ଦରରୁ ଦୁଃଖ, ଅଭିମାନ ଓ ଶରଣାଗତର ଭାବରେ ଜୁଡୁବୁଡୁ ହୋଇ କବିତାର ଝର ଝରିଆସେ । ଏପରିକି ଦ୍ୱିତୀୟ ଥର ଅପରେସନ୍

ଟେବୁଲକୁ ଯିବା ପୂର୍ବରୁ ବହୁତ ପ୍ରଶ୍ନର ଜେରା କରି ସେହି ପ୍ରଭୁଙ୍କ ନିକଟକୁ ମନର ବେଦନା କିଛି ଲେଖି ଦେଇଥିଲି ଯାହା ପରେ ମୋର କବିତା ବହି 'ପ୍ରତ୍ୟାଶା'ରେ ସ୍ଥାନ ପାଇଛି । କେବଳ ତାଙ୍କରି ସ୍ମୃତିରେ ହଜି ତାଙ୍କ ସହିତ ଏକାକାର ହେବାର ଅନୁଭବ କରୁଥିଲି ନିଶ୍ଚେତକ ଇଂଜେକସନ୍‌ରେ ଅଚେତ ହେଲା ପର୍ଯ୍ୟନ୍ତ ।

ଅତ୍ୟଧିକ ଦୁଃଖବେଳେ ତାଙ୍କ ଭିତରେ ହଜିଯିବାର ସୁଖ ଅବର୍ଣ୍ଣନୀୟ । ସମୟେ ସମୟେ ଭାବେ ଭଗବାନ ବୋଧେ ଏଇଥିପାଇଁ ଦୁଃଖ ଦିଅନ୍ତି ଯେ ସବୁପଥ ବନ୍ଦ ହୋଇଗଲା ବେଳେ ଖୋଲିଯାଏ ଏହି ଗୋଟିଏ ପଥ ଯେ' କି ଜୀବ ନିରୁପାୟ ହୋଇ ଅଲୌକିକ ଶକ୍ତିର ଶରଣାପନ୍ନ ହୁଏ ।

ଲାଇଟ୍ ଓ କେମୋର ଚିକିତ୍ସା ପରେ ମୋର ଶରୀର ଦୁର୍ବଳ ହୋଇ ବିକୃତ ଦିଶୁଥାଏ । ଶରୀର କଷ୍ଟ ସହିତ ନାନା ଲୋକଙ୍କ ନାନା ଟିପ୍ପଣୀ ମନରେ ବହୁତ ଆଘାତ ଦିଏ । ଟାଟା ମେମୋରିଆଲରେ ଡାକ୍ତରଙ୍କ ଅପେକ୍ଷାରେ ବସିଥିଲା ବେଳେ ଜଣେ ମହାପୁରୁଷଙ୍କର ଲେଖା ବହିଟିଏ ମୁଁ ପଢୁଥିଲି ଯାହାର ଗୋଟିଏ ପଦ ମୋର ସଦାବେଳେ ମନେପଡ଼େ । 'ତୁମେ ଦୁଃଖ ପାଇଲାବେଳେ ଅନେକ ଲୋକ ତୁମ ସମ୍ମୁଖରେ ଆହା ଚୁ-ଚୁ କରି ସମବେଦନା ଜଣାଇବେ କିନ୍ତୁ ପଛରେ ତାଚ୍ଛଲ୍ୟର ହସ ହସି ଆମୋଦିତ ହେବେ ।' ଏହି ଉକ୍ତିଟି ଶତ ପ୍ରତିଶତ ସତ୍ୟ ଅଟେ । ଏହାର ତୀବ୍ର ଅନୁଭୂତି ଅଙ୍ଗେ ଲିଭାଇବାକୁ ପଡ଼ିଛି ।

ଭାବନାରେ ଆସେ ବୋଧହୁଏ ଦୁଃଖ ନଥିଲେ ମଣିଷ ଈଶ୍ୱରଙ୍କ ଆଡ଼କୁ ଏତେ ଆକର୍ଷିତ ହୋଇ ଯାଆନ୍ତା ନାହିଁ । ସୁଖର ମସ୍‌ଗୁଲ୍‌ରେ ସର୍ବସୁଖର ମୂଳ ଉତ୍ସ ପତିତପାବନ ଦୁଃଖହର୍ତ୍ତାଙ୍କୁ ବିସ୍ମରଣ ହୋଇଯା'ନ୍ତା । ତେଣୁ ବୁଦ୍ଧିର ଭାରସାମ୍ୟ ରକ୍ଷାପାଇଁ ଜୀବନର ପ୍ରତିପଦରେ ସୁଖ-ଦୁଃଖ ଖଞ୍ଜି ହୋଇ ରହିଅଛି ।

କ୍ୟାନସରର ଉପଶମ ଲାଗି ଯେଉଁ ଔଷଧ ମୁଁ ଖାଉଥିଲି ତା'ର କଟୁ ପ୍ରଭାବ ଦିନକୁ ଦିନ ଶରୀର ଉପରେ ଅଧିକ ପଡ଼ିବାକୁ ଲାଗିଲା । ଦେହର ସମସ୍ତ ଗଣ୍ଠି ଅସମ୍ଭବ ପ୍ରକାର ଦରଜ ହୋଇଗଲା । ନିଜର ନାଇଟି କିମ୍ବା ବ୍ଲାଉଜ ନିଜେ ପିନ୍ଧିବାକୁ-ଓହ୍ଲାଇବାକୁ, ଶୋଇଥିଲେ କଡ଼ ଲେଉଟେଇବାକୁ, ଖଟରୁ ତଳକୁ ଓହ୍ଲାଇବାକୁ ବହୁତ କଷ୍ଟକର ହେଲା । କେବଳ ଅନ୍ତର ଭିତରେ ଜଗନ୍ନାଥଙ୍କୁ ଡାକି ଡାକି ସମସ୍ତ କଷ୍ଟ ସହି ନେଉଥାଏ । ଅନ୍ୟମାନଙ୍କ ନିକଟରେ ସଦାବେଳେ ନିଜର କଷ୍ଟ ପ୍ରକାଶ କରିବାକୁ ବି ଭଲ ଲାଗେନି । ଅନେକ ରାତିରେ ନିଦ ଔଷଧ ଖାଇ ମଧ୍ୟ ନିଦ ଲାଗେନି । ବିଛଣାରେ ପଡ଼ି ଛଟପଟ ହୋଇ ଭଗବାନଙ୍କୁ ଡାକିବା ଛଡ଼ା ଉପାୟ ନଥାଏ ।

ଦିନେ ବ୍ୟାକୁଳ ହୋଇ ଠାକୁରଙ୍କୁ କହିଲି, 'ମୋତେ କାହିଁକି ଏପରି କଷ୍ଟ ଦେଉଛ ପ୍ରଭୁ, ମୋ କର୍ମର କି ହିସାବ କିତାବ ବାକି ରହିଛି ଏ ଅକଥନୀୟ ଯନ୍ତ୍ରଣା ଭୋଗ କରିବାକୁ । ତୁମର ଏହି ସୁନ୍ଦର ସୃଷ୍ଟିକୁ ଛାଡ଼ିଯିବାକୁ ମୋର ମନ ଡାକୁନାହିଁ । ମୋତେ ଭଲକରି ଦେବ ଯଦି ଦିଅ ନହେଲେ ନାହିଁ ତୁମ ପାଖକୁ ନେଇଯାଅ, ଆଉ ଏ କଷ୍ଟ ସହି ହେଉନି ।' ଏହିଭଳି ତାଙ୍କୁ ମୋର ମନକଥା ଜଣାଇ ବିଛଣାରେ ଚାହିଁରହି ଛଟପଟ ହେଉଥାଏ । କେତେବେଳେ ପ୍ରଭୁଙ୍କୁ ଡାକି ଡାକି ତାଙ୍କରି ସ୍ମୃତିରେ ଭୋର ସମୟ ବ୍ରାହ୍ମ ମୂହୁର୍ତ୍ତରେ ଆଖି ଲାଗିଯାଇଛି ଜଣାନାହିଁ । ହଠାତ୍ କାହାର ଦିବ୍ୟ ସ୍ପର୍ଶରେ ମୋର ସାରା ଶରୀର ରୋମାଞ୍ଚିତ ହୋଇ ଉଠିଲା । ଅବଚେତନ ମନରେ ଦେଖିଲି ଗବାକ୍ଷର ଶୀର୍ଷରୁ ବିଚ୍ଛୁରିତ ଲାଲ ଲାଲ ଆଲୋକ ରଶ୍ମିରେ ମୋର ଶରୀର, ମନ, ପ୍ରାଣ ସବୁକିଛି ଭିଜିଯାଉଛି । ଆଉ ସେହି ସ୍ୱର୍ଣ୍ଣାଭ ଆଲୋକ ମଧ୍ୟରେ ମୁଁ ଦର୍ଶନ କରୁଛି ଜଗତର ନାଥ ଜଗନ୍ନାଥଙ୍କ ମନଲୋଭା ଛବିକୁ । ଚକା ଚକା ଆଖିର ଆକର୍ଷଣୀୟ ଦୃଷ୍ଟିରେ ଯେଉଁ ଅପରିମିତ ଆନନ୍ଦ ଅନୁଭବ କଲି, ତାହା ମୁଖରେ ବର୍ଣ୍ଣନା କରିବା କିମ୍ବା ଲେଖାରେ ପ୍ରକାଶ କରିବା ମୋ ପକ୍ଷରେ ଅସମ୍ଭବ । ତତ୍‌ସହିତ ଅଦୃଶ୍ୟ ମଧୁର ଶବ୍ଦର ଝଙ୍କାର ମୋ କାନକୁ ରସାଣିତ କରିଦେଲା । 'ତୁ ଚିନ୍ତା କରନା, ବ୍ୟସ୍ତ ହଅନା, ଲୁହ ଗଡ଼ାନା, ମୁଁ ଅଛି । ସବୁ ଠିକ୍ ହୋଇଯିବ ।' ସଙ୍ଗେ ସଙ୍ଗେ ନିଦ ଭାଙ୍ଗିଗଲା । ମୁଁ ଭାବି ପାରିଲିନି ଶୋଇଛି କି ଚେଇଁଛି । ମୋର ଦେହ, ମନ ଏକ ଅପୂର୍ବ ଆବେଗରେ ପୁଲକିତ ହୋଇ ଯାଉଥାଏ । କି ଅଲୌକିକ ଅନୁଭବ କି ଆନନ୍ଦମୟ ଅନୁଭୂତି, ସଂସାରର ସବୁ ସୁଖ ଯେମିତି ମୋ ଉପରେ ଅଜାଡ଼ି ହୋଇ ପଡ଼ିଲା । ମୁଁ ସମ୍ଭାଳି ପାରିଲିନି । ମୋ ସ୍ୱାମୀ ଅମୃତ ବେଳାରେ ଉଠି ସେହି ବିଛଣାରେ ବସି ଧ୍ୟାନ କରୁଥିଲେ । ତାଙ୍କୁ ସମସ୍ତ କଥା ଭାବ ବିହ୍ୱଳିତ ହୋଇ କହିଗଲି । ସେ କହିଲେ, 'ତୁମେ ସବୁ ସମୟରେ ଈଶ୍ୱରଙ୍କ ସ୍ମରଣରେ ରହୁଛ, ତାଙ୍କ ଆଶୀର୍ବାଦରୁ ନିଶ୍ଚୟ ଆରୋଗ୍ୟ ହୋଇଯିବ ।' ମୋ ଆଖିରୁ ଝର ଝର ହୋଇ ଆନନ୍ଦାଶ୍ରୁ ବହି ପଡ଼ିଲା । ଅଫୁରନ୍ତ ଉଲ୍ଲାସରେ ମୋ ଅନ୍ତସ୍ଥଳ ଉଦ୍‌ବେଳିତ ହୋଇ ଉଠିଲା । ସେହି କରୁଣାମୟ ପରମେଶ୍ୱରଙ୍କ ଉଦ୍ଦେଶ୍ୟରେ ମଥାନତ ହୋଇ ଆପେ ଆପେ ହାତ ଯୋଡ଼ି ହୋଇଗଲା ।

ଏବେ ମୁଁ ରୋଗମୁକ୍ତ । ମୋର ସାରସ୍ୱତ ସାଧନା ବି ଈଶ୍ୱରାଭିମୁଖୀ ହୋଇ ଆଗେଇ ଚାଲିଛି । 'ପ୍ରତ୍ୟାଶା' କବିତା ସଂକଳନ ଓ 'ଲଘୁ ରାମାୟଣ' ଦୁଇଖଣ୍ଡ ବହି ସେହି ଅସୁସ୍ଥତା ମଧ୍ୟରେ ହିଁ ପ୍ରକାଶ ପାଇଲା । ସତରେ ଭଗବାନଙ୍କ କରୁଣାରେ କ'ଣ ନ ହୋଇପାରେ ? ପ୍ରତି ମୁହୂର୍ତ୍ତରେ ମୃତ୍ୟୁକୁ ଦର୍ଶନ କରୁଥିବା ବ୍ୟକ୍ତି ପୁଣି ବହି ପ୍ରକାଶ କରିବ ? ଏ ଅସମ୍ଭବକୁ ସମ୍ଭବ କରିଛି ସେହି ପରମେଶ୍ୱରଙ୍କ ଦୟା ।

ତାଙ୍କ ଦାନ ମୋର ଏହି କ୍ଷୁଦ୍ର ସଂସାର ଭିତରେ ମୁଁ ଆବଦ୍ଧ । ଏକ ସ୍ତ୍ରୀ ଭୂମିକାରେ, ଏକ ମା' ଭୂମିକାରେ, ବିଶେଷ କରି ଏକ କାର୍ଯ୍ୟରତା ଗୃହିଣୀ ଭୂମିକାରେ ମୋର ସମସ୍ତ କାର୍ଯ୍ୟ ସୁଚାରୁରୂପେ ସମ୍ପାଦନ କରୁଥିଲେ ବି ମୋର ଅର୍ନ୍ତଚେତନା ସେହି ପରମ କାରୁଣିକ ଶ୍ରୀଜଗନ୍ନାଥଙ୍କ ସ୍ମୃତିରେ ବୁଡ଼ି ରହୁଛି । ପ୍ରତି ମୁହୂର୍ତ୍ତରେ ମୁଁ ତାଙ୍କର ସେହି ଅମିୟବୋଳା ଅପାସୋରା କାଉଁରୀ ସ୍ପର୍ଶକୁ ଅନୁଭବ କରୁଛି ଆଉ ଜୀବନର ଶେଷ କ୍ଷଣ ପର୍ଯ୍ୟନ୍ତ ଅନୁଭବରେ ସାଇତି ରଖିଥିବି ।

ହେ ପ୍ରଭୁ ! ତୁମର ଗୋଟିଏ କ୍ଷଣର ଅଭୁଲା ସ୍ପର୍ଶ ମୋର ସାରା ଜୀବନ ପାଇଁ ପାଥେୟ ହୋଇ ରହିଗଲା । ଉଷୁନା ଧାନକୁ ଗଜା କରିଦେଲା । ଏ ଅକିଞ୍ଚନ ତୁମର ମହିମା କୀର୍ତ୍ତନ କରିବାକୁ ଅକ୍ଷମ ପ୍ରଭୁ । ତୁମେ ତ ଜଗତର ନାଥ ଜଗନ୍ନାଥ । ନିରାଶା ଅନ୍ଧକାରରେ ଆଶାର ଝଲକ । ଯିଏ ଯେଉଁ ରୂପକୁ ଆଶ୍ରାକରି ଡାକିଲେ ବି ତୁମେ ସେଥିରେ ବିଦ୍ୟମାନ । ଅନେକରେ ଏକ ତୁମେ । ହେ ଅସୀମ, ତୁମର କରୁଣା ବର୍ଣ୍ଣନାତୀତ । ତୁମେ କେବଳ ଅନୁଭବରେ ଉପଲବ୍ଧ ।

ହେ ମଙ୍ଗଳମୟ ! ତୁମ କରୁଣାର ଅମୃତ ବାରି ସମସ୍ତ ଆତ୍ମାଙ୍କୁ ପ୍ରାପ୍ତ ହେଉ ।

'ତମସା ତିମିରେ ଆଶାର ଆଲୋକ ଦେଖାଇଅଛ ହେ ପ୍ରଭୁ
ଉଦ୍‌ଭ୍ରାନ୍ତ ଏହି କ୍ଷଣିକ ଜୀବନ ତୁମରି ଆଶିଷ ଲଭୁ ।'

ଚନ୍ଦନ ବଜାର
ଢେଙ୍କାନାଳ-୭୫୯୦୦୧
ଭ୍ରାମ୍ୟଭାଷ : ୯୪୩୮୨୩୫୫୧୯



# ମୋ ଟିକି ଜଗନ୍ନାଥ

## ମୋନାଲିସା ମିଶ୍ର

ଶ୍ରୀଜଗନ୍ନାଥଙ୍କ ଅନୁଭୂତିକୁ ନେଇ କିଛି ଲେଖା ଲେଖିବାକୁ ମତେ ଯେତେବେଳେ ବି କୁହାଯାଇଛି ମତେ ବହୁତ ଅଭିମାନ ଲାଗିଛି, ସେତେବେଳେ ମୁଁ ଭାବିଛି, ଜଗନ୍ନାଥ ମତେ ଏମିତି କି ଅଲୌକିକ ଅନୁଭୂତି ଦେଇଛନ୍ତି ଯେ ମୁଁ ଲେଖିବି ! ମୁଁ କ'ଣ ତା'ର ସେମିତି ବଡ଼ ଭକ୍ତ କି ! ସେ କ'ଣ ମତେ ଭଲପାଆନ୍ତି ? ଅନ୍ୟମାନଙ୍କ ଅନୁଭୂତି ପଢ଼େ ଆଉ ଭାବେ ମୁଁ ବୋଧେ ସବୁଠାରୁ ବଡ଼ ପାପୀ । କାଇଁ ମୋ ପ୍ରତି ତ ଜଗନ୍ନାଥଙ୍କର ଟିକେ ବି ଦୟା ନାହିଁ । କାହାକୁ କେତେ କ'ଣ ଦେଉଛନ୍ତି କେତେ ଚମତ୍କାରିତା ଦେଖଉଛନ୍ତି କିନ୍ତୁ ମୋ ପାଖରେ କିଛି ନାହିଁ । କିନ୍ତୁ ଏକଥା ମୋ ଛୋଟ ମସ୍ତିଷ୍କରେ ପଶି ନଥିଲା ଯେ ଜଗନ୍ନାଥ ଆଉ କେହି ନୁହଁନ୍ତି ସେ ହେଉଛନ୍ତି ଏକାନ୍ତ ଭାବରେ ନିଜସ୍ୱ, ପରମ ଆତ୍ମୀୟ, ନିଭୃତ ଅନ୍ତରର ଏକ ନିଃସର୍ତ୍ତ ପ୍ରେମ ତରଙ୍ଗ । ଯାହାକୁ ଦେଖିଲେ ମଣିଷ ନିଜ ଭିତରର ପ୍ରେମସତ୍ତାକୁ ଆବିଷ୍କାର କରିପାରେ ସେ ହେଉଛନ୍ତି ଜଗନ୍ନାଥ । ଆଉ ମଣିଷ ଯେତେବେଳେ ତାଙ୍କୁ ହିଁ ନିଜର ଭାବୁଛି ସେ ବି ସେମିତି ସେଇ ମଣିଷଟିକୁ ଆପଣେଇ ନେଇଛନ୍ତି । ତାଙ୍କୁ ପ୍ରେମ କଲେ ସେ ବି ପଛରେ ପଛରେ ଅନୁଧାବନ କରିବାକୁ ଇଚ୍ଛା କରନ୍ତି ।

ଏକ ଛୋଟିଆ ଅନୁଭୂତିରୁ ମୋର ଏମିତି ଏକ ଉପଲବ୍ଧି ହେଇଥିଲା । ସେଦିନ ଥିଲା ୨୦୧୪ ମସିହା ଜୁନ୍ ୨୯ ତାରିଖ । ମୁଁ ମୋର ସ୍ୱାମୀ ଗୋପାଲଙ୍କ ସାଙ୍ଗରେ ଯାଇଥିଲି ମେଘାଳୟର ରାଜଧାନୀ ସିଲଂ । ସେଠି ଦୁଇଦିନ କାଳ ମେଘ, ପାହାଡ଼ ଫୁଲର ସୌନ୍ଦର୍ଯ୍ୟ ଭିତରେ ମତେ ହଜିଗଲା ପରି ଲାଗୁଥାଏ । ମେଘ ଘୋଡ଼ଣୀ ଭିତରେ ଢାଙ୍କି ରହିଥାଏ ବେଶ୍ ବଡ଼ ବଡ଼ ଝରଣା । ଟିକେ ମେଘ ଅପସରି ଗଲେ ଦେଖାଯାଉଥିବ ରୁପା ପରି ଚକ୍ ଚକ୍ ଝରଣାର ଧାର, ପୁଣି ଟିକେ ସମୟ ଭିତରେ ତାହା ଅଦୃଶ୍ୟ ହେଇଯିବ ମେଘ ଚାଦରରେ । ଚାରିପଟେ ସବୁଜ ପାହାଡ଼ ଆଉ ପାହାଡ଼, ଆଉ ପାହାଡ଼ର ପାଦଦେଶରେ କଟୀ ମେଖଳା ପରି ଗୁଡ଼େଇ ହେଇଯାଇଥିବ ମେଘ । ମନେ ହେଉଥିବ ସତେକି ପାପୁଲି ଭିତରେ ମେଘକୁ ମୁଠେଇ ହେବ । ଏଣେ ଚେରାପୁଞ୍ଜିର ମେଘକଣା ଗୁଡ଼ିକ ଆସି କପାଳକୁ ଚୁମି ଦେଇ ଯାଉଥିବ । କହିବା ବାହୁଲ୍ୟ, ପ୍ରକୃତିର ଏ ମନୋରମ ସ୍ପର୍ଶ ମତେ ଈଶ୍ୱରଙ୍କ ସାନ୍ନିଧ ପାଇଲା ପରି ମନେହୁଏ । ଆଉ ମୋର ଅଜ୍ଞାତରେ ଏମିତି ଏକ ଅଭ୍ୟାସ ଅଛି ଯେ, ଯେତେବେଳେ ବି ମୁଁ ପ୍ରକୃତିର ଦୃଶ୍ୟ ଦେଖି ଆତ୍ମବିଭୋର ହେଇଯାଉଥାଏ, ମୋ ପାଟିରୁ ଆପେ ବାହାରି ଆସେ, 'ଜୟ ଜଗନ୍ନାଥ' ।

ପ୍ରକୃତି ହିଁ ମତେ ମୋ ଅଲକ୍ଷ୍ୟରେ ଈଶ୍ୱର ପରି ମନେ ହେଉଥାଏ । ମନେପଡୁଛି ଯେତେବେଳେ ଦାର୍ଜିଲିଂର ଟାଇଗର ହିଲ୍‌ରେ ସୂର୍ଯ୍ୟୋଦୟ ଦେଖିବା ପାଇଁ ଆମେ ରାତି ଚାରିଟାରୁ ଉଠି ପାହାଡ଼ ଉପରେ ଅପେକ୍ଷା କରିଥିଲୁ । ଆଉ ମେଘଢ଼ଙ୍କା ଆକାଶରେ କାଳେ ସୂର୍ଯ୍ୟୋଦୟ ଦେଖାଯିବ କି ନାହିଁ ବୋଲି ଆମେ ସନ୍ଦିହାନ ଥିଲୁ । ପାଖରେ ଥିବା ସ୍ଥାନୀୟ ଲୋକମାନେ ବାରମ୍ବାର କହୁଥିଲେ ଏଠି ଉଦିତ ସୂର୍ଯ୍ୟ ସବୁବେଳେ ଦେଖାଯାଏନି, ଭାଗ୍ୟରେ ଥିଲେ, ଆକାଶ ସଫା ଥିଲେ ଦେଖାଯିବ । ବହୁ ସମୟ ପ୍ରତୀକ୍ଷା ପରେ ଯେତେବେଳେ ପାହାଡ଼ ଚୂଡ଼ାରୁ ସୂର୍ଯ୍ୟ ତାଙ୍କର ସୁନ୍ଦର ବାଳକ ରୂପ ଦେଖେଇଦେଲେ ରୁଣ୍ଡ ହେଇଥିବା ଲୋକମାନେ ଏକସ୍ୱରରେ ଖୁସିରେ ଚିତ୍କାର କରିଉଠିଲେ ସେତେବେଳେ ମୋ ପାଟିରୁ ସ୍ୱତଃ ବାହାରି ଆସିଥିଲା 'ଜୟ ଜଗନ୍ନାଥ' । ଉଦୟକାଳୀନ ସେ ଲାଲ ସୂର୍ଯ୍ୟକୁ ଦେଖି କେଜାଣି କାହିଁକି ମୋର ଜଗନ୍ନାଥଙ୍କ ଆଖି ମନେ ପଡ଼ିଯାଇଥିଲା । ତେବେ ସିଲଂରେ ଦୁଇଦିନ ରହି ବୁଲାବୁଲି କରିବା ପରେ ଯେଉଁଦିନ ଫେରିବୁ ତା' ଆଗଦିନ ରାତିରେ ସେଠାରେ ଥିବା ମୋର ଜଣେ ପିଲାଦିନର ସାଙ୍ଗ ଘରକୁ ଯାଇଥିଲି । ତା' ସାଙ୍ଗେ କଥାବାର୍ତ୍ତା ଭିତରେ ସେ କହିଲା, କାଲି ରଥଯାତ୍ରା ତୋର ମନେ ଅଛି କି ନାହିଁ । ପ୍ରକୃତରେ ମୋର ମନେ ନଥିଲା । ରଥଯାତ୍ରା ଆଗକୁ ଅଛି ବୋଲି ଜାଣିଥିଲେ ବି କାଲି ଅଛି ବୋଲି ମୋ ମୁଣ୍ଡରେ ନଥିଲା । ଯାହାହେଉ ସାଙ୍ଗକୁ ଧନ୍ୟବାଦ ଦେଲି ସେ ମନେ ପକେଇଦେଲା । ତେବେ ସେ କହିଲା ମାତ୍ରେ ମୋ ମୁଣ୍ଡରେ ପଶିଲା, ରଥଯାତ୍ରା । ଆଉ ମୁଁ କାଲି ଏଠା ଛାଡ଼ି ଓଡ଼ିଶା ଯିବି, ଗାଡ଼ି, ଟ୍ରେନ୍ ଆଉ ପ୍ଲେନ୍‌ରେ ପୂରା ଦିନଟା ଯିବ ଜଗନ୍ନାଥଙ୍କୁ ରଥରେ କ'ଣ ଦେଖି ହେବ !

ସକାଳୁ ସକାଳୁ ଆମେ ଜଳଖିଆ ଖାଇ ବାହାରିବା ପାଇଁ ସ୍ଥିର କଲୁ । ହୋଟେଲ ଡାଇନିଙ୍ଗ ହଲ୍‌କୁ ଖାଇବାକୁ ଆସିଲାବେଳେ ମନେ ପଡ଼ିଗଲା ରଥଯାତ୍ରା ବୋଲି । ତେଣୁ ପ୍ଲେଟ୍‌ରୁ ଅଣ୍ଡା ଆମ୍ଲେଟ୍‌ଟି କାଢ଼ିଦେଲି । ଗୋପାଳ ପଚାରିଲେ କାହିଁକି କାଢ଼ିଲ ? ମୁଁ କହିଲି, ଆଜି ରଥଯାତ୍ରା ପରା । ଆଇଁଷ ଖାଇବିନି । ସେ କହିଲେ, ବାହାର ଜାଗାରେ ଏସବୁ ମାନିଲେ ଚଳିବନି । ମୁଁ ତାଙ୍କ କଥା ଶୁଣିଲି ନାହିଁ । ଖାଲି ଏତିକି କହିଲି, ଆଜି କେତେବଡ଼ ଦିନ । କିନ୍ତୁ ରଥରେ ଠାକୁରଙ୍କୁ ଦେଖିହେବନି । ସେ ଅଲଗା ବିଶ୍ୱାସର ଲୋକ । ଏମିତି ଦର୍ଶନ ପାଇଁ ବ୍ୟାକୁଳ ହେବା ବା ନୀତିନିୟମ ବୋଲି ଭାବିବା ଲୋକ ସେ ନୁହଁନ୍ତି । ସେ କହନ୍ତି, ସବୁବେଳେ ପୁରୀ ଯାଇ ଜଗନ୍ନାଥଙ୍କୁ ଦେଖିବା କଥା କାହିଁକି ଭାବୁଛ ତୁମ ସହରର ନିର୍ମଳ, ନିରୋଳା ପରିବେଶରେ ଥିବା ଜଗନ୍ନାଥ କ'ଣ ଜଗନ୍ନାଥ

ନୁହନ୍ତି ! ସତ କଥା ମୁଁ ବି ସେମିତି ବିଶ୍ୱାସ କରେ । ସେ କହିଲେ, ସେଭଳି ଅସମ୍ଭବ ଜିନିଷ ଆଶା କରନାହିଁ । ଆମେ ଏଠୁ ଶୀଘ୍ର ବାହାରି ଗଲେ ଯଦି ସମ୍ଭବ ଗୌହାଟୀରେ କାମାକ୍ଷା ମନ୍ଦିର ଟିକେ ଦେଖିପାରିବା । ଭାବୁଥିଲି ରୁମ୍‌କୁ ଯାଇ ଟିଭି ଲଗେଇ କିଛି ରଥଯାତ୍ରାର ପ୍ରାରମ୍ଭିକ ଦୃଶ୍ୟ ଦେଖିଦେଇ ଯାତ୍ରା ଆରମ୍ଭ କରିଦେବି, ତାହା ସମ୍ଭବ ହେଲା ନାହିଁ । ତରବର ହୋଇ ଗାଡ଼ିରେ ବସିଲୁ ।

ସିଲଂରୁ ଗୌହାଟୀ । ମେଘାଳୟ ରାଜ୍ୟ ଭିତରେ ଥିଲା ପର୍ଯ୍ୟନ୍ତ ଲାଗୁଥିଲା କୋଉ ଗୋଟେ ବାହାର ଜାଗାକୁ ଆସିଛି, କିନ୍ତୁ ଆସାମ ବର୍ଡ଼ର ଭିତରେ ପଶିଲା ପରେ ଟିକେ ଓଡ଼ିଶା ଭଳିଆ ଲାଗିଲା, ସେଇଠୁ ପୁଣି ମନକୁ ରଥଯାତ୍ରା କଥା ଆସିଲା । ସତ କଥା ତ ! ଆସାମରେ ତ ନିଶ୍ଚୟ ରଥଯାତ୍ରା ହଉଥିବ ! ତେବେ ଗୋପାଳଙ୍କ ଡରରେ କିଛି ପଚାରିବାକୁ ସାହସ ହେଲାନାହିଁ । ତାଙ୍କୁ ଗହଳି ଆଦୌ ଭଲ ଲାଗେନାହିଁ, ତା'ଛଡ଼ା ତିନିଟାରେ ଫ୍ଲାଇଟ୍ ମାନେ, ଗୋଟାଏ ସୁଦ୍ଧା ଏୟାରପୋର୍ଟରେ ପହଞ୍ଚିବାକୁ ପଡ଼ିବ । ବର୍ତ୍ତମାନ ବ ବାଜିଲାଣି ନଅଟା । ଗୌହାଟୀରେ ପହଞ୍ଚୁ ପହଞ୍ଚୁ ଏଗାର ପାଖାପାଖି ହେବ, ତା'ପରେ ପୁଣି କାମାକ୍ଷା ମନ୍ଦିର ଦେଖିବାର ଅଛି । ତେଣୁ ମୁଁ ଆଉ କିଛି ନକହି, ଆମ ଆସାମୀ ଡ୍ରାଇଭରକୁ ପଚାରିଲି, ଆସାମରେ ତ ରଥଯାତ୍ରା ହେଉଥିବ । ସେ ବହୁତ ଆଗ୍ରହରେ କହିଲା, ହଁ, ଆମର ବହୁତ ଭଲ ରଥଯାତ୍ରା ହୁଏ । ମୁଁ ଆଉ ସାହସ କରି କହିପାରିଲିନି, ଟିକେ ସେଇ ରାସ୍ତାରେ ନେଇଯିବ, କାଳେ ରଥ ଦର୍ଶନ ମିଳିଯିବ । ମନଜାଣିଲା ପରି ସେ ନିଜ ଆଡୁ କହିଲା, ହେଲେ ଏଠି ରଥଯାତ୍ରା ବହୁତ ଶୀଘ୍ର ସାରି ଦିଆଯାଏ । ନଅଟା ସୁଦ୍ଧା ସବୁ ସରିଯାଏ, ନହେଲେ ଟ୍ରାଫିକ୍ ଜାମ୍ ହୋଇଯିବ ।

ମୋ ମନ ମରିଗଲା, ଆଉ କିଛି କହିଲି ନାହିଁ । ମନକଥା ମନରେ ରଖିଲି । ଗୌହାଟୀରେ ପହଞ୍ଚି କାମାକ୍ଷା ମନ୍ଦିର ଉପରକୁ ଗଲୁ, ସେଠି ଦେବୀଙ୍କ ଦର୍ଶନ ପାଇଁ ଲମ୍ବା ଲାଇନ୍ ଦେଖି ବାହାର ପ୍ରତିମାକୁ ଦେଖି ପଳେଇ ଆସିଲୁ । କାରଣ ଆମ ହାତରେ ସମୟ ନଥିଲା । ତେବେ ମନ୍ଦିର ବାହାରକୁ ଆସି ଏ ଭିତରେ ଖୁବ୍ ସୁନ୍ଦର ଦୋସ୍ତି କରିଦେଇଥିବା ଡ୍ରାଇଭରକୁ କହିଲି ଟିକେ ବ୍ରହ୍ମପୁତ୍ର ନଦୀ ଦେଖେଇ ଦିଅନ୍ତନି ! ଉଦ୍ଦେଶ୍ୟ କିନ୍ତୁ ଥିଲା ଅଲଗା, କାଳେ ବ୍ରହ୍ମପୁତ୍ର ଦେଖିବା ରାସ୍ତାରେ କୋଉଠି କେମିତି ରଥାରୂଢ଼ ଠାକୁରଙ୍କ ଦର୍ଶନ ମିଳିଯାଇପାରେ ! ତେବେ ବ୍ରହ୍ମପୁତ୍ର ନଦୀର କଡ଼େ କଡ଼େ ଆଣି ଆଣି ଡ୍ରାଇଭର ଗୌହାଟୀ ଏୟାରପୋର୍ଟରେ ପହଞ୍ଚେଇଦେଲା ସିନା ରଥର ଚିହ୍ନବର୍ଣ୍ଣ ଦେଖିବାକୁ ମିଳିଲା ନାହିଁ ।

କୋଲକତା ଏୟାରପୋର୍ଟରେ ଓହ୍ଲେଇଲା ବେଳକୁ ସମୟ ସାଢ଼େ ଚାରି କି ପାଞ୍ଚ । ଜିନିଷପତ୍ର ଧରି ଟିକେ କଫି ପିଇ ଆସିଲାବେଳକୁ ପାଖାପାଖି ଛଅଟା । ରାଉରକେଲାକୁ ଆମ ଟ୍ରେନ୍ ଅଛି ରାତି ଦଶଟାରେ । କିନ୍ତୁ ଗୋପାଳଙ୍କ କଡ଼ା ନିର୍ଦ୍ଦେଶ, ଆମେ ଆଠଟା ଆଗରୁ ଏଠୁ ବାହାରିଯିବା, କୋଲକତା ଟ୍ରାଫିକ୍‌କୁ ବିଶ୍ୱାସ ନାହିଁ, ତେଣୁ ଯଥେଷ୍ଟ ସମୟ ଆଗରୁ ଷ୍ଟେସନରେ ପହଞ୍ଚିବା ଦରକାର । ମୁଁ ଆଉ କ'ଣ କହିଥା'ନ୍ତି ! ଭାବିଲି ସେ ବି ସତ କହୁଛନ୍ତି ଆଉ ଏୟାରପୋର୍ଟରୁ ବାହାରିବା କାହିଁକି, ଅପେକ୍ଷା କରିବାର ଅଛି ତ ଯାଠୁ ବଳି ଭଲଜାଗା ଆଉ କୋଉଟା ହେଇପାରେ । ତେଣୁ ମନରେ ଯୋଉ ଆସୁଥିଲା, କୋଲକତାରେ ରଥଯାତ୍ରାର କିଛି ଦୃଶ୍ୟ ଦେଖିବାର ସୁଯୋଗ ମିଳିପାରେ ତାହା ମଉଳି ଗଲା । ତା'ଛଡ଼ା ଏତେ ସଂଧ୍ୟା ଯାଏଁ ବା ଆଉ କୋଉ ଠାକୁର ବାହାରେ ଥିବେ ? ବହିଟିଏ ଧରି ମୁଁ ପଢ଼ାରେ ମଜିଗଲି । ଏତିକି ମୋର ସମ୍ବଳ, ଯେଉଁଠି ଥାଏ ବହି କେତୋଟି ସାଥୀରେ ଥାଏ, ତେଣୁ ମୁଁ ଅପେକ୍ଷା କରିବାରେ ବିରକ୍ତି ଅନୁଭବ କରେ ନାହିଁ । ସମୟ ହୋଇଗଲା ଏବେ ଏୟାରପୋର୍ଟ ଛାଡ଼ିବାକୁ ହେବ । ଆମେ ପ୍ରିପେଡ୍ ଟାକ୍ସି ବୁକ୍ କରିଥିଲୁ । ଟାକ୍ସିରେ ବସିଲା ବେଳକୁ ଜଣେ କହିଲା ରଥଯାତ୍ରା ପାଇଁ ରାସ୍ତା ବହୁତ ଭିଡ଼ ଅଛି । ମୁଁ ପଚାରିଲି, ରଥଯାତ୍ରା ସରିନାହିଁ ? ଜଣେ କିଏ କହିଲା, ନା ରଥଟଣା ଚାଲିଛି । ମତେ ଟିକେ ଆଶାର ଝଲକ ଦେଖାଗଲା, ହଉ କମ୍ ସେ କମ୍ ରଥଟିକେ ଦେଖିବାକୁ ତ ମିଳିବ ! କାଇଁ କେଜାଣି ଏଥର ରଥଯାତ୍ରା ଦେଖିବାକୁ ମୋ ଭାରି ଇଚ୍ଛା ହଉଥିଲା ଯେ ! ନହେଲେ ଆଗରୁ ଏମିତି ଅନେକ ଥର ହେଇଥିବ ମୁଁ ଘରେ ଥାଇ ମଧ ରଥଯାତ୍ରା ଦେଖିବାକୁ ଯାଇନଥିବି କିନ୍ତୁ ଏଥର କଥା ଅଲଗା, ମୁଁ ବାହାରେ ଅଛି ବୋଲି ହିଁ ମନ ବେଶୀ ଛଟପଟ ହେଉଛି ।

ଆମେ ଟ୍ୟାକ୍ସିରେ ବସିଲା ମାତ୍ରେ ଡ୍ରାଇଭର ପିଲାଟି କହିଲା, ବିଦ୍ୟାସାଗର ସେତୁ ବାଟେ ଯାଇପାରିବି ନାହିଁ, ରଥଯାତ୍ରା ଚାଲିଛି । ସେପଟେ ବହୁତ ଗହଳି ଆପଣ ଦଶଟାରେ ମଧ ଷ୍ଟେସନରେ ପହଞ୍ଚି ନ ପାରନ୍ତି । କିନ୍ତୁ ଆମେ ଟିକେଟ କାଟିଥିଲୁ ବିଦ୍ୟାସାଗର ସେତୁ ରାସ୍ତା ବାଟେ ଯିବାପାଇଁ । ତେଣୁ ଆମେ ଟିକେ ଯୁକ୍ତି କଲୁ, କିନ୍ତୁ ଡ୍ରାଇଭରଟି ସଫା ମନା କରିଦେଲା ସେପଟେ ଯାଇ ହେବ ନାହିଁ । ଆମେ ବୁଝିଲୁ ସେ ଠିକ୍ କହୁଛି । ସେ କହିଲା ଆପଣଙ୍କୁ ମୁଁ ବାଲି ଷ୍ଟେସନରେ ପହଞ୍ଚେଇଦେବି ସେଇଠ ଆପଣ ଲୋକାଲ ଟ୍ରେନ୍‌ରେ ହାଓଡ଼ା ଯିବେ । ମୁଁ ଭାବିଲି ହାଏରେ ଜଗନ୍ନାଥ ! ମତେ ଦେଖା ଦେବୁନାହିଁ ବୋଲି ଏତେ ପ୍ଲାନିଙ୍ଗ୍ । ଯାହାଟିକେ ଭାବୁଥିଲି କାଳେ ରାସ୍ତାରେ ଦେଖିପାରିବି ବୋଲି ତା ବି ବନ୍ଦ କରିଦେଲୁ । ଅଗତ୍ୟା ଆମେ ଡ୍ରାଇଭର କଥାରେ

ରାଜି ହେଲୁ । ଯାହା ପଛେ କରୁଛୁ କର ଆମକୁ ପହଞ୍ଚେଇଦେ । ବାଲି ଷ୍ଟେସନ କ'ଣ ଆମେ ଜାଣିନଥିଲୁ, ତେଣୁ ଜଣେ ବନ୍ଧୁଙ୍କୁ ପଚାରି ସ୍ଥିର ହେଲୁ ଯେ ଡ୍ରାଇଭର ଠିକ୍ କହୁଛି । ବାଟସାରା ଟ୍ୟାକ୍ସି ଭିତରେ ଥାଇ ମୁଁ ଖାଲି ବାହାରକୁ ଚାହିଁ ହଉଥାଏ କୋଉଠି ଟିକେ ଦର୍ଶନ ମିଳିଯିବ କି ! ତା'ପରେ ମନକୁ ବୁଝେଇଲି କାହିଁକି ଏମିତି ହଉଛୁ, ଆଉ ରଥ ଦେଖିବାର ଆଦୌ ସୁଯୋଗ ନାହିଁ । ପୁଣି ମନଟା କହିଲା, ଯଦି ଆଜି ଦର୍ଶନ ମିଳିଯାଏ ତେବେ ଜାଣିବି, ମତେ ଜଗନ୍ନାଥ ଭଲ ପାଉଛନ୍ତି । ନହେଲେ ! ପୁଣି ନିଜେ ନିଜେ ମନକୁ ବୁଝେଇ କହିଲି, କାହିଁକି ଏମିତି ଅବାନ୍ତର କଥା ଭାବୁଛୁ । ଯାହା କେବେ ସମ୍ଭବ ନୁହେଁ ତାକୁ ନେଇ ଆଶା ବାନ୍ଧିବା କ'ଣ ଠିକ୍ ! ଠାକୁର କୋଉଠି ନାହାନ୍ତି ! ରାଉରକେଲାରେ ପହଞ୍ଚି ବାହୁଡ଼ା ଦର୍ଶନ କରିଦେଲେ କ'ଣ ହବନି ! ତା' ଛଡ଼ା ଈଶ୍ୱରଙ୍କ ସାଙ୍ଗରେ କ'ଣ ଏମିତି ହିସାବ କିତାବ କରାଯାଏ !

ଆମେ ସବୁ ଈଶ୍ୱରଙ୍କୁ ଖାଲି ଆମର ଆଶା ପୂରଣ କରିବାର ମେସିନ୍ ପରି ଭାବୁ, ଚାକିରି ଦିଅ, ବାହାଘର କରିଦିଅ, ଘର କରିଦିଅ, ଦିହ ଭଲ କରିଦିଅ, ଏମିତି କେତେ କ'ଣ ... ଲମ୍ବା ତାଲିକା । କିନ୍ତୁ କେବେ ଆମେ ଈଶ୍ୱରଙ୍କୁ ଆତ୍ମ ସଂଶୋଧନ, ଆତ୍ମସମୀକ୍ଷଣର ମାଧ୍ୟମ ବୋଲି ଭାବୁ କି ? ଏମିତି କଥା ଭାବୁ ଭାବୁ ବାଲି ଷ୍ଟେସନ ଆସିଗଲା । ମୁଁ ତଥାପି ପଛକୁ ପଛକୁ ଚାହିଁବା ଦେଖି ଗୋପାଲ ବୁଝିଗଲେ ଆଉ ମୁଣ୍ଡ ହଲେଇ ଥଟ୍ଟା କଲାପରି ହସିଲେ, ବୋଧେ ସେ କହିବାକୁ ଚାହୁଁଥିଲେ ଏବେବି ଆଶା ଅଛି ଯେ ରଥାରୂଢ଼ ଜଗନ୍ନାଥଙ୍କୁ ଦେଖି ହେବ ! ଆମେ ତରବର ହୋଇ ଟ୍ରେନ୍‌ରେ ଚଢ଼ିଗଲୁ । କିଛି ଜଣା ନଥିଲା, ଜୀବନରେ ପ୍ରଥମ ଥର କୋଲକତାର ଲୋକାଲ ଟ୍ରେନ୍ । ବେଶୀ ଗହଳି ନହେଲେ ବି ଲୋକ ବେଶ୍ ଥିଲେ । କିନ୍ତୁ ଭାରି ଅପରିଷ୍କାର ଥିଲା । ସେଥିରେ ଆମର ଏୟାରଲାଇନ୍ସ ଟ୍ୟାଗ୍ ଲାଗିଥିବା ଆଟାଚି, ବ୍ୟାଗ୍ ପତ୍ରସବୁ ପାଖ ଲୋକମାନଙ୍କର ଦୃଷ୍ଟି ଆକର୍ଷଣ କରୁଥାଏ । ଗୋପାଲ ଟିକେ ପାଖରେ ବସିଥା'ନ୍ତି । ମୁଁ ଡରିଲା ପରି ହେଇ ଅଧା ବସିଥାଏ ଅଧା ଠିଆ । ମନରେ ଥାଏ ହଉ, ଦଶ କି ଆଠ ମିନିଟ୍‌ରେ ତ ହାଓଡ଼ା ପହଞ୍ଚିଯିବ କହୁଛନ୍ତି, ତେଣୁ ଟିକେ ସମୟ ଆଡ଼୍‌ଜଷ୍ଟ କରିଦବା । ସେତେବେଳକୁ ମନରେ ଆଉ ଜଗନ୍ନାଥ କଥା ନଥାଏ, ଖାଲି ଭାବିହେଉଥାଏ କେମିତି ହାଓଡ଼ା ପହଞ୍ଚିବୁ । ଜଣା ନାହିଁ ହାଓଡ଼ା ଆଗରୁ ସେଇଟା କି ଷ୍ଟେସନ ଯେ ! ଗାଡ଼ି ସେଇଠି ଟିକେ ଅଟକିଲା । କେତେ ଲୋକ ପୁଣି ଚଢ଼ିଗଲେ, ସବୁ ବୋଧେ ପରିବା ବିକାଳୀ ବା ସେଇଭଳି ଶ୍ରମିକ ଶ୍ରେଣୀର ଲୋକ । ମୁଁ ପୁଣି ଡରିଯାଇ ଆମ ଜିନିଷ ପତ୍ରରେ ଆଖି ଦେଇ ଜାକିଜୁକି ହେଇ ବସିଗଲା ବେଳକୁ ଦେଖିଲି, ସାମ୍ନାରେ କୁନି

ରଥଟିଏ ଧରି ଠିଆ ହେଇଛନ୍ତି ଦୁଇଜଣ ପିଲା । ପିଲାଙ୍କ ଖେଳ ପରି ଛୋଟିଆ ରଥଟିଏ, ଫୁଲ, ପତାକାରେ ସୁନ୍ଦର ଭାବରେ ସଜାହେଇଛି, ଆଉ ତା' ଭିତର ଆସନରେ ବସିଛନ୍ତି ତ୍ରିମୂର୍ତ୍ତି, ସେ ବି ଛୋଟିଆଟିଏ । କିନ୍ତୁ ସେଇ ତ୍ରିମୂର୍ତ୍ତି, ସତେ ଯେମିତି ପୂରା ମତେ ଚାହିଁଥିଲେ । ପିଲା ଦୁଇଜଣ ଡବା ଭିତରେ ପଶିଗଲା ମାତ୍ରେ, ମୋ ସାମ୍ନାରେ ଠିଆ, ମୁଁ ଫଟାଫଟ୍ ବ୍ୟାଗରୁ ଯେତେ ହାତକୁ ଆସିଲା ପଇସା କାଢ଼ି ସେମାନଙ୍କ ଥାଳିରେ ପକେଇଦେଲି । ଆଶ୍ଚର୍ଯ୍ୟର କଥା ଟ୍ରେନ୍ ସାଙ୍ଗେ ସାଙ୍ଗେ ଛାଡ଼ିଦେଲା, ପିଲା ଦୁଇଜଣ ରଥଧରି ଫଟାଫଟ୍ ଓହ୍ଲେଇଗଲେ । ମୁଁ ଅବାକ୍ ହେଇ ଚାହିଁଛି ! ଗୋପାଳ ମତେ ଚାହିଁ ମୁରୁକି ହସୁଛନ୍ତି । ମୁଁ କାଠ ହେଲା ପରି ଚାହିଁଥାଏ । ସତେ ଏ କ'ଣ ହେଲା ! ରଥ ଦର୍ଶନ ପାଇଁ ବାଉଳା ହେଉଥିଲି ବୋଲି ପ୍ରଭୁ ନିଜେ ଆସି ସାମ୍ନାରେ ଠିଆ ହୋଇଗଲେ ! ସେ ପୁଣି ଏଭଳି ଜାଗାରେ, ଏଭଳି ଅବସ୍ଥାରେ ।

ହାଓଡ଼ା ଯାଇ ଆମର ନିର୍ଦ୍ଧାରିତ ଟ୍ରେନ୍‌ରେ ବସିଲା ପର୍ଯ୍ୟନ୍ତ ମୁଁ ବିଶ୍ୱାସ କରିପାରୁନଥାଏ ଏ ସବୁ କ'ଣ ଘଟିଗଲା । ହୋଇପାରେ କାହା ପାଇଁ ଏହା କେବଳ ଏକ ସଂଯୋଗ ହୋଇପାରେ, କିନ୍ତୁ ମୋ ପାଇଁ ତ ଏହା ଏକ ଆତ୍ମାନୁଭବ ଘଟଣା । ମୋ ବ୍ୟାକୁଳତାର ପରିମାଣ କେବଳ ମୁଁ ଜାଣେ, ଆଉ ସେ ବୁଝିପାରେ ବୋଲି, କୋଉ ନା କୋଉ ବାଟରେ, ବାଟ ମୋଡ଼ି ହେଇ ଆସିଲେ ମଧ୍ୟ ସେ ମତେ ତା'ର ଛୋଟ ମୁହଁ ହଉ ପଛେ ଦର୍ଶନ ତ ଦେଲା ! ଜଗନ୍ନାଥ ତ ଜଗନ୍ନାଥ ଛୋଟ କ'ଣ ବଡ଼ ମୂର୍ତ୍ତି କ'ଣ ! ମୁଁ ଏକ ଅଦ୍ଭୁତ ଅବସ୍ଥାରେ ଥିଲାବେଳେ ଏ ସବୁର ଏକମାତ୍ର ସାକ୍ଷୀ ଗୋପାଳଙ୍କ ଆଡ଼େ ଚାହିଁଲି, ସେ ମତେ ସଲାମ୍ କଲାପରି କରି କହିଲେ, ମାନିଗଲି ତମ ବ୍ୟାକୁଳତା ଆଉ ଜଗନ୍ନାଥର ପ୍ରେମକୁ ।

ସେଦିନ ଗୋପାଳଙ୍କ ଭଳି ଯୁକ୍ତିବାଦୀ ଲୋକ ଏ ତତ୍ତ୍ୱକୁ ବୁଝିଯାଇ କହିଲେ, ଜଗନ୍ନାଥ ହେଉଛନ୍ତି ସେ, ଯାହାଙ୍କ ଠାରୁ ସମସ୍ତଙ୍କ ଆଡ଼କୁ ପ୍ରେମର ରଶ୍ମି ଛୁଟୁଥାଏ । ଯିଏ ତାକୁ ଦେଖେ ସେ ଭାବେ ଇଏ ମୋର, ଖାଲି ମୋର, ଏକାନ୍ତରେ ମୋର । ଏଠି ଆଉ ମାଗୁଣି ନଥାଏ କି କାମନା, ପ୍ରଶ୍ନ ବି ନଥାଏ । ଏ ତ ଆତ୍ମାର ଉତ୍ସ ।

ବି - ୯, ଏନ୍.ଆଇ.ଟି କ୍ୟାମ୍ପସ୍
ରାଉରକେଲା
ଭ୍ରାମ୍ୟଭାଷ : ୯୯୩୭୩୮୪୭୫୯



# ମୃତ୍ୟୁରୁ ଅମୃତ

## ଗିରିଜା ମଞ୍ଜରୀ ପାଢ଼ୀ

ଈଶ୍ୱର ଏକ ଅମୃତ ଅନୁଭବ । ଏକ ଚିରନ୍ତନ ବିଶ୍ୱାସ । ସେ କ୍ଷର (ଜଡ଼) ପୁଣି ଅକ୍ଷର (ଚେତନ) । ପ୍ରାଣୀର ପ୍ରତ୍ୟେକ ନିଃଶ୍ୱାସରେ ତାଙ୍କରି ଅସ୍ତିତ୍ୱ । ସେ ସର୍ବରୂପର ସମନ୍ୱୟ ପୁରୁଷୋତ୍ତମ ବ୍ରହ୍ମ । ସେ ସର୍ବବ୍ୟାପକ, ସର୍ବଜ୍ଞ ଓ ସର୍ବଶକ୍ତିମାନ । ଏକ ରୂପରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର । ସତ୍ୟ, ଶିବ, ସୁନ୍ଦର । ପୁଣି ସେ ପୂର୍ଣ୍ଣ, ଅନନ୍ତ, ପୁରୁଷୋତ୍ତମ । ଏକ ବ୍ରହ୍ମଙ୍କ ବିଭିନ୍ନ ପରିପ୍ରକାଶ । 'ଏକୋହଂ ବହୁଷ୍ୟାମ୍' । ସବୁ ନାମର ସମନ୍ୱୟ ସର୍ବନାମ ସେ । ଜଗତର ନାଥ, ଅନାଥର ନାଥ ସେ । ଜଗନ୍ନାଥ, ତାଙ୍କର ଅପୂର୍ବ ମଧୁର ନାମ । ସବୁ ଘଟଣା ପଛରେ ଥାଏ ତାଙ୍କର ଅଦୃଶ୍ୟ ହାତ । ସେ ଭାବକୁ ନିକଟ ପୁଣି ଅଭାବକୁ ଦୂର । ତାଙ୍କର ମାୟା କାହାକୁ ବା ଜଣା ! ତାଙ୍କରି ଆଶିଷରୁ ପଥର ପରି ବିଘ୍ନ ମାନ ଫୁଲ ହୋଇ ଫୁଟିଯା'ନ୍ତି । ଶୁଦ୍ଧ ଚିତ୍ତରେ ପ୍ରାର୍ଥନା କଲେ, ସେ ନିଶ୍ଚୟ ଡାକ ଶୁଣନ୍ତି ।

କାହାର ଅନୁଭବରେ ସେ କେତେବେଳେ ବିରାଜମାନ ହୁଅନ୍ତି, ମୁଁ ଜାଣେନା । ହେଲେ ମୋର ଏଇ କ୍ଷୁଦ୍ର ଟଳମଳ ଜୀବନ ନୌକାର ନାଉରିଆ ହୋଇ ସେ ଅନେକ ଥର ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷା କରିଛନ୍ତି । ବେସାହାରା, ଦୁଃଖ ଦୁର୍ଦ୍ଦଶା ଭରା, ତ୍ରିତାପରେ ଦଗ୍ଧୀଭୂତ ହେବା ବେଳେ ଶିଶିର ତୁଲ୍ୟ ଶୀତଳତା ପ୍ରଦାନ କରି ବାରମ୍ବାର ସେ ପ୍ରାଣକୁ କରିଛନ୍ତି ଶୀତଳ । ଏଇ କ୍ଷୁଦ୍ର ଜୀବନରେ, କେତେବେଳେ ସ୍ନେହମୟୀ ଜଗତ୍‌ଜନନୀ ମାଆ ରୂପରେ, କେବେ ସାନ୍ତ୍ୱନା ଦାତା ପିତା ଭାବରେ, ତ୍ରୁଟି ମାର୍ଜନା ପାଇଁ ଗୁରୁ ରୂପରେ, ଆଶ୍ରୟ ଦାନରେ ଭର୍ତ୍ତା ରୂପରେ, ପୁଣି ବାତ୍ସଲ୍ୟ ମମତା ଭରା ସନ୍ତାନ ଭାବରେ, ଆଉ ସବୁ ଦୋଷ କ୍ଷମା ଦେଇ କୋଳକୁ ଆଉଜାଇ ଆଣିବା ବେଳେ ସଖାପରି ସେ ମୋ ମାନସପଟରେ ଆବିର୍ଭାବ ହୋଇଛନ୍ତି । ମୋତେ ବାରମ୍ବାର ଜୀବନ୍ୟାସ ଦେଇ ବଞ୍ଚିବାର ପଥ ଦେଖାଇଛନ୍ତି । ତାଙ୍କୁ କେବେ ଭୁଲିଗଲେ ମୋତେ ନିଃସଙ୍ଗ ଲାଗେ । ସୁଖ ବେଳେ ମଧ ଅଜଣା ଭୟର ଆତଙ୍କ ଜାଗେ । ନିଶ୍ଚିତ ମୃତ୍ୟୁ ମୁଖରୁ ଥରକୁ ଥର ସେ ଟାଣି ଆଣିଥିବା ବେଳେ, ନିଃଶବ୍ଦରେ ଯେମିତି କାନ ପାଖରେ ଶୁଣାଇ ଦେଇଛନ୍ତି - ଉହୁଁ, ଏବେ କ'ଣ ? ଖେଳ ଯେ ତୋର ସରିନାହିଁ । ଖେଳି ଖେଳି କ୍ଳାନ୍ତ ଅବଶ ହୋଇପଡ଼ିଲେ, ମୁଁ ଆପେ ଆପେ ହାତ ପ୍ରସାରି ଦେବି ତୋତେ କୋଳେଇ ନେବା ପାଇଁ । ମୋ ଜୀବନର କେତୋଟି ବିଷମ ସଂକଟର ଅଭୁଲା ସ୍ମୃତିକୁ ମୁଁ ରୂପ ନ ଦେଇ ରହି ପାରୁନି ।

ବହୁତ ବର୍ଷ ତଳର ଘଟଣା । ସେତେବେଳେ ମୁଁ ଇଲେଭେନ୍‌ଥ କ୍ଲାସରେ ପଢୁଥାଏ । ଦୁଇଦିନ ପରେ ପ୍ରି-ଟେଷ୍ଟ ପରୀକ୍ଷା । ସକାଳୁ ପଢୁ ପଢୁ ଟିକେ ଡେରି ହୋଇଗଲା । ପାଠପଢ଼ା ଭିତରେ ମୁଣ୍ଡ କୁଣ୍ଡାଇ ଡବଲ ବେଣୀପକା କାମଟି ବି ସରିଯାଇଥାଏ । ଘରକୁ ମାଆ ଏକା ମଣିଷ । ବାସି କାମକୁ ସଜ କାମ । ଏତେ ପାରେନି । ପଖାଳ ସାଙ୍ଗରେ ଶାଗ ଖରଡ଼ା ଅବା ସନ୍ତୁଳା ଟିକେ ଖାଇଦେଇ ଦଶଟା ପୂର୍ବରୁ ଆମେ ସ୍କୁଲ ବାହାରୁ । ସ୍କୁଲଟି ଘରଠାରୁ ଖୁବ୍ ବେଶୀ ଦୂର ନୁହେଁ । ଆମ ବାଡ଼ି ଅଗଣାରେ କୂଅ । ମାଆ, ଦେଠେଈମାନେ ତେଣ୍ଡାରେ ପାଣି କାଢ଼ି ଆମକୁ ଗାଧୋଇବା ପାଇଁ ଦିଅନ୍ତି । ଆଷାଢ଼ ମାସ । ଭରା କୂଅ । କୂଅ ମଝିରେ ମୋଟା ଓସାରିଆ ଶାଳୁଆ ଗଡ଼ି କାଠଟି ପଡ଼ିଥାଏ । ଯାହା ଉପରେ ଠିଆ ହୋଇ ତେଣ୍ଡାରେ ପାଣି କଢ଼ାଯାଏ । ଦେଠେଈ ମୋତେ ଭରା କୂଅରୁ ପାଣି କାଢ଼ିବାକୁ ଦେଉନଥାଏ । ହଠାତ୍ ସେ ତେଣ୍ଡା ଛାଡ଼ି ଘଷି ମାଜି ହେଉଥାଏ । ଏତିକିବେଳେ ତରବର ହୋଇ କାଠଗଡ଼ି ଉପରେ ଠିଆ ହୋଇ ମୁଁ ପାଣି କାଢୁଥିଲି ଗାଧୋଇବା ପାଇଁ । ହଠାତ୍ ଶିଉଳି ଲଗା କାଠରୁ ମୋ ଗୋଡ଼ ଖସିଗଲା । କୂଅର ଅତଳ ଗର୍ଭରୁ ମୁଁ ଯେପରି ମୃତ୍ୟୁକୁ ଦେଖିପାରୁଛି । ପାଟିରୁ ଗୋଟିଏ ଶବ୍ଦ ବାହାରି ଆସିଲା, ପ୍ରଭୁ ! ରକ୍ଷା କର । ଏହି କରୁଣ ଡାକ ହୁଏତ ଆର୍ତ୍ତ ଗଜ ବା ମୃଗୁଣୀର ଡାକ ପରି ପ୍ରଭୁଙ୍କ କାନରେ ବାଜିଲା । ଏ କ'ଣ, ସ୍ୱପ୍ନ ପରି ଲାଗୁଛି । ମୁଁ ଧୀରେ ଧୀରେ ପାଣି ଭିତରୁ ଉପରକୁ ଉଠୁଛି । ବୁଡ଼ି ଯାଉଥିବା ଲୋକର କୁଟାଖିଅ ଆଶ୍ରାପରି ତେଣ୍ଡା ବାଉଁଶଟିରେ ମୋର ଦୁଇ ହାତର ଶକ୍ତ ମୁଠା । ଦେଠେଈ ତେଣ୍ଡାଟି ପାଣି ଉପରକୁ ଉଠାଇଲା । ବାଉଁଶଟିକୁ ଜୋର୍‌ରେ ଜାବୁଡ଼ି ଧରିବା ପାଇଁ ସାହସ ଦେଲା । ତା'ପରେ ଜୋର୍‌ରେ ରଡ଼ି ଛାଡ଼ି ସମସ୍ତଙ୍କୁ ଡାକ ପକାଇଲା । ମୋ ମାଆ ହାଉ ହାଉ କାନ୍ଦି ଉଠି ବଡ଼ ବାପା, ବଡ଼ ନନାଙ୍କୁ ଜଣାଇଲା । ଏତିକିବେଳେ ବଡ଼ ନନା ଚିତ୍ତରଂଜନ ଦାଶ, ପହଁରା ଜାଣିଥିବାରୁ ଜୀବନ ମୂର୍ଚ୍ଛି ହଠାତ୍ କୂଅ ଭିତରକୁ ଡେଇଁ ପଡ଼ିଲେ । ମୋତେ ତାଙ୍କର ଗୋଟିଏ ଜଙ୍ଘରେ ବସାଇ ଦେଇ ଲୁଗାପଟା ସଜାଡ଼ି ଦେବାକୁ କହିଲେ । କୂଅ ଚାରିପାଖ ଲୋକାରଣ୍ୟ । ଦେହ ମୋର ବରଡ଼ାପତ୍ର ପରି ଥରୁଥାଏ । ଲାଜରେ ମରିଗଲା ପରି ଲାଗୁଥାଏ । ବଡ଼ ଦାଦା ଗାଣ୍ଡୁଆରେ ଲଙ୍ଗଳ ଦଉଡ଼ି ବାନ୍ଧି କୂଅକୁ ଛାଡ଼ିଲେ । ବଡ଼ ନନା ମୋତେ ଗାଣ୍ଡୁଆରେ ବସାଇ ଦେଲେ । ବଡ଼ ଦାଦା ଆମ ଗାଁର ପହିଲିମାନ । ଦେହରେ ଅମାପ ବଳ । ଫୁଲ ପରି ମୋତେ ଉଠାଇ ଆଣିଲେ । ଏହାପରେ ଲାଜ ସଡ଼ ସଡ଼ ହୋଇ ଦୁଇଦିନ ଯାଏ ମୁଁ ଘରୁ ବାହାରି ନଥିଲି ।

ଏହିପରି ଅନେକ ବାର ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷାକରି ପ୍ରଭୁ ଦେଇଛନ୍ତି ମୋତେ ପୁନର୍ଜୀବନ । ତାଙ୍କରି ଦର୍ଶନ ସାରି ମୁଁ ସେଥର ଶ୍ରୀକ୍ଷେତ୍ରରୁ ଭୁବନେଶ୍ୱରକୁ ଫେରୁଥାଏ । କୁନି ପୁଅ, ତାଙ୍କରି କୃପାବିନ୍ଦୁ, ତାଙ୍କରି ନାମରେ ନାମିତ ଜୟ ଜଗଦୀଶକୁ କୋଳରେ ଧରି । ସାଙ୍ଗରେ ତାଳପତ୍ର ଭୋଗେଇରେ ଅନ୍ନ, ଡାଲି, ବେସର, ମହୁର ଆଣିଥାଏ । ବସ୍ ଷ୍ଟପେଜରୁ ରିକ୍ସାଟିଏ ଧରି ମୋତେ ବସାକୁ ଫେରିବାକୁ ପଡ଼ିଲା । ଅଫିସ ଫେରନ୍ତା ବେଳ । ଗାଡ଼ି ମଟର ଜୋର୍‌ରେ ଛୁଟୁଥିଲା ରାଜରାସ୍ତାରେ । ମୋର ଅନ୍ୟମନସ୍କତା ଯୋଗୁଁ ମୋ ରହୁଥିବା ଘରର ଗଳି ଛାଡ଼ି ମୁଁ ଅନେକ ଆଗକୁ ଚାଲି ଆସିଥାଏ । ହଠାତ୍ ଚମକିପଡ଼ି ରିକ୍ସାବାଲାକୁ କହିଲି, ଡାହାଣକୁ ରିକ୍ସା ବୁଲାଅ । ସେତେବେଳେ ଭୁବନେଶ୍ୱର ରାଜରାସ୍ତାର ଦୋହରୀକରଣ ହୋଇନଥାଏ । ଗୋଟିଏ ଅଳ୍ପ ଚଉଡ଼ା ପିଚୁ ରାସ୍ତାର ଏପାଖ ସେପାଖରେ ଗାଡ଼ି ମଟର ଗୁଡ଼ିକ ଯିବା ଆସିବା କରୁଥା'ନ୍ତି । ରାସ୍ତା ମଧ୍ୟ ପ୍ରବଳ ଭିଡ଼ । ମୋ କଥା ଶୁଣି କିଛି ନ ଭାବି ରିକ୍ସାବାଲାଟି ରିକ୍ସାଟିକୁ ହଠାତ୍ ଡାହାଣ ଆଡ଼କୁ ବୁଲାଇ ଦେଲା । ଭାରସାମ୍ୟ ହରାଇ ରିକ୍ସାଟି ଲେଉଟି ପଡ଼ିଲା । ଆମେ ସମସ୍ତେ ଯେ ଯୁଆଡ଼େ ଛିଟିକି ପଡ଼ିଲୁ । ମହାପ୍ରସାଦ କୁଡୁଆ ଭାଙ୍ଗି ଛିନ୍‌ଛତ୍ର ହୋଇ ରାସ୍ତାସାରା ପଡ଼ିଥାଏ । ମୋ ହାତର କାଚଚୁଡ଼ି ସବୁ ଭାଙ୍ଗି ଚୁନ୍‌ଚୁନା । ରାସ୍ତାରେ ଦ୍ରୁତଗତିରେ ଯାନବାହନର ଚଳାଚଳ । କାହାର ବା ସମୟ ଅଛି, ଘଡ଼ିଏ ଅଟକି ପରିସ୍ଥିତି ଅନୁଧ୍ୟାନ କରିବାକୁ । ମୁଁ କଷ୍ଟେ ମଷ୍ଟେ ଉଠିବା ବେଳକୁ ରିକ୍ସାବାଲା ପଚାରି ଉଠିଲା- 'ପୁଅ ? ପୁଅ କାହିଁ ମା' ? ମୁଁ ଥରୁଥାଏ । ପାଟିରୁ କଥା ବାହାରୁ ନଥାଏ । ପୁଅ ରାସ୍ତା କଡ଼ର ଘାସ ଉପରେ ମୁହଁ ମାଡ଼ି ପଡ଼ିଛି । ରାସ୍ତା ତଳକୁ କେନାଲ । କୋହ ଓ ଆଶଙ୍କାରେ ଥର ଥର ହାତରେ ମୁଁ ପୁଅକୁ ଟେକି ଆଣିଲି । ହେ କରୁଣାମୟ ! ଅଗତିର ଗତି, ଅନାଥର ନାଥ ଭକ୍ତବତ୍ସଳ ଜଗନ୍ନାଥ, ତୁମେ ହିଁ ଘଣ୍ଟ ଘୋଡ଼ାଇ ରଖିଲ ତୁମର ସନ୍ତାନକୁ । ନା, କିଛି ବି ହୋଇନି । ହେ ମାୟାଧର ! ତୁମର ଆଦି ଅନ୍ତ କିଏ ବା ଜାଣେ । 'ଯଂ ବ୍ରହ୍ମା-ବରୁଣେନ୍ଦ୍ର-ରୁଦ୍ର-ମରୁତଃ ସ୍ତୁନ୍ୱନ୍ତି ଦିବ୍ୟୈ ସ୍ତବୈଃ...' । ମୁଁ ଅକିଞ୍ଚନ, କାହୁଁ ବା ଜାଣିବି ତୁମର ମହିମା ।

ପରୀକ୍ଷିତ ପରି ମାତୃ ଗର୍ଭରୁ ରକ୍ଷା କରିଥିବା ତୁମର ଏଇ କୁନି ପୁଅ, ଅତି ଛୋଟ ପିଲା ଜୟ ଜଗଦୀଶ । ତାକୁ କୋଳକୁ ନେଇ ଝୁଲାଉ ଝୁଲାଉ ଲୁହଭରା ଆଖିରେ ମନେ ମନେ ପଚାରିଲି, ଆମକୁ ଏ ବିପଦରୁ କିଏ ରକ୍ଷା କଲାରେ ! ଶିଶୁଟି ଅଳ୍ପ ହସିଲା । ଆଖି ଟେକି ଉପରକୁ ଚାହିଁଲା । ପୁଣି ପ୍ରଭୁଙ୍କ ଅପୂର୍ବ କରୁଣାର ଏକ ଦିବ୍ୟ ଅନୁଭୂତି ।

ଏଲ୍-୩/୩, ଖାରବେଳ ନଗର
ୟୁନିଟ୍-୩, ଭୁବନେଶ୍ୱର
ଦୂରଭାଷ : ୯୫୮୩୩୬୭୧୧୯



# ମୋ କାଳିଆ ମିତ

## ମୌସୁମୀ ଦାସ

ଏଇ କିଛିଦିନ ତଳର କଥା । ଅନ୍ୟମନସ୍କ ଭାବେ ରାସ୍ତାରେ ଚାଲି ଚାଲି ଯାଉଥିଲି । କ'ଣ ଭାବୁଥିଲି, ମନେ ନାହିଁ । କେହି ଜଣେ ପଛପଟୁ ଟାଣିନେଲେ ରାସ୍ତା କଡ଼କୁ । ଧ୍ୟାନଭଙ୍ଗ ହେଲାବେଳକୁ ବିରାଟ ହର୍ଣ୍ଣ ଶବ୍ଦ କରି ମିନିବସ୍ ଭଳି ବଡ଼ ଭ୍ୟାନ୍‌ଟିଏ ମୋତେ ଅତିକ୍ରମ କରି ଆଗକୁ ଚାଲିଗଲା । ଗଲାବେଳକୁ ଗାଡ଼ି ଭିତରୁ ମୁଣ୍ଡ ଗଳେଇ କେହି ଜଣେ ପାଟି କରି ଅଶ୍ରାବ୍ୟ ଶବ୍ଦଟିଏ ମୋ ଆଡ଼କୁ ଫୋପାଡ଼ି ଦେଲା । କିନ୍ତୁ ମୁଁ ସେ ଅକଥ୍ୟ ଶବ୍ଦଟିକୁ ହଜମ କରିନେଲି । ମୋତେ କିଏ ଏତେ ବଡ଼ ନିଶ୍ଚିତ ମୃତ୍ୟୁରୁ ରକ୍ଷା କଲା ? କିଏ ମୋ' ପ୍ରାଣ ବଞ୍ଚାଇଲା ?

ବୁଲି ଚାହିଁଲି । ମୋ'କଡ଼ରେ ଠିଆ ହୋଇ ମୁବ୍ ମୁବ୍ ହସୁଥିଲା କଳାଲୋକଟା, ଆଖିରେ ବିରକ୍ତି ଟିକେ ସ୍ପଷ୍ଟ ଦେଖାଯାଉଥିଲା । କହିଲା, 'ଏ...ତୁ ରାସ୍ତାରେ ସାବଧାନରେ ଯିବୁ ନା ! ମୋତେ କାହିଁକି ହଇରାଣ କରୁଛୁ ?' ତା'କଥାରୁ ଚିହ୍ନିପାରିଲି । ସେ କାଳିଆ, ତା' ବଡ଼ ବଡ଼ ଆଖିରୁ କୋଉ କଥା ଲୁଚିଯାଏ ଯେ... ! ତା' ଓଠରେ ସବୁବେଳେ ହସଟିକେ ତ ମହକୁଥାଏ । ମୁଁ ହସି ପକେଇଲି । କହିଲି, 'ତୁ ତ ଅଛୁ । ମୋର କ'ଣ ଦରକାର ନିଜ ପ୍ରତି ଧ୍ୟାନ ଦେବା ।' ସେ ବୁଝିଗଲା । ତା'ର ଓ ମୋର ଭାବ ବିନିମୟଟା ଏତେ ସୁଗମ ଯେ, ସେ ନ କହିଲେ ବି ମୁଁ ବୁଝିଯାଏ । ମୁଁ ନ କହିଲେ ବି ସେ ବୁଝିଯାଏ ।

ଆଉଦିନେ, କବିତାର ଧାଡ଼ି ପରେ ଧାଡ଼ି ସଜେଇବାକୁ ବସିଥିଲି । ମନେ ପଡ଼ିଲା, କେତେ ଦିନ ହେଲା କାଳିଆ ସହ କଥା ହୋଇନି । ତା'ର ତ ଫୋନ ନାହିଁ । ମନହେଲା ମାତ୍ରେ କେମିତି ତା' ସହ ଯୋଗାଯୋଗ କରି ହେବ ! ବାସ୍, ମୁଁ ଆଉ କବିତା ଲେଖି ପାରିଲିନି । ମୋର ଯେମିତି ମନ ହେଲା, ତା' ସହ କଥା ହେବାଠାରୁ ଜରୁରୀ ଆଉ ଅଧିକ କିଛି ହିଁ ନାହିଁ । ମନ ଉଚ୍ଚାଟ ହେଲା । ଦୌଡ଼ିଯିବି କି ତା' ପାଖକୁ ! ସେ ନ ଡାକିଲେ କେମିତି ଯିବି ? ତା' ମୁହଁରେ ଯଦି ବିରକ୍ତି ଭାବ ଟିକେ ଦେଖାଯିବ ? ସମସ୍ତେ ତ କୁହନ୍ତି, ତା' ଡୋରି ନ ଲାଗିଲେ ଯାଇ ହୁଏନି ତା' ପାଖକୁ । କିନ୍ତୁ ମୋ ମନ ବ୍ୟାକୁଳ ହେଲାଣି ପରା । ସବୁ ଦ୍ୱନ୍ଦ୍ୱ ଛାଡ଼ି ତା' ଆଗରେ ଠିଆ ହୋଇଗଲି । ସେ ସବୁଥର ପରି ହସୁଥିଲା ମୁବ୍‌ମୁବ୍ । କହିଲା, 'ମୋ ସହ କଥା ହେବୁ ପରା !' କ'ଣ ବା ଆଉ କଥା ହୁଅନ୍ତି ! ତା'କୁ ଦେଖିଲେ ତ ସବୁ କଥା ଭୁଲି ହେଇଯାଏ । ବେଳେ ବେଳେ ଲାଗେ, ତା'କୁ ଦେଖୁ ଦେଖୁ ସେ ମୋର ସବୁକଥା ବୁଝିଯାଏ । ତା'ହସ

ଆହୁରି ଚଉଡ଼ା ହୋଇଯାଏ । ଫେରି ଗଲାବେଳକୁ ସେ କହେ, 'ପୁଣି ଆସିବୁ ।' ଅଭିନ୍ନ ହୃଦୟ ବନ୍ଧୁ ମୋର । ମୋ ପାଇଁ ସେ ପୁଣି ଅପେକ୍ଷା କରିବ । ମୋ ମନ ଉଚ୍ଚାଟ ହେବାଯାଏଁ ଚାହିଁ ବସିବ ।

କାଳିଆର ଡୋରି ଏମିତି କ'ଣ ଲାଗେ ! ତା'ପାଇଁ ନିଜକୁ ଉଚ୍ଚାଟ କରିବାକୁ ହୁଏ । ତା'କୁ ଦେଖିବାକୁ ନୟନ ଉଦ୍‌ଗ୍ରୀବ ନ ହେଲେ ସେ କ'ଣ ଦେଖାଦିଏ ? ତା' ସହ କଥା ହେବାକୁ ହୃଦୟ ଭାରାକ୍ରାନ୍ତ ନ ହେଲେ ସେ କ'ଣ କଥା କୁହେ ? ତା' ପାଖକୁ ଯିବାକୁ ବ୍ୟାକୁଳ ନ ହେଲେ ସେ କ'ଣ ଡାକେ ? କିନ୍ତୁ ସେ ଅପେକ୍ଷା କରୁଥାଏ । ସେ ଚାହିଁ ରହିଥାଏ । କେତେବେଳେ ଆକୁଳ ହୃଦୟ ନେଇ ତୁମେ ତା'ପାଖକୁ ଦୌଡ଼ିଯିବ । ଆଉ, ତା'ପରେ ସେ ହସିବ ଭୁବନମୋହନ ହସ । ଆଖିରେ ଆଖି ମିଶେଇ କହିବ, 'ଦେଖୁଛୁ ତ । ମୁଁ ଜାଣିଥିଲି, ତୁ ପୁଣି ଆସିବୁ । ମୁଁ ବି ତ ତୋ'ବିନା ରହିପାରେନି । ତୁ କେମିତି ମୋ'ବିନା ରହିପାରନ୍ତୁ ?'

ଏମିତି ସେ କାଳିଆ । ଏଡ଼େ କପଟୀ, ଏଡ଼େ ଛଳିଆ । ଯେତେ ମାୟାଜାଲରେ ବୁଡ଼େଇ ଦେଇ ଭେଳିକି ଦେଖେ । ଏଇଟା ତା'ର ସଉକର ଖେଳ । ତା'ସହ ବନ୍ଧୁତା ମୋର କେଉଁ ଦିନରୁ । ବାଲିଘର ଖେଳର ବୟସରୁ । କାଳିଆର କୁନି କଣ୍ଢେଇ ସଜେଇ ତା' ସହ ଚୁପି ଚୁପି କଥା ହେଉ ହେଉ ଦିନେ ସେ ବି ମୋ' ସହ କଥା ହେବାକୁ ଲାଗିଲା । ମୋ ସହ ହସିଲା, ମୋ' ସହ ବାଟ ଚାଲିଲା । ମୋତେ ସବୁଦିନିଆ ସାଥୀ କରିନେଲା । ମୋର ସୁଖ ଦୁଃଖର ସାଥୀ ପାଲଟିଲା । ମୋ ଭଲ-ମନ୍ଦର ଅଦୃଶ୍ୟ ଉତ୍ତରଦାୟୀ ବି । ମୋ' ଜେଜେମାଆ ପରା ହାତ ଟେକି ଦେଇଥିଲା, ତା'ରି ଉଦ୍ଦେଶ୍ୟରେ ! ତୁମେ ହିଁ ତା'ର ହର୍ତ୍ତାକର୍ତ୍ତା, ସବୁ ଦୁଃଖ ସୁଖର ସାହାରା । ସେଇଦିନୁ ହିଁ ସେ ନେଇଛି ମୋର ଦାୟିତ୍ୱ ।

ଜେଜେ ବାପାଙ୍କୁ ନେଇଗଲା ସେ ତା' ପାଖକୁ । ଆବାଲ୍ୟରୁ ବଢ଼ିଥିଲି ଜେଜେ, ଜେଜେମା'ଙ୍କ ବାତ୍ସଲ୍ୟରେ । ଭାଙ୍ଗିପଡ଼ିଲି ମୁଁ । ଶୋକ ପାଳନର ସେଇ ଦଶଦିନ ବିତୁ ନ ବିତୁଣୁ ଶଯ୍ୟାଶାୟୀ ହୋଇଗଲି ମୁଁ । ଦଶାହ କର୍ମର ଭିଡ଼ । ଏତିକିବେଳେ ଅସୁସ୍ଥ ହୋଇ ଅଜ୍ଞାନ ଅବସ୍ଥାରେ ହସ୍‌ପିଟାଲ ବେଡ଼ରେ । ଏହିପରି ସଂଜ୍ଞାହୀନ ହୋଇ ରହିଲି ପ୍ରାୟ ତିନିଦିନ । ପାଖରେ ବୋଉ । ସାଲାଇନ୍ ଚାଲୁଥାଏ । ବୋଉର ବ୍ୟସ୍ତତା ଓ ଆତୁର ପ୍ରାର୍ଥନା, ଡାକ୍ତରଙ୍କ ପ୍ରଚେଷ୍ଟା । ତଥାପି ହୋସ୍ ଆସିନଥାଏ ମୋର । ତିନିଦିନ ବିତିଗଲାଣି । ତା'ପରେ ସେ ଆସିଲା । ରାତିରେ ବେଡ୍ କଡ଼କୁ ଢୁଳେଇ ପଡ଼ିଥାଏ ବୋଉ । କେହି କୁଆଡ଼େ ନାହାନ୍ତି । ଶୀତଦିନିଆ ରାତି, ଡାକ୍ତର, ନର୍ସ ସବୁ ଡ୍ୟୁଟି ରୁମ୍‌ରେ ଥାଆନ୍ତି । ଏତିକିବେଳେ କିଏ କାହିଁକି ଅବା ଆସିବ ହସ୍‌ପିଟାଲ ଭିତରକୁ ।

ତ୍ରିପଣ କଳା ଲୋକଟେ, ଢିମାଢ଼ିମା ଆଖି, ସୁବିଶାଳ ଶରୀର, ସୁଦର୍ଶନ ଚେହେରା । ଓଠରେ ମନମୋହକ ହସ ଧାରେ । ଧୀରେ ଧୀରେ ହସୁ ହସୁ ଆଗକୁ ବଢୁଥିଲା ସେ, କ୍ୟାବିନ୍‌ର ଦରଜା ଡେଇଁ । ଆସି ମୋ ବିଛଣା କଡ଼ରେ ଠିଆ ହେଲା । ମୋ ମଥାରେ ହାତ ରଖିଲା କିଛିକ୍ଷଣ । ଧୀର ଗମ୍ଭୀର ଅଥଚ ମଧୁର କଣ୍ଠରେ କହିଲା, 'ଏୟ... ଶୋଇଛୁ କ'ଣ ? ତୋର କିଛି ହେଇନି । ଉଠ୍... ।' ମୁଁ ଆଖି ଖୋଲି ଚାହିଁ ରହିଥିଲି ଅପଲକ । ସେ ମୋ'ହାତରୁ ସାଲାଇନ୍ ଖୋଲିଦେଲା । ମୋ ଭିତରେ କେତେ ଯେ କଦମ୍ବର ଶିହରଣ ଖେଳିଗଲା । ସେ ଫେରି ଯାଉଥିଲା, ମୋତେ ଚାହିଁ ମୃଦୁ ହସିଲା । ସେ ହସରେ ଟିକେ ନଟ୍‌ଖଟ୍ ପଣ ଥିଲା, ଥିଲା ବି ସାନ୍ତ୍ୱନାର, ଆଶ୍ୱାସର ଝଲକ । ଅଚାନକ କ୍ୟାବିନ୍‌ର ଦୁଆର ଡେଇଁ କେଉଁଆଡ଼େ ଚାଲିଗଲା ସେ ।

ବୋଉକୁ ଉଠେଇଲି । ମୋର ହୋସ୍ ଆସିଯାଇଥିବା ଦେଖି ସେ ଡାକ୍ତରଙ୍କୁ ଡାକିଲା । ଡାକ୍ତର ଆସି ପରୀକ୍ଷା କଲା ପରେ ସାଲାଇନ୍ ସରଞ୍ଜାମ ବାହାର କରି ନେଇଯିବାକୁ ସିଷ୍ଟରଙ୍କୁ କହିଲେ । ବେଶ୍ ସୁସ୍ଥ ଲାଗୁଥିଲା ମୋତେ । ତା' ସ୍ପର୍ଶରେ ଉଭେଇ ଯାଇଥିଲା ମୋର ଅସୁସ୍ଥତା । ସାରା କ୍ୟାବିନ୍‌ରେ ସଞ୍ଚରି ଯାଇଥିଲା ତା'ର ମହକ, ଅଗୁରୁ, ଚନ୍ଦନ, ଗନ୍ଧପୁଷ୍ପର ମହକ ।

ବୋଉ, ବାବା ମୋ'ଠୁ ଶୁଣି କହିଲେ, 'ଏଇଟା ତୋର ସ୍ୱପ୍ନ ।' କେହି ତ ମାନୁନାହାନ୍ତି, ସେ ସତରେ ଆସିଥିଲା ବୋଲି । ଅଥଚ ଏ ଯାଏଁ ମୋ ମଥାରେ ତା' ସ୍ପର୍ଶର ଅନୁଭବ ଜୀବନ୍ତମୟ ହୋଇ ରହିଛି । ନା, ଏଇଟା ସ୍ୱପ୍ନ ବୋଲି ମୁଁ ମାନିନେଇ ପାରୁନି ।

ଏମିତି ସେ । ଥାଏ ମୋର ପାଖେ ପାଖେ, ସବୁବେଳେ, ସବୁ ମୁହୂର୍ତ୍ତରେ । ମୋ ହସ ଲୁହରେ ସାମିଲ ହୁଏ । ମୋର ଯେତେସବୁ ଅଳି ଅର୍ଦ୍ଦଳି ସହେ, ମାନ ଅଭିଯୋଗ ଶୁଣେ । ହସୁଥାଏ ତା'ର ଲାଲ ଓଠରେ, ଚାହିଁଥାଏ ତା'ର ଢିମା ଆଖିରେ ମୋତେ । ତାକୁ ଦେଖିଦେଲେ ଭୁଲି ହୋଇଯାଏ ସବୁ ଶୋକ । ସେ ମୋର ଅଶୋକ । ତାକୁ ଦେଖିଦେଲେ ଆନନ୍ଦର ମଳୟ ସଞ୍ଚରିଯାଏ ଆତ୍ମାରେ । ସେ ମୋର ଅଭିନ୍ନ ହୃଦୟ, ମୋ କାଳିଆ ମିତ, ମୋ ପ୍ରାଣର ପୁଲକ ।


ଜଳସମ୍ପଦ ବିଭାଗ, ରାଜୀବ ଭବନ

ଭୁବନେଶ୍ୱର - ୧

ଭ୍ରାମ୍ୟଭାଷ : ୯୪୩୮୩୬୨୪୬୫




# ଅନନ୍ୟ ଅନୁଭୂତି

## ଅରୁଣା ସାମନ୍ତରାୟ

**ମୋ**ର କୈଶୋରାବସ୍ଥାରେ ଘଟିଥିବା ଘଟଣାଟିଏ ସମ୍ବନ୍ଧରେ ଉଲ୍ଲେଖ କରୁଅଛି । ସାଧାରଣ ଅନୁଭୂତି ହୋଇଥିଲେ ହୁଏତ ବିସ୍ମୃତ ହୋଇଯାଇଥା'ନ୍ତା, କିନ୍ତୁ ଏହି ଅନନ୍ୟ ଅନୁଭୂତି ଟିକକ ଆଜି ପର୍ଯ୍ୟନ୍ତ ମାନସପଟରେ ଜୀବନ୍ତ ହୋଇ ରହିଅଛି । ଆଜି ମଧ୍ୟ ତାହା ମନ ମଧ୍ୟରେ ଶିହରଣ ସୃଷ୍ଟି କରୁଅଛି । ଘଟଣାଟି ଏହିପରି -

ଏକଦା ମୋର ବାପାଙ୍କୁ ଜ୍ୱର ହୋଇଥାଏ । ସେ ଔଷଧପତ୍ର ଖାଇବାକୁ ଆଦୌ ଇଚ୍ଛା କରନ୍ତି ନାହିଁ । ଯଦି ବିନା ଔଷଧରେ ଦେହ ଭଲ ହୋଇଗଲା, ତେବେ ଭଲ କଥା । ଯଦି ଭଲ ନହେଲେ ଦେହ ଖରାପ ଅଧିକ ଦିନ ରହିବ । ଦୁର୍ବଳ ହେବେ, ଆମେ ସମସ୍ତେ ବିରକ୍ତ ହେବୁ, ଇତ୍ୟାଦି ପଛକୁ ପଛ ଅନେକ କଥା ଲାଗିଯିବ । ଶେଷରେ ସେ ଔଷଧ ଖାଇବାକୁ ବାଧ୍ୟ ହେବେ । ସେଥର ହୋଇଥିବା ଜ୍ୱରରେ ସେହିପରି ଔଷଧ ଖାଇଲେ ନାହିଁ । କହିଲେ ଯେ ଥଣ୍ଡା ଜ୍ୱର ଟିକେତ ହୋଇଛି । ରସୁଣ ସୋରିଷ ତେଲ ଫୁଟାଇ ମାଲିସ୍ କରିଦେଲେ ଭଲ ହୋଇଯିବ । ତାଙ୍କ କହିବା ଅନୁସାରେ କରାଗଲା । ଜ୍ୱର କମିଲା ନାହିଁ । ସେମିତି ରହିଲା । ତା'ପରେ ଔଷଧ ଦିଆଗଲା । ସେ ଔଷଧ ଖାଇଲେ । ଔଷଧ ସରିଗଲା, କିନ୍ତୁ ଜ୍ୱର କମିଲା ନାହିଁ । ସେ ଜ୍ୱରରେ ସେମିତି କମ୍ପୁଥାଆନ୍ତି । ହଠାତ୍ ତାଙ୍କ ମନକୁ କ'ଣ ଆସିଲା ମୋତେ କହିଲେ, 'ମାଆ ! ଜଗନ୍ନାଥଙ୍କୁ ଧ୍ୟାନ କରି ଦଶାବତାର ବୋଲିଲୁ ।' ଆମେ ଭାଇଭଉଣୀ ପାଞ୍ଚଜଣ ବୋଉ ସଂଧ୍ୟା ଦେଇସାରିଲା ବେଳକୁ ଏକତ୍ର ବସି ପ୍ରାର୍ଥନା କରୁ । ସେଥିରେ ପ୍ରଥମେ 'ଆହେ ଦୟାମୟ ବିଶ୍ୱବିହାରୀ' ସହିତ ଦଶାବତାର, ହେ ଆନନ୍ଦମୟ କୋଟି ଭୁବନ ପାଳକ ଏବଂ ଅନ୍ୟାନ୍ୟ ଦେବଦେବୀଙ୍କର ସ୍ତୁତି ଶ୍ଳୋକ ଥାଏ । ପ୍ରତିଦିନ ସଂଧ୍ୟା ସମୟରେ ଏକାଠି ପ୍ରାର୍ଥନା କରିବାକୁ ବାପାଙ୍କର ନିର୍ଦ୍ଦେଶ ଥାଏ । ସଂଧ୍ୟା ସମୟ ବ୍ୟତୀତ ଅନ୍ୟ ସମୟରେ ଗାଇଲେ ତାହା ସଙ୍ଗୀତ ହିସାବରେ ଧରାଯିବ । ମୋର ସଙ୍ଗୀତ ପ୍ରତି ଆଗ୍ରହ ଥାଏ, ହେଲେ ବାପାଙ୍କ ସମ୍ମୁଖରେ ଡର ଲାଗେ । କାରଣ ସେ ଏଥିପ୍ରତି ଆଗ୍ରହ ପ୍ରକାଶ କରନ୍ତି ନାହିଁ । ଯଦିଓ ମୁଁ ସଙ୍ଗୀତ ଶିକ୍ଷାରୁ ବଞ୍ଚିତ ଥିଲି, କିନ୍ତୁ ବାପାଙ୍କ ଅନୁପସ୍ଥିତିରେ ସଙ୍ଗୀତ ଗାନ କରି ଆନନ୍ଦିତ ହେଉଥିଲି । ସେଦିନ ତାଙ୍କର ନିର୍ଦ୍ଦେଶରେ ତାଙ୍କ ସମ୍ମୁଖରେ ଦଶାବତାର ବୋଲିବାକୁ ହଠାତ୍ ମୁଁ ଅପ୍ରସ୍ତୁତ ହୋଇଗଲି । ସେ ମୋତେ ତିନି ଚାରିଥର କହିବା ପରେ ମୋତେ ଭାରି କଷ୍ଟ ଲାଗିଲା ଯେ ଏଇ ଦେହ ଖରାପରେ ସେ କାହିଁ

ଏତେଥର କହିଲେ । ଥରକରେ କଥାଶୁଣି ଗାଇଥିଲେ ତାଙ୍କୁ ଏତେଥର କହିବାକୁ ହୋଇନଥା'ନ୍ତା । ମୁଁ ଖାଲି ଦଶାବତାର ଗାଇଲି । ଚକ୍ଷୁ ମୁଦ୍ରିତ କରି ଜଗନ୍ନାଥଙ୍କୁ ଧ୍ୟାନ କରି ବୋଲିବା ଭିତରେ କେତେବେଳେ ତାହା ଶେଷ ହୋଇଗଲା ମୋତେ ଜଣାନାହିଁ । ଚକ୍ଷୁ ଉନ୍ମୀଳିତ ହେଲାପରେ ଜାଣିଲି ଯେ, ବୋଲିବା ସରିଯାଇଛି । ବାପାଙ୍କ ମୁଖକୁ ଚାହିଁଲି । ପ୍ରଶାନ୍ତ, ସତେଜ ଦିଶୁଛି । ସେ ହସ ହସ ମୁହଁରେ କହିଲେ, 'ଜ୍ୱର ଆଉ ନାହିଁ ।' ଆଶ୍ଚର୍ଯ୍ୟର କଥା, ସେଥର ଜ୍ୱର ଆଉ ଆସିଲା ନାହିଁ । ତା'ପରେ ଉଠି ସେ ବୁଲାଚଲା କଲେ । ପରଦିନ ନିତ୍ୟ ନୈମିତ୍ତିକ ଭାବରେ ନିଜର କାର୍ଯ୍ୟ କଲେ । ବାସ୍ତବରେ ସେହି ଘଟଣାଟି ମୋ ପାଇଁ ଅବିସ୍ମରଣୀୟ ।

ଜୀବନର ଚଲାପଥରେ ଯେତେ ଘାତ ପ୍ରତିଘାତ ଆସିଛି, ପ୍ରଭୁ ଜଗନ୍ନାଥ ସହ୍ୟ କରିବାର ଯେଉଁ ପ୍ରଚଣ୍ଡ ଶକ୍ତି ଦେଇଛନ୍ତି, ଅନ୍ତରର ଚେତନାକୁ ପ୍ରାଣବନ୍ତ, ଆଲୋକମୟ କରିଛନ୍ତି ବାସ୍ତବରେ ତାହା ଅନୁଭବୀ ହିଁ ଜାଣିପାରିବ । ତାଙ୍କର ମହିମା ଅକଳନୀୟ, ଅକଳ୍ପନୀୟ, ଅତୁଳନୀୟ ।

ମଠ ସାହି, ତୁଳସୀପୁର
କଟକ - ୭୫୩୦୦୮
ଭ୍ରାମ୍ୟଭାଷ : ୯୩୩୮୦୯୦୩୮୩



# ଅମୃତ ଅନୁଭୂତି

## ମନସ୍ୱିନୀ ଦାଶ

ଅନେକ ଦିନରୁ ମୋର ଇଚ୍ଛା ଥିଲା ପ୍ରଭୁ ଜଗନ୍ନାଥଙ୍କୁ ରଥ ଉପରେ ଅତି ପାଖରୁ ଦର୍ଶନ କରିବାକୁ । କିନ୍ତୁ ମୋର ଏ ଇଚ୍ଛା ସେମିତି ଇଚ୍ଛାରେ ରହିଯାଏ । କାରଣ ଭିଡ଼କୁ ମୋର ପ୍ରବଳ ଡର । ଆଉ ଏଇ କାରଣରୁ ହିଁ ମୁଁ ରଥଯାତ୍ରାରେ ପୁରୀ ଯିବାକୁ ମନ କରେନି । ଯଦିଓ ମାନସିକ ସ୍ତରରେ ସେଦିନ ମୁଁ ପୁରୀରେ ହିଁ ଥାଏ ।

ରଥଯାତ୍ରାକୁ ପୁରୀ ଯିବିନି ଅଥଚ ଇଆଡ଼େ ରଥରେ ପ୍ରଭୁଙ୍କୁ ଦର୍ଶନ କରିବାକୁ ଇଚ୍ଛା - ଏ ଦୁଇଟି ସମ୍ପୂର୍ଣ୍ଣ ବିପରୀତମୁଖୀ କାମନା ମୋ ଅନ୍ତରାତ୍ମାକୁ ଭୀଷଣ କଷ୍ଟ ଦିଏ । ମୁଁ ମନେ ମନେ ପ୍ରଭୁଙ୍କୁ ପ୍ରାର୍ଥନା କରେ, ପ୍ରଭୁ ! ତୁମେ କେତେ ଲୋକଙ୍କ ମନୋବାଞ୍ଛା ପୂର୍ଣ୍ଣ କରୁଛ, ମୋର ଏଇ ଛୋଟିଆ ଇଚ୍ଛାଟାକୁ ଟିକେ ପୂର୍ଣ୍ଣ କରିଦିଅ ।

ଦୁଇ ହଜାର ଦଶ ବା ଏଗାର ମସିହା ମୋର ଠିକ୍ ମନେ ପଡୁନି । ସେତେବେଳେ ମୁଁ ପ୍ରାଥମିକ ଶିକ୍ଷା ନିର୍ଦ୍ଦେଶାଳୟରେ ଯୁଗ୍ମ ନିର୍ଦ୍ଦେଶିକା ଭାବରେ ଅବସ୍ଥାପିତ ଥାଏ । ରଥଯାତ୍ରା ପରଦିନ ଅଫିସରେ ଅନ୍ୟ ଦୁଇଜଣ ଉପ-ନିର୍ଦ୍ଦେଶିକାଙ୍କ ସହ ମୁଁ ନିର୍ଦ୍ଦେଶାଳୟର ଫାଇନାନ୍ସ ଆଡ଼ଭାଇଜର (ଏଫ୍.ଏ) ସରୋଜିନୀ ମାଡାମ୍‌ଙ୍କ ରୁମ୍‌ରେ ବସି ଲଞ୍ଚ ବ୍ରେକ୍‌ରେ ଜଳଖିଆ ଖାଉଥିଲୁ । ଆମେ ସମସ୍ତେ ମହିଳା ଅଫିସର ଥିଲୁ । ସରୋଜିନୀ ମାଡ଼ାମ୍‌ଙ୍କ ସ୍ୱାମୀ ସେତେବେଳେ ପୁରୀରେ ଜଣେ ପ୍ରଶାସନିକ ଅଫିସର ଭାବରେ ଅବସ୍ଥାପିତ ହୋଇଥା'ନ୍ତି । ଖାଇବା ସମୟରେ ଜଗନ୍ନାଥଙ୍କୁ ନେଇ ଆଲୋଚନା ଚାଲୁଥାଏ । ହଠାତ୍ ମୁଁ ସରୋଜିନୀ ମାଡ଼ାମ୍‌ଙ୍କୁ କହିଲି, 'ଆଜି ତ ଠାକୁର ଏ ପର୍ଯ୍ୟନ୍ତ ରଥ ଉପରେ ଅଛନ୍ତି, ଗୁଣ୍ଡିଚା ମନ୍ଦିରକୁ ଯାଇ ନାହାନ୍ତି । ଆପଣଙ୍କ ମିଷ୍ଟରଙ୍କୁ କୁହନ୍ତୁ ନା ଆମକୁ ଟିକେ ରଥ ଉପରେ ପ୍ରଭୁଙ୍କୁ ଦର୍ଶନ କରେଇ ଦେବେ ।'

କଥାଟା ମୁଁ ଏମିତି କହୁ କହୁ କହିଥିଲି । କିନ୍ତୁ ମାଡ଼ାମ୍ ମୋ କଥା ଶୁଣି ସାଙ୍ଗେ ସାଙ୍ଗେ ତାଙ୍କ ମିଷ୍ଟରଙ୍କ ପାଖକୁ ଫୋନ କଲେ । ସିଏ ବି ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ଜଣେ ଅଫିସରଙ୍କର ନିଜର ଗାଡ଼ି ଥିଲା । ତେଣୁ ଆମେ ସେଇଠି ବସି ଠିକ୍ କଲୁ ସେଇ ଗାଡ଼ିରେ ଅଫିସ ପରେ ପୁରୀ ଯିବୁ । ମାତ୍ର ପାଞ୍ଚ ମିନିଟ୍ ଭିତରେ ସବୁ ନିଷ୍ପତ୍ତି ହେଇଗଲା । ଘଟଣାଟା ଏପରି ହଠାତ୍ ଘଟିଗଲା ଯେ ମୁଁ ମୋଟେ ବିଶ୍ୱାସ କରି ପାରୁନଥାଏ ।

ତା'ପରେ ଖାଲି ଅପେକ୍ଷା । କେତେବେଳେ ଅଫିସ ସରିବ ଓ ଆମେ ପୁରୀ ବାହାରିବୁ । ତା'ପୂର୍ବରୁ ସେ ଦିନର ଫାଇଲ୍ କାମ ସବୁ ସାରିବାକୁ ହବ । ତେଣୁ

ସମସ୍ତେ ନିଜ ନିଜ ରୁମ୍‌କୁ ଯାଇ ଜଲ୍‌ଦି ଜଲ୍‌ଦି ଫାଇଲ୍ କାମ ସାରିଲୁ । ଭାଗ୍ୟକୁ ସେଦିନ ଉପରଓଳିକୁ କିଛି ମିଟିଂ ବି ନଥାଏ । ତେଣୁ ଠିକ୍ ପାଞ୍ଚଟା ବେଳେ ଆମେ ଅଫିସ୍ ଛାଡ଼ିଲୁ । ସମସ୍ତେ ନିଜ ନିଜ ଘରକୁ ଫୋନ କରି ଜଣେଇ ଦେଇଥାଉ ।

ଗାଡ଼ିରେ ଅନ୍ୟମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହେଉଥା'ନ୍ତି । ମୁଁ କିନ୍ତୁ ଏକଦମ୍ ଚୁପ୍ ହୋଇ ବସିଥାଏ - ସମ୍ପୂର୍ଣ୍ଣ ଭାବରେ ଜଗନ୍ନାଥମନସ୍କ ।

ଆମେ କିଛିବାଟ ଗଲାପରେ ସରୋଜିନୀ ମାଡ଼ାମ୍‌ଙ୍କୁ ତାଙ୍କ ସ୍ୱାମୀ ଫୋନ କରି କହିଲେ, 'ଜିଲ୍ଲା ପ୍ରଶାସନର ବର୍ତ୍ତମାନ ନିଷ୍ପତ୍ତି ଅନୁସାରେ ଏ ବର୍ଷ ରଥରେ ସିଡ଼ି ଲଗାଯିବନି । ତେଣୁ ତୁମ ବନ୍ଧୁମାନେ ଆଉ ରଥ ଉପରେ ଚଢ଼ି ଜୀଉମାନଙ୍କ ଦର୍ଶନ କରି ପାରିବେନି । ସେମାନଙ୍କୁ ତଳେ ଠିଆ ହୋଇ ପ୍ରଭୁଙ୍କ ଦର୍ଶନ କରିବାକୁ ପଡ଼ିବ ।'

ମାଡ଼ାମ୍ ଯେତେବେଳେ ଏକଥା ଆମକୁ ଜଣେଇଲେ ସେତେବେଳେ ଆମ ସମସ୍ତଙ୍କ ମନ ଖରାପ ହେଇଗଲା । ମୋ ମନର ଅବସ୍ଥା ତ ନ କହିଲେ ଭଲ । ବଡ଼ କଷ୍ଟରେ ମନର କୋହ ଓ ଆଖିର ଲୁହକୁ ଚାପି ରଖିଥାଏ । ଜଗନ୍ନାଥଙ୍କ ପ୍ରତି ପ୍ରଚଣ୍ଡ ଅଭିମାନରେ ମୋ କଣ୍ଠରୁଦ୍ଧ ହୋଇ ଯାଉଥାଏ । ମନେ ମନେ କହିଲି, 'ରଥରେ ଚଢ଼ି ତୁମକୁ ଅତି ପାଖରୁ ଦର୍ଶନ କରିବାକୁ ମୋର କେତେ ବର୍ଷର ଇଚ୍ଛା । ଏତେ ବର୍ଷ ପରେ ମୋ ମନର ସେଇ ଆଶା ପୂର୍ଣ୍ଣ ହେବାକୁ ଯାଉଛି ଭାବି ମୁଁ କେତେ ଖୁସି ହୋଇ ଯାଇଥିଲି । ଅଥଚ ଆଶାର ସୁଉଚ୍ଚ ଡାଳରେ ମତେ ଚଢ଼େଇ ଦେଇ ତୁମେ ତାକୁ ମୂଳରୁ ହାଣିଦେଲ ?'

ତା'ପରେ ଛୋଟ ଛୁଆଟିଏ ପରି ତାଙ୍କ ପାଖରେ ଅଳି କରିବାକୁ ଲାଗିଲି- 'ପ୍ରଭୁ ! ମତେ ଦୟା କର । ରଥ ଉପରେ ଚଢ଼ି ତୁମକୁ ଅତି ପାଖରୁ ଦର୍ଶନ କରିବାର ସୁଯୋଗ ମତେ କରେଇ ଦିଅ । ରଥ ଉପରେ କେବଳ ତୁମ ସମ୍ମୁଖରେ ମୁଁ ଥିବି ଓ ମନ ଭରି କେବଳ ତୁମକୁ ଦେଖୁଥିବି । ଆମ ମଝିରେ ଆଉ ଯେମିତି କେହି ନଥିବେ ।'

ରଥ ଉପରେ ତାଙ୍କ ମୋ ଭିତରେ ଆଉ କେହି ନଥିବା ଭଳି ଅବାନ୍ତର ଚିନ୍ତାଟା ମୋ ମନକୁ କେମିତି ଓ କାହିଁକି ଆସିଲା ମୁଁ କହି ପାରିବିନି । ଏତେ ଭକ୍ତଙ୍କ ଭିଡ଼ ଭିତରେ ଆମ ଭିତରେ କେହି ରହିବେନି କେମିତି ? ତଥାପି ଏମିତି ଇଚ୍ଛାଟିଏ ହିଁ ମୁଁ କଲି ଏବଂ ଏଇ ଗୋଟିଏ କଥାକୁ ମୁଁ ବାରମ୍ବାର ତାଙ୍କ ଉଦ୍ଦେଶ୍ୟରେ କହି ଚାଲିଲି । ମୋର ଅନ୍ୟ ବନ୍ଧୁମାନେ କ'ଣ ସବୁ କଥା ହେଉଛନ୍ତି ସେସବୁ ମୋ କାନରେ ପ୍ରବେଶ କରୁ ନଥାଏ । ପୁରୀ ଯେତିକି ପାଖ ହୋଇ ଆସୁଥାଏ ମୋ ଅନ୍ତରର ଆକୁଳତା ସେତିକି ବଢ଼ି ଚାଲୁଥାଏ ।

ଚନ୍ଦନପୁର ପାଖରେ ମାଡ଼ାମ୍‌ଙ୍କ ସ୍ୱାମୀ ଆମକୁ ଅପେକ୍ଷା କରିଥିଲେ । ସେଠି ଆମ ଗାଡ଼ିରେ ଗାଡ଼ି ପାସ୍ ଲଗାଗଲା ଏବଂ ତାଙ୍କ ଗାଡ଼ିକୁ ଅନୁସରଣ କରି ଆମ ଗାଡ଼ି

ପୁରୀରେ ପ୍ରାୟ ସାଢ଼େ ଛ'ଟା ବେଳେ ପହଞ୍ଚିଲା । ମହାପ୍ରଭୁଙ୍କ ଶରଧାବାଲିରେ ଆମ ପାଇଁ ଗୋଟାଏ ମଧୁର ବିସ୍ମୟ ଅପେକ୍ଷା କରୁଥିଲା । ସେଠାରେ ମାଡ଼ାମ୍‌ଙ୍କ ସ୍ୱାମୀ ଆମ ସମସ୍ତଙ୍କୁ ଚମକେଇ ଦେଇ କହିଲେ, 'ଆପଣମାନଙ୍କ ଭାଗ୍ୟ ଖୁବ୍ ଭଲ । ଜିଲ୍ଲା ଓ ମନ୍ଦିର ପ୍ରଶାସନ ପୂର୍ବ ନିଷ୍ପତ୍ତି ପରିବର୍ତ୍ତନ କରି ପୁଣି ରଥରେ ସିଡ଼ି ଲଗେଇବାର ସାନି ନିଷ୍ପତ୍ତି ନେଇଛି । ତେଣୁ ଆପଣମାନେ ଆଉ କିଛି ସମୟ ପରେ ରଥ ଉପରେ ଚଢ଼ି ଜୀଉମାନଙ୍କୁ ଦର୍ଶନ କରିପାରିବେ ।'

ମୁଁ ପ୍ରଥମେ ନିଜ କାନକୁ ବିଶ୍ୱାସ କରି ପାରିଲିନି । ମୁଁ ଯାହା ଶୁଣିଲି ତାହା କ'ଣ ସତ ? ପ୍ରଶାସନ କ'ଣ ଏମିତି ଘନଘନ ନିଷ୍ପତ୍ତି ବଦଳାଏ ? କୋଉ ଭକ୍ତକୁ କୃପା କରିବାକୁ ଯାଇ ପ୍ରଭୁ ପ୍ରଶାସନ ମାଧ୍ୟମରେ ତାଙ୍କ ପୂର୍ବ ନିଷ୍ପତ୍ତିର ପରିବର୍ତ୍ତନ କରେଇଲେ ? ହଠାତ୍ ବିଜୁଳି ମାରିଲା ପରି ମୋ ମନରେ ଗୋଟାଏ ଚମକ ଖେଳିଗଲା । ପ୍ରଭୁ କ'ଣ ତା'ହେଲେ ମୋ ଉପରେ କୃପା କରିବାପାଇଁ ଏମିତି କରେଇଲେ ? ମୁଁ କ'ଣ ସେଇ ଭାଗ୍ୟବତୀ ? ମୋ ଭଳି ଗୋଟାଏ ଅକିଞ୍ଚନର ଡାକ ଶୁଣି ସେ ଏ ବ୍ୟବସ୍ଥା କରେଇଲେ !

ଗୋଟାଏ ମଧୁର ଶିହ୍ରଣ ମୋ ଶିରା, ଉପଶିରାରେ ଖେଳିଗଲା । କେବଳ ଜଗନ୍ନାଥଙ୍କ ମୁହଁ ଛଡ଼ା ମତେ ଆଉ କିଛି ଦେଖାଯାଉ ନଥିଲା । ଗୋଟାଏ ଯନ୍ତ୍ର ମାନବୀ ଭଳି ମୁଁ ଅନ୍ୟମାନଙ୍କୁ ଅନୁସରଣ କରୁଥାଏ ।

ରଥ ପାଖରେ ପହଞ୍ଚିବା ବେଳକୁ ସେଥିରେ ସିଡ଼ି ଲାଗି ଯାଇଥିଲା ଓ ଲୋକଙ୍କର ଏକ ବିରାଟ ଲମ୍ବା ଧାଡ଼ି ଲାଗିଥିଲା ରଥରେ ଚଢ଼ିବାକୁ । ସେ ଧାଡ଼ିରେ ଠିଆ ହେଲେ ଆମେ ପ୍ରଭୁଙ୍କୁ ଦର୍ଶନ କରୁ କରୁ ଅନେକ ରାତି ହୋଇଯିବ । ସମସ୍ତଙ୍କର ଦୁଶ୍ଚିନ୍ତା ପୁଣି ବଢ଼ିଗଲା । ମୋର କିନ୍ତୁ ବିଶ୍ୱାସ ଥାଏ ପ୍ରଭୁ ନିଶ୍ଚୟ କିଛି ଉପାୟ ଆମ ପାଇଁ କରିବେ । ସେଇ ଭିଡ଼ ଭିତରେ ହଠାତ୍ ଜଣେ ପୋଲିସ ଅଫିସର ଆମକୁ କହିଲେ - 'ଆପଣମାନେ କାହିଁକି ଠିଆ ହୋଇଛନ୍ତି ? ଜଲ୍‌ଦି ରଥ ଉପରକୁ ଉଠନ୍ତୁ । ଦେଖୁନାହାନ୍ତି ଧାଡ଼ିରେ କେତେ ଲୋକ ଅଛନ୍ତି । '

ଆମେ ଆଶ୍ଚର୍ଯ୍ୟ ହେଇ ତାଙ୍କ ମୁହଁକୁ ଚାହିଁଲୁ । ଆମେ ତ ମୋଟେ ଧାଡ଼ିରେ ଠିଆ ହୋଇନୁ । କିନ୍ତୁ ତାଙ୍କୁ କିଛି କହିବା ପୂର୍ବରୁ ସିଏ ପୁଣି ଥରେ ଆମକୁ ଲାଇନ୍ ଆଡ଼କୁ ଠେଲି ଦେଇ ରଥ ଉପରକୁ ଉଠି ଯିବାକୁ କହିଲେ । ଆମେ ଆଉ କିଛି ନଭାବି ରଥ ଉପରକୁ ଉଠିଗଲୁ । ଏଇ ଆଶାତିରିକ୍ତ ପ୍ରାପ୍ତିରେ ମୁଁ ସମ୍ପୂର୍ଣ୍ଣ ଭାବରେ ଅଭିଭୂତ ହେଇଗଲି । ରଥ ଉପରେ ପ୍ରଭୁଙ୍କ ସାମନା ଦେଇ ମୁଁ ଗଲାବେଳେ ମତେ ଲାଗିଲା ସିଏ ଯେମିତି ରଥର ସମସ୍ତ ସ୍ଥାନକୁ ଆବୋରି ବସିଛନ୍ତି । ଏତେ ବିଶାଳକାୟ ରୂପ ଯେ ମୁଁ ଜାଣି ପାରୁନଥିଲି ମୁଁ କୋଉଠି ଠିଆହେଲେ ତାଙ୍କର ଠିକ୍ ସାମନାରେ ରହିପାରିବି ଏବଂ

ତାଙ୍କୁ ସିଧାସଳଖ ଦର୍ଶନ କରିପାରିବି । ମୁଁ ତାଙ୍କ ସାମନା ଦେଇ ଚାଲିଛି ତ ଚାଲିଛି, ଠିକ୍ ମଝି ମଝିଆ ଜାଗା ଆସୁନି । ଅଦ୍ଭୁତ ସେ ଅନୁଭୂତି । ହଠାତ୍ ମତେ ଲାଗିଲା ତାଙ୍କ ଆକାର ଛୋଟ ହୋଇଗଲା । ରଥର ମଧ୍ୟସ୍ଥଳରେ ସେ ବସିଥିଲେ ଏବଂ ମୁଁ ଠିକ୍ ତାଙ୍କ ସାମନାରେ ଠିଆ ହୋଇଥିଲି । ତାଙ୍କ ଓ ମୋ ମଝିରେ ଆଉ କେହି ନଥିଲେ । ପାଦେ ପାଦେ ମୁଁ ତାଙ୍କ ଆଡ଼କୁ ଆଗେଇ ଯାଇ ତାଙ୍କୁ ସ୍ପର୍ଶ କଲି ଓ ପ୍ରଣାମ କଲି । ଅତି ଖୁସିରେ ମୋ ଆଖିରୁ ଧାର ଧାର ଲୁହ ବହି ଯାଉଥାଏ । ମୋର ସେତେବେଳର ମାନସିକ ଅବସ୍ଥା ମୁଁ ଭାଷାରେ ବୁଝେଇ ପାରିବିନି । ତାଙ୍କୁ ଛାଡ଼ି ଆସିବାକୁ ମନ ହେଉନଥିଲେ ମଧ୍ୟ ଆମକୁ ରଥ ଉପରୁ ଓହ୍ଲାଇବାକୁ ପଡ଼ିଲା ।

ଯେତେ ଭିଡ଼ ହୋଇଥିଲା ଆମେ ଭାବିଥିଲୁ ବଳଭଦ୍ର ଓ ସୁଭଦ୍ରାଙ୍କ ରଥ ଉପରକୁ ଆମେ ଉଠି ପାରିବୁନି । କିନ୍ତୁ ପ୍ରଭୁଙ୍କ ଅପାର କରୁଣା, ସେ ରଥଗୁଡ଼ିକ ଉପରକୁ ମଧ୍ୟ ଆମେ ଖୁବ୍ ସୁରୁଖୁରୁରେ ଚଢ଼ି ଯାଇ ଅତି ପାଖରୁ ଜୀଉମାନଙ୍କୁ ଦର୍ଶନ କରିପାରିଲୁ ।

ସେଇଦିନ ମୋର ପୁଣି ଥରେ ବିଶ୍ୱାସ ହୋଇଗଲା ଯେ ଆକୁଳ ହେଇ ତାଙ୍କୁ ଡାକିଲେ ସିଏ ସାଙ୍ଗେ ସାଙ୍ଗେ ଶୁଣନ୍ତି ।

ଏ/୨୮, ପି.ପି.ଏଲ୍ କଲୋନୀ
ଖଣ୍ଡଗିରି, ଆଇଗିଣିଆ
ଭୁବନେଶ୍ୱର - ୭୫୧୦୧୯
ଭ୍ରାମ୍ୟଭାଷ : ୯୪୩୭୦୧୩୦୦୩



# ଦାରୁଦିଅଁ

ମିନତୀ ମିଶ୍ର

'ତୁମେ ବାହୁ ଟେକି ଦେଲେ
ଦୁଃଖର ଡାଳ ଭାଙ୍ଗି ଭାଙ୍ଗି ପଡ଼େ
ତୁମ ଆଖି ତଟେ ତାରୁଣ୍ୟ ବସା ବାନ୍ଧିଲେ
ଲୁହର ସାଗରଟିଏ ଆପେ ଆପେ
ରଚି ହୋଇଯାଏ,
ତୁମେ ଦୀନଠି ନଥାଇ ଥାଅ ଦୈନ୍ୟରେ
ସେମିତି ବିରାଜୁ ଥାଅ କାକୁସ୍ଥିରେ
ଯେତେ ଯେତେ ଅର୍ଥମୟତାକୁ ଦେଇ
ତୁମ ପରିଚୟ
ମହକୁଛି ହୃଦୟର ଅଳିନ୍ଦ ନିଳୟ ।' (କବିତା 'କଳାଦିଅଁ')

ପରମ କାରୁଣିକ ସେ, ଅନାଥର ନାଥ, ଅଗତିର ଗତି, ଏକରେ ଅନେକ ଅନେକରେ ଏକ ନୀଳାଦ୍ରୀଶ, ଅଖଣ୍ଡ ବିଶ୍ୱର ଅଧିପତି ସେ, ବିଶ୍ୱ ନିୟନ୍ତା, ଅପଲକ ନେତ୍ରରେ ଅହରହ ଅବଲୋକନ କରୁଥା'ନ୍ତି ବ୍ରହ୍ମାଣ୍ଡର କାର୍ଯ୍ୟବିଧିକୁ । ମୂକକୁ ବାଚାଳ ପୁଣି ପଙ୍ଗୁକୁ କାର୍ଯ୍ୟଶୀଳ କରାନ୍ତି । ହୃଦୟର ସ୍ପନ୍ଦନ ସେ ନେତ୍ରର ଚାହାଣି, ରହସ୍ୟର ରହସ୍ୟ ସେ ବିସ୍ମୟର ବିସ୍ମୟ । ଦାରୁ ଖଣ୍ଡିଏରୁ ବିଗ୍ରହ ରୂପ ଧାରଣ କରି ସେ ଦାରୁଦିଅଁ, ଚକାନୟନ, ବଳିୟାର ଭୁଜ, କାଳିଆ ସାଆନ୍ତ, ତ୍ରିଭୁବନର ମଣିମା, ଦ୍ରବକୁ ଦାରୁ ପୁଣି ଦାରୁକୁ ଦ୍ରବ ପାଲଟାଇବାର ସାମର୍ଥ୍ୟ ରଖୁଥିବା ଅଟଳ-ଅଚଳ ମହାମେରୁ, ମହାମହିମ, ହୃଦୟର ଦିଅଁ ସେ, ମନର ମହାପ୍ରଭୁ, ସବୁରି ମନରେ ଆସ୍ଥାନ ପାତିଥିବା, ମନକଥାକୁ ବୁଝିପାରି ମନ ନେଇ ଫଳ ଯାଚୁଥିବା ଚିର ଉଦାର ଜଗତପିତା ଜଗନ୍ନାଥ ।

ପ୍ରତିଟି ଓଡ଼ିଆର ପରମ ବିଶ୍ୱାସ ସେ କୁଳଦେବତା । ସୁଖ-ଦୁଃଖ, ହସ-କାନ୍ଦର ସାକ୍ଷୀ ଓ ବିଧାୟକ । ତାଙ୍କୁ ନେଇ ଅଜସ୍ର ଅନୁଭବ, ଅସରନ୍ତି କାହାଣୀ, ଅଗଣିତ କିମ୍ବଦନ୍ତୀ, ପରମ ପୁରୁଷ ସେ ପୁରୁଷୋତ୍ତମ । ଓଡ଼ିଆର ଜୀବନବ୍ୟାପୀ ସାଧନା ସେ । ପୁଣି ସିଦ୍ଧି ସେ । ଅତି ଆପଣାର ଡାକରେ ସେ ଆଜ୍ଞା, ଆପଣରୁ 'ତୁ' ଡାକକୁ ଓହ୍ଲାଇ ଆସନ୍ତି । ଯୁଗେ ଯୁଗେ ଭକ୍ତର ରକ୍ଷା ଲାଗି ଦୁଇବାହୁ ପ୍ରସାରି ଦିଅନ୍ତି । ଜଗନ୍ନାଥ ଶ୍ରଦ୍ଧାର ଆବେଗର ଦିଅଁ । ଭକ୍ତର ଆବେଗମୟ ଡାକରେ ରତ୍ନ ସିଂହାସନ ତେଜି ବଡ଼ଦାଣ୍ଡକୁ ଓହ୍ଲାଇ ଆସୁଥିବା ଦିଅଁ, ଫୁଲ, ଚନ୍ଦନ, ତୁଳସୀ ନିଅନ୍ତି, ଗାଳିକୁ ବି ଗଳାମାଳି କରି କୋଳେଇ ନିଅନ୍ତି । ସେହି ମହାବାହୁଙ୍କୁ ନେଇ ପ୍ରତିଟି ଓଡ଼ିଆ ଜୀବନରେ କିଛି ନା କିଛି ମହାର୍ଘ ଅନୁଭୂତି ସାଇତା ହୋଇଥାଏ, ବାସ ଚନ୍ଦନ ପରି ତାହା ବେଳ ଅବେଳରେ

ମନକୁ ମହକାଇ ଦେଇଯାଏ । ପ୍ରଭୁଙ୍କ ଉପରେ ଅଖଣ୍ଡ ବିଶ୍ୱାସ ଓ ଭରସାକୁ ନେଇ ଅନେକ କାହାଣୀ ଆପେ ଆପେ ଉତୁରି ଆସେ ।

ମୁଁ ଭାରତୀୟ ଷ୍ଟେଟ୍ ବ୍ୟାଙ୍କର ଜଣେ କର୍ମଚାରୀ ହେଲେ ମଧ୍ୟ କବିତା, ଗୀତି କବିତା ଓ ଭଜନ ଲେଖିବାରେ ରୁଚି ରଖେ । ଜଗନ୍ନାଥଙ୍କୁ ନେଇ ଲେଖିଥିବା ଭଜନ ସବୁକୁ ନେଇ 'ମୁଁ କାଚ ତୁ ମାଣିକ' ନାମରେ ଭକ୍ତିଗୀତ ସଂକଳନଟିଏ ଭୁବନେଶ୍ୱରର ମହାବୀର ପ୍ରକାଶନ ଦ୍ୱାରା ପ୍ରକାଶିତ ହୋଇଛି । ଏହା ୨୦୧୨ ମସିହାର କଥା । ଆମ ଷ୍ଟେଟ୍ ବ୍ୟାଙ୍କରେ 'ନିନାଦ' ନାମରେ ସଙ୍ଗୀତ ଅନୁଷ୍ଠାନଟିଏ ଗଠିତ ହୋଇଛି । ଷ୍ଟେଟ୍ ବ୍ୟାଙ୍କର କର୍ମଚାରୀ ତଥା ସେମାନଙ୍କର ପରିବାରରେ ସଙ୍ଗୀତ ପ୍ରତି ଆଗ୍ରହ ଥିବା ଓ ଗାଇ ପାରୁଥିବା ସଦସ୍ୟମାନଙ୍କୁ ନେଇ ବ୍ୟାଙ୍କର ବିଭିନ୍ନ କାର୍ଯ୍ୟକ୍ରମରେ 'ନିନାଦ' ତରଫରୁ ସଙ୍ଗୀତ ପରିବେଷଣ କରାଯାଏ । ଶ୍ରୀଯୁକ୍ତ ରୁଦ୍ରପ୍ରସାଦ ନାୟକ (ରୁଦ୍ର ଭାଇ)ଙ୍କ ପରିଚାଳନାରେ ଏହି ଅନୁଷ୍ଠାନଟି ବେଶ୍ ଜଣାଶୁଣା । ୨୦୧୨ ମସିହାର ଆରମ୍ଭରେ ମୋର କିଛି ଗୀତକୁ ନେଇ ରୁଦ୍ର ନାୟକ ଓ ତପୁ ମିଶ୍ରଙ୍କ ଯୁଗଳ କଣ୍ଠଦାନରେ 'ଫୁଲ ଫଗୁଣ' ନାମରେ ସୁଗମ ସଙ୍ଗୀତର ସିଡ଼ିଟିଏ ମୁକ୍ତିଲାଭ କରିସାରିଥାଏ । ଜଗନ୍ନାଥଙ୍କର କିଛି ଭଜନକୁ ନେଇ 'ନିନାଦ'ର ସଦସ୍ୟମାନଙ୍କ ସହ ସେ 'ରଥେ କିଏସେ ଆସେଲୋ' ନାମରେ ଆଉ ଗୋଟିଏ ଭଜନ ସିଡ଼ି ପ୍ରସ୍ତୁତ କରିବାର ଯୋଜନା ରଖିଲେ । ଏହା ମୋ ପାଇଁ ପରମ ଆନନ୍ଦ ଓ ସୌଭାଗ୍ୟର କଥା । ମୁଁ ପ୍ରାୟ ଲକ୍ଷ୍ୟ କରିଛି, ଗୀତ ଗାଇ ଜାଣିଥିବା ଲୋକ ହିଁ ଗୀତ ଲେଖିବାରେ ସଫଳ । ସେହି ଅନୁସାରେ ମୁଁ ମଧ୍ୟ ଗାଇପାରେ ଯଦିଓ ମୋର ଆନୁଷ୍ଠାନିକ ଭାବରେ କୌଣସି ସଙ୍ଗୀତ ଶିକ୍ଷା ନାହିଁ, କେବଳ ମନ ଫୁଲାଣିଆ ଗୀତ ଗାଇବା ପରି ମୁଁ ଗାଏ, ତେବେ ରୁଦ୍ର ଭାଇ ଇଚ୍ଛାପ୍ରକାଶ କଲେ ମୁଁ ମଧ୍ୟ ସେହି ସିଡ଼ିରେ ଗୋଟିଏ ଭଜନ ଗାଇବି । ଆନନ୍ଦରେ ମୋ ପାଦ ତଳେ ନ ଲାଗିଲେ ବି ଏକଥା ଶୁଣି ମୋ ଭିତରେ ଅଜଣା ଭୟ କାୟାବିସ୍ତାର କରି ଚାଲିଥାଏ । କେଉଁମାନେ କେଉଁ ଗୀତ ଗାଇବେ ତାହାର ଏକ ତାଲିକା ପ୍ରସ୍ତୁତ ହେଲା, ମୋ ନାଆଁ ମଧ୍ୟ ସେଥିରେ ଅନ୍ତର୍ଭୁକ୍ତ କରାଗଲା । ଗୀତ (ଭଜନ) ମାନଙ୍କର ଲାଗି ସୁର ପ୍ରସ୍ତୁତ କରାଗଲା ଏବଂ ପ୍ରତି ଗାୟକଙ୍କୁ ସେ ଗାଇବା ଗୀତର ଗୋଟିଏ ଗୋଟିଏ ପୂର୍ବ ପ୍ରସ୍ତୁତ ସୁର ଥିବା ସିଡ଼ି ପ୍ରଦାନ କରାଗଲା, ଯାହାଫଳରେ ସେ ଭଲ ଭାବରେ ଅଭ୍ୟାସ କରିପାରିବେ । ତେବେ ଏସବୁ କାର୍ଯ୍ୟ ମାତ୍ର ଦୁଇଦିନର ବ୍ୟବଧାନରେ କରାଗଲା । କାରଣ ରେକର୍ଡ଼ିଂ ଷ୍ଟୁଡ଼ିଓ ଅନ୍ୟଦିନ ମାନଙ୍କ ପାଇଁ ବୁକିଂ ହୋଇ ସାରିଥିଲା । ଆମକୁ ଯେଉଁଦିନ ସଙ୍ଗୀତ ଅଭ୍ୟାସ ପାଇଁ ସିଡ଼ି ଦିଆଗଲା, ତା'ର ଦିନକ ପରେ ରେକର୍ଡ଼ିଂ କରାଯିବା କଥା ସ୍ଥିର କରାଗଲା । ଏ ଘୋଷଣାଟି ମୋ ପାଇଁ ନିତାନ୍ତ ଅପ୍ରତ୍ୟାଶିତ ଥିଲା । କାରଣ ଜୁନ୍ ୨୪ ତାରିଖରେ ଆମ ପରିବାରରେ ଗୋଟିଏ ବିବାହ ଉତ୍ସବ ଥାଏ ଆଉ ସେଇଦିନ ହିଁ ଥାଏ ରେକର୍ଡ଼ିଂ । ମୋତେ ଅଭ୍ୟାସ କରିବାର ସୁଯୋଗ

ମିଳିଲାନି । କାରଣ ବାହାଘରର କିଣାକିଣି, ଯିବା ଆସିବା ଏ ସବୁରେ ମୋର ଉପସ୍ଥିତି ଲୋଡ଼ା ହେଉଥାଏ । ମୁଁ ମଧ୍ୟ ମନା କରିପାରୁନଥାଏ । ଧୀରେ ଧୀରେ ମୋ ଭିତରେ ଛାନିଆଁ ଭାବ ଜମାଟ ବାନ୍ଧୁଥାଏ । ସ୍ଥିର କରାଗଲା ମୁଁ ବରଯାତ୍ରୀଙ୍କ ସହ ଯାଇ ବର, କନ୍ୟାର ଘରେ ପହଞ୍ଚିବା ପରେ ହିଁ ଷ୍ଟୁଡ଼ିଓକୁ ରେକର୍ଡ଼ିଂ ପାଇଁ ଚାଲିଆସିବି । ସେହି ସମୟରେ ମୋର ମାନସିକ ଅବସ୍ଥା ଲକ୍ଷ୍ୟ କରିବାର କଥା । ଗହଳି, ବ୍ୟସ୍ତତା ତଥା ଛାନିଆଁ ଭାବ ଯୋଗୁଁ ମୁଁ ଆଗଦିନ ରାତିରେ ଭଲକରି ଶୋଇ ପାରିନଥାଏ । ସବୁକଥା 'କଳାଦିଅଁ'ଙ୍କ ଉପରେ ଛାଡ଼ି ଦେଇଥାଏ । ଯଦି ସିଏ ମୁଁ ଗୀତଟିଏ ଗାଇବାର ସୁଯୋଗ ସୃଷ୍ଟି କରିଛନ୍ତି, ସିଏ ହିଁ ମୋ ଭୁଲ୍‌କୁ ସଜାଡ଼ି ନେବେ । ଏମିତି ଭାବନାଟିଏ ବାର ବାର ମନକୁ ଆସୁଥାଏ ।

ବିବାହ ଦିନ ସକାଳ ବେଳା ଯଥାରୀତି ମୁତାବକ ବର ଓ ବରଯାତ୍ରୀର ପଟୁଆର ଘରୁ କିଛି ବିଳମ୍ବରେ ବାହାରିଲା । ପ୍ରାୟତଃ ସବୁ ବିବାହ ଉତ୍ସବରେ ଏହାହିଁ ହୁଏ । ମୁଁ କିନ୍ତୁ ସଂପୂର୍ଣ୍ଣ ଭାବରେ ଏହାର ଆନନ୍ଦ ଅନୁଭବ କରିପାରୁନଥାଏ । କନ୍ୟାଘର ନିକଟରେ ପହଞ୍ଚିବା ବେଳକୁ ସମୟ ଦିନ ୨ଟା । କନ୍ୟାଘରକୁ ନ ଯାଇ କିମ୍ବା କୌଣସି ଜଳଯୋଗ ନକରି ମୁଁ ଷ୍ଟୁଡ଼ିଓ ଅଭିମୁଖେ ଚାଲିଲି । ପ୍ରବଳ ଭୋକ ସତ୍ତ୍ୱେ ସମୟ ନଥିବାରୁ ମୋତେ ଶୀଘ୍ର ପହଞ୍ଚିବାକୁ ପଡ଼ିଲା, କାରଣ ଷ୍ଟୁଡ଼ିଓଟି ଦିନ ୩ଟା ଯାଏଁ ହିଁ ବୁକିଂ କରାଯାଇଥିଲା । ଏତେସବୁ ସମସ୍ୟା ଘେରରେ ମୁଁ କାହିଁକି ଅନିଚ୍ଛା ସତ୍ତ୍ୱେ ଛନ୍ଦି ହୋଇଯାଉଛି ଏମିତି ଚିନ୍ତା ମନକୁ ବହୁବାର ଘାରୁଥାଏ । ଷ୍ଟୁଡ଼ିଓରେ ପହଞ୍ଚିବା ବେଳକୁ ସମୟ ୩ଟା ପାଖାପାଖି । 'ନିନାଦ'ର ଅନ୍ୟମାନେ ଭଜନରେ ନିଜ ନିଜର କଣ୍ଠଦାନ କରିସାରିଥା'ନ୍ତି । କେତେଜଣ ଘରକୁ ଫେରିସାରିଥା'ନ୍ତି । ଜଣେ ଦୁଇଜଣଙ୍କ ସହ ରୁଦ୍ରଭାଇ ମୋତେ ଅପେକ୍ଷା କରିଥା'ନ୍ତି । ସେହି ସମୟରେ ମୋର ଛାନିଆଁ ଭାବ ବହୁଗୁଣିତ ହେଇଯାଇଥାଏ । ଏପରିକି ଭଜନର ସୁର ମଧ୍ୟ ମନେ ପଡୁନଥାଏ । ସେହି ରେକର୍ଡ଼ିଂ ରୁମ୍‌ରେ ପ୍ରବେଶ କରିବା ବୋଧହୁଏ ମୋ ଜୀବନରେ ପ୍ରଥମ ଓ ଶେଷ । ମୋତେ କ'ଣ ଆଉ କେବେ ସୁଯୋଗ ମିଳିବ ? ଏମିତି ଗୋଟାଏ ଅଭିମାନ ମିଶା କାନ୍ଦ କାନ୍ଦ ଭାବ ମନକୁ ଆଚ୍ଛନ୍ନ କରି ରଖିଥାଏ । ସମସ୍ତଙ୍କର ରେକର୍ଡ଼ିଂ ସରିଥାଏ । ତେଣୁ ଆଉ କାହାର ରେକର୍ଡ଼ିଂ ଦେଖି ସାହସ ସଞ୍ଚୟ କରିବାର ଅବସର ହିଁ ନଥାଏ । ପ୍ରଥମେ ସୁର ମନେ ପଡ଼ିଲାନି, ତା'ପରେ ରୁଦ୍ରଭାଇ ମନେ ପକାଇ ଦେବାରୁ ମନେ ପଡ଼ିଲା । ମୁଁ ସିନା ବିନା ବାଦ୍ୟଯନ୍ତ୍ରରେ ସୁର ଧରି ଗୀତ ଗାଇପାରେ, କିନ୍ତୁ କେଉଁଠାରେ ଗୀତ ସରି, ତା'ପରେ ବାଜା ଆରମ୍ଭ ଏସବୁ କଥା ବାରମ୍ବାର ଭୁଲିଯାଉଥାଏ । ଏମିତି ଦ୍ୱନ୍ଦ୍ୱ, ଦୁଃଖ, ହତାଶା ଓ ଅଭିମାନ ଭିତରେ ରେକର୍ଡ଼ିଂ ସରିଲା । ବାହାରକୁ ଆସିବା ବେଳକୁ ମୋ ମନ ଦୁଃଖରେ ଭରି ହୋଇଯାଇଥାଏ । ମୁଁ ଭଲ ଗାଇ ପାରିଲିନି ବୋଲି ଅନ୍ୟମାନେ ମତ ଦେଲେ । ମୋର ମନସ୍ତାପ ଦ୍ୱିଗୁଣିତ ହୋଇଗଲା । ସେଦିନ ରାତିରେ ଘରେ ହେଉଥିବା ଭୋଜିକୁ ମଧ୍ୟ ମୁଁ ଉପଭୋଗ କରିପାରିଲିନି । ସବୁବେଳେ ଭାବିହେଲି 'ପ୍ରଭୁ ! ମାତ୍ର ଗୋଟିଏ ଥର

ଗାଇବାର ସୁଯୋଗ ପାଇଥିଲି, ତାକୁ ମଧ୍ଯ ହତାଦର କଲା ପରି ବିନିଯୋଗ କଲି । ଗାଇବା ଭଲ ନ ହୋଇଥିଲେ ମୁହଁ ପୋଡ଼ିଯିବା ପରି ଲାଗିବ । କାହିଁକି ସଙ୍ଗୀତ ଶିକ୍ଷା ନ ଥାଇ ସିଡ଼ିରେ ଗୀତ ଗାଇବା ପାଇଁ ମୁଁ ରାଜି ହେଉଥିଲି ? ଯିଏ ବି ଶୁଣିବ ପରସ୍ତେ ହସି ଉପହାସ କରିବ, ଲାଜରେ ମୁଁ ମରିଯାଉଥିବି ।'

ଏହିପରି ୫-୬ ଦିନ ଚାଲିଗଲା । ବନ୍ଧୁ ଗହଳି କମିଗଲା । ଦିନେ ମୁଁ ବଡ଼ନାନୀ ଘରୁ ପୁତୁରାର ଗାଡ଼ିରେ ଘରକୁ ଫେରୁଛି ବାଟରେ ରୁଦ୍ରଭାଇଙ୍କର ଫୋନ ଆସିଲା । ମୋବାଇଲ୍‌ରେ ନାଆଁ ଦେଖି ମୁଁ ଦୁଃଖରେ ଭାଙ୍ଗିପଡ଼ିଲି । ପୁଣି ଥରେ ନିଜର ଅପାରଗତା ପାଇଁ ଦୁଃଖ ଆସିଲା । ଦୁଇଦିନ ତଳେ ସିଡ଼ିର ସଂପୂର୍ଣ୍ଣ କପିଟିଏ ସେ ମୋତେ ଦେଇଥିଲେ, କିନ୍ତୁ ତାହା ସେମିତି ଭ୍ୟାନିଟ୍ ଭିତରେ ସାଇତା ହେବାପରି ଥିଲା । ଶୁଣିବା କଥା ଭାବିବା ବେଳକୁ ମୋ ଛାତି ଥରି ଉଠୁଥିଲା ଅପ୍ରସ୍ତୁତ ଭାବରେ । ଶୁଣିବା ତ ଦୂରର କଥା ମୁଁ ସେ ସିଡ଼ିକୁ ଭଲ କରି ନ ଦେଖି ରଖି ଦେଇଥିଲି । ଅନ୍ୟମନସ୍କ ଭାବରେ ମୁଁ ଫୋନ ଧରିଲି । ସେ ପାଖରୁ କଣ୍ଠସ୍ୱର ଶୁଭିଲା, ସିଡ଼ି ଶୁଣିଲେ ? ମୁଁ ଦୁଃଖରେ ଶୁଣିନି, ସମୟ କରି ଶୁଣିବି ବୋଲି ଉତ୍ତର ଦେଲି । କାରଣ ଭଲ କରି ଗାଇନଥିବା ଗୀତକୁ ଶୁଣିବା ଲାଗି ମୋ ହୃଦୟ ଯେମିତି ମୋତେ ଅନୁମତି ଦେଉନଥିଲା, କିନ୍ତୁ ସେ ପାଖରୁ ଶୁଣାଗଲା ଏବେ ଶୁଣନ୍ତୁ, ଆପଣଙ୍କର ଗୀତ ଭଲ ଶୁଭୁଛି । ମୋ ମନରେ ଝଲକାଏ ଖୁସି ବିଜୁଳି ପରି ଚହଟିଗଲା, କିନ୍ତୁ ସନ୍ଦେହ ତୁଟିଲାନି । ମୁଁ ଭାବିଲି ବୋଧହୁଏ ମୋତେ ଥଟ୍ଟା କରୁଛନ୍ତି । କିନ୍ତୁ ସେ ସେଇକଥାକୁ ଥରେ ଦୁଇଥର ଦୋହରାଇବା ପରେ ଭ୍ୟାନିଟ୍‌ରୁ ସିଡ଼ିଟି ବାହାର କରି ମଥାରେ ଛୁଆଁଇଲି । ପୁତୁରା ଗାଡ଼ିର ଟେପ୍‌ରେ ସିଡ଼ିଟିକୁ ବଜାଇଲା । ମୋ ସ୍ୱରର ଗୀତଟି ଶୁଭିବା ମାତ୍ରେ ମୋ ଦୁଇ ଆଖି ଲୁହରେ ଭର୍ତ୍ତି ହୋଇଗଲା । ଯଦିଓ ସବୁତକ ଭଜନ ମୋ ଲେଖା, ସେଇ ମୁହୂର୍ତ୍ତରେ ସବୁତକ ମୋତେ ଦିବ୍ୟ ଓ ମହାର୍ଘ ମନେ ହେଲା । ଗୀତ ସବୁ ବାଜିସାରିବା ଯାଏଁ ମୋ ଆଖିରୁ ମୋ ଅଜାଣତରେ ଲୁହ ବୋହି ଚାଲିଥାଏ । ମନେହେଲା ଗୀତଟିକୁ ପ୍ରକୃତରେ ମୁଁ ଠିକ୍‌ରେ ଗାଇନଥିଲି । ପ୍ରଭୁ ତାଙ୍କର ଅପାର କରୁଣା ଓ ଅହେତୁକ କୃପାବଳରେ ତାକୁ ସଜାଡ଼ି ଦେଲେ, ନଚେତ୍ ଭଲ ଗାଇନାହିଁ ବୋଲି ସମସ୍ତେ କହିଥିବା ସ୍ଥଳେ ଗୀତଟି କିପରି ସଜାଡ଼ି ହୋଇଗଲା । ଭଜନଟି ଥିଲା ଏହିପରି - 'ପହୁଡ଼ ଭାଙ୍ଗୁ ହେ ମଣିମା ! ଏଥରକ ତୁଟୁ ଅଳସ, ରାତି ଏବେ ପାହି ପାହି ଆସିଲାଣି ଲିଭିଲାଣି ତାରାଙ୍କ ହସ' ସେଇ କଇଁଫୁଲିଆ ହସର ଦିଅଁଙ୍କୁ, ମଲ୍ଲୀମାଳା ରସିକ ଗୋସେଇଁ, ଅହେତୁକ କୃପା ଭଣ୍ଡାରର ମଣିମାଙ୍କୁ ବାର ବାର ଭକ୍ତିପୂତ ପ୍ରଣାମ ।

ପ୍ଲଟ୍ ନଂ - ୧୯୫/୨୩୧୨
ମେ ଫେୟାର ରୋଡ଼, ଜୟଦେବ ବିହାର
ଭୁବନେଶ୍ୱର - ୭୫୧୦୧୩
ଭ୍ରାମ୍ୟଭାଷ : ୯୪୩୯୫୩୭୭୦୦



# ଭକ୍ତପ୍ରିୟ ପ୍ରଭୁ ଶ୍ରୀଜଗନ୍ନାଥ

## କୁମୁଦିନୀ ପଣ୍ଡା

ଗଲାବର୍ଷର ଘଟଣା । ରାତି ସାଢ଼େ ଏଗାରଟାରେ ମୋର ସାନଭାଇ ପାରଳାଖେମୁଣ୍ଡିରୁ ଫୋନ କଲା, 'ବୋଉ ଜିଦ୍ ଧରି ବସିଛି ପୁରୀ ଯାଇ ଜଗନ୍ନାଥ ମହାପ୍ରଭୁଙ୍କୁ ଦେଖିବ । ସେହି ଜିଦ୍‌ରେ ଆଜି ଦିନସାରା ଖାଇନାହିଁ, ଖାଲି କାନ୍ଦୁଛି ।' ବୋଉକୁ ଫୋନଟା ଦେବାପାଇଁ କହିଲି, ବୋଉ ଫୋନ ଧରି ଖାଲି କାନ୍ଦିଲା । ବହୁ କଷ୍ଟରେ କହିଲା, 'ମୋତେ ଟିକେ ପୁରୀ ନେବନି ? ଜଗନ୍ନାଥଙ୍କ ଦର୍ଶନ କରେଇବନି ?' ମୁଁ ତା' ମନର କଥା ବୁଝି ପାରିଲି । କହିଲି, 'ବୋଉ ତୁ ଜଗନ୍ନାଥଙ୍କ ଦର୍ଶନ କରିବୁ, ନିଶ୍ଚୟ କରିବୁ । ଆମେ ଅତି ଶୀଘ୍ର ସେ ବ୍ୟବସ୍ଥା କରିବୁ । ତୁ କିନ୍ତୁ ଏବେ ଆଗେ ଖାଇଦେ ଆଉ ଶାନ୍ତିରେ ଶୋଇଯା । ସକାଳେ ମୁଁ ସବୁ ବ୍ୟବସ୍ଥା କରି ତୋ ସହ କଥା ହେବି ।' ଭାଇକୁ ବ୍ୟସ୍ତ ନ ହେବା ପାଇଁ କହି ଫୋନ ରଖିଦେଲି । ମୋ ସାମ୍ନାରେ ଥିବା ଜଗନ୍ନାଥ ମହାପ୍ରଭୁଙ୍କ ଫଟୋକୁ ଦେଖି ବୋଉର ସମସ୍ୟାକୁ ତାଙ୍କ ପାଦ ତଳେ ସମର୍ପି ଦେଇ ତାଙ୍କୁ ତାଙ୍କ ଭକ୍ତର କାମନା ପୂରଣ ପାଇଁ ପ୍ରାର୍ଥନା କଲି ।

ବାପାଙ୍କ ଚାକିରି ଆରମ୍ଭରେ ସେ ପୁରୀରେ ଜଣେ ପୋଲିସ ଅଫିସର ଥିଲେ । ପୁରୀ ଦୋଳମଣ୍ଡପ ସାହିରେ ଗୋଟିଏ ସୁଉଚ୍ଚ ପିଣ୍ଡା ଥିବା ଘରେ ଆମେ ରହୁଥିଲୁ । ସେତେବେଳେ ମୋର ବୟସ ତିନି କି ଚାରି । ସେ ପିଣ୍ଡା ଉପରେ ଥିଲା ଗୋଟିଏ ବଡ଼ ତୁଳସୀ ଚଉରା । କାର୍ତ୍ତିକ ମାସ ଆରମ୍ଭ ନ ହେଉଣୁ ଆମଘରେ ମୋର ଜେଜେମା, ବୋଉର ଖୁଡ଼ୀଶାଶୁ, ମାଉସୀ ଶାଶୁ, ପିଉସୀ ଶାଶୁ ମାନଙ୍କର ଭିଡ଼ ଜମି ଉଠୁଥିଲା । ସେମାନେ ଏକାଠି ଚଉରା ପୂଜା କରନ୍ତି । ମନ୍ଦିର ଦର୍ଶନ କରନ୍ତି । ବାପା ମାସକ ପାଇଁ ସେମାନଙ୍କ ନିମନ୍ତେ ମହାପ୍ରସାଦ ବରାଦ କରି ଦେଉଥିଲେ । ମନ୍ଦିରରୁ ଫେରି ଜେଜେମା' ମାନେ ମହାପ୍ରସାଦ ଖାଇ, ଶୋଇ ଉଠି ପୁରାଣ ପାଠ କରନ୍ତି । ଏ ସବୁର ପ୍ରଭାବ ମୋ ବୋଉ ଉପରେ ଖୁବ୍ ପଡ଼ିଥିଲା । ସେ ଜଗନ୍ନାଥଙ୍କ ପରମ ଭକ୍ତ ହୋଇଗଲା । କଣିକାଏ ମହାପ୍ରସାଦରେ ତା'ମନରେ ଖେଳୁଥିଲା ଆନନ୍ଦର ଜୁଆର । ଜଗନ୍ନାଥଙ୍କ ଦର୍ଶନରେ ସେ ଭାବବିହ୍ୱଳ ହୋଇ ଯାଉଥିଲା । ଶ୍ୱାସ ପ୍ରଶ୍ୱାସ ପରି ଜଗନ୍ନାଥ ତା'ର ଅନ୍ତରଙ୍ଗ ପାଲଟି ଯାଇଥିଲେ । କିଛିବର୍ଷ ପରେ ବାପାଙ୍କର ବଦଳି ହୋଇଯାଏ କଟକ, ତା'ପରେ ଭୁବନେଶ୍ୱର, ତା'ପରେ ରାଉରକେଲା । କିନ୍ତୁ ଯେତେବେଳେ ସୁବିଧା ପାଏ ବୋଉ ତା'ର ଜଗନ୍ନାଥଙ୍କୁ ଦର୍ଶନ କରିଥାଏ ।

ବୋଉ ଏବେ ପଞ୍ଚାଅଶି ବର୍ଷର ବୃଦ୍ଧା । ବାପାଙ୍କ ଦେହାନ୍ତ ବହୁବର୍ଷ ତଳୁ ହୋଇ ଯାଇଛି । ସେ ରହୁଥିଲା ପାରଳାଖେମୁଣ୍ଡିରେ । ମୋ ଭାଇ ଓ ଭାଉଜ ରହୁଥିଲେ ତା' ପାଖରେ । ଭାଇ ସେଠି ଚାକିରି କରୁଛି । ବୋଉ ଆଉ ଚାଲିବୁଲି ପାରୁନି । ହ୍ୱିଲ୍ ଚେୟାରରେ ବସି ଘର ଭିତରେ ଯାହାଟିକେ ବୁଲୁଛି । ତା'ର ସେବା କରିବାପାଇଁ ରହିଛି କାଞ୍ଚନ । ସେହି ଗାଁର ଗୋଟିଏ ସ୍ତ୍ରୀ ଲୋକ । ଏହି ଅବସ୍ଥାରେ ବୋଉକୁ ପୁରୀ ନେଇ ଜଗନ୍ନାଥ ଦର୍ଶନ କେମିତି କରାଇବା ତାହା ମୋ ପାଇଁ ଚିନ୍ତାର ବିଷୟ ହେଲା । ମୋତେ ଲାଗୁଥିଲା, ବୋଉର ଏହା ବୋଧହୁଏ ଶେଷ ଇଚ୍ଛା । ବୋଉର ଆତୁର ଆତ୍ମା ଆଶ୍ରୟ ଲୋଡ଼ୁଥିଲା ଯେମିତି ଜଗନ୍ନାଥଙ୍କ ଅଭୟ-ଚରଣ ତଳେ ।

ସକାଳୁ ସକାଳୁ ମୁଁ ଭାଇକୁ ଫୋନ କରିଦେଲି ବୋଉକୁ କାରରେ ନେଇ ଆସିବାକୁ ଭୁବନେଶ୍ୱର ଆମ ପାଖକୁ । ମୋ ଭାଇ ଭାଉଜ କାଞ୍ଚନକୁ ଆଉ ବୋଉକୁ ନେଇ ଆମଘରେ ସଂଧ୍ୟା ଛ'ଟାରେ ପହଞ୍ଚିଗଲେ । ଗାଡ଼ିର ଡିକିରେ ବୋଉର ହ୍ୱିଲ୍ ଚେୟାରଟା ମଧ୍ୟ ନେଇ ଆସିଥିଲେ । ତା'ପରଦିନ ସକାଳେ ଟ୍ରାଭେଲସ୍‌ରୁ ଗୋଟିଏ ଇନୋଭା ଗାଡ଼ି ବୁକ୍ କରିଦେଲୁ । ମୋର ଆଉଜଣେ ସାନଭାଇ ମଧ୍ୟ ପହଞ୍ଚିଗଲା । କଥାହେଲା ମଧ୍ୟାହ୍ନ ଭୋଜନ ସାରି ତିନିଟା ବେଳକୁ ବାହାରିଗଲେ, ଠାକୁରଙ୍କୁ ଦର୍ଶନ କରି ବେଢ଼ା ବୁଲି ରାତି ଦଶଟା ସୁଦ୍ଧା ଭୁବନେଶ୍ୱର ଫେରି ଆସିବା । ସେ ହ୍ୱିଲ୍ ଚେୟାର ଅତି ପୁରୁଣା ହୋଇଯାଇଥିବାରୁ, ମନ୍ଦିର ଭିତରକୁ କାଳେ ଅନୁମତି ଦେବେନି ଭାବି ଆମେ ଗୋଟେ ନୂଆ ହ୍ୱିଲ୍ ଚେୟାର ମଧ୍ୟ କିଣିଦେଲୁ । ଗାଡ଼ିରେ ସମସ୍ତଙ୍କୁ ଯିବାକୁ ଜାଗା କିନ୍ତୁ ହେଲାନି । ବୋଉକୁ ଟିକେ ସୁବିଧାରେ ନେବାକୁ ତ ହେବ ! ଆମେ ଭାବିଲୁ କାଞ୍ଚନ ନ ଗଲେ ଚଳିବ । କିନ୍ତୁ ଏତେ ଦୂରରୁ ବହୁ ଆଶା ନେଇ ସେ ଆସିଛି । ତା' ମନ ତ ନିଶ୍ଚୟ ହେଉଥିବ ପ୍ରଭୁଙ୍କୁ ଦର୍ଶନ କରିବାକୁ । ତେଣୁ ମୁଁ ରହିଗଲି, ସେମାନେ ବାହାରିଗଲେ ଠିକ୍ ସମୟରେ । ବାଟରେ ରହି ରହି ଟିକେ ଯିବାକୁ ପଡ଼ିଲା । ଡ୍ରାଇଭର ଗାଡ଼ିକୁ ନେଇ ଦକ୍ଷିଣ ଦ୍ୱାର ପାଖରେ ରଖିଦେଲେ । ବୋଉକୁ ଗାଡ଼ିରୁ ଉଠେଇ ହ୍ୱିଲ୍ ଚେୟାରରେ ବସେଇ ଦୁଇ ଭାଇ ଦୁଇପଟୁ ଟେକି ନେଇ ପାହାଚ ଚଢ଼ିଗଲେ । ପଛେ ପଛେ ଭାଉଜଙ୍କ ଆଉ କାଞ୍ଚନ ଚାଲୁଥା'ନ୍ତି । ସଞ୍ଜ ହୋଇ ଆସୁଥାଏ । ତେଣୁ ମନ୍ଦିର ଭିତରେ ଭିଡ଼ ଜମି ଉଠୁଥାଏ । ଆଉ ମୁଁ ମୋ ଠାକୁର ଘରେ ଜଗନ୍ନାଥ ପ୍ରଭୁଙ୍କୁ ଆକୁଳ ହୋଇ ଡାକୁଥାଏ, ବୋଉର ମନସ୍କାମନା ପୂରଣ କରିଦେବାକୁ । ସେମାନେ ବେଢ଼ା ବୁଲି ବାହାରୁ ବାହାରୁ ବୋଉକୁ ପାର୍ଶ୍ୱ ଦେବଦେବୀମାନଙ୍କ ଦର୍ଶନ କରାଇଦେଲେ । ଶେଷରେ ଆସିଲେ ମୁକ୍ତିମଣ୍ଡପ ପାଖକୁ । ବୋଉକୁ ହ୍ୱିଲ୍ ଚେୟାରରେ ଟେକି ଟେକି ନେଇ ଗରୁଡ଼ ଖମ୍ବ ପାଖକୁ ପ୍ରଥମେ ଯାଇ ତା'ପରେ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ମା'

ସୁଭଦ୍ରାଙ୍କ ପାଖକୁ ଯାଇ ଦର୍ଶନ କରିବାର ଆଶା ସେମାନଙ୍କର ମଉଳିଗଲା । ଗରୁଡ଼ ଖମ୍ବ ପାଖରେ ସେହି ସମୟର ଭିଡ଼କୁ ଦେଖି ନିରାଶ ହୋଇ ଭାଇ ମନ୍ଦିର ବାହାରୁ ମୋତେ ଫୋନ କରି ଜଣେଇଥିଲା । ମୁଁ ତାକୁ ଧୈର୍ଯ୍ୟର ସହ ଭିଡ଼ କମିବା ପର୍ଯ୍ୟନ୍ତ ଅପେକ୍ଷା କରିବାକୁ କହି ପ୍ରଭୁଙ୍କୁ ପ୍ରାର୍ଥନା କରୁଥାଏ । ଭିଡ଼ କମିବାର ହେଲାନି ବରଂ ବଢ଼ି ଚାଲିଲା । ବୋଉର ଆଖିରୁ ସେତେବେଳେ ଲୁହ ଝରି ଯାଉଥାଏ । ଏହି ସମୟରେ ଜଣେ ସ୍ତ୍ରୀ ଲୋକ ହଠାତ୍ ଆସି ଏମାନଙ୍କୁ ଦେଖି ପଚାରିଲେ, 'ଏତେ ବେଳଯାଏ ଏଠି ଠିଆ ହୋଇ ରହିଛ କାହିଁକି ?' ଭାଉଜ ତାଙ୍କୁ ମୋ ବୋଉର ଜଗନ୍ନାଥ ଦର୍ଶନ ପାଇଁ ବ୍ୟାକୁଳତା ଆଉ ଭିଡ଼ ଯୋଗୁଁ ଭିତରକୁ ପଶିବାପାଇଁ ସେମାନଙ୍କ ଅକ୍ଷମତା ବିଷୟରେ କହିଲା । ସ୍ତ୍ରୀ ଲୋକଟି ସାଙ୍ଗେ ସାଙ୍ଗେ ପାଟିକରି କହିଲେ, 'ଉଠାଅ ମା'ଙ୍କୁ ଆଉ ଆସ ମୋ ସାଙ୍ଗରେ ।' ଦୁଇଭାଇ ହ୍ୱିଲ୍ ଚେୟାରରେ ବୋଉକୁ ଉଠେଇ ଆଉ ଭାଉଜ ବୋଉର ପଛ ପଟକୁ ଜଗି ଚାଲିଲେ ତାଙ୍କ ପଛେ ପଛେ । ସେ ଆଗର ଭିଡ଼ କାଟି କାଟି ଏମାନଙ୍କୁ ନେଇ ଗରୁଡ଼ ଖମ୍ବ ପାଖରେ ପହଞ୍ଚେଇଦେଲେ । ଆଉ ବୋଉକୁ କହିଲେ, 'ମାଉସୀ ଦେଖ, ଏଠାରୁ ଜଗନ୍ନାଥଙ୍କୁ ।' କିନ୍ତୁ ଆଗରେ ତ ଜନଗହଳି, ବୋଉ ବି କିଛି ଦେଖିପାରୁ ନଥାଏ । ଏଥର ତା କାନ୍ଦ ଆଉ ବନ୍ଧ ମାନି ନଥିଲା । ଧକେଇ ଧକେଇ ବିକଳ ହୋଇ କାନ୍ଦିଲା । ଭାଇମାନେ ଅସହାୟ ହୋଇ ଠିଆ ହୋଇଥାଆନ୍ତି । ଏହି ସମୟରେ ଜଣେ କଳା, ମୋଟା ଭଦ୍ରଲୋକ, ଖାଲି ଗୋଟିଏ ଧୋତି ପିନ୍ଧିଛନ୍ତି, ବେକରେ ପଇତା, କପାଳରେ ତିଳକ, ଆସି ବଡ଼ପାଟିରେ ପଚାରିଲେ, 'ଆରେ ମାଉସୀ କାନ୍ଦୁଛନ୍ତି କାହିଁକି ?' ଭାଇ ସବୁକଥା ତାଙ୍କୁ କହିଲା । ସେ କହିଲେ, 'ଉଠାଅ ମାଉସୀଙ୍କୁ ଆଉ ଆସ ମୋ ପଛେ ପଛେ ।' ଖୁବ୍ ବଡ଼ପାଟିରେ 'ବାଟ ଛାଡ଼' 'ପାଖେଇ ଯାଅ' କହି କହି ଯିବାକୁ ଲାଗିଲେ । ତାଙ୍କ ପାଟିରେ ଜନଗହଳି ଭିତରେ ବାଟ ସୃଷ୍ଟି ହୋଇଗଲା । ତାଙ୍କ ପଛେ ପଛେ ବୋଉକୁ ନେଇ ଏମାନେ ଶୀଘ୍ର ଶୀଘ୍ର ଯାଇ ପାହାଚ ଓହ୍ଲେଇ ଚନ୍ଦନ ଅର୍ଗଳି ସାମନାରେ ଠିଆ ହୋଇଗଲେ । ଭାଇ ଦେଖିଲା ବେଳକୁ ଆଗରେ ଥିବା ଭଦ୍ରଲୋକ ନଥିଲେ କି ପଛରେ ଥିବା ଭଦ୍ର ମହିଳା ଆଉ ନଥିଲେ । ଚନ୍ଦନ ଅର୍ଗଳି ପାଖରେ ପିତଳ ଥାଳିରେ ଦୀପ, ତୁଳସୀ ଧରି ଠିଆ ହୋଇଥିବା ସେବାୟତ ମାନଙ୍କ ମଧ୍ୟରୁ କେତେକ ବୋଉକୁ ଚିହ୍ନିପାରିଲେ ବୋଧେ, ସେମାନେ ବୋଉ ହାତରେ ପ୍ରଭୁଙ୍କ ତୁଳସୀ ବଢ଼େଇଦେଲେ । ବୋଉର ଆଖି ଲାଖିଯାଇଥାଏ ଜଗନ୍ନାଥ ମହାପ୍ରଭୁଙ୍କ ସେହି ଚକାଆଖିରେ । କେତେଦିନର ଅବ୍ୟକ୍ତ ଦୁଃଖ ସବୁ ଲୁହ ଆକାରରେ ତା'ର ବାହାରିଗଲା ଆଉ ପ୍ରଭୁ ଶ୍ରୀଜଗନ୍ନାଥ ବୁଝିଗଲେ ସବୁ । ମୋ ଭାଇମାନେ ପୁଣି ଖୋଜିଲେ, ଆଗରେ ସେ ଭଦ୍ରଲୋକ ନଥିଲେ କି ପଛରେ ସେ ଭଦ୍ର ମହିଳା ଆଉ ନଥିଲେ । ପାଞ୍ଚ ମିନିଟ୍

ପର୍ଯ୍ୟନ୍ତ ବୋଉ ତା'ର ଆରାଧ୍ୟ ଜଗନ୍ନାଥ, ବଳଭଦ୍ର ଏବଂ ସୁଭଦ୍ରା ମା'ଙ୍କୁ ତା'ର ମନର କଥା ସବୁ ଜଣେଇଦେଲା ପରେ ଏମାନେ ପ୍ରଭୁଙ୍କୁ ସଭକ୍ତି ପ୍ରଣତି ଜଣେଇ ଶଙ୍ଖ ଦ୍ୱାର ବାଟେ ବାହାରକୁ ଚାଲି ଆସିଲେ । ସେଠି ବୋଉକୁ ଭାଉଜ ଆଉ କାଞ୍ଚନ ପାଖରେ ରଖି ଆଉଥରେ ଖୋଜିଲେ ସେ ଦୁଇଜଣ ପରମ ସେବକଙ୍କୁ ଟିକିଏ କୃତଜ୍ଞତା ଜଣେଇବା ପାଇଁ । କିନ୍ତୁ ପାଇ ନଥିଲେ । ଏ କଥା ଭାଇ ଠାରୁ ଶୁଣି, ମୁଁ ପ୍ରଭୁଙ୍କ ଆଗରେ ବସି ମୋ କୃତଜ୍ଞତା ଜଣେଇଥିଲି । ଲୀଳାମୟ ପ୍ରଭୁଙ୍କ ଲୀଳା ତ ଏହା ଥିଲା । ତାଙ୍କରି କରୁଣାରୁ ହିଁ ମୋ ବୋଉର ଶେଷ ଇଚ୍ଛା ପୂରଣ ହେଲା । ଅନନ୍ୟ ସେ, ଅସାମାନ୍ୟ ସେ । ସେ ହେଉଛନ୍ତି ଭକ୍ତପ୍ରିୟ ମାଧବ, ସେ ଦୟାସାଗର ।

ରାତି ଦଶଟା ସୁଦ୍ଧା ବୋଉକୁ ନେଇ ଏମାନେ ଫେରିଆସିଲେ । ପରମ ଶାନ୍ତିରେ ବୋଉ ସେହି ରାତିରେ ଖାଇପାରିଥିଲା ଆଉ ଶୋଇ ପାରିଥିଲା । ଦୁଇଦିନ ପରେ ପ୍ରଶାନ୍ତ ମନ ନେଇ ସେମାନେ ଫେରିଗଲେ ପାରଳାଖେମୁଣ୍ଡି ।

କିଛିଦିନ ପରେ ବୋଉକୁ ନେଇ ଭାଇଭାଉଜ ଆସିଲେ ପୁରୀ । ଏଥର କିନ୍ତୁ ଜଗନ୍ନାଥଙ୍କ ଦର୍ଶନ ପାଇଁ ନୁହେଁ, ବୋଉର ସ୍ୱର୍ଗାରୋହଣ ପର୍ବ ସମାପନ ପାଇଁ । କାରଣ ହୃଦ୍‌ଘାତରେ ମୋ ବୋଉର ଦେହାନ୍ତ ହୋଇଯାଇଥିଲା । ତା'ର ଶେଷ ଇଚ୍ଛାଥିଲା ପୁରୀ ସ୍ୱର୍ଗଦ୍ୱାରରେ ତା'ର ଅନ୍ତ୍ୟେଷ୍ଟି କ୍ରିୟା ସଂପନ୍ନ ହେବ । ଭୁବନେଶ୍ୱରରୁ ଆମେ ସମସ୍ତେ ପୁରୀ ଯାଇଥିଲୁ । ପୁରୀର ସ୍ୱର୍ଗଦ୍ୱାରରେ ଜୁଇରେ ଜଳି ଯାଉଥିଲା ମୋ ବୋଉ । ଜଳନ୍ତା ଜୁଇରେ ନିଶ୍ଚିତ ଭାବେ ନିଦ୍ରିତ, ଶୋଚନା ନାହିଁ, ଭାବନା ନାହିଁ, ମୁହଁରେ ଲାଖି ରହିଛି ପରିତୃପ୍ତିର ହସ ।

ପ୍ରଣାମ ଜଣେଇଥିଲି ମୁଁ ସେହି ବିଚିତ୍ରକର୍ମା ଠାକୁର ପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ।

୧/୨ ଏଚ୍.ଆଇ.ଜି., ବିଡ଼ିଏ କଲୋନୀ
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର - ୭୫୧୦୧୬
ଭ୍ରାମ୍ୟଭାଷ : ୯୪୩୭୨୭୭୦୯୪



# ଅନୁଭୂତିରେ ପ୍ରଭୁ ଶ୍ରୀଜଗନ୍ନାଥ

## ନେତ୍ରମଣି ଦେଈ

'ଯାହା ମୁଁ କରଇ, ଯାହା ମୁଁ କହଇ, ଯାହା ମୁଁ ଚିନ୍ତଇ ମନେ ।
ଜଗତର କର୍ତ୍ତା ପରମ ଈଶ୍ୱର ଜାଣୁଛନ୍ତି ଅନୁକ୍ଷଣେ ।'

ଏହି ଆଧାରକୁ ପାଥେୟ କରି ଚିନ୍ତାକଲେ ସ୍ରଷ୍ଟାଙ୍କ ସୃଷ୍ଟିରେ ମାନବ ହିଁ ଶ୍ରେଷ୍ଠ । ତେଣୁ ତା'ଠାରେ ଅନ୍ୟ ଜୀବମାନଙ୍କ ଅପେକ୍ଷା ସ୍ୱର୍ଗୀୟ ଗୁଣଗୁଡ଼ିକ ବିଦ୍ୟମାନ । ସେଥିପାଇଁ ମନୁଷ୍ୟ ସୃଷ୍ଟି କରିସାରିଲା ପରେ ସେ ସନ୍ତୋଷ ଲାଭ କରିଅଛନ୍ତି । ଭାଗବତରେ ଲେଖାଅଛି -

'ମନୁଷ୍ୟ ଦେହେ ଦିବ୍ୟ ଜ୍ଞାନ
ଦେଖି ସନ୍ତୋଷ ଭଗବାନ ।'

ମନୁଷ୍ୟ ଭଗବାନଙ୍କର ଦିବ୍ୟଗୁଣ ଗୁଡ଼ିକୁ ଆହରଣ କରି ଦିବ୍ୟଶକ୍ତି ଲାଭ କରିଅଛି । ଯାହାଫଳରେ ସେ ନିଜର ଆତ୍ମଜ୍ଞାନ ବଳରେ ଈଶ୍ୱରୀୟ ସତ୍ତା ଅନୁଭବ କରିପାରୁଛି । ପୁଣି ଜଗନ୍ନାଥ ଦାସ ଭାଗବତରେ ଲେଖିଛନ୍ତି -

'କରି କରାଉ ଥାଏ ମୁହିଁ
ମୋ ବିନୁ ଅନ୍ୟ ଗତି ନାହିଁ ।'

ଭକ୍ତ ଈଶ୍ୱରାନୁଭୂତି ପାଇଁ ଅନନ୍ୟ ସୋପାନ । ଯେପରି -

'ତୁମରି କୃପାରେ ସ୍ଥିର କଲ ହରି
କୃପାଛଡ଼ା କିଛି ନାହିଁଟି ମୋହରି ।'

ମନରେ ପ୍ରଶ୍ନ ଉଠେ, ଏହା କ'ଣ ସତ୍ୟ ? ସତେ କ'ଣ ଆମର କର୍ମ, ଧର୍ମ, ଚିନ୍ତା ଉପରେ ଆଉ ଗୋଟିଏ ଅଦୃଶ୍ୟ ଶକ୍ତିର ପ୍ରଭାବ ଆମ ଉପରେ ଶକ୍ତି ସଞ୍ଚାର କରେ ? ସତେ କ'ଣ ଈଶ୍ୱର ସର୍ବବ୍ୟାପକ, ସର୍ବତ୍ର ବିଦ୍ୟମାନ । ଯାହାକି ଅଲୌକିକ ଶକ୍ତି ମଣିଷ ଜୀବନ ପଥରେ ପାଥେୟ ହୋଇ ଜୀବନର ଧାରା ଆଗେଇ ନେଇ ଯାଇଥାଏ ଓ ପଥ ଦେଖାଇଥାଏ । ସେହି ଭକ୍ତିକୁ ନେଇ ଭାଗବତର ଏକ ଶୀର୍ଷକ ମନରେ ଭାସି ଆସେ -

'ଦଇବ ଦଉଡ଼ି ମଣିଷ ଗାଈ
ଯେଣିକି ଟାଣଇ ତେଣିକି ଯାଇ ।'

ସେହି ପରିପ୍ରେକ୍ଷୀକୁ ଆଧେୟ କରି ମୋ ଅନୁଭୂତିରୁ କିଛି - ୧୯୬୫ ମସିହା, ଜୁଲାଇ ମାସ ୨୭ ତାରିଖ ମଙ୍ଗଳବାର ପୂର୍ବାହ୍ନ ୧୧ ଘଟିକା ସମୟରେ ମୁଁ ବିଦ୍ୟାଳୟର

କିଛି କାମ ନେଇ ସାଙ୍ଗସାଥୀ ମାନଙ୍କ ସହିତ ପ୍ରଥମ ଥର ଶ୍ରୀଜଗନ୍ନାଥ ଧାମ ପୁରୀରେ ପାଦ ପକାଇଥିଲି । ମନରେ ବହୁ ଆଶା ଓ ଉଦ୍‌ବିଗ୍ନତା ଭରି ରହିଥାଏ, କିପରି ପ୍ରଭୁଙ୍କ ଦର୍ଶନ ପାଇବି । ପୁରୀର ପବିତ୍ର ବଡ଼ଦାଣ୍ଡରେ ଶ୍ରୀମନ୍ଦିରକୁ ଦର୍ଶନ କରିବାକୁ ବାଇଶି ପାହାଚ ଡେଇଁ ଗଲାବେଳେ, ଶ୍ରୀଜଗନ୍ନାଥଙ୍କ ଆଗରେ ହାତଯୋଡ଼ି, ଆଖିବୁଜି ଠିଆ ହେବାବେଳେ ସବୁକିଛି ଭୁଲିଗଲି । କେତେବେଳେ ଯାଇ ରତ୍ନ ବେଦୀ ପାଖରେ ପହଞ୍ଚିଲି, ଜାଣିପାରିଲି ନାହିଁ । ପ୍ରଭୁଙ୍କୁ ଦେଖି ବିହ୍ୱଳ ହୋଇଗଲି । ସବୁକିଛି ଭୁଲିଗଲି । ଏତେ ବଡ଼ ଠାକୁର । ଏତେ ବଡ଼ ମନ୍ଦିର । ଏତେ ଲୋକଙ୍କର ସମାଗମ ମତେ ଆଶ୍ଚର୍ଯ୍ୟ କରି ନେତ୍ରରେ ଭରିଦେଲା ଅଶ୍ରୁର ଧାର । ଆଶ୍ଚର୍ଯ୍ୟ ଏଂ ଅନୁରାଗ ଦେବ ଦୁର୍ଲଭ ଭକ୍ତିର ଏ ନିବିଡ଼ ଅନୁଭବ । ନିମିଷକେ ଦେଇଥାଏ କୋଟି କୋଟି ଜନ୍ମର ପୁଣ୍ୟ । ନିରିମାଖୀ ମଣିଷଟିଏ ମୁଁ । ତାଙ୍କ ଅପଲକ ନୟନରେ ପଲକ ମିଶିବା ମାତ୍ରେ ଆଖିରେ ଥିବା ଜଳ ସମୁଦ୍ର ସମୁଦ୍ର ହୋଇ ରହେ ନାହିଁ, ହୋଇଯାଏ ବିନ୍ଦୁଏ ଅଶ୍ରୁ । ମୁଁ ସେହି ଅନୁଭୂତିରେ ଥିବା ସମୟରେ ଚତୁର୍ଦ୍ଧା ମୂର୍ତ୍ତିଙ୍କ ଆଗରେ କେତେବେଳେ ଅନ୍ନପ୍ରସାଦ ପହଞ୍ଚି ଯାଇଛି ମୁଁ ଜାଣିପାରିଲି ନାହିଁ । ଗାଁରୁ ଯାଇଛି, ଜ୍ଞାନ ବା ଅନୁଭୂତି ନାହିଁ । ଠାକୁରଙ୍କ ପାଖରେ ଛିଡ଼ା ହୋଇଛି । ହଠାତ୍ ଏକ ଚିତ୍କାର ଓ ଗାଳି ମୋର ତନ୍ମୟତା ଭାଙ୍ଗିଦେଲା । ଜଣେ ମନ୍ଦିରର ସେବକ ମୋ ହାତ ଧରି ଟାଣି ଟାଣି ବାହାରକୁ ନେଇ ଆସିଲେ ଓ କହିଲେ ସବୁ ମାରା କରିଦେଲୁ । କିଏ କହିଥିଲା, ଠାକୁରଙ୍କ ପାଖରେ ଠିଆ ହୋଇ ରହିବା ପାଇଁ । ମୁଁ ବହୁତ ଡରି ଯାଇଥିଲି । ପାଖରେ ସାଙ୍ଗମାନେ କେହି ନଥିଲେ, କାନ୍ଦି କାନ୍ଦି ଥରି ଥରି କହିଲି, ଆମ ଗାଁରେ ଆମେ ଭୋଗ ଲାଗିବା ବେଳେ ଠାକୁରଙ୍କ ପାଖରେ ରହୁ, ମୋତେ କିଛି ଜଣାନାହିଁ । ପ୍ରସାଦ ଆସିବା ମୁଁ ଦେଖିନାହିଁ । ଯାହା କହିଲେ ମଧ୍ୟ କେହି ଶୁଣିବାକୁ ପ୍ରସ୍ତୁତ ନଥିଲେ କି ମୋ ହାତ ଛାଡୁ ନଥିଲେ । ଠିକ୍ ସେତିକିବେଳେ କେହି ଜଣେ ମନ୍ଦିର ଭିତରୁ କଳା ମଚମଚ ଦୀର୍ଘକାୟ କଣ୍ଠରେ ତୁଳସୀମାଳ ପିନ୍ଧିଥିବା ବୟସ୍କ ଲୋକ ବାହାରି ଆସିଲେ । ଦେହରେ ଶୁଭ୍ରବସ୍ତ୍ର, କାନ୍ଧରେ ଉତ୍ତରୀୟ । ସେ ମୋ ହାତକୁ ଛଡ଼ାଇ ନେଇ କହିଲେ, ପିଲାଲୋକ କେଉଁଠାରୁ ଆସିଛି ତାକୁ ଛାଡ଼ିଦିଅ । ତାଙ୍କରି ସ୍ପର୍ଶରେ ମୋର ଚେତନାଶକ୍ତି ଫେରି ଆସିଲା ଓ ମୁଁ ଜାଣିପାରିଲି ଜନସମୁଦ୍ର ମଧ୍ୟରେ ଠିଆ ହୋଇଛି ଓ ଗାଳି ଖାଉଛି । ପଣ୍ଡାମାନେ ମୋତେ ଛାଡ଼ିଦେଲେ । ସେ ମୋତେ ଆଣି ସିଂହାଦ୍ୱାର ପାଖରେ ଛାଡ଼ିଦେଇ ଗଲେ । କହିଲେ, ଠାକୁରଙ୍କ ପାଖକୁ ଗଲେ ଠାକୁର ମିଳିବେ, ଦୂରରୁ କ'ଣ ମିଳିବେ ନାହିଁ ? ମନରେ ଧ୍ୟାନ କଲେ ସବୁଠି ମିଳିପାରିବେ । ଘର କେଉଁଠି ? କୁଆଡ଼େ ଯିବ ? ମୁଁ ସବୁ କହିଲି । ସେ ମୋତେ ଗୋଟିଏ ନିର୍ମାଲ୍ୟ ଦୋକାନୀ ପାଖରେ ବସାଇ ଦେଇ ତାଙ୍କ ଦାୟିତ୍ୱରେ ଛାଡ଼ିଦେଇ ଅଦୃଶ୍ୟ ହୋଇଗଲେ । ମୁଁ ଆଉ ଦେଖିପାରିଲି ନାହିଁ । କିନ୍ତୁ ବଡ଼ ଆଶ୍ଚର୍ଯ୍ୟର କଥା, ମୁଁ ଯେଉଁ ନିର୍ମାଲ୍ୟ ଦୋକାନୀ ପାଖରେ ବସିଥିଲି, କଥାବାର୍ତ୍ତା ପରେ ଜାଣିଲି ସେ ଆମ

ଗାଁ ପାଖ ଲୋକ । କିଛି ସମୟ ପୂର୍ବରୁ ମୋ ସାଙ୍ଗମାନେ ତାଙ୍କ ପାଖକୁ ଆସିଥିଲେ । ବର୍ତ୍ତମାନ କୋଇଲି ବୈକୁଣ୍ଠ ଦେଖିବା ପାଇଁ ଯାଇଛନ୍ତି । ମୋତେ ନ ଦେଖି ସେମାନେ ମଧ ବ୍ୟସ୍ତ ବିବ୍ରତ ହୋଇ ତାଙ୍କ ପାଖରେ ଖବର ଦେଇ ଯାଇଛନ୍ତି । ଏହା କ'ଣ ଏକ ଅଲୌକିକ କଥା ନୁହେଁ ? ଏହା ଥିଲା ମୋ ପିଲା ବୟସର ପ୍ରଭୁ ଶ୍ରୀଜଗନ୍ନାଥଙ୍କର ପ୍ରଥମ କରୁଣା ଓ ଅନୁଭୂତି । ଯାହାଫଳରେ ପ୍ରଥମ ଦର୍ଶନରେ ମୁଁ ପାଇଥିଲି ଏକ ଦେବ ଦୁର୍ଲଭ ସୂକ୍ଷ୍ମାତିସୂକ୍ଷ୍ମ ଭକ୍ତିଭାବର ଏକ ନିବିଡ଼ ଅନୁଭବ । ଏହି ଅନୁଭବ ପାଇଁ ସାରାଜୀବନ ଆରାଧନା କରିବାର ପ୍ରୟାସ ମୋର ମନକୁ ଆଗକୁ ଆଗକୁ ଟାଣିନେଲା ଓ ଅନୁଭୂତିର ପୃଷ୍ଠା ଖୋଲିଦେଲା ।

୧୯୬୯ ମସିହାରେ ଯେଉଁଦିନ ନବକଳେବର ହେଲା, ସେହିଦିନ ମୋର ଶିଶୁ ପୁତ୍ର ମନୋରଞ୍ଜନର ଦେହାନ୍ତ ହୋଇଥିଲା । ଦୁଃଖରେ ମୁଁ ଭାଙ୍ଗିପଡ଼ିଲି । ବିଶ୍ୱାସ ହରାଇ ବସିଲି । ଭୁଲିଗଲି ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ । ସେତିକିବେଳେ ମୋ ଆଖି ଆଗରେ ଭାସି ଆସିଲା ଶ୍ରୀକ୍ଷେତ୍ରର ପ୍ରତିଟି ଧୂଳିକଣା । ପ୍ରାଣକୁ ଜୀବନ୍ତ କଲା, ଆଶା ଓ ଆଶ୍ୱାସନାର ଭାବ ଭରିଦେଲା । ଅପେକ୍ଷା କର, ସବୁ ପାଇବୁ । ଆଶ୍ଚର୍ଯ୍ୟର କଥା, ୧୯୭୭ ମସିହାରେ ନବକଳେବର ପରେ ୧୯୮୦ ମସିହା ଶ୍ରୀଗୁଣ୍ଡିଚା ଦିନ ଭୋର ୪ ଘଟିକା ସମୟରେ ମୋ ଘର ପରିସର ମଧ୍ୟରେ ଜଣେ ଦୀର୍ଘକାୟ ମଳିନ ବେଶଧାରୀ କଳା ମଣିଷକୁ ପ୍ରଭୁଙ୍କର ତିନି ମୂର୍ତ୍ତି ପାଖରେ ଧରି ବସିଥିବାର ଦେଖିଲି । ପୂର୍ବ ଦିନରୁ ମୋତେ କିଛି ଆଭାସ ମିଳିଥିଲା । ଏହାଦେଖି ମୁଁ ଚକିତ ନୟନରେ ଚାହିଁ ରହିଲି । ସେ ମୋତେ କହିଲେ, ଠାକୁରଙ୍କୁ ରଖ ପୂଜା କରିବୁ । ମୁଁ କହିଲି, ମୁଁ ତୁମକୁ କ'ଣ ଦେବି ! ସେ କହିଲେ, ତୁ କ'ଣ ଦେବୁ ! ସେ ତୋତେ କ'ଣ ଦେବ ଦେଖ ? ତୋର ହଜିଯାଇଥିବା ଧନକୁ ପରଖି ନେ । ତା'ପରେ ସବୁ ଅଦୃଶ୍ୟ ! କେବଳ ମୋ ପାଖରେ ରହିଲେ ସେହି ତିନି ମୂର୍ତ୍ତି । ଯାହାଙ୍କୁ ମୁଁ ମୋର ପୁତ୍ର କନ୍ୟା ଭଳି ଆଦରି ନେଇଛି ଓ ସେବା କରି ଦାସୀ ଭାବରେ ସମର୍ପି ଦେଇଛି । ସେ ମୋର ସୁଖ ଦୁଃଖର ସାଥୀ ଓ ଏକାନ୍ତ ଜୀବନର ସଙ୍ଗାଳି ଭାବେ ମୋ ଜୀବନର ଗତିପଥକୁ ଆଗେଇ ନେଉଛନ୍ତି ।

ତେଣୁ ପ୍ରଭୁଙ୍କର ଚରଣାରବିନ୍ଦରେ ମୋର ଭାବକୁ ନିମ୍ନରେ ରୂପାନ୍ତର କରୁଛି -

'ଭାବ ବିନୋଦିଆ ବନ୍ଧୁ ହେବ ଯେବେ
କରୁଅଛି ଏହି ଅଳି,
ଅନ୍ଧାର ରାସ୍ତାରେ ଆଶାର ପ୍ରଦୀପ
ଜାଳି ଦେବ ବନମାଳୀ ।'

ଶ୍ରୀଜଗନ୍ନାଥ ଭବନ
ଗଣ୍ଡରପୁର, ଶିଖରପୁର, କଟକ - ୭୫୩୦୦୩
ଭ୍ରାମ୍ୟଭାଷ : ୯୯୩୮୯୮୯୨୭୫



# ଲୀଳାମୟଙ୍କ ଅନୁକମ୍ପା

## ମନ୍ଦାକିନୀ ପଟ୍ଟନାୟକ

ପୂର୍ବାହ୍ନ ୫ଟା ସମୟରେ ମୁଁ ଏବଂ ମୋର ସ୍ୱାମୀ (ପ୍ରତାପ) ଦିଲ୍ଲୀ ରେଳ ଷ୍ଟେସନରେ ପହଞ୍ଚି ଜାଣିବାକୁ ପାଇଲୁ ଯେ, ଟ୍ରେନ ୧୦ ଘଣ୍ଟା ଲେଟ୍ ଅଛି । ପୁରୁଷୋତ୍ତମ ଏକ୍ସପ୍ରେସ୍ ସକାଳ ୫ଟାରେ ଛାଡ଼ିବାର ଥିଲା, କିନ୍ତୁ ପ୍ରବଳ କୁହୁଡ଼ି ପାଇଁ ପ୍ରତ୍ୟେକ ଟ୍ରେନ୍ ବିଳମ୍ବରେ ଷ୍ଟେସନରେ ପହଞ୍ଚୁଛି ପୁଣି ବିଳମ୍ବରେ ହିଁ ଛାଡୁଛି । ସେହି କାରଣ ଲାଗି ଟ୍ରେନ୍ ଆଜି ଦିନ ୩ଟାରେ ଛାଡ଼ିବ ବୋଲି ସ୍ଥିର ହୋଇଛି । ଖୁବ୍ ବ୍ୟତିବ୍ୟସ୍ତ ଲାଗିଲା । ଏତେ ସମୟ ଏଠାରେ କରିବୁ କ'ଣ ?

ଆମେ ଦୁହେଁ ୧୫ ଦିନ ତଳେ ପୁରୀରୁ ଏହି ପୁରୁଷୋତ୍ତମ ଏକ୍ସପ୍ରେସ୍ ଯୋଗେ ଆସି ଏଠାରେ ସଂଧ୍ୟା ୭ଟାରେ ପହଞ୍ଚିଥିଲୁ । ଜ୍ୱାଇଁ (ସୋନୁ) ଷ୍ଟେସନ ଆସି ଆମକୁ ଏଠାରୁ ତାଙ୍କ ଘରକୁ ନେଇ ଯାଇଥିଲେ । ଝିଅ ଜ୍ୱାଇଁ ରୁହନ୍ତି ଏଠାରେ । ବୁଲିବା ପାଇଁ ଏବଂ ସେମାନେ ରହିଥିବା ଯୋଗୁଁ ଆମକୁ ବାରମ୍ବାର ଏଠାକୁ ଆସିବାକୁ ପଡ଼ିଥାଏ । ଦୂର ବାଟ । ଭଲରେ ଭଲରେ ଘରକୁ ଫେରିଗଲେ ଭଲ । ନଚେତ୍ କେତେବେଳେ ମାଓବାଦୀ ହମ୍‌ଲା । କେତେବେଳେ ଟ୍ରେନ୍ ଲେଟ୍ ଏସବୁ ଚିନ୍ତାର କାରଣ ।

ସେଦିନ ଟ୍ରେନ୍ ଛାଡ଼ିବା ବିଳମ୍ବ ଥିବା ଜାଣି ସୋନୁ ଘରକୁ ଫେରିଯିବା ପାଇଁ କହୁଥିଲେ । କିନ୍ତୁ ଆଉ ଇଚ୍ଛା ହେଲାନି ଫେରିଯିବାକୁ । ଆମ ପାଇଁ ସୋନୁ ହଇରାଣ । ସେଥିରେ ପୁଣି ସବୁ ଜିନିଷପତ୍ର ସଜଡ଼ା ସଜଡ଼ି କରି ଲଗେଜ୍ ବ୍ୟାଗ୍‌ରେ ରଖି ସାରିଛୁ । ଫେରିଲାମାନେ ଖୋଲା ଖୋଲି । ପୁଣି ତକଲିପ୍ ।

ମୁଁ କହିଲି ୧୦ ଘଣ୍ଟା କାଳ ପ୍ଲାଟଫର୍ମରେ ନ ବସି ଚାଲି ହସ୍ ଖସ୍ (ହସ୍‌ଖାଉସ୍) ଜଗନ୍ନାଥ ମନ୍ଦିର ଯିବା । ଖୁବ୍ ଇଚ୍ଛା ଥିଲା ଯିବାପାଇଁ । ହେଲେ ନାନା ପ୍ରୋଗ୍ରାମରେ ସମୟ ମିଳିଲାନି ଠାକୁରଙ୍କ ପାଖକୁ ଆସିବାପାଇଁ । ମନରେ ଅବସୋସ ରହିଯାଇଥା'ନ୍ତା । ଏ ପ୍ରସ୍ତାବଟି ସମସ୍ତଙ୍କ ମନକୁ ବେଶ୍ ପାଇଲା । ଲକର ରୁମ୍‌ରେ ବ୍ୟାଗ୍ ସବୁ ରଖିଦେଇ ସୋନୁଙ୍କ ଗାଡ଼ିରେ ଜଗନ୍ନାଥ ମନ୍ଦିରରେ ଯାଇ ପହଞ୍ଚିଗଲୁ ।

କାର୍ତ୍ତିକ ମାସର ଶୀତୁଆ ସକାଳ । ସେପଟେ ତ ଏତେ କୁହୁଡ଼ି ପଡ଼େ ଯେ, ସୂର୍ଯ୍ୟୋଦୟର ଆଭାସ ମିଳେନା ଦିନ ୮ଟା ପର୍ଯ୍ୟନ୍ତ । ଦୂରରୁ ଘଣ୍ଟ ଘଣ୍ଟା ଧ୍ୱନିରେ ଗଗନ ପବନ ମୁଖରିତ । ପାବଚ୍ଛ ସବୁ ଅତିକ୍ରମ କରୁ କରୁ ସାମ୍ନାରୁ ସିଂହାସନ ଉପରେ ବିରାଜମାନ କରିଥିବା ତିନି ଠାକୁର ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଝଟକି ଦିଶୁଥା'ନ୍ତି । କମନୀୟ ବେଶ ପରିପାଟୀ ସହିତ ଓଡ଼ିଆ ସ୍ୱାଭିମାନର ପରିଚୟ

ଖଣ୍ଡୁଆ ପାଟକୁ ପରିଧାନ କରି ଖୁବ୍ ଆକର୍ଷଣୀୟ ଦେଖାଯାଉଥା'ନ୍ତି । ବିହ୍ୱଳ ହୋଇ ଚାହିଁ ରହିଥାଏ ମୁଁ ଅପଲକ ନେତ୍ରରେ । କୃତଜ୍ଞତା ଜଣାଇ ପ୍ରଭୁଙ୍କୁ ନିଉଛାଳ ହୋଇ କହିଲି, କେତେ ହଟିଆ ସତରେ ତୁମେ ଚକାନୟନ । କେତେବେଳେ କି ଫୁନ୍ଦର ଲଗାଇ ଦିଅ, ସେକଥା ତୁମକୁ ହିଁ ଜଣା ।

କାଲି ରାତିରେ ଶୋଇବା ବେଳେ ଭାବୁଥିଲି ଯିବାବେଳ ହୋଇଗଲା ପଛକେ ଟିକେ ଡୋରି ଲଗାଇ ମହାପ୍ରଭୁ ତାଙ୍କ ନିକଟକୁ ଆଣିଲେ ନାହିଁ । ଦିଲ୍ଲୀ, ଗୁରୁଗାଓଁରେ ଅନେକ ଜଗନ୍ନାଥ ମନ୍ଦିର ଅଛି, ହେଲେ ହସ୍‌ଖାଉସ୍ ଜଗନ୍ନାଥ ମନ୍ଦିରର ମୂର୍ତ୍ତିଗୁଡ଼ିକ ମୋତେ ଖୁବ୍ କମନୀୟ ଲାଗନ୍ତି । ତା'ପରେ ସେଠାରେ ସବୁବେଳେ ଅନେକ ଓଡ଼ିଆ ଲୋକ ଦେଖାଯା'ନ୍ତି । ଖାଲି ଓଡ଼ିଆ ଓଡ଼ିଆ ବାସ୍ନା । ବିଭିନ୍ନ କାର୍ଯ୍ୟରେ ଆସି ମନ୍ଦିରର ଯାତ୍ରୀ ନିବାସରେ ଅବସ୍ଥାନ କରିଥା'ନ୍ତି । ସେଥିପାଇଁ ଖୁବ୍ ଭଲ ଲାଗେ । ତେଣୁ ପ୍ରବଳ ଆଗ୍ରହ ଥିଲା ଆସିବା ଲାଗି । ହେଲେ ସମୟ ଅଭାବ ଯୋଗୁଁ ଆସିପାରି ନଥିଲି । ସେଥିପାଇଁ ଖୁବ୍ ଅଭିମାନ କରିଥିଲି ଠାକୁରଙ୍କ ଉପରେ ।

କ୍ଷଣକରେ ସବୁ ଓଲଟପାଲଟ ହୋଇଗଲା । କିମିଆଁ ଲଗାଇ ଠାକୁର ଟାଣିଆଣିଲେ ତାଙ୍କ ପାଖକୁ । ଆଖି ଲାଖି ରହିଥାଏ ଚକାଡ଼ୋଳାରେ । କୃତ୍ୟ କୃତ୍ୟ ହୋଇଯାଉଥାଏ ମନ । ଭକ୍ତି ଗଦ୍ ଗଦ୍‌ରେ କହିଲି, ଏ ଟ୍ରେନ୍ ଫେଲ୍ ହେବାର ଅବତାରଣା ତୁମ ଇଚ୍ଛାରେ ପ୍ରଭୁ ଘଟିନାହିଁ ତ ? 'କରି କରାଉ ଥାଉ ତୁହି, ତୋ ବିନୁ ଆନ ଗତି ନାହିଁ ।'

ଇଚ୍ଛାମୟ ସେ । ତାଙ୍କ ବିନା ଇଚ୍ଛାରେ ଦୂବଘାସ ବି ହଲିବ ନାହିଁ । ମୋରି ଏ ଭାବନା ଭିତରେ ଜଣେ ପୂଜକଙ୍କ ପ୍ରଶ୍ନରେ ସ୍ତମ୍ଭିତ ଫେରି ପାଇଲି । କହିଲେ ତୁମେ ଓଡ଼ିଶାରୁ ଆସିଛ କି ? କହିଲି ହଁ ପୁରୀରୁ ଆସିଛୁ । ସେ ଖୁବ୍ ଖୁସି ହୋଇ କହିଲେ, ତୁମକୁ ଯଦି ହୁଳହୁଳି ପକାଇ ଆସେ ତା'ହେଲେ ପକାଅ । ହରିବୋଲ ହୁଳହୁଳି କାଳିଆର ଖୁବ୍ ପ୍ରିୟ । ଏଠାରେ ସବୁକିଛି ମିଳିବ ହେଲେ ଏ ସବୁ ମିଳିବ ନାହିଁ । ଏହା ଓଡ଼ିଶାର ନିଦର୍ଶନ । ଏ ଧ୍ୱନିକୁ ସେ କାନପାତି ଶୁଣିଥା'ନ୍ତି ଖୁବ୍ ଆନନ୍ଦ ଆଉ ଆଗ୍ରହର ସହିତ । ମୋ ମନ ଖୁସିରେ ଗଦ୍ ଗଦ୍ ହୋଇଉଠିଲା । ମୋର ଯେତେ ଦମ୍ ଥିଲା ଟାଣି ଓଟାରି ହୋଇ ଅନେକ ସମୟ ପର୍ଯ୍ୟନ୍ତ ହୁଳହୁଳି ପକାଇ ଚାଲିଲି । ଚାହିଁ ରହିଥାଏ ତାଙ୍କ କଳା ବଦନକୁ । ସତେ ଯେମିତି ତାଙ୍କ ରଙ୍ଗ ଅଧରରୁ ହସ ଚେନାଏ ଛିଟିକି ପଡୁଛି ।

କହିଲି, ଏ ବାଞ୍ଛା କଳ୍ପତରୁ, ଏଇଟା ବି ତୁମର ମନୋବାଞ୍ଛା ଥିଲା ନା କ'ଣ ? ଗୀତଗୋବିନ୍ଦ, ଭଜନ, ଜଣାଣ, ହରିବୋଲ, ହୁଳହୁଳି ଏସବୁ ତ ଶୁଣିବାପାଇଁ ତୁମ ମନ ସର୍ବଦା ବ୍ୟାକୁଳ । ସେଥିପାଇଁ ତୁମେ ମୋତେ ଟାଣିଆଣିଲ ପରା !

କାର୍ତ୍ତିକ ମାସ । ପୁଣି ପଞ୍ଚୁକ ଚାଲିଥାଏ ସେତେବେଳେ । ଶ୍ରୀକ୍ଷେତ୍ରର ନୀତି ପରି ସେଠାରେ ବି ଅନୁରୂପ ନୀତି ସବୁ ହେଉଥାଏ । ଆମେ ଶ୍ରୀକ୍ଷେତ୍ରରୁ ଆସିଛୁ ଜାଣିବା ପରେ ସମସ୍ତ ପୂଜକ ଘେରିଗଲେ ଆମକୁ ଖୁସିରେ । ସତେ ଯେମିତି ତାଙ୍କର କେହି ଆପଣାର ଲୋକ ପହଞ୍ଚି ଯାଇଛନ୍ତି ତାଙ୍କ ପାଖରେ । ସମସ୍ତେ ବି ଆମ ଓଡ଼ିଶାର ଲୋକ । ଆମ ଦୁହିଁଙ୍କୁ ଖୁବ୍ ଆଦର ଯତ୍ନର ସହିତ ଗୋଟିଏ ରୁମ୍‌ରେ ବସାଇ, ଠାକୁରଙ୍କ ପାଖରେ ଲାଗି ହୋଇଥିବା ସମସ୍ତ ପ୍ରକାର ଭୋଗ ଦ୍ରବ୍ୟକୁ ଆଗ୍ରହର ସହିତ ପରଶୁ ଥିବା ବେଳେ ମୁଁ ବିଶ୍ୱାସ କରି ପାରୁନଥାଏ ଏ ସବୁ ସ୍ୱପ୍ନ ନା ବାସ୍ତବ । ଖିରି, ଖେଚେଡ଼ି, ଡାଲମା, ତରକାରୀ, ପୋଡ଼ପିଠା ସହିତ ଅନ୍ୟାନ୍ୟ ମିଠା ପୁଣି କେତେ ପ୍ରକାର ଫଳ ଆମ ସାମନାରେ ଥୁଆ ହୋଇଥାଏ । ଆଖି ଲାଖିଗଲା ପରି । ଏସବୁ ସ୍ୱାଦିଷ୍ଟ ବ୍ୟଞ୍ଜନକୁ ଖାଉଥିବା ସମୟରେ ମୁଁ ମନେ ମନେ ଭାବୁଥାଏ ପ୍ରଭୁଙ୍କ ଲୀଳାଖେଳା ସତରେ କେତେ ବିଚିତ୍ର । ଆମେ କେଉଁଆଡ଼େ ଯିବା କଥା ପୁଣି କେଉଁଠିକୁ ଆସିଲୁ । ସେଥିରେ କେତେ ସ୍ନେହ ଆଦର । ଏସବୁ ପ୍ରଭୁଙ୍କ କରୁଣା ନୁହେଁ ତ ଆଉ କ'ଣ ?

ପ୍ରଭୁଙ୍କ ନିକଟରେ କୃତଜ୍ଞତା ଜଣାଉ ଜଣାଉ ଦୁଇ ନେତ୍ରରୁ ଆପଣାଛାଏଁ ନିଗିଡ଼ି ପଡୁଥାଏ ଧାର ଧାର ହୋଇ ଆନନ୍ଦାଶ୍ରୁ । ଏତିକିରେ ବି ଶେଷ ହୋଇନଥିଲା ପ୍ରଭୁଙ୍କର ଅନୁଗ୍ରହ । ସେ ତ ନିଜେ କିଛି କରନ୍ତି ନାହିଁ ଅନ୍ୟ ଦ୍ୱାରା ହିଁ କରାନ୍ତି । ସମୟର ଗତି ଆଗକୁ ଗଡ଼ି ଚାଲିଛି । ଟ୍ରେନ ସମୟ ହୋଇଯାଉଥିବାରୁ ଆମେ ଦୁହେଁ ତରତର ହୋଇ ମନ୍ଦିର ବାହାରକୁ ଆସି ଦେଖିଲୁ ଜଣେ ପୂଜକ ଗେଟ୍ ପାଖରେ ଆମକୁ ଅପେକ୍ଷା କରି ଛିଡ଼ା ହୋଇଛନ୍ତି । ଆମକୁ ଦେଖିବାମାତ୍ରେ କହିଲେ, ମୁଁ ବସଷ୍ଟାଣ୍ଡକୁ ଯାଉଛି ମୋ ସହିତ ଆସ । ତୁମେ ଏପଟେ ନୂଆ । ରାସ୍ତାଘାଟ ଜାଣି ନପାରିଲେ ଅସୁବିଧାରେ ପଡ଼ିବ । ମୁଁ ସବୁ ବୁଝାଇ ଦେବି ।

ଆମେ ଦୁହେଁ ଦୁହିଁଙ୍କୁ ଚାହିଁ ରହିଥାଉ ନିର୍ବାକ ହୋଇ । ବିନା ସ୍ୱାର୍ଥରେ କିଏ କ'ଣ କାହାକୁ ଏମିତି ସାହାଯ୍ୟ ସହଯୋଗ କରିପାରେ ! କିଛି ବି ବୁଝି ପାରୁନଥାଉ । ତଥାପି ଯନ୍ତ୍ରଚାଳିତ ପରି ତାଙ୍କ ପଶ୍ଚାତ୍‌ଧାବନ କରୁଥାଉ ବିନା ବାକ୍ୟବ୍ୟୟରେ । ସତେ ଅବା କାଳିଆ ଆଗେ ଆଗେ ଆମେ ତାଙ୍କ ପଛେ ପଛେ ବାଟବଣା ପଥିକକୁ ବାଟ କଢ଼ାଇ ନେଉଛନ୍ତି ଯେମିତି । ବସ୍ ଷ୍ଟପେଜରେ ଛାଡ଼ି ଦେଇ ଆମକୁ ସେ କହିଲେ, ପ୍ରତ୍ୟେକ ସ୍ଥାନକୁ ଯିବାପାଇଁ ଭିନ୍ନ ଭିନ୍ନ ନମ୍ବର । ଓଡ଼ିଶା ପରି କୌଣସି ଗାଡ଼ିରେ ନାମ ଲେଖାଯାଇନଥାଏ । ଷ୍ଟେସନକୁ ଯିବାପାଇଁ ଆମକୁ ଏକ ନିର୍ଦ୍ଦିଷ୍ଟ ନମ୍ବର ଦେଇ ଚଟାପଟ୍ ଗାଡ଼ିରେ ଉଠିଯିବାକୁ କହିଲେ । ମେଟ୍ରୋରେ ଯିବାପରି, ନଚେତ୍ ଗାଡ଼ି ଛାଡ଼ି ଦେବ । ତାଙ୍କ କହିବା ଶେଷ ନ ହେଉଣୁ ନିର୍ଦ୍ଦିଷ୍ଟ ଗାଡ଼ିଟି ଆସୁଥିବାର ଦେଖି ସେ ବଡ଼ ପାଟିରେ

କହିଲେ, ଯାଅ ଯାଅ ଶୀଘ୍ର ଚଢ଼ିଯାଅ ନଚେତ୍ ବସ୍ ଛାଡ଼ିଦେବ । ଆମେ କାଳ ବିଳମ୍ବ ନ କରି ତତ୍କ୍ଷଣାତ୍ ବସ୍ ଉପରକୁ ଉଠିଗଲୁ । ଗାଡ଼ି ବି ଛାଡ଼ିଦେଲା ।

ଗାଡ଼ିରେ ବସି ଆମେ ଚାହିଁଥାଉ ସେ ଚାଲି ଯାଉଛନ୍ତି ଦୂରକୁ ଦୂରକୁ । ଏ ପର୍ଯ୍ୟନ୍ତ ଆମେ ତାଙ୍କ କଥା ହିଁ ଶୁଣୁଥିଲୁ । କିଛି କହିବାର ଅବକାଶ ପାଇପାରିଲୁ ନାହିଁ । କୃତଜ୍ଞତା କି ଧନ୍ୟବାଦ ଜଣାଇବା ପାଇଁ ଫୋନ ନମ୍ବର ବି ଆମ ପାଖରେ ନଥିଲା । ଦେବଦୂତ ପରି ଆସିଲେ ଆମକୁ ସମସ୍ତ ପ୍ରକାର ସାହାଯ୍ୟ ଦେଇ ଚାଲିଗଲେ । ଆମେ କେଡ଼େ ନିର୍ବୋଧ ସତରେ । ଧନ୍ୟବାଦଟିଏ ବି ଦେଇପାରିଲୁ ନାହିଁ ।

ଷ୍ଟେସନରେ ପହଞ୍ଚି ପ୍ରତାପ କହୁଥା'ନ୍ତି ସେ ମହାଶୟ ଆମ ସହିତ ନ ଆସିଥିଲେ ଖୁବ୍ ଅସୁବିଧାରେ ପଡ଼ିଥା'ନ୍ତେ ଆମେ । କାରଣ ଏପଟର ରାସ୍ତାଘାଟ ସହିତ ମୋର ଏତେ ପରିଚୟ ନାହିଁ । ତା'ପରେ ଯେଉଁଠିକୁ ଗଲେ ସୋନୁ ତ ଆମକୁ ନେଇଯାଉଛନ୍ତି ତେଣୁ ମୁଁ କିଛି ଜାଣିବାକୁ ଇଚ୍ଛା କରୁନାହିଁ । ମୁଁ କହିଲି, ତୁମର ଏଇ ମନର ଭାବନାକୁ ପ୍ରଭୁ ହୃଦୟଙ୍ଗମ କରି ଆଜି କେତେ ଯେ ସାହାଯ୍ୟ କରିଛନ୍ତି, ତାହା କେବେ ବି ଭୁଲିହେବନି । କୃପା ବାରିଧିଙ୍କର ଅପାର କୃପା । ପ୍ରତି ମୁହୂର୍ତ୍ତରେ ସେ ଛାଇପରି ରହିଥା'ନ୍ତି ଭକ୍ତର ପଛେ ପଛେ ।

ଶ୍ରୀରାମ ସଦନ
ରଘୁପତି ନଗର, ପୁରୀ-୨
ଭ୍ରାମ୍ୟଭାଷ : ୯୦୪୦୫୩୩୪୨୨



# ଅଭୁଲା ଅତୀତ

## ସୁକାନ୍ତି ମହାପାତ୍ର

'ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍,
ସ ଭୂମିଂ ସର୍ବତୋ ବ୍ୟାପ୍ୟଅତ୍ୟତିଷ୍ଠଦ୍ ଦଶାଙ୍ଗୁଳମ୍ ।
ଯଃ ପୁଂମାନ ପରଂବ୍ରହ୍ମ ପରାମାତ୍ମେତି ଗୀୟତେ,
ଭୂତଂଭବ୍ୟଂ ଭବିଷ୍ୟଂ ତ ସର୍ବଂ ପୁରୁଷ ଏବତଦ୍ ॥'

ଋକ୍ ବେଦର ପୁରୁଷସୂକ୍ତ ମନ୍ତ୍ରରେ ପୁରୁଷୋତ୍ତମ ତତ୍ତ୍ୱର ଆଲୋଚନା କରାଯାଇଛି । ସେ ସହସ୍ରଶୀର୍ଷା, ସହସ୍ରାକ୍ଷ, ସହସ୍ର ପାଦ । ସେ ପୂର୍ଣ୍ଣ, ପୂର୍ଣ୍ଣତର, ପୂର୍ଣ୍ଣତମ ।

'ଶ୍ୱେତାଶ୍ୱତ ଉପନିଷଦ' ଅନୁସାରେ ଯେଉଁ ଶକ୍ତି ହସ୍ତପଦ ନ ଥାଇ ମଧ୍ୟ ସର୍ବାଧିକାରୀ, ଚକ୍ଷୁ ନଥାଇ ସର୍ବଦର୍ଶୀ, କର୍ଣ୍ଣ ନ ଥାଇ ସର୍ବଶ୍ରୋତା, ଯେ ସର୍ବଜ୍ଞାତା, ସେ ହିଁ ପୁରୁଷୋତ୍ତମ । ବିଷ୍ଣୁ ସହସ୍ର ନାମରେ ଏହା କୁହାଯାଇଛି ।

ଭୂତ ଭବ୍ୟଭବଦ୍ ପ୍ରଭୁ । ସେ ଅତୀତ, ବର୍ତ୍ତମାନ, ଭବିଷ୍ୟତର ପ୍ରଭୁ ! ସେ ନିତ୍ୟ, ସନାତନ, ଶାଶ୍ୱତ ।

ସିଏ ବା କାହାର ମନ କଥା ନ ଜାଣନ୍ତି । ଯେ ସର୍ବ ଶକ୍ତିମାନ, ସର୍ବଜ୍ଞ ଏବଂ ସର୍ବ ବିଦ୍ୟମାନ । ତାଙ୍କ ପାଖରେ କ'ଣ ବା ଅଛପା । ଯାହାର ବିନା ନିର୍ଦ୍ଦେଶରେ ଗଛର ବି ଗୋଟେ ପତ୍ର ହଲେନାହିଁ, ସେହି ପରମ ପ୍ରଭୁ ଜଗତର ନାଥ ଶ୍ରୀଜଗନ୍ନାଥଙ୍କ ପାଦ ତଳେ ମୋର କୋଟି କୋଟି ନତମସ୍ତକ ଭରା ପ୍ରଣାମ ।

ପ୍ରତ୍ୟେକ ମନୁଷ୍ୟର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଏଇ ଦୁଇ ଦିନର ଜୀବନ ମଧ୍ୟରେ କେତେ ଦୁଃଖ, କଷ୍ଟ, ଯନ୍ତ୍ରଣା କିଛି ସ୍ମୃତି କିଛି ଅନୁଭୂତି ଦେଇ ଗତି କରିଥାଏ । ତା'ର ଏଇ ଦୁଇ ଦିନର ଜୀବନ ମଧ୍ୟରେ ଦିନେ ନା ଦିନେ ଏମିତି ଦିନଟିଏ ଆସିଥାଏ, ତାହା ମନୁଷ୍ୟ ଯେତେ ଚାହିଁଲେ କି ଭୁଲି ପାରେନାହିଁ । ତା'ର ନିଜ ମାନସ ପଟରେ ଅଭୁଲା ଅତୀତ ହୋଇ ରହିଯାଏ ।

ତୁମେ ଯଦି ଭାବୁଥାଉ ଏ ସଂସାରେ ତୁମେ ଏକା ଏକା ତେବେ ମୁଁ କହିବି ତାହା ସଂପୂର୍ଣ୍ଣ ମିଥ୍ୟା । କାରଣ ପ୍ରତି ମୁହୂର୍ତ୍ତରେ ଜଗନ୍ନାଥ ଆମ ପାଖେ ଅଛନ୍ତି । ତୁମେ ସୁଖରେ ନ ଡାକିଲେ ବି ଯେତେବେଳେ ଦୁଃଖରେ ବା କୌଣସି ଅସୁବିଧାରେ ପଡ଼ି ଡାକିଥାଅ, ସେ ମାନ ଅଭିମାନ ନ କରି ସଙ୍ଗେ ସଙ୍ଗେ ଆଗେଇ ଆସନ୍ତି ଆମକୁ ଉଦ୍ଧାର କରିବାପାଇଁ । ସେ ଆଉ କେହି ନୁହେଁ ଜଗତର ନାଥ ଶ୍ରୀଜଗନ୍ନାଥ ।

ଏହି ପରିପ୍ରେକ୍ଷୀରେ ମୁଁ ମୋର କିଛି ଅନୁଭୂତି ପ୍ରକାଶ କରୁଛି । ଜୀବନରେ ବେଳେବେଳେ ଏମିତି କିଛି ପରିସ୍ଥିତି ଆସେ, ଯେତେ ଚେଷ୍ଟା କଲେ ବି ଭୁଲି ହୁଏନି । ଏପରିକି ମାଟିରେ ମିଶିବା ପର୍ଯ୍ୟନ୍ତ । ଆଉ ଯଦି ସେଥିରୁ ସେ ଉଦ୍ଧାର ପାଏ, ତେବେ ଭାବେ ଯେ ଏହି କୃପା କେବଳ ସେହି ପରମ ପ୍ରଭୁଙ୍କର । ତାଙ୍କର ବିନ୍ଦୁଟିଏ ବି କରୁଣା ମିଳିଲେ ଯେତେବଡ଼ ବିପଦ ଆସୁନା କାହିଁକି ତାହା ସଙ୍ଗେ ସଙ୍ଗେ ଦୂର ହୋଇଯାଏ ।

ଧୀରେ ଧୀରେ ସମୟ ଅତିକ୍ରାନ୍ତ ହେଉଥିଲେ ମଧ୍ୟ ସେହି ଅଭୁଲା ଅତୀତର କଥା ଆଜି ମନେପଡ଼େ । ୧୯୯୨ ମସିହା ମାର୍ଚ୍ଚ ମାସ କଥା । ଦୋଳ ପୂର୍ଣ୍ଣିମା । ଆମ ଗାଁରେ ଏହି ପୂର୍ଣ୍ଣିମା ବହୁ ଧୂମ୍‌ଧାମରେ ପାଳିତ ହୁଏ । ଏହାକୁ ପଞ୍ଚୁଦୋଳ ମେଳଣ କୁହାଯାଏ । ପୂର୍ଣ୍ଣିମା, ହୋଲି ଏବଂ ତା'ପରଦିନ ଆମ ଗାଁରେ ଯାତ୍ରା ହୁଏ । ବହୁତ କିଣାବିକା ମଧ୍ୟ ହୁଏ । ଏହି ତିନି ଦିନ ସମସ୍ତେ ଆନନ୍ଦ ଉଲ୍ଲାସରେ କାଟନ୍ତି । ଗାଁରେ ସମସ୍ତଙ୍କ ଘରେ ଘରେ ବନ୍ଧୁ-ବାନ୍ଧବ, ପୁଅ-ଝିଅ, ବୋହୂ ଯିଏ ଯେଉଁଠି ଥାଉନା କାହିଁକି, ସେମାନେ ଦୋଳଯାତ୍ରାକୁ ସମସ୍ତେ ଘରକୁ ଆସନ୍ତି । ଆମ ଘର ବା ଏଥିରୁ ବାଦ୍ ଯାଆନ୍ତା କିପରି ! ମୁଁ ସେତେବେଳେ ପୁରୀରେ ଯୁକ୍ତ ଦୁଇ ଦ୍ୱିତୀୟ ବର୍ଷ ପଢୁଥାଏ । ବୋଉ ମୋତେ କହିଲା, ଆମର ପୁରୀରେ ଯେଉଁ ବନ୍ଧୁ ଘର ଅଛି, ତାଙ୍କ ଝିଅ କହିଥିଲା, ଦୋଳ ପୂର୍ଣ୍ଣିମାକୁ ଗାଁ ଯାତ୍ରା ଦେଖିବାକୁ ଆସିବ ବୋଲି । ତୁ ଯାଇ ତାକୁ ନେଇ ଆସ । ମୁଁ କହିଲି, ଠିକ୍ ଅଛି ହୋଲି ଦିନ ଯାଇ ତାକୁ ନେଇ ଆସିବି । ହୋଲି ଦିନ ୪ଟା ହେବ । ମୁଁ ବାହାରିଲି ପୁରୀ ତାକୁ ଆଣିବାକୁ । ଆମ ଗାଁ କୁମାରେଶ୍ୱର ଠାରୁ ସାତଶଙ୍ଖ ଯାଇ ସେଠାରୁ ବସ୍‌ରେ ଗଲି ପୁରୀ । ସେତେବେଳେ ବସ୍ ସବୁ ପୁରୀ ବଡ଼ ଡାକ୍ତରଖାନା ଛକରେ ରହୁଥାଏ । ମୁଁ ସେଠାରୁ ଓହ୍ଲାଇ ଚାଲି ଚାଲି ଯାଇ ତାଙ୍କ ଘରେ ପହଞ୍ଚିଲି । ସେଠାରେ ଦେଖେ ତ ସେ ଝିଅର ଦେହ ଖରାପ ଅଛି । ତେଣୁ ସେ ଆସିଲା ନାହିଁ । ବାଧ୍ୟ ହୋଇ ମୁଁ ପୁଣି ଏକୁଟିଆ ଫେରିଆସିଲି । ବସ୍‌ରେ ଘରକୁ ଆସିବାପାଇଁ ଅଠରନଳା ପାଖକୁ ଆସିଲି । କାରଣ ସେଠାରେ ବି ବସ୍ ରୁହେ ସମସ୍ତେ ଆସନ୍ତି । ମୁଁ ସେଠାରେ ମଧ୍ୟ ବସ୍ ଅପେକ୍ଷାରେ ରହିଲି । ସେତେବେଳକୁ ସମୟ ସଂଧ୍ୟା ୬.୩୦ମି. ହେଲାଣି । ଯେତେସବୁ ବସ୍ ଆସିଲା, କେଉଁ ବସ୍ ସେଠାରେ ରହିଲା ତ ଆଉ କେଉଁ ବସ୍ ରହିଲା ନାହିଁ । ଯେଉଁ ବସ୍ ରହିଲା, ସେଥିରେ ଏତେ ଭିଡ଼ ଯେ ମୁଁ ବସ୍‌କୁ ଚଢ଼ିପାରିଲି ନାହିଁ । ଏହିପରି ପ୍ରାୟ ଆଠ ଦଶଟା ବସ୍ ଛାଡ଼ି ସାରିଲାଣି । ଯେଉଁ ବସ୍ ପାଖକୁ ଯାଉଛି, ଯାଉ ଯାଉ ବସ୍ ଛାଡ଼ି ଦେଉଛି । ରାତି ୯ଟା ହେଲାଣି । ଧୀରେ ଧୀରେ ମୋତେ ଭୟ ଲାଗିବା ଆରମ୍ଭ ହେଲାଣି । ଅଟୋକୁ କହିଲେ ସେମାନେ ମନା କରୁଛନ୍ତି । କିଏ କହୁଛି ମୁଁ ସାକ୍ଷୀଗୋପାଳ ପର୍ଯ୍ୟନ୍ତ ଯିବି ତ, କିଏ କହୁଛି ଚନ୍ଦନପୁର

ପର୍ଯ୍ୟନ୍ତ । କ'ଣ କରିବି କିଛି ଜାଣିପାରୁ ନଥାଏ । ମନେ ମନେ ଜଗନ୍ନାଥଙ୍କୁ ଡାକୁଥାଏ, ପ୍ରଭୁ ମୋତେ ଯେମିତି ହେଲେ ଘରେ ପହଞ୍ଚାଇ ଦିଅ । ଘରେ ବହୁତ ବ୍ୟସ୍ତ ହେବେଣି । ସେତେବେଳେ ବି ଫୋନର ବ୍ୟବହାର କମ୍ । କେବଳ ଲ୍ୟାଣ୍ଡ ଲାଇନ୍, ମୋବାଇଲ କ'ଣ ଜାଣି ନଥାଏ । ସେଠାରେ ଫୋନ ଅଛି କି ନାହିଁ ମୁଁ ଜାଣେନି । ଜାଣିଲେ ବି ଆମ ଘରେ ଫୋନ ନଥାଏ । କ'ଣ କରିବି କ'ଣ କରିବି ଭାବୁଥାଏ । ସେଠାରେ ପ୍ରାୟ ଆଉ ସ୍ତ୍ରୀ ଲୋକ ଦେଖାଯାଉନଥା'ନ୍ତି । ମୁଁ ଏକୁଟିଆ ପୁଣି ଝିଅଟିଏ । ଏହିପରି ବ୍ୟତିବ୍ୟସ୍ତ ଅବସ୍ଥାରେ ଭାବୁ ଭାବୁ ମୁଁ ଦେଖିଲି ଆମ ସାତଶଙ୍ଖର ଜଣେ ବାବୁଲି ଭାଇ ବୋଲି ସେ ଟ୍ରକ୍‌ରେ ପରିବା ନେଇ ପୁରୀ ମାର୍କେଟ ଯାଇଥିଲେ । ମୁଁ ଭାବିଲି ସେ ନିଶ୍ଚିତ ଏଇ ବାଟ ଦେଇ ଆସିବେ, ମୁଁ ସେଥିରେ ସାତଶଙ୍ଖ ପର୍ଯ୍ୟନ୍ତ ପଳାଇବି । ସେଠାରେ ଆମ ଘର ଲୋକ ମୋତେ ଅପେକ୍ଷା କରିଥିବେ ତାଙ୍କ ସହ ଘରକୁ ଯିବି । ସେଠାରେ ମୋତେ ମଧ୍ୟ ବହୁତ ଲୋକ ପଚାରୁଥିଲେ ଝିଅ କୁଆଡ଼େ ଯିବୁ ବୋଲି । ମୁଁ କିଛି କହୁନଥାଏ । ମନେ ମନେ ଜଗନ୍ନାଥଙ୍କୁ ଡାକୁଥାଏ । ଠିକ୍ ସେହି ସମୟରେ ଟ୍ରକ୍‌ଟି ଆସିଲା । ମୁଁ ବଡ଼ ପାଟିରେ ବାବୁଲି ଭାଇ ଡାକି ଡାକି ଏତେ ଜୋର୍‌ରେ ଦୌଡୁଥିଲି ଯେ ଏବେ ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କାରଣ ସେହି ସମୟରେ ଯଦି ଆଗରୁ କୌଣସି ଯାନବାହନ ଆସୁଥା'ନ୍ତା, ତେବେ ମୋର ପତ୍ତା ନଥା'ନ୍ତା । ମୁଁ ଦୌଡ଼ିବା ସମୟରେ ମୋତେ ସେତେବେଳେ କିଛି ଦେଖାଯାଉ ନଥିଲା । ମୋର ଗୋଟିଏ ଲକ୍ଷ୍ୟ ଥିଲା, ମୁଁ କିପରି ଟ୍ରକ୍‌ଟି ପାଇବି । କଥାରେ ଅଛି - 'ରଖେ ହରି ମାରେ କିଏ' । ଯାହାହେଉ ଜଗନ୍ନାଥଙ୍କ କୃପାରୁ ଟ୍ରକ୍‌ଟି ଅଟକିଲା । ମୁଁ ଯାଇ ସେଠାରେ ପହଞ୍ଚିଲି । ମୋତେ ଦେଖି ସେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, ତୁ ଏକୁଟିଆ ଏତେ ରାତିରେ କ'ଣ ? କୁଆଡ଼େ ଆସିଥିଲୁ ? ମୁଁ କିଛି କହିପାରୁ ନଥାଏ । ପାଣି ମାଗି ପିଇଲି । ତା'ପରେ ସବୁ କଥା କହିଲି । ବାବୁଲି ଭାଇ କହିଲେ, ତୁ ଆଉ ବ୍ୟସ୍ତ ହୁଅନା, ମୁଁ ତୋତେ ନେଇ ଘରେ ଛାଡ଼ି ଦେଇ ଆସିବି । ନୀରବ ନିଶ୍ଚଳ ମନରେ ବସି ସବୁ ଭାବୁଥାଏ ସତରେ ଜଗନ୍ନାଥଙ୍କ ଠାରୁ ବଡ଼ ଲୋକ କେହି ନାହାନ୍ତି । ହଁ, ଆମ ଗାଁ ଦେଇ ଯାଉଥିବା ଜଣେିକ ବେହେରା ମଧ୍ୟ ସେହି ଟ୍ରକ୍‌ରେ ଥିଲେ । ସେ ସବୁବେଳେ ସଂଧ୍ୟାରେ ଛେନା ନେଇ ପୁରୀ ଯାଆନ୍ତି । ରାତିରେ ଫେରନ୍ତି । ସେ କହିଲେ ବାବୁଲି ଭାଇ ମୁଁ ତ ତାଙ୍କ ଘର ଦେଇ ଆମ ଗାଁକୁ ଯିବି, ସେଠାରେ ମୁଁ ତାକୁ ଛାଡ଼ିଦେବି । ସାତଶଙ୍ଖ ଠାରୁ ସେଇ ବେହେରା ମଉସାଙ୍କ ସହିତ ଆସିଲି । ମୋତେ ଆମ ଘରେ ଛାଡ଼ିଦେଲେ । ସମସ୍ତେ ଦାଣ୍ଡରେ ଠିଆ ହୋଇଥିଲେ ଚିନ୍ତାଗ୍ରସ୍ତରେ, ମୋରି ବାଟକୁ ଚାହିଁ ରହିଥିଲେ । ମୋତେ ପଚାରିଲେ, ଏତେ ଡେରି କ'ଣ ପାଇଁ ? ସେମାନଙ୍କ ଆଗରେ ସବୁ କଥା କହିଲି ଏବଂ ଶେଷରେ କହିଲି ଯଦି

ଜଗନ୍ନାଥ ମୋତେ ସହାୟ ହୋଇନଥା'ନ୍ତେ ତେବେ ମୋ ପରିସ୍ଥିତି ଆଜି କ'ଣ ହୋଇଥା'ନ୍ତା ମୁଁ ଭାବିପାରୁ ନାହିଁ । ବର୍ତ୍ତମାନ ସେ ଘଟଣା ମନେ ପଡ଼ିଗଲେ ମୋତେ ଆଶ୍ଚର୍ଯ୍ୟ ଲାଗୁଛି ।

ତେଣୁ ପ୍ରଭୁ ଜଗନ୍ନାଥ ତାଙ୍କର ଦୁଇଟି ଚକା ଚକା ଆଖିରେ (ଯାହାକି ଗୋଟିଏ ସୂର୍ଯ୍ୟ ଏବଂ ଅନ୍ୟଟି ଚନ୍ଦ୍ର) ସବୁ ଦେଖୁଥା'ନ୍ତି । ତାଙ୍କ ପାଇଁ ଦିନ ରାତି ସବୁ ସମାନ । ସମସ୍ତେ ତାଙ୍କ ପାଖରେ ସମାନ କି ଧନୀ କି ଗରିବ । ସେ ଭକ୍ତର ଭଗବାନ, ଟିକିଏ ଭକ୍ତି ପାଇଁ ସେ ଭକ୍ତର ପଛେ ପଛେ ଦୌଡୁଥା'ନ୍ତି ଏବଂ ପ୍ରତି ମୁହୂର୍ତ୍ତରେ ତାଙ୍କ ପାଖେ ପାଖେ ଥା'ନ୍ତି । ତେଣୁ ଆମର ଚେତନା, ସଂକଳ୍ପ, ମନ, ପ୍ରାଣ, ଶରୀର ସବୁ କିଛି ତାଙ୍କୁ ସମର୍ପି ଦେବା ଉଚିତ୍ ଏବଂ ଦେଖିବ ତୁମ ଜୀବନରେ ଯେତେ ଝଡ଼ ଝଞ୍ଜା ଆସୁନା କାହିଁକି ତାହା ଆପେ ଆପେ ଦୂରେଇ ଯିବ । ତେଣୁ ଆମେ ମଧ୍ୟ ସଂକଳ୍ପବଦ୍ଧ ହେବା ଉଚିତ । ଏଠାରେ ଗୋଟିଏ କବିତା ମନେପଡ଼େ -

'ସୁନ୍ଦର ଯେତିକି ଅନ୍ଧାର ସେତିକି
ଏହି ଯେ ଗହନ ବନ
ତେଣୁ ତୁ ଆପଣା ସଂକଳ୍ପେ
ଅଟଳ ଅଚଳ ରହରେ ମନ
ଆଗରେ ପଡ଼ିଛି ପଥ ବହୁ ଦୂର
ଆହୁରି କେତେ ଯେ ବାକି,
ଚାଲିବି ଚାଲିବି ନ ପଡ଼ିବି ଥକି
ମୁଜିବା ଆଖରୁ ଆଖି ।'

ଏ ଯେଉଁ ଲେଖାଟି କେବଳ ଅଭୁଲା ଅନୁଭୂତି ବା ଅଭୁଲା ଅତୀତ । କେବଳ ଜଣେ ତା'ର ହୃଦୟରେ ଅନୁଭବ କରିପାରେ ।

'ବଚନ ବିଷୟ ନୁହଁଇ ଏ ଛବି
ହୃଦୀ ଯେ କେବଳ ପାରେ ଅନୁଭବୀ ।'

ମାତୃ ନିଳୟ
ଗଜପତି ନଗର, ଜଟଣୀ
ଖୋର୍ଦ୍ଧା - ୭୫୨୦୫୦
ଭ୍ରାମ୍ୟଭାଷ : ୯୮୬୧୦୬୨୫୬୪



# ହଜିଲା ଦିନର କଥା

## ଡ. ପୁଷ୍ପିତା ଜେନା

'ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ତେଷାଂ ଜନ୍ମ ନ ବିଦ୍ୟତେ
ସର୍ବ ତୀର୍ଥେଷୁ ତେ ସ୍ନାତାଃ ସର୍ବଯଜ୍ଞେସୁ ଦୀକ୍ଷିତାଃ
ଆରାଧିତାଃ ସୁରାଃ ସର୍ବେ ତୈରେବ ପଠିତା ଶ୍ରୁତିଃ
ପୁରାଣନି ଚ ସର୍ବାଣି ଜପାନି ମୁନିସତ୍ତମ
ଦାନଂ ଦତ୍ତଂ ତପସ୍ତପଂ ପିତ-ରସ୍ତର୍ପିତାସ୍ତଥା
ଯାଚକାନାଂ ଚ ସନ୍ତୁଷ୍ଟିଃ କୃତା ତୈରେବ ନାରଦ
ଭକ୍ତ୍ୟା ପରମୟା ଯେବୈ ପଶ୍ୟନ୍ତି ଜଗତାଂ ପତିମ୍
ପୂର୍ଣ୍ଣେନ୍ଦୁଚାରୁବଦନଂ ନୀଳଜୀମୂତ ସୁନ୍ଦରମ୍ ।'

ସକଳ ତୀର୍ଥରେ ସ୍ନାନ କଲେ, ଯଜ୍ଞ କଲେ, ସକଳ ଦେବତାଙ୍କୁ ଆରାଧନା କଲେ, ବେଦ ଅଧ୍ୟୟନ, ପୁରାଣ ପାଠ ଅଥବା ଜପତପ, ଦାନଧର୍ମ କରି ପିତୃପୁରୁଷ ମାନଙ୍କୁ ତର୍ପଣ ଦ୍ୱାରା ସନ୍ତୁଷ୍ଟ କରି ଯେଉଁ ଆନନ୍ଦ ମିଳେ ନାହିଁ, ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ପରମ ଭକ୍ତି ସହକାରେ ଦର୍ଶନ କଲେ ସେହି ଆନନ୍ଦ ମିଳିଥାଏ ।

ପୁରୁଷୋତ୍ତମ କ୍ଷେତ୍ର ବା ଜଗନ୍ନାଥ ଧାମ ହେଉଛି ହିନ୍ଦୁ ଧର୍ମର ସର୍ବଶ୍ରେଷ୍ଠ ଧାମ । ବାସ୍ତବିକ ଏହା ଏକ ମହାଶ୍ଚର୍ଯ୍ୟ କ୍ଷେତ୍ର । ସତେ ଯେପରି ଏକ ସ୍ପର୍ଶମଣି । ଯାହାର କ୍ଷଣିକ ସ୍ପର୍ଶ ପାଇଁ ଅନନ୍ତ କାଳରୁ ଅଗଣିତ ସାଧୁ, ସନ୍ଥ, ଧର୍ମଗୁରୁ ପ୍ରଭୃତି ଏ କ୍ଷେତ୍ରରେ ସ୍ୱଧର୍ମ ପ୍ରଚାର କରିବାକୁ ଆସି ସମସ୍ତ ଉଦ୍ଦେଶ୍ୟକୁ ଭୁଲି ମହାପ୍ରଭୁଙ୍କ ଅଲୌକିକ ଲୀଳା ଦର୍ଶନ କରି ସର୍ବଧର୍ମ ସମନ୍ୱିତ ଶ୍ରୀଜଗନ୍ନାଥ ଧର୍ମ ତୀର୍ଥ ମହାସାଗରରେ ନିଜକୁ ବୁଡାଇ ଦେଇ ତା'ଭିତରେ ସ୍ୱ-ଧର୍ମର ପ୍ରତିବିମ୍ବ ଦେଖିପାରିଛନ୍ତି ।

ସାଧାରଣ ମାନବ ଏ ସଂସାରରେ ନିମିତ୍ତ ମାତ୍ର । 'ଦଇବ ଦଉଡ଼ି ମଣିଷ ଗାଈ, ଯେଣିକି ଟାଣଇ ସେଣିକି ଯାଇ ।' ଠିକ୍ ଯାହା ଯେତେବେଳେ ଅଭିପ୍ରେରିତ ତାକୁ କେହି ଖଣ୍ଡନ କରିପାରିବେ ନାହିଁ । ପ୍ରଭୁ ଜଗନ୍ନାଥଙ୍କ ଦର୍ଶନ କରିବା ପ୍ରତ୍ୟେକଙ୍କ ମନରେ ଏକ ଦୁର୍ବାର କାମନା । ତାଙ୍କୁ ଟିକେ ଦେଖିଦେଲେ ସବୁ ଦୁଃଖ ଭୁଲି ହୋଇଯାଏ । ସବୁ କଷ୍ଟ ମେଣ୍ଟିଯାଏ ।

ଜଗନ୍ନାଥଙ୍କ କରୁଣା କ'ଣ ତାହା ମୁଁ ଜୀବନରେ ବହୁବାର ଅନୁଭବ କରିଅଛି । ସେହିଭଳି ଏକ ଦୁଃଖଦ ଅଭୁଲା ସ୍ମୃତି ମୋର ସାରାଜୀବନ ମନେ ରହିଥିବ, ଯାହା ହେଉଛି ପ୍ରଭୁଙ୍କ କରୁଣାରୁ ଚନ୍ଦ୍ରଭାଗାରେ ହଜିଯାଇଥିବା ମୋ ଝିଅକୁ ପାଇବା ।

ମାଘ ସପ୍ତମୀର ପୂର୍ବଦିନ । ମୋ କଲେଜ ଛୁଟି ଥାଏ । ସେତେବେଳେ ପୁଅ ଓ ଝିଅ ଦୁଇଜଣ ଛୋଟ ହୋଇଥା'ନ୍ତି । ମୋ ବଡ଼ ନଣନ୍ଦ ଓ ନଣନ୍ଦେଇ ମୋତେ କହିଲେ, ଚାଲ ସମସ୍ତେ ତଳପଟେ ବାଇକ୍‌ରେ ଚନ୍ଦ୍ରଭାଗା ଯିବା । ନଣନ୍ଦ ଓ ନଣନ୍ଦେଇ ଗୋଟିଏ ବାଇକ୍‌ରେ ଅନ୍ୟ ଏକ ବାଇକ୍‌ରେ ମୁଁ, ମୋ ସ୍ୱାମୀ, ଆମ ସାଥିରେ ଗାଁର ଜଣେ ଦିଅର ଓ ଯାଆ ଆଉ ଗୋଟିଏ ବାଇକ୍‌ରେ ବାହାରିଲେ । ପିଲାଙ୍କୁ ସାଥିର ଧରି ଆମେ ସମସ୍ତେ ବାହାରିଲୁ । ଶିଖରଘାଟ ପାଖରେ ଦେବୀ ନଦୀରେ ସେତେବେଳକୁ ପୋଲ ହୋଇନଥାଏ । ଡଙ୍ଗାରେ ନଈ ପାର ହେଲୁ । ନଈ ଆରପଟରେ ମଙ୍ଗଳା ମନ୍ଦିର । ସେଠାରୁ ମଙ୍ଗଳାଙ୍କୁ ଦର୍ଶନ କରି ଚନ୍ଦ୍ରଭାଗାରେ ପହଞ୍ଚିଲୁ । ପ୍ରବଳ ଜନଗହଳି । କି ଧନୀ କି ଗରିବ ସମସ୍ତେ ପାଲରେ ଛୋଟ ଛୋଟ ଘର କରିଥା'ନ୍ତି ରାତି କଟାଇବା ପାଇଁ । ରାତିସାରା ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ସେଠାରେ ଚାଲିଥାଏ । କାହା ଆଖିକୁ ନିଦ ନାହିଁ । ବାଲିରେ ଚୁଲି କରି ସମସ୍ତେ ମାଟିହାଣ୍ଡି କିଣି ରୋଷେଇ କରି ଖାଉଥା'ନ୍ତି । ରାତି ତିନିଟା ପରେ ପ୍ରଥମେ ଠାକୁରଙ୍କ ସ୍ନାନ ସରିବା ପରେ ସେହି ତୀର୍ଥ ଜଳରେ ସର୍ବସାଧାରଣଙ୍କୁ ସ୍ନାନ କରିବାର ଅନୁମତି ମିଳେ । ବାଲିରେ ଚାରିଆଡ଼େ ଅସ୍ଥାୟୀ ଜଳର ଉତ୍ସମାନ ବ୍ୟବସ୍ଥା କରାଯାଇଥାଏ । ସମସ୍ତଙ୍କ ମନରେ ଉତ୍କଣ୍ଠା, ବୁଡ଼ ପକାଇ ଭୋର୍‌ରୁ ସୂର୍ଯ୍ୟ ଉଦୟ ଦେଖି ସାରିବା ପରେ ବାଟରେ ରାମଚଣ୍ଡୀଙ୍କୁ ଦର୍ଶନ କରି ପୁରୀ ଯିବେ । ଜନଗହଳି ମଧ୍ୟରେ ସେତେବେଳକୁ ମୋ ନଣନ୍ଦେଇଙ୍କ ପକେଟ୍‌ରୁ ମନିପର୍ସଟି ଚୋରି ହୋଇଗଲା । ସେ ତେଣୁ ମନଦୁଃଖ କରି ଆଉ ପୁରୀ ନ ଯାଇ ଘରକୁ ଫେରି ଯିବାପାଇଁ କହିଲେ । ଆମ ମନରେ କିନ୍ତୁ ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ପ୍ରବଳ ଆଗ୍ରହ ରହିଥାଏ । ସୂର୍ଯ୍ୟ ଉଦୟ ଦେଖିସାରିବା ପରେ ଲକ୍ଷାଧିକ ଲୋକ କିଏ ପୁରୀ ଯାଉଥା'ନ୍ତି ତ କିଏ ଘରକୁ ଫେରିଯାଉଥା'ନ୍ତି । ଆମେ ଷ୍ଟାଣ୍ଡରୁ ଗାଡ଼ି ବାହାର କରି ପୁରୀ ଯିବା ପାଇଁ ସ୍ଥିର କଲୁ । ପୁଅ ଛୋଟ ତେଣୁ ମୁଁ ତାକୁ ଧରିଥାଏ । ସାଥିରେ ଯାଇଥିବା ଯାଆଟି ମୋ ଝିଅକୁ ଧରିଥା'ନ୍ତି । ପ୍ରବଳ ଜନଗହଳି ମଧ୍ୟରେ ସେ କେତେବେଳେ ତାଙ୍କ ହାତରୁ ମୋ ଝିଅକୁ ଛାଡ଼ିଦେଇଛନ୍ତି ତାଙ୍କୁ ଜଣାନାହିଁ । ସମସ୍ତେ ଗାଡ଼ି ପାଖରେ ପହଞ୍ଚିଲା ବେଳକୁ ଝିଅ ନାହିଁ । ମୁଁ ସମସ୍ତଙ୍କୁ ଝିଅ କାହିଁ ବୋଲି ପଚାରିଲି ହେଲେ ଝିଅ କୁଆଡ଼େ ଗଲା କାହାର ହୋସ୍ ନାହିଁ । ଛୋଟପିଲା ସେତେବେଳକୁ ସେ ୫-୬ ବର୍ଷର ହୋଇଥାଏ । ଭିଡ଼ ଭିତରେ ମୋ ସ୍ୱାମୀ, ମୁଁ ଓ ଅନ୍ୟ ସମସ୍ତେ ଝିଅକୁ ଖୋଜିବାକୁ ଲାଗିଲୁ, ହେଲେ କେଉଁଠି ତାକୁ ପାଇଲୁ ନାହିଁ । ମୁଁ ସେତେବେଳକୁ ଅସ୍ଥିର ହୋଇ ପଡ଼ିଲିଣି, ମନ ଭିତରେ ଜଗନ୍ନାଥଙ୍କୁ ଡାକୁଥାଏ । ଏ ଭିଡ଼ ଭିତରୁ ଝିଅକୁ ଯେ ପାଇବୁ ସେ ଆଶା ମଧ୍ୟ କ୍ଷୀଣ ଥାଏ । ମୁଁ ମନେ ମନେ ଭାବୁଥାଏ କାଳିଆରେ, ଯଦି

ମୋ ଝିଅ ନ ମିଳେ ତେବେ ମୁଁ ଏ ସମୁଦ୍ରକୁ ଝାସ ଦେବି । ଆଖିରୁ ସମସ୍ତଙ୍କର ଧାର ଧାର ଲୁହ ବୋହି ଯାଉଥାଏ । ହଠାତ୍ ମୁଁ ଲକ୍ଷ୍ୟ କଲି, ପୁରୀ ଆଡ଼କୁ ଯେଉଁ ରାସ୍ତା ଯାଇଛି ସେ ରାସ୍ତାରେ କାହାକୁ ନପାଇ ଝିଅ ଖୁବ୍ ଜୋର୍‌ରେ କାନ୍ଦୁଥାଏ । ମୋ ମାମା, ମମି କାହାନ୍ତି ବୋଲି ସେ ମଧ ବଡ଼ ପାଟିରେ ଗଳା ଫଟାଇ କାନ୍ଦୁଥାଏ । ବହୁ ଲୋକ ତାକୁ ଘେରି ଯାଇଥା'ନ୍ତି । ହଠାତ୍ ମୋ ନଜର 'ତା' ଉପରେ ପଡ଼ିଲା । ମୁଁ ସମସ୍ତଙ୍କୁ କହିଲି, ହେଇ ଦେଖ ଝିଅ ସେଠି କାନ୍ଦୁଛି । ସମସ୍ତେ ସେଠାକୁ ଦୌଡ଼ିଲୁ । ଭିଡ଼ ସେତେବେଳକୁ କ୍ରମଶଃ କମି ଆସୁଥାଏ । ଝିଅକୁ ପାଇସାରିବା ପରେ ସମସ୍ତେ ଆଶ୍ୱସ୍ତ ହୋଇ ପ୍ରଭୁ ଜଗନ୍ନାଥଙ୍କୁ ମୁଣ୍ଡିଆଟିଏ ପକାଇଲୁ । ପ୍ରଭୁ ଜଗନ୍ନାଥଙ୍କ ବିଚିତ୍ର କୃପା । ପ୍ରକୃତରେ ତାଙ୍କ ଦୟା ନଥିଲେ ମୁଁ ସେ ଜନସମୁଦ୍ର ମଧ୍ୟରୁ ମୋ ଝିଅକୁ କେବେ ଆଉ ଫେରିପାଇ ନଥା'ନ୍ତି ।

ତା'ପରେ ସମସ୍ତେ ମନ ଖୁସିରେ ପୁରୀ ଅଭିମୁଖେ ଯାତ୍ରା କଲୁ । ସେଠାରେ ଗୋଟିଏ ହୋଟେଲରେ ଜିନିଷପତ୍ର ରଖି ଜଗନ୍ନାଥଙ୍କୁ ଦର୍ଶନ କରିବାପାଇଁ ବାହାରି ପଡ଼ିଲୁ । ଶ୍ରୀମନ୍ଦିରରେ ଅବଢ଼ା ଖାଇବାର ଆନନ୍ଦ ଆଉ କେଉଁଠି ନଥାଏ । ଯେତେ ଥର ଆମେ ପୁରୀ ଯାଉ, ମଧ୍ୟାହ୍ନରେ ଶ୍ରୀମନ୍ଦିରରେ ଅବଢ଼ା ହିଁ ଖାଇଥାଉ । ସେ ସବୁର ଅନୁଭବ ଓ ଅନୁଭୂତି ନିଆରା । ଜଗତର ନାଥ ଶ୍ରୀଜଗନ୍ନାଥ, ସେ ଲୀଳାମୟ ଈଶ୍ୱର । ସେ ଅଚଳ ମହାମେରୁ, ହେଲେ ଘଡ଼ିକ ଭିତରେ ସେ ବ୍ରହ୍ମାଣ୍ଡ ବୁଲି ଆସନ୍ତି । ଦୁନିଆରେ ଏମିତି କେହି ଜୀବ ନାହିଁ ଯିଏ ତାଙ୍କ କରୁଣାରୁ ବଞ୍ଚିତ ହୋଇଛି । ହେ ପ୍ରଭୁ ! ଅପାର କରୁଣା ତୁମର । ମୃତ୍ୟୁ ପର୍ଯ୍ୟନ୍ତ ତୁମେ ହିଁ ଆମର ସାଥୀ, ସଙ୍ଗାତ, ବନ୍ଧୁ ଓ ସହୋଦର । ଅସୀମ କରୁଣା ତୁମର ଏମିତି ଝରୁଥାଉ । ସେହି କରୁଣାରେ ସିକ୍ତ ହେଉ ସମସ୍ତଙ୍କ ହୃଦ କନ୍ଦର ।


ଅଧ୍ୟକ୍ଷା; ବଲ୍ଲଭୀଦେବୀ ମହିଳା ମହାବିଦ୍ୟାଳୟ
ବାଣୀ ନଗର, ନତକାଇ
ନିଶ୍ଚିନ୍ତକୋଇଲି, କଟକ
ଭ୍ରାମ୍ୟଭାଷ : ୯୮୬୧୨୩୭୪୬୭




# ନ ଲିଭୁ କାଳିଆର କଜ୍ଜଳଗାର

ଡ. ପୁଷ୍ପରାଣୀ ନାଥ

ସମଗ୍ର ଓଡ଼ିଶାର ପରମାରାଧ ଦେବତା ହେଉଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ । ଅନାଦି କାଳରୁ ସୃଷ୍ଟି, ସ୍ଥିତି, ଲୟର ଜଗତରୂପୀ ପରଂବ୍ରହ୍ମ ଶ୍ରୀଜଗନ୍ନାଥ । ଶ୍ରୀଜଗନ୍ନାଥ ଯେପରି ରହସ୍ୟମୟ, ତାଙ୍କର ମୂର୍ତ୍ତି ଗଠନ, କଳ୍ପନା, ପ୍ରତିଷ୍ଠା ଓ ମନ୍ଦିର ନିର୍ମାଣ ମଧ୍ୟ ସେହିପରି ରହସ୍ୟମୟ । ସ୍ୱୟଂ ଭଗବାନ ଦାରୁବ୍ରହ୍ମ ରୂପରେ ଅବତୀର୍ଣ୍ଣ ଶ୍ରୀକ୍ଷେତ୍ରରେ । ଏଣୁ ପୁରୀ କଥା ପଡ଼ିଲେ ଆଖି ଆଗରେ ଉଭା ହୁଅନ୍ତି ଚକାଆଖି । କୋଟି ଲାବଣ୍ୟ ନିନ୍ଦିତ ରୂପକାନ୍ତି । ସେହି ଭୁବନ ମୋହନ ରୂପ ଆଗରେ ସବୁକିଛି ମଳିନ ପଡ଼ିଯାଏ ।

ଜଣେ ଓଡ଼ିଆ ହୋଇ, ଓଡ଼ିଶାର ମାଟିରେ ଜନ୍ମ ନେଇ ପୁଣି ଜଗନ୍ନାଥଙ୍କୁ ଛାଡ଼ି ରହିପାରିବ - ଏଭଳି ଅସମ୍ଭବ । ଖୁବ୍ ଛୋଟବେଳୁ ହେତୁ ପାଇଲା ବେଳୁ କେଜାଣି କାହିଁକି ଜଗନ୍ନାଥଙ୍କ ସେହି ଚକା ଚକା ଆଖି ମୋତେ ଆକର୍ଷି ନେଇଛି । ମୋର ପିତା ୧୯୬୬ ମସିହାରେ ଷ୍ଟିଲ୍ ପ୍ଲାଣ୍ଟରେ ଚାକିରି ଆରମ୍ଭ କରନ୍ତି । ସେ ବର୍ଷ ସେଠି ମୋର ଜନ୍ମ । ପିତା ଏକାନ୍ତ ଶିବ ଭକ୍ତ । ପୂଜାପାଠରେ ଖୁବ୍ ଧ୍ୟାନ । କମ୍ପାନୀ ଚାକିରିର ଜେନେରାଲ ସିଫ୍ଟ ଡ୍ୟୁଟି ମଧ୍ୟରେ ସକାଳୁ ଉଠି ଫୁଲ ତୋଳି ଅଧଘଣ୍ଟା ପୂଜାପାଠ ସାରି ସେ ଅଫିସ ଯାଆନ୍ତି । ଘରେ ଗୋଟିଏ ଥାକ ପୂରାପୂରି ଠାକୁରଙ୍କ ଫଟୋ ଆଉ ବିଭିନ୍ନ ପୂଜା ସାମଗ୍ରୀରେ ଭରପୁର । ଶିବ, ଦୁର୍ଗା, ଗଣେଶ, ସରସ୍ୱତୀ, ତାରିଣୀ ଆଦି ବିଭିନ୍ନ ଫଟୋ ରୂପ ଶୋଭା ପାଆନ୍ତି । ତେବେ ଘରର ପୂର୍ବ କାନ୍ଥରେ ଶୋଭା ପାଉଥାଏ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରାଙ୍କ ୧୮ x ୨୦ ଇଞ୍ଚର ଏକ ବନ୍ଧାଇ ଫଟୋ ।

ଶ୍ରୀଜଗନ୍ନାଥଙ୍କ ସେହି ଫଟୋ ଆଗରେ ବୁଦ୍ଧି ଜାଣିବା ଆଗରୁ ହାତ ଯୋଡ଼ିଛି । ଆମେ ଛ' ଭାଇ-ଭଉଣୀ ପ୍ରତିଦିନ ସଂଧ୍ୟାରେ ବାପାଙ୍କ ସହ ସେହି ଫଟୋ ସମ୍ମୁଖରେ ପ୍ରାର୍ଥନା ବୋଲୁ । ତା'ପରେ ଆରମ୍ଭ ହୁଏ ପାଠପଢ଼ା । ସଂଧ୍ୟା ଛ'ଟାରୁ ନ'ଟା ପର୍ଯ୍ୟନ୍ତ ବାପାଙ୍କ କଡ଼ା ନିର୍ଦ୍ଦେଶ - କେହି ପଢ଼ା ଟେବୁଲ ପାଖରୁ ଉଠିପାରିବେନି । ଜୀବନ ଆଗକୁ ଗଡ଼ିଯାଇଛି । ବାପା, ମା' ଓ ଜଗନ୍ନାଥଙ୍କ ଆଶୀର୍ବାଦରୁ ଜୀବନର ପାହାଚ ଗୋଟିଏ ପରେ ଗୋଟିଏ ଅତିକ୍ରମ କରିଯାଇଛି । ସଫଳତା ପାଇଛି । ଜୀବନରେ ସବୁ ଭାଇ-ଭଉଣୀ ପ୍ରତିଷ୍ଠିତ ହୋଇଛନ୍ତି ।

କିନ୍ତୁ, ସେଇ କାଳିଆଙ୍କ ଫଟୋ ମନ ମଧ୍ୟରେ ଗଭୀର ଛାପ ପକାଇଛି । ଯେତେବେଳେ ଜୀବନରେ ଯାହାବି ଅସୁବିଧାର ସମ୍ମୁଖୀନ ହୋଇଛି, ସେହି ଫଟୋ

ସମ୍ମୁଖରେ ଛିଡ଼ା ହୋଇ ହାତ ଯୋଡ଼ି ନିର୍ନିମେଷ ନୟନରେ କେବଳ **ଚାହିଁ ରହିଛି ।** ପାଟି ଖୋଲି କିଛି କହିବାକୁ ପଡ଼େନାହିଁ । କେବଳ ମନ ମଧ୍ୟରେ ଅଭିଯୋଗ ସବୁ ଲୁହ ହୋଇ ଝରିଆସେ । ବାସ୍ ! ପରେ ପରେ ସେ ସମସ୍ତ ସମସ୍ୟା ମୋର ସମାଧାନ ହୋଇଯାଏ ।

କହନ୍ତି, ଭାବର ଠାକୁର ସେ । ମନ ମଧ୍ୟରେ ପୂର୍ଣ୍ଣ ସମର୍ପଣ କରିଦେଲେ ହିଁ ସେ ସବୁ ସମାଧାନ କରିଦିଅନ୍ତି । ଦ୍ରୌପଦୀଙ୍କ ଭଳି କେବଳ ନିଜକୁ ସମର୍ପି ଦେବା କଥା । ପିଲାଟି ଦିନରୁ ପ୍ରତିଦିନ ସଂଧ୍ୟାରେ 'ଆହେ ନୀଳଶଇଳ' କିମ୍ବା 'ଆହେ ଦୟାମୟ ବିଶ୍ୱବିହାରୀ/ଘେନ ଦୟାବହି ମୋର ଗୁହାରି' ପ୍ରାର୍ଥନା ବୋଲି ବୋଲି ସେହି ଚକାଆଖିର ମାୟାରେ ପଡ଼ିଯାଇଛି । ଜୀବନର ସମସ୍ତ ହାରିଗୁହାରି ତାଙ୍କରି ପାଦପଦ୍ମରେ । ଗୁହାରି ଶୁଣନ୍ତି, ସମାଧାନ କରନ୍ତି । କେଉଁ ଛଟକରେ, କେହି ଜାଣନ୍ତି ନାହିଁ । ଜୀବନରେ ଆଜି ପର୍ଯ୍ୟନ୍ତ ଆଶାଠୁଁ ଅଧିକ ଯାହାବି ଲାଭ କରିଛି, ସବୁ ସେହି ବ୍ରହ୍ମାଣ୍ଡକର୍ତ୍ତା, ସର୍ବନିୟନ୍ତାଙ୍କ ଅମୃତ ଆଶୀର୍ବାଦରୁ ହୋଇଛି । ତାଙ୍କରି ନିର୍ଦ୍ଦେଶ ବିନା ପଲ୍ଲବିତ ହୁଏନି ପାଦପ । ଧୂଳିକଣାଟିଏ ଉଡ଼ିଯାଇପାରେନି । ସେ ହିଁ ସବୁ କରାଉଛନ୍ତି । ମୁଁ ତ ନିମିତ୍ତ ମାତ୍ର ।

ଜୀବନର ଏକ ଅଭୁଲା ସ୍ମୃତି - ସେହି କଳାଠାକୁରଙ୍କୁ ନେଇ । ୨୦୦୬ ମସିହାର କଥା । ସେତେବେଳେ ମୋର କର୍ମକ୍ଷେତ୍ର ଥାଏ ରାଉରକେଲା । ମୋ ସ୍ୱାମୀ ହିଣ୍ଡାଲକୋ, ହୀରାକୁଦରେ ଚାକିରି କରନ୍ତି । ପାଞ୍ଚଛଅ ବର୍ଷର ପୁଅକୁ ନେଇ ଖରାଛୁଟି କଟାଇବାକୁ ଆସିଥାଏ ହୀରାକୁଦ । ଦୀର୍ଘ ଦେଢ଼ମାସ ଛୁଟି କଟାଇ ଆମେ କଲେଜ ଖୋଲିବା ଆଗରୁ ଫେରିବା କଥା । ସେ ବର୍ଷ ଜୁନ ୧୯ରେ କଲେଜ ଖୋଲିବା କଥା । କିନ୍ତୁ ଅସହ୍ୟ ଗ୍ରୀଷ୍ମ ହେଉଥିବାରୁ ସରକାର ଜୁନ ୨୬ ପର୍ଯ୍ୟନ୍ତ ଛୁଟି ବଢ଼ାଇ ଦେଲେ । ଜୁନ ୨୭ରେ ରଥଯାତ୍ରା । ଏଣୁ ଜୁନ ୨୮ରେ ସ୍କୁଲ-କଲେଜ ସବୁ ଖୋଲିବ । ରଥଯାତ୍ରା ଦିନ ଭିଡ଼ ଅଧିକ । ଏଣୁ ତା ପୂର୍ବ ଦିନ ଆମେ ରାଉରକେଲା ଫେରିବା କଥା ।

ରଥଯାତ୍ରା ପୂର୍ବଦିନ ଆମେ ଫେରିବୁ । ସେଦିନ ଆମେ ସମ୍ବଲପୁର ଭାଇ ଘରକୁ ବୁଲି ଯାଇଥାଉ । ସେଇଠୁ ଫେରିବୁ ରାଉରକେଲା । କଥା ପଡୁ ପଡୁ କହିଲି, କାଲି ରଥଯାତ୍ରା । ଠାକୁରଙ୍କୁ ରଥରେ ଥରେ ହେଲେ ଆଜିଯାଏ ଦର୍ଶନ କରିପାରିଲି ନାହିଁ । ବାପା ମା'ଙ୍କର ସେହି ରାତି ପୁରୀ ଯିବାପାଇଁ ଟିକେଟ ହୋଇଥାଏ ।

ଭାଇ କହିଲା, 'ଯିବୁ କି ? ଯାଉନୁ । ବାପା ମା' ତ ଯାଉଛନ୍ତି ।'

କହିଲି, 'କଣ ସମ୍ଭବ ? ତାଙ୍କ ତ ଟିକେଟ ହୋଇସାରିଛି, ରହିବା ବ୍ୟବସ୍ଥା ହୋଇଛି । ମୋର ତ କିଛି ହୋଇନି । ଆଗରୁ କହିଥିଲେ ସିନା...' ।

ଭାଇ କହିଲା, 'ଯିବୁ ତ ଯା । ଟିକେଟ ହୋଇଯିବ, କିନ୍ତୁ ରହିବ ସେହି ଗୋଟେ ରୁମ୍‌ରେ । କାରଣ ରୁମ୍ ସବୁ ବୁକ୍ ହୋଇସାରିଥିବ । ଆଉ ମିଳିବ ନାହିଁ ।'

କହିଲି, 'ଚଳିବ । ଆମେ ତ କାଲି ରଥଯାତ୍ରା ଦେଖି ସଂଧ୍ୟାରେ ଫେରିବୁ ରାଉରକେଲା ।'

ତତ୍‌କ୍ଷଣାତ୍ ରାଜି ହୋଇଗଲି । କାଳିଆ ଦର୍ଶନର ସୁଯୋଗ ମିଳିଲେ କି କିଏ ଛାଡ଼େ ? ପୁରୀ ! ବଡ଼ଦାଣ୍ଡରେ ରଥଯାତ୍ରା ! ଜୀବନରେ ଅନେକ ଥର ଛୋଟମୋଟ ରଥଯାତ୍ରା ଦେଖିଛି । କିନ୍ତୁ, ପୁରୀ ବଡ଼ଦାଣ୍ଡରେ ରଥଯାତ୍ରା ! ସେ ପର୍ଯ୍ୟନ୍ତ ଜୀବନରେ ସେ ସୁଯୋଗ ଆସିନାହିଁ । ମନଟା ସବୁବେଳେ ଗୋଳେଇ ହୁଏ । ଇଚ୍ଛା ହୁଏ, କେବେ ଥରେ କାଳିଆ ଠାକୁର ଡାକନ୍ତେ ନି ! ଥରେ ହେଲେ ତ ଦେଖନ୍ତି ! ଭିଡ଼କୁ ମୋ ସ୍ୱାମୀଙ୍କ ଭାରି ଡର । ସେ ଜମା ପସନ୍ଦ କରନ୍ତି ନାହିଁ । ସେ ଖୁବ ଈଶ୍ୱର ବିଶ୍ୱାସୀ । କିନ୍ତୁ, ଠେଲାପେଲାକୁ ଆଗ୍ରହ ନଥାଏ । କହନ୍ତି, ନିରୋଳା ବେଳରେ ଗଲେ ଠାକୁରଙ୍କୁ ମନ ଭରି ଦର୍ଶନ କରିହେବ । ଭିଡ଼ରେ ତାହା ସମ୍ଭବ ନୁହେଁ । ରଥଯାତ୍ରା ମାନେ ତ ପ୍ରବଳ ଭିଡ଼ । ଏଣୁ ଇଚ୍ଛା ଥିଲେ ମଧ୍ୟ ସେ ଭିଡ଼ ଭିତରେ କେବେ ଥରେ କାଳିଆଙ୍କୁ ଦର୍ଶନ କରିପାରିବି, ଭାବିନଥିଲି ।

ଏହାକୁ କହନ୍ତି କାଳିଆର ଡୋର । 'ମଦ୍‌ଭକ୍ତା ଯତ୍ର ପୂଜନ୍ତି, ତତ୍ର ତିଷ୍ଠାମି ନାରଦ ।' ଅର୍ଥାତ୍ ଭକ୍ତମାନେ ଯେଉଁଠି ପୂଜା କରନ୍ତି, ସେଠାରେ ମୁଁ ଥାଏ ବୋଲି ପ୍ରଭୁ କହିଛନ୍ତି । ଭକ୍ତର ମନୋବାଞ୍ଛା ପୂରଣ କରନ୍ତି ଯେମିତି ବି ହେଉ । କିନ୍ତୁ ମୁଁ କି ଭକ୍ତ ଭାବରେ ଗଣା ହେବି ? କାୟ ମନ ବାକ୍ୟରେ ମୋର ସବୁକିଛି ତାଙ୍କରି ପାଦପଦ୍ମରେ ସମର୍ପି ଦେଇଛି ସିନା ! ହେଲେ କାହିଁ ଭକ୍ତ ସାଲବେଗ, ଦାସିଆ ବାଉରୀ କି ବନ୍ଧୁ ମହାନ୍ତି । ଆଉ କାହିଁ ମୁଁ । ତଥାପି ଆଶା ଛାଡ଼ିନାହିଁ । ବଡ଼ ଭକ୍ତ ହୋଇ ନପାରିଲେ ନାହିଁ । ହୃଦୟରେ ସମର୍ପଣ ଭାବ ତ ରଖିପାରିବି । ଦେଖନ୍ତୁ ନା, ମୋର ଫେରିବା କଥା ରାଉରକେଲା । ସେ ଫେରିଥାନ୍ତେ ହୀରାକୁଦ । କେମିତି ଲୀଳା କଲେ, ରାତି ପାହିଲା ବେଳକୁ ଆମେ ସପରିବାର ପୁରୀରେ ।

ପୁରୀରେ ପହଞ୍ଚିଲା ବେଳକୁ ଦିନ ଦଶଟା । ତରତର ହୋଇ ହୋଟେଲରେ ପହଞ୍ଚିଲୁ । ଗାଧୁଆପାଧୁଆ ସାରି ପହଞ୍ଚିଗଲୁ ବଡ଼ଦାଣ୍ଡରେ ।

ବଡ଼ଦାଣ୍ଡ ସେତେବେଳକୁ ଉତ୍ସବ ମୁଖରିତ । ତିନି ରଥ ତାଳଧ୍ୱଜ, ଦେବଦଳନ ଓ ନନ୍ଦିଘୋଷ ସୁସଜ୍ଜିତ ହୋଇ ପ୍ରଭୁଙ୍କ ପଥ ଚାହିଁ ବସିଛନ୍ତି । ଠାକୁରଙ୍କ ପହଣ୍ଡି ଆରମ୍ଭ ହୋଇଥାଏ । କିନ୍ତୁ ବଡ଼ଦାଣ୍ଡକୁ ଠାକୁର ସେତେବେଳଯାଏ ଆସି ନଥା'ନ୍ତି । ଆମେ ବଡ଼ଦାଣ୍ଡ ପାର୍ଶ୍ୱସ୍ଥ ଏକ ମଠ ଛାତ ଉପରେ ବସିବାଲାଗି ଟିକେଟ କରିଥାଉ । ସେଠିକୁ ଯାଇ ଦେଖୁ ସାମିଆନା ଟଣା ଯାଇ ଅନେକ ପ୍ଲାଷ୍ଟିକ ଚେୟାର ପଡ଼ିଛି । ଛାତ ଉପରୁ ତିନି ରଥ ବେଶ୍ ସ୍ପଷ୍ଟ ଦେଖାଯାଉଥାଏ ।

ଖୁସିରେ ମନ କୁରୁଳି ଉଠିଲା । ଯାହାହେଉ, ଏତେ ଦିନେ ପ୍ରଭୁ ଡାକ ଶୁଣିଲେ । ଆଜି ବଡ଼ଦାଣ୍ଡରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଦର୍ଶନ କରିବାର ସୌଭାଗ୍ୟ ଲାଭ ହେବ । ଧୀରେ ଧୀରେ ବଡ଼ଦାଣ୍ଡର ଗହଳି ବଢୁଥାଏ । ସେପଟେ ସିଂହଦ୍ୱାର ଦେଇ ପହଣ୍ଡି ଯାତ୍ରାରେ ପ୍ରଥମେ ଶ୍ରୀସୁଦର୍ଶନ, ପରେ ପରେ ଶ୍ରୀବଳଭଦ୍ର, ସୁଭଦ୍ରା ମା' ଓ ଶେଷରେ କଳାଠାକୁର ତାଙ୍କର ଭୁବନ ମୋହନ ରୂପକୁ ଭକ୍ତ ମାନସରେ ବିଞ୍ଚି ବିଞ୍ଚି ବାହାରି ଆସିଲେ । ଟାହିଆ ଦୋହଲାଇ, ନୀଳଜୀମୂତ କାନ୍ତି ନେଇ କଳାଠାକୁର ପହଣ୍ଡି ମାଧ୍ୟମରେ ରଥକୁ ଚଢ଼ିବାର ଦୃଶ୍ୟ ଟିଭି ପରଦାରେ ଦେଖିଥିଲି ସିନା ଆଜି ସ୍ୱଚକ୍ଷୁରେ ଦେଖିଲି । ଦେହ, ମନ, ହୃଦୟ ସମସ୍ତ ପରିପୂର୍ଣ୍ଣତାରେ ଭରିଗଲା ।

ପିଲାଟି ଦିନରୁ ଯେଉଁ ରୂପକୁ ମନ ମଧ୍ୟରେ ପୂଜି ଆସୁଥିଲି ତାଙ୍କରି ଲୀଳା ଆଜି ତାଙ୍କରି କରୁଣାରୁ ଦର୍ଶନ କରିବାର ସୁଯୋଗ ପାଇଲି - ଏହା କ'ଣ କମ୍ ଭାଗ୍ୟର କଥା ! ମୋର ଚିରାରାଧ୍ୟ କଳାଠାକୁରଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ଦେଖିବାର ସୌଭାଗ୍ୟ ମିଳିଲା । ଦିନ ଗୋଟାଏ ସୁଦ୍ଧା ତିନି ଠାକୁର ରଥରେ ବିରାଜମାନ କଲେ । ପରେ ପରେ ଗଜପତି ମହାରାଜ ତାମ୍‌ଜାନ୍‌ରେ ବିଜେ କଲେ । ସେତେବେଳକୁ ବଡ଼ଦାଣ୍ଡ ଜନସମୁଦ୍ରରେ ପରିଣତ ହୋଇଗଲାଣି । ଛେରାପହଁରା ଆଦି କର୍ମମାନ ସମାପ୍ତ ହେବା ପରେ ଚାରମାଳ ଫିଟାଯାଇ ଦଉଡ଼ି ବନ୍ଧାଗଲା । ଏହି ଅବସରରେ ଯାଙ୍କ ସହ ତଳକୁ ଯାଇ ରଥ ଦଉଡ଼ି ଟିକେ ଛୁଇଁ ଦେଇ ଚାଲିଆସିଲି । ଭିଡ଼ଭାଡ଼କୁ ମୋର ବି ଭୟ । ଉପରୁ ତ ସବୁ ସ୍ପଷ୍ଟ ଦିଶୁଛି । ରଥରେ ବିରାଜମାନ କାଳିଆ ଠାକୁରଙ୍କ ଉଜ୍ଜ୍ୱଳ ମୁଖମଣ୍ଡଳ ଆଦି ସବୁ କିଛି ସ୍ପଷ୍ଟ, ସୁନ୍ଦର ।

ରଥ ଟଣା ଆରମ୍ଭ ହୋଇଗଲା । ଗୋଟିକ ପରେ ଗୋଟିଏ ରଥ ଘର୍ଘର ନାଦରେ ବଡ଼ଦାଣ୍ଡରେ ଗଡ଼ି ଗଡ଼ି ଚାଲିଲେ । ଜନ ସମୁଦ୍ର ମଧ୍ୟରେ ଯେମିତି ତିନୋଟି ନୌକା ଭାସିଚାଲିଛି । ସେ ବର୍ଷ ସଂଧ୍ୟା ପୂର୍ବରୁ ତିନି ରଥ ଗୁଣ୍ଡିଚା ମନ୍ଦିରରେ ପହଞ୍ଚିଥିଲେ । ରଥ

ଆଗେଇଯିବା ପରେ ଆମେ ଛାତରୁ ଓହ୍ଲାଇ ତଳେ କିଛି ଜଳଖିଆ ଖାଇ ଚାଲିଲୁ ଗୁଣ୍ଡିଚା ମନ୍ଦିର ।

ତିନି ରଥ ଧାଡ଼ି ହୋଇ ଛିଡ଼ା ହୋଇଥା'ନ୍ତି । ଆମେ ଯାଇ ଦେଖିଲା ବେଳକୁ ଗୁଡ଼ ମାଠିଆକୁ ପିମ୍ପୁଡ଼ି ବେଢ଼ିଗଲା ଭଳି ଲୋକମାନେ ରଥ ତିନୋଟିକୁ ବେଢ଼ିଛନ୍ତି । କିଛି ଲୋକ ଉପରେ ତ କିଛି ତଳେ । ସେତେବେଳକୁ ରଥକୁ ଶିଡ଼ି ଲଗାଯାଉ ନଥିଲା । ଲୋକମାନେ ରଥ ଚକ ବାଟ ଦେଇ ଭିଡ଼ି ଓଟାରି ହୋଇ ରଥକୁ ଚଢୁଥା'ନ୍ତି । ଖୁବ୍ ଉତ୍ସାହରେ ମୁଁ ମଧ୍ୟ ଅନ୍ୟମାନଙ୍କ ସହ ଚଢ଼ିଗଲି ନନ୍ଦିଘୋଷ ରଥ ଉପରକୁ । କିନ୍ତୁ, ଏ କ'ଣ ? ଭୁବନମୋହନଙ୍କ ଏ କି ରୂପ... !

କାଳିଆ ସାଆନ୍ତଙ୍କ ଆଖିର କଜ୍ଜଳଗାର ଲିଭିଯାଇଛି । କଜ୍ଜ୍ୱଳ ସବୁ ଧଳା ଡୋଳାରେ ଠାଏଁ ଠାଏଁ ଲେସି ହୋଇ ଯାଇଛି । ଦିନକ ପୂର୍ବର ନେତ୍ରୋତ୍ସବର ସେ ଭୁବନମୋହନ ନେତ୍ରର ସୌନ୍ଦର୍ଯ୍ୟ ଆଉ କାହିଁ ? ସବୁ ଲୋକଙ୍କ ହାତ ବାଜି ଲେସି ହୋଇଯାଇଛି । ଭୟ ଲାଗିଲା ଠାକୁରଙ୍କୁ ସ୍ପର୍ଶ କରିବାପାଇଁ । ଠାକୁର ଖୁବ୍ ନିକଟରେ । ପଣ୍ଡା ସେବାୟତମାନେ ଆଗ୍ରହରେ ଲୋକଙ୍କୁ ନେଇ ଶ୍ରୀଜୀଉଙ୍କ ସ୍ପର୍ଶ କରାଉଥା'ନ୍ତି । ଭାବିଲି, କାହିଁ ସେ ପାଦପଦ୍ମ ? ଯାହାକୁ ସ୍ପର୍ଶ କରିବାପାଇଁ ଏତେ କଷ୍ଟରେ ଏ ରଥ ଉପରକୁ ଚଢ଼ିଛି । ହେ ପ୍ରଭୁ ! ମୁଁ କେଡ଼େ ବୋକି ! ଯିଏ ଅନାଦି, ଅନନ୍ତ, ଅସୀମ - ମୁଁ ତାଙ୍କ ସୀମା ଖୋଜି ପାଇବି ବା କାହୁଁ ! ଯେଉଁ ପାଦ ଗୋଟିକରେ ସାରା ପୃଥିବୀ, ଅନ୍ୟ ଗୋଟିକରେ ସାରା ଆକାଶ ଆବୃତ ହୋଇଥିଲା ଏବଂ ତୃତୀୟ ପାଦ ପାଇଁ ରାଜା ବଳୀ ମୁଣ୍ଡ ପାତିଥିଲେ, ସେହି ପାଦପଦ୍ମକୁ ଖୋଜୁଛି ! ମୁଁ କି ମୂର୍ଖ ସତେ ! ନଇଁପଡ଼ି ଠାକୁରଙ୍କ ସମ୍ମୁଖ ରଥ ଚଟାଣକୁ ଛୁଇଁ ମୁଣ୍ଡରେ ଲଗାଇଲି । ରଥ ଉପରେ ମହମହ ଚନ୍ଦନର ସୁଗନ୍ଧ । ପଥ, ରଥ, ଜଗନ୍ନାଥ ସବୁକିଛି ଏକାକାର ହୋଇଯାଇଛନ୍ତି ।

ମନ କହୁଥାଏ, ଯଶୋଦା ମା' ହୋଇଥା'ନ୍ତି କି ? କଳା କହ୍ନାଇର କଜ୍ଜଳଗାର ଲେସି ହୋଇ ଅସୁନ୍ଦର ଦିଶୁଥିବା ମୁହଁଟିକୁ ପଣତକାନିରେ ପୋଛି ଦିଅନ୍ତି । ହେଲେ ମୋର ସେ ଶକ୍ତି କାହିଁ ? ଯାହାଙ୍କୁ ଦର୍ଶନ କରିବାକୁ ଲକ୍ଷ ଲକ୍ଷ ଲୋକ ରୁଣ୍ଡ ହୋଇଛନ୍ତି ବଡ଼ଦାଣ୍ଡରେ, ପୁଣି ଦେଖୁଛନ୍ତି ଲକ୍ଷ ଲକ୍ଷ ଲୋକ ଦୂରଦର୍ଶନ ମାଧ୍ୟମରେ । ରତ୍ନବେଦୀ ଉପରୁ ଓହ୍ଲାଇ ଆସି ବଡ଼ଦାଣ୍ଡରେ ଭକ୍ତଙ୍କୁ ଦର୍ଶନ ଦେବା ଭଳି ଠାକୁର ଆଉ ନାହାନ୍ତି ଏ ଜଗତରେ । ମା' ମନ ନେଇ ମୁଁ ଘାଣ୍ଟି ହେଉଥାଏ । ପୁଅକୁ କେତେ ଯତ୍ନରେ ସଜାଇ ମା'ଟିଏ ଦାଣ୍ଡକୁ ଛାଡ଼ିଥାଏ । ଆଜି କହ୍ନାଇର ମୁଖ ବିବର୍ଣ୍ଣ । ଯଶୋଦା ମା' କାହିଁ ? କିଛି ଆଦି ଅନ୍ତ ପାଇଲି ନାହିଁ । ଭୟରେ ଯେମିତି ଅଖଚକ ଧରି ଧରି ଚଢ଼ିଥିଲି,

ସେମିତି ଓହ୍ଲାଇ ଆସିଲି । ତଳୁ ଛିଡ଼ା ହୋଇ ଦେଖିଲି, ଚକାଆଖି ମେଲି କାଳିଆ ସାଆନ୍ତ ହସୁଛନ୍ତି । ହାତ ଯୋଡ଼ି ଆଖି ମୁଦି ସେହି ପାଦପଦ୍ମରେ ଶରଣ ଗଲି । ଭାବିଲି, ଠାକୁରଙ୍କ ଏ କି ଲୀଳା ? ପୁଣି ଲୋକମାନଙ୍କ ଉପରେ କ୍ରୋଧ ଆସୁଥିଲା । ଲୋକେ କ'ଣ ତଳୁ ଦର୍ଶନ କଲେ ହୁଅନ୍ତା ନାହିଁ ! ଲୋକଙ୍କ କାର୍ଯ୍ୟକୁ ନେଇ ଅସନ୍ତୋଷ ଭାବ ଆସୁଥିଲା ମନରେ । ପୁଣି ଠାକୁରଙ୍କ ଆଶୀର୍ବାଦରୁ ପବିତ୍ର ରଥଯାତ୍ରା ଦେଖିପାରିଥିବାରୁ ପୂର୍ଣ୍ଣ ସନ୍ତୋଷ ମନରେ ନେଇ ଫେରି ଆସିଲି ମୋ କର୍ମକ୍ଷେତ୍ରକୁ ।

ଏହାର ପରବର୍ତ୍ତୀ ବର୍ଷ ମାନଙ୍କରେ ସିଡ଼ି ଲାଗିଲା ରଥକୁ । ଲୋକେ ତଥାପି ଠେଲାପେଲା ହୋଇ ରଥରେ ଠାକୁରଙ୍କୁ ଛୁଇଁବାର ଚେଷ୍ଟା କରୁଥିଲେ । କିନ୍ତୁ, ଗତବର୍ଷ, ଜୁନ୍ ୨୦, ୨୦୧୪ରେ ହାଇକୋର୍ଟଙ୍କ ନିର୍ଦ୍ଦେଶ ଆସିଲା ଯେ, ସାଧାରଣ ଜନତା ରଥାରୋହଣ ଓ ଶ୍ରୀଜୀଉମାନଙ୍କୁ ସ୍ପର୍ଶ କରିପାରିବେ ନାହିଁ । ମୋ ମନ ଆନନ୍ଦରେ କୁରୁଳି ଉଠିଲା । ଖୁବ୍ ଭଲ ହେଲା । ଆଉ ଏବେ କାଳିଆ ଠାକୁରଙ୍କ କଜ୍ଜଳଗାର ଲିଭିବ ନାହିଁ । ଏତେ ଲୋକଙ୍କ ଅସନା, ମଇଳା ହାତର ସ୍ପର୍ଶରେ କାଳିଆର ମୁଖମଣ୍ଡଳ ବିବର୍ଣ୍ଣ ଦିଶିବ ନାହିଁ । ସମସ୍ତ ଜନତା ତଳୁ, ବଡ଼ଦାଣ୍ଡରୁ ସେହି ଶ୍ରୀମୁଖ ଦେଖି ତୃପ୍ତି ଅନୁଭବ କରିବେ ।

ସେ ବର୍ଷ ଗୁହାରି କରୁଥିଲି, କାଳିଆ ଠାକୁରଙ୍କ କଜ୍ଜଳ ନ ଲିଭୁ । ଏତେ ବର୍ଷ ପରେ ହାଇକୋର୍ଟଙ୍କ ରାୟ ମାଧ୍ୟମରେ ସେ ପ୍ରାର୍ଥନା ପୂରଣ ହେଲା । ଅନୁଭବ କଲି, ସେଦିନ ମୋ 'ମନ କଥା ଜାଣି ଠାକୁର ଏ ବ୍ୟବସ୍ଥା କଲେ କି ଆଉ ! ଲୀଳାମୟଙ୍କ ଲୀଳା କିଏ ବା ବୁଝିପାରିଛି ! ଆଖିରୁ ଝରିଗଲା ଆନନ୍ଦର ଅଶ୍ରୁ । ସେହି ପଦାରବିନ୍ଦରେ ଲୟ ରଖି ହାତ ଯୋଡ଼ି ମସ୍ତକରେ ଲଗାଇଲି ।


ଅଧ୍ୟାପିକା, ଓଡ଼ିଆ ବିଭାଗ
ହୀରାକୁଦ କଲେଜ
କ୍ୱାର୍ଟର ନଂ - ଡ଼ି/୪୦
ହିଣ୍ଡାଲ୍କୋ ପାୱାର କଲୋନୀ
ହୀରାକୁଦ, ସମ୍ବଲପୁର-୭୬୮୦୧୬
ଭ୍ରାମ୍ୟଭାଷ : ୯୪୩୭୧୧୭୫୫୫




# ଅକଳ୍ପନୀୟ ଶ୍ରୀଜଗନ୍ନାଥ

## ଡ. ଇନ୍ଦିରା ପଟ୍ଟନାୟକ

'ଓଁ ନମୋ ଭଗବତେ ବାସୁଦେବାୟ'

ମୋ ପିଲାଟି ଦିନରୁ ଏହି ଶବ୍ଦର ଅର୍ଥ ବୁଝିବା ମୋ ପକ୍ଷରେ କଷ୍ଟକର ଥିଲା । କିନ୍ତୁ ଜଗନ୍ନାଥ ସଦାଶ୍ରୟୀ ମାତା ସ୍ୱର୍ଗତା ସ୍ନେହଲତା ଦେବୀଙ୍କ ପୂଜା ପାଖରେ ବସି ଆଖି ବୁଜି ଶ୍ରୀଜଗନ୍ନାଥଙ୍କୁ ପ୍ରଣାମ କରେ । ମା'ଙ୍କର ପୂଜାର୍ଚ୍ଚନା ପରେ ପ୍ରସାଦ (ଭୋଗ) ଥାଳିରେ ମୋର ଲୋଭ । ଖାଇସାରିଲା ପରେ ମନ ଖୁସିରେ ମୁଁ ଠାକୁର ଘରୁ ବାହାରିଥାଏ । ଏଇ ହେଲା ମୋ ପିଲାଦିନର କଥା ।

ବୟସ ବଢ଼ିବା ସହିତ ଜଗନ୍ନାଥଙ୍କ ବିଷୟରେ ଜାଣିବା ପାଇଁ ଆକାଂକ୍ଷା ବଢ଼ିଲା । କ୍ରମଶଃ ସେଇ କଳାଠାକୁରଙ୍କ ଚକା ଦୁଇ ଆଖି ଦେଖି ମୁଁ ବିମୁଗ୍ଧ ହେଲି । ଠାକୁରଙ୍କ ଗଳାରେ ନିଜ ହାତଗୁନ୍ଥା ଫୁଲ ନ ଲଗାଇବା ପର୍ଯ୍ୟନ୍ତ ମୁଁ କିଛି ଖାଏନାହିଁ । କାହିଁକି ଜାଣେନା । ମା' କବାଟ ଆଉଜାଇ ଦେଇ ଭୋଗ ଲଗାନ୍ତି । ମୋର କୌତୂହଳ ମନ ନେଇ ଦିନେ ମା'ଙ୍କୁ ପଚାରିଲି, ତମେ କ'ଣ କହି ଠାକୁରଙ୍କୁ ଭୋଗ ଲଗାଉଛ ! ମତେ କୁହ । ମା' କହିଲେ, 'ତୁ ଠାକୁରଙ୍କୁ ଭୋଗ ଅର୍ପଣ କଲାବେଳେ ଏତିକି କହିବୁ, ମୋ ମା' କହିଛି ଯାହା ମୁଁ ତମକୁ ସମର୍ପି ଦେଉଛି ତାହା' ।

ଦିନେ ମୋତେ ପାଖକୁ ଡାକି ମା' କହିଲେ, ଜଗନ୍ନାଥ ହେଉଛନ୍ତି ଜଗତର ନାଥ, ସୃଷ୍ଟିକର୍ତ୍ତା, ରକ୍ଷାକର୍ତ୍ତା ଓ ଭାଗ୍ୟ ବିଧାତା । ତୁ ତାଙ୍କୁ ଅନ୍ତରର ସହ ଡାକିଲେ ସେ ତୋତେ ଦର୍ଶନ ଦେବେ, ଡାକ ଶୁଣିବେ ଓ ସବୁ ଦୁଃଖ କଷ୍ଟରୁ ରକ୍ଷା କରିବେ । ମୋ ଜେଜେ ବାପା ସ୍ୱର୍ଗତ ରାଧାମୋହନ ପଟ୍ଟନାୟକ ଥିଲେ ବିଷ୍ଣୁ ଭକ୍ତ । ଗେରୁଆ ବସ୍ତ୍ର ପରିଧାନ କରନ୍ତି । ଠାକୁରଙ୍କୁ ଦର୍ଶନ ନ କଲା ପର୍ଯ୍ୟନ୍ତ ଜଳ ସ୍ପର୍ଶ କରନ୍ତି ନାହିଁ । ସେ ଥିଲେ ଜଣେ ଗୃହଯୋଗୀ । ଧ୍ୟାନରେ ସେ ସର୍ବଦା ନିମଗ୍ନ ରହିଥା'ନ୍ତି । ତାଙ୍କ ଶେଷ ଜୀବନ ପୁରୀ ଶ୍ରୀମନ୍ଦିରରେ ହିଁ ଶେଷ ହୋଇଥିଲା । ସେ ମୃତ୍ୟୁ ପୂର୍ବରୁ କହିଥିଲେ, ମୋ ରାଶି ନକ୍ଷତ୍ର ନେଇ ସନ୍ତାନ ଜନ୍ମ ହେବ । ଆଜି ତାଙ୍କ ଆଶୀର୍ବାଦରୁ ମୋ ଜୀବନ ଧନ୍ୟ ହୋଇପାରିଛି । ମୁଁ ଶ୍ରୀଜଗନ୍ନାଥଙ୍କ ପାଦପଦ୍ମରେ କୋଟି କୋଟି ପ୍ରଣାମ ଜଣାଇ ମୋର ଅନୁଭୂତିରୁ ଦୁଇଧାଡ଼ି ଲେଖୁଛି ।

ମୋର ଶିକ୍ଷାଗତ ଯୋଗ୍ୟତା ଭଗବଦ୍ କୃପାରୁ ସମ୍ଭବ ହୋଇପାରିଛି । ପ୍ରତିଟି ମୁହୂର୍ତ୍ତରେ ସେଇ ଚକାଡ଼ୋଳାଙ୍କୁ ସାକ୍ଷୀ ରଖି ମୋ ଜୀବନରେ ପ୍ରତିଦିନର କାମ କରି ଚାଲିଥାଏ । ସଂସାର ଜଞ୍ଜାଳରେ ବ୍ୟସ୍ତ ରହି, ଚାକିରି ଜୀବନର ଦାୟିତ୍ୱ ତଥା

ପିଲାମାନଙ୍କର ଶିକ୍ଷାଭାରର ସମସ୍ତ କାର୍ଯ୍ୟ ମୁଁ କରିଆସିଛି କିପରି ମୁଁ ଜାଣେନା । ସବୁ ସେଇ ତାଙ୍କର ଆଶୀର୍ବାଦ । ଯେଉଁଦିନ ବେଶୀ ଦୁଃଖ ମନ ନେଇ ଶୋଇଯାଇଥାଏ ସେଦିନ ରାତ୍ରିର ତୃତୀୟ ପ୍ରହରରେ ତାଙ୍କୁ ମୁଁ ଦର୍ଶନ କରିଥାଏ । କେତେବେଳେ ଦେଉଳରେ ତାଙ୍କୁ ଫୁଲମାଳ ଅର୍ପଣ କରୁଛି ଓ କେତେବେଳେ ମୋତେ ସେ ବାଟ କଢ଼ାଇ ନେଉଛନ୍ତି ଆଗକୁ ଚାଲିବା ପାଇଁ । ଏମିତିକି କେତେବେଳେ ତାଙ୍କ ହାତରେ ମୋ ପାଟିରେ ତୁଳସୀ ପତ୍ର ଓ ମିଶ୍ରି ସେ ନିଜେ ଖୁଆଇ ଦେଇଛନ୍ତି । ହଠାତ୍ ନିଦ ଭାଙ୍ଗିଗଲେ ମୁଁ ଉଠି ବସି ଦେଖେ କାହିଁ ମୋ ଠାକୁର ? କାହିଁ ମୋ ଦେଉଳ । ମୁଁ ପ୍ରକୃତିସ୍ଥ ହୋଇ ଜାଣେ ଯେ ଏଇ ସଂସାରର ମାୟା ବନ୍ଧନରେ ମୁଁ ଆବଦ୍ଧ । ସ୍ୱପ୍ନରେ ଦେଖାଦେଇ ସେ ମୋତେ ସାନ୍ତ୍ୱନା ଦେଇ ଚାଲିଯାଇଛନ୍ତି । ଆଖିରୁ ଲୁହ ଝରିଯାଏ । ସତେ କ'ଣ ଏଇ ଦୁଃଖିନୀକୁ ସେ ତାଙ୍କ ସ୍ନେହରୁ କାଣିକାଏ ଦେଇ ପାରିଛନ୍ତି ? ସ୍ୱପ୍ନାଦେଶରେ ତାଙ୍କ ଆଶୀର୍ବାଦରୁ ମୁଁ ପାଠ ପଢ଼ିଛି, ଉଚ୍ଚ ଡ଼ିଗ୍ରୀଧାରୀ ହୋଇଛି । କର୍ମ ଜୀବନରେ ଶିକ୍ଷକତା କରିଛି । ସବୁ କ୍ଷେତ୍ରରେ ତାଙ୍କ ଆଶୀର୍ବାଦ ହିଁ ଆଜି ସମାଜରେ ମୋତେ ପ୍ରତିଷ୍ଠିତ କରିପାରିଛି । ସତ୍ୟ ମୋ ଜୀବନର ପରମ ବ୍ରତ । ସେବା ହିଁ ମୋ ଜୀବନର ପରମ ବ୍ରତ । ଆଜି ସାହିତ୍ୟ ଜଗତରେ ଜଣେ ଲେଖିକାର ସମ୍ମାନର ଆସୀନା । କିନ୍ତୁ ଏଇ ଲେଖା ମୂଳରେ ରହିଛି ତାଙ୍କ ଅବଦାନ । ସେ ସ୍ୱପ୍ନରେ ମୋତେ ଲିଖନ ଓ ତାଳପତ୍ର ଧରାଇ ରଚନା କରାଇଛନ୍ତି କବିତା । ମୁଁ ସ୍ୱପ୍ନରୁ ଉଠି ବସି କବିତା ଲେଖିଛି ଅସଂଖ୍ୟ । ଜଗନ୍ନାଥଙ୍କ ଜଣାଣ, ଭଜନ ଓ ଅନ୍ୟାନ୍ୟ । ମୋର ସେ ସମସ୍ତ ପୁସ୍ତକରେ ପ୍ରାୟ ପ୍ରକାଶିତ କବିତା 'ସମର୍ପଣ', 'ଅର୍ପଣ', 'ଚରଣାରବିନ୍ଦେ' ଇତ୍ୟାଦି ।

ପ୍ରତିଟି କବିତାରେ ଜଗନ୍ନାଥଧ୍ୟାୟୀ ଚିନ୍ତାଧାରାରେ ଅନୁରଣିତ ହୋଇଛି ମୋର ଭଜନ, ଜଣାଣ ଓ ଆଧୁନିକ କବିତା ଗୁଚ୍ଛ । ଚିରାଧ୍ୟାୟୀ ସେବିକା ପ୍ରତି ଥାଉ ପ୍ରଭୁଙ୍କର ଅଶେଷ କରୁଣା ।


ବିମଳା କୁଟୀର<br>
ଶିଖରପୁର, ଉପର ସାହି<br>
ନୂଆ ମାଲଗୋଦାମ ପାଖ, କଟକ - ୭୫୩୦୦୩<br>
ଭ୍ରାମ୍ୟଭାଷ : ୯୪୩୯୨୫୬୫୫୫




# ସେଇ ଅନୁଭୂତି

## ସୁକାନ୍ତି ନନ୍ଦ

ବେଳେବେଳେ କିଛି ପାଇବା ଖୁସିରେ ଅପାର ମହିମାର ଗୁଣ କୀର୍ତ୍ତନ କରି ମାଟିରେ ଲୋଟି ପଡ଼ିବାକୁ ମନ କହେ ତ' କେବେ ପୁଣି ସଫଳତାର ବିଭୂତି ନ ପାଇବା ଦୁଃଖ ଓ ଗ୍ଲାନିରେ ଗାଳି ଦେବାକୁ ଇଚ୍ଛା ହୁଏ, ଆତ୍ମାସ୍ୱରୂପ ଈଶ୍ୱରଙ୍କୁ । ଲୁହରେ ଆଖି ଭିଜିଯାଏ ସେତେବେଳେ । କୋହରେ ଉଠ୍‌ପଡ୍ ହୁଏ ଛାତି । ମନ ଓ ଦେହ ଅବଶ ଲାଗେ । ବଞ୍ଚିବା ପାଇଁ କଣିକାଏ ସମ୍ଭାବନା ବି ଦାନା ବାନ୍ଧେନା ଅନୁଭବ ସ୍ତରରେ । ହେଲେ ଦୃଶ୍ୟ ବଦଳି ଯିବା ତ' ସୃଷ୍ଟିର ନିୟମ !

ଏଇ ନିର୍ଦ୍ଦିଷ୍ଟ ଧାରାକୁ ନେଇ ମଣିଷ ସୁଖ, ଦୁଃଖ, ହସ ଓ କାନ୍ଦର ଭଉଁରୀରେ ଗୋଲ୍ ଗୋଲ୍ ଚକାଭଉଁରୀ ଖେଳେ । ବିଶ୍ୱାସର ଆଲୋକ ଯଦି କେବେ ମନର ଅନ୍ଧାରୀ ସୁଡ଼ଙ୍ଗ ଭିତରକୁ ପଶି ଆସେ - ମଇଳା, କଦର୍ଯ୍ୟ ଭାବନା ସବୁ ଛାଏଁ ଛାଏଁ ଉଡ଼ିଯାଏ । ଆଶା ଓ ସନ୍ତୋଷତାରେ ବତୁରା ମନ ଓ ହୃଦୟ, ଆନନ୍ଦ ବିଭୋର ତ' ସ୍ୱପ୍ନମଗ୍ନ ଲାଗେ ।

ଏମିତି ଗୋଟେ ପୂର୍ଣ୍ଣ ରୋମାଞ୍ଚିତ ମୁହୂର୍ତ୍ତରେ ତରଳି ଯାଇଥିଲି ମୁଁ । ଆମ ଅଙ୍କାବଙ୍କା ଚିନ୍ତା ଓ ଚେତନାକୁ ଯେ ଅଦୃଶ୍ୟରେ କେହି ଜଣେ ସଜାଡ଼ି ରଖନ୍ତି, ଜାଣିପାରିଥିଲି ।

ଅନ୍ତରଙ୍ଗ ବାନ୍ଧବୀ ରଶ୍ମୀ (ସୁଲେଖିକା ରଶ୍ମୀ ରାଉଳ) ସାନ ଭଉଣୀ କଟିବୁଢ଼ୀ ସହିତ ଆମ ଘରେ ଆସି ଅକସ୍ମାତ୍ ପହଞ୍ଚିଲା । ସ୍ଥିର ହେଲା ସଂଧ୍ୟା ସମୟର ଜଳଖିଆ ପର୍ବ ପରେ ସମସ୍ତେ ଶ୍ରୀମନ୍ଦିର ଯିବୁ । ଦର୍ଶନ ପରେ ଘରକୁ ଆସି ମହାପ୍ରସାଦ ସେବନ କରିବୁ ଏକାଠି ବସି । ମୋଟାମୋଟି ଅଧିକ ସମୟ ମନ୍ଦିରରେ ବିତେଇବା ପାଇଁ ସେ ଦୁଇ ଭଉଣୀ ଖୁବ୍ ବ୍ୟାକୁଳ ଥିଲେ ।

କେଜାଣି ସେଦିନ କୋଉ ବିଶେଷ ତିଥି ନା ଶ୍ରୀଜଗନ୍ନାଥଙ୍କର ବେଶ ପରିପାଟୀକୁ ନେଇ ସ୍ୱତନ୍ତ୍ର ପର୍ବ ଥିଲା - ପ୍ରବଳ ଭିଡ଼ରେ ମନ୍ଦିର ପଡୁଥିଲା ଉଠୁଥିଲା । ଲୋକାରଣ୍ୟ ପରିବେଶରେ ପାଦ ଟେକି ଏକର ସେକର ହୋଇ ଠାକୁରଙ୍କୁ ଦର୍ଶନ କରିବା କେତେ ଯେ କଷ୍ଟ ଅନୁଭବୀ ହିଁ ଜାଣେ । ବିକଳ ତ' ଲାଗେ । ଅଭିମାନ ଆସେ - ପ୍ରଭୁ ତମର ଖୁବ୍ ପାଖ ଲୋକ ହେଇ ସଂପୂର୍ଣ୍ଣ ଦର୍ଶନ ପାଇଁ ସୁଯୋଗ ଦେଲନି ମତେ ! ଏଡ଼େ ଅଭାଗୀଟେ ମୁଁ !

ହେଲେ ମନ୍ଦିର ପାଖାପାଖି ଯେହେତୁ ଆମ ଘର, ଦିନେ ନୁହେଁ ପ୍ରତିଦିନ ବି ଆସି ଠାକୁରଙ୍କୁ ଦେଖିବାର ସୁଯୋଗ ଥାଏ ଆମ ପାଖରେ । ଏଣୁ ବିଫଳ ଦର୍ଶନର କଷ୍ଟ ଭୁଲି ହେଇଯାଏ ଶୀଘ୍ର । କିନ୍ତୁ ବାହାରୁ କେହି ବନ୍ଧୁବାନ୍ଧବ କି ସାଙ୍ଗ ସୁଖ ଆସିଲା

ମାନେ ସେମାନଙ୍କ ସନ୍ତୁଷ୍ଟି ପାଇଁ କଳେ ବଳେ କୌଶଳେ ଦିଅଁ ଦେଖା ସାରିବାର ଦାୟିତ୍ୱ ନିଭେଇବାକୁ ପଡ଼େ, ପୁଣି ଖୁବ୍ ସୁନ୍ଦର ଓ ଶୃଙ୍ଖଳାର ସହିତ ।

ସେଦିନ ତ' ଚାରିପଟରେ ଆମ ପାଇଁ ଘେରି ରହିଥିଲା ନିରାଶାର ବନ୍ଧ ! ଲୋକ ସମୁଦ୍ର ଭିତରେ ନିଜେ ଆମେ ନିଜକୁ ଖୁବ୍ ଆସ୍ଥାହୀନ ମନେ କରୁଥିଲୁ । ଅଗତ୍ୟା ପାଟ ଅଗଣାରେ ନୀଳଚକ୍ରକୁ ଚାହିଁ ବସି ପଡ଼ିଲୁ କିଛି ସମୟ । ସୋରା ସୋରା ପବନ ଦେଇ ମନକୁ ଉଲ୍ଲସିତ କରିଦେଉଥିଲା । ତଥାପି ବି ପ୍ରାଣ ଡହଳ ବିକଳ ହେଉଥିଲା-ଦୁଇଟି ଦପ୍ ଦପ୍ ଉଜ୍ଜ୍ୱଳ ନକ୍ଷତ୍ରକୁ ଶୀଘ୍ର ଅତିଶୀଘ୍ର ଦେଖିବା ପାଇଁ । ଇଚ୍ଛାମୟଙ୍କର ଇଚ୍ଛାକୁ କିଏ ବା ଟାଳି ପାରିବ ! ସେ ସୁଦୟା କଲେ ଲକ୍ଷେ ଜଞ୍ଜାଳ ଭିତରୁ କଢ଼େଇ ଆଣନ୍ତି ତାଙ୍କ ସାମ୍ନାକୁ । କରୁଣା ନ ହେଲେ ଇଚ୍ଛା ଆଗ୍ରହର ମୂଲ୍ୟ କିଛି ରହେନା । ପାଦେ ଆଗକୁ ଯିବାର ଶକ୍ତି ପାଆନ୍ତିନି କେହି ।

ଯାହାହେଉ ଅପେକ୍ଷା ତ' କରିବାକୁ ପଡ଼ିବ । ହେଲେ କେତେ ରାତି ଯାଏଁ... । ତା'ଭିତରେ ପୁଣି ମହାପ୍ରସାଦ ନେବାର ଯୋଜନା ଅଛି ଅତିଥିମାନଙ୍କ ପାଇଁ ! ହଠାତ୍ ରଶ୍ମୀ ପ୍ରସ୍ତାବ ଦେଲା - ଏଠି ବସି ସମୟ ନଷ୍ଟ ନକରି ଚାଲ ବେଢ଼ା ପରିକ୍ରମା କରିବା ।

ସତ୍ୟନାରାୟଣଙ୍କ ଠାରୁ ମହାଲକ୍ଷ୍ମୀଙ୍କ ଦର୍ଶନ ସାରି ଆସିଲା ବେଳକୁ ଫର୍ଚ୍ଚା ଦିଶିଲା ପରିବେଶ । ଆନନ୍ଦରେ ମନ କୁରୁଳି ଉଠିଲା । ଅସ୍ତ ବ୍ୟସ୍ତ ହୋଇ ଦୌଡ଼ିଗଲୁ ଗମ୍ଭୀରା ଭିତରକୁ । ସଂପୂର୍ଣ୍ଣ ଗହଳି ଭାଙ୍ଗିନଥିଲେ ବି ଆଡ଼େଇ ଆଡ଼େଇ ମନବୋଧ ହେଲା ଭଳି ଦର୍ଶନ କଲୁ । ବେଶ୍ ଖୁସି ଓ ଶାନ୍ତିରେ ଦୋହଲିଗଲା ମନ । ଏଣିକି ତ ପାଦ ଫେରେଇ ନେବାର ବେଳ... । ହଠାତ୍ ଆମ ସାହିର ଜଣେ ମାନ୍ୟଗଣ୍ୟ ସେବାୟତ ମୋ ସ୍ୱାମୀଙ୍କୁ ଡାକି ପଚାରିଲେ - ଦର୍ଶନ କଲ ?

- ଆଜ୍ଞା, ଗୁଡ଼େ ସମୟ ଅପେକ୍ଷା କରିବାକୁ ପଡ଼ିଲା ସିନା ହେଲେ ଖୋଲା ଦର୍ଶନରେ ପେଟ ପୂରିଗଲା ।

- ବନ୍ଧୁ ବାନ୍ଧବ କିଏ ବାହାରୁ ଆସିଛନ୍ତି କି ?

- ହଁ ଭୁବନେଶ୍ୱରରୁ ଆସିଛନ୍ତି । ସେମାନେ ଆମର ଖୁବ୍ ନିଜର ଓ ଆପଣାର ।

- ମହାପ୍ରସାଦ ସେବାର ବ୍ୟବସ୍ଥା ହେଉଛି ?

- ହଁ, କିଣାକିଣି କରି ଘରକୁ ପଠେଇ ଦେଇଛି । ଫେରିଲେ ଏକାଠି ଭୋଜନ କରିବୁ ।

ସବୁ ଶୁଣି ସାରିଲା ପରେ ସେ ମହାଶୟ ମୋ ସ୍ୱାମୀଙ୍କ ହାତରେ କିଛି ମିଠା ଫଳ, ରଶ୍ମୀ ଅଣ୍ଟିରେ ଆଞ୍ଜୁଳେ ଚାଉଳ, କଟିବୁଢ଼ୀକୁ ନଡ଼ିଆ ତ' ମୋତେ ଗୋଟେ କଞ୍ଚା କମଳା ଧରେଇ ଦେଇ ହସି ହସି ତାଙ୍କ କାମରେ ଲାଗିଗଲେ ।

ମହାପ୍ରଭୁଙ୍କ ଅସୀମ ଦୟାଭାବ ଯିଏ ଯାହାର ପ୍ରାପ୍ତି ପାଇଁ ଆନନ୍ଦରେ ଆତ୍ମହରା ହୋଇ ଉଠୁଥା'ନ୍ତି । ଅଥଚ ମୋ ମନରେ ନ ଥାଏ ଟୋପାଏ ସରାଗ-କି ଦୋଷ ଦେଖି ପ୍ରଭୁ ମୋ ପାଇଁ ଏତେ କୂଟ କଲେ ! ସମସ୍ତଙ୍କ ହାତରେ ଫୁଲଭଳି ଅମୂଲ୍ୟ ଉପହାର ଦେଲେ କିନ୍ତୁ ମତେ ଧରେଇ ଦେଲେ ମୁଠାଏ ପାଉଁଶ ! ହଁ, ଫଟା କପାଳ ପାଇଁ କଞ୍ଚା କମଳା ତ, ସୁନ୍ଦର ଭେଟି... ହଉ ମଣିମା ଯାହା ଦେଇଛ ଭଲ ହିଁ ଦେଇଛ !

ଅନେକ ଦିନ ଧରି ଛୋଟ ବଡ଼ ଗୁଡ଼ାଏ ପାରିବାରିକ ସମସ୍ୟାକୁ ନେଇ ଅସହ୍ୟ ଯନ୍ତ୍ରଣାରେ ଛଟ୍‌ପଟ୍ ହେଉଥିଲି ମୁଁ । ଏଣୁ କୋଉଆଡୁଆ ଆଗାମୀ ସୁଦିନ ପାଇଁ କୌଣସି ଆଭାସ ନ ଦେଖି ଭାଙ୍ଗିପଡ଼ିଲି ଖଣ୍ଡି ଖଣ୍ଡ ହେଇ । ବିଶେଷ କରି ଈଶ୍ୱରଙ୍କର ମୋ ପ୍ରତି ଆଜିର ଏଭଳି ଅବିଚାର ଦେଖି ଆସ୍ଥା ଓ ବିଶ୍ୱାସ ରଖିପାରିଲିନି ତାଙ୍କ ଉପରେ ।

ଘରକୁ ଫେରି ରଶ୍ମୀ ମହାପ୍ରସାଦ ବାଢ଼ିବାର ବ୍ୟବସ୍ଥା କଲା । ପାଖରେ ବସି ଅନ୍ୟାନ୍ୟ କାମ ପାଇଁ ତାକୁ ସାହାଯ୍ୟ କଲା କଟିବୁଢ଼ୀ । ହଠାତ୍ ବିସ୍ମୟ ଚକିତ ଭାବରେ ପାଟିକରି ଉଠିଲା - କି... ମିଠା... ! ନିକଟରେ ଥୁଆ ହେଇଥିବା କ୍ଷୀରସାଗର, ବୁନ୍ଦିଆ, ମାଲପୁଆ ପ୍ରଭୃତିକୁ ଚାଖି ହୁଏତ ମିଠା ବୋଲି ସେ କହୁଥିବ । ଏଇ ଧାରଣାରେ ଆମେ କେହି ତା' କଥାକୁ ଗୁରୁତ୍ୱ ଦେଲୁନି । ହେଲେ ବାରମ୍ୱାର ସେଇ ଏକା କଥାକୁ ଘୋରି ହେବାରେ ରଶ୍ମୀ ତାକୁ ଆକଟ କରି କହିଲା - ମିଠା ଜିନିଷ, ମିଠା ହିଁ ଲାଗିବ... ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?

ହଉ ତୁ' ନିଜେ ଆଗ ଚାଖେ, ଜାଣି ପାରିବୁ... ମୁଁ କାହିଁକି ଆଶ୍ଚର୍ଯ୍ୟ ହେଉଛି ! କଟିବୁଢ଼ୀ ଭଳି ରଶ୍ମୀ ଯେତେବେଳେ ଚିହ୍ନେଇଲା - ହଁ... ହଁ ସତରେ ମ, ଭାରି ମିଠା... । ସଂସାର ଯାକର ମିଠା ଯେମିତି ଏ ଫଳ ଭିତରେ ଭର୍ତ୍ତି ହୋଇଛି... । ମୋ ଜୀବଦଶାରେ ଏମିତି କମଳା ମୁଁ କେବେ ଖାଇନଥିଲି !

ପ୍ରଥମେ ତ' ଷାଣୁ ପାଲଟିଗଲି । ପରେ ସମସ୍ତ ବଳ ଖଟେଇ କଟିବୁଢ଼ୀ ହାତରୁ ଝିଙ୍କି ଆଣିଲି ଫାଳେ କମଳା । ଜିଭରେ ଟୋପାଏ ଚିପୁଡ଼ି ଦେଇ ଆଖି ବୁଜିଦେଲି - ସତେ ଯେମିତି ମୋ ଭିତରେ ଜମାଟ ବାନ୍ଧିଥିବା ରାଗ, ରୋଷ, ଅପମାନ ଓ ଅନୁତାପକୁ ଆସ୍ତେ ଆସ୍ତେ ମିଳେଇ ଦେଉଛି ବୁନ୍ଦାଏ ଅମୃତ ! ଆଶ୍ଚର୍ଯ୍ୟ, ସାମ୍ନାରେ ଥୁଆ ହେଉଥିବା ତୀବ୍ର ମିଠା ଦ୍ରବ୍ୟ ଠାରୁ ଏ ତିକ୍ତ କମଳା ଏତେ ମିଠା ହେଲା କିପରି !

କିଏ କ'ଣ ଭାବୁଥିଲା ସେତେବେଳେ ମୁଁ ଜାଣିନି । ହେଲେ ସେଇ ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ଓ ପରେ ଅନେକ ଥର କମଳା ଖାଇଥିଲେ ବି ସେ କମଳାର ମିଠାସ୍ ଆଉ କେବେ ମୁଁ ପାଇପାରିନି । ହୁଏତ ବିଶ୍ୱନିୟନ୍ତା ଜାଣନ୍ତି ସେ ରହସ୍ୟ । ମୁଁ କେବଳ ସେ ଦିନର ସେଇ ଦିବ୍ୟ ଅନୁଭୂତିରୁ ଏତିକି ଜାଣିଛି ଯେ - ମାନଭଞ୍ଜନ କରିପାରନ୍ତି ଯିଏ... ଅଭିମାନ ଭଞ୍ଜନ କରିନଥିବେ କାହିଁକି ... !!

ଗୁଡ଼ିଆ ସାହି, ପୁରୀ
ଭ୍ରାମ୍ୟଭାଷ : ୯୪୩୮୨୯୪୯୪୫



# ଅନନ୍ୟ ଅନୁଭବ

## ଡ. ଆରତୀ ପଟ୍ଟଯୋଷୀ

ସୃଷ୍ଟିର ପ୍ରତ୍ୟେକ କ୍ଷୁଦ୍ର, ବୃହତ୍ ଜୀବନ ଅସ୍ତିତ୍ୱରେ, ମନୁଷ୍ୟ ଜୀବନର ଆଧ୍ୟାତ୍ମିକ ଚିନ୍ତନରେ, ନିଃସହାୟ ଭକ୍ତର ଭକ୍ତିରେ ବନ୍ଧା ସେ । ମନୁଷ୍ୟର ଆଦ୍ୟପ୍ରାନ୍ତ ଜୀବନଧାରାର ସେ ପରିଚାଳକ, ଯିଏ ସ୍ୱୟଂ ଇଚ୍ଛାମୟ, କରୁଣାମୟ, ଭକ୍ତର ବନ୍ଧୁ, ଦୁଃଖହାରୀ ସେ କରୁଣାମୟଙ୍କ କରୁଣା ଭିକ୍ଷା କରି ଏହି ପାର୍ଥିବ ଶରୀରରେ ଅନୁଭବିଥିବା ଅନୁଭବର କଥା କିଛି ଲେଖିବାକୁ ପ୍ରୟାସ କରିଛି ।

ଆମ ଘର ପୁରୀ ମାଟିମଣ୍ଡପ ସାହିରେ, କିନ୍ତୁ ପୁଅର ପାଠପଢ଼ା ପାଇଁ ଆମେ ଆସି ଭୁବନେଶ୍ୱରରେ ଘରଭଡ଼ା ନେଇ ରହୁଅଛୁ । ମୁଁ ପଢ଼ାପଢ଼ି କରିବାକୁ ଭଲପାଏ ଜାଣି ଆମ ଘର ମାଲିକ ମୋତେ ଗୋଟିଏ ସାଇ ଅନୁଭୂତି ପଢ଼ିବାପାଇଁ ଦେଇଥିଲେ । ଯେହେତୁ ମୁଁ ସାଇ ବାବାଙ୍କୁ ବି ବିଶ୍ୱାସ କରେ, ଆଗ୍ରହର ସହ ପଢ଼ିଲି । ପଢ଼ିଲାବେଳେ ଭାବିଲି ଜଗନ୍ନାଥଙ୍କ ଅନୁଭୂତି ବିଷୟ ଥାଇ ବହିଟିଏ ପଢ଼ିବାକୁ ମିଳନ୍ତାନି ? ତା'ର ଦୁଇ ତିନିଦିନ ପରେ ମୋର ଜଣେ ସଂପର୍କୀୟ ମୋତେ ଆଣି ବହିଟିଏ ଦେଲେ ଯାହାର ନାଁ ଥିଲା - 'ଅମୃତ ଅନୁଭବ' । ଭକ୍ତମାନଙ୍କ ଅନୁଭୂତିକୁ ପାଥେୟ କରି ସଂକଳିତ ବହିଟିଏ ପାଇ ଭାରି ଖୁସି ଲାଗିଲା । ଭାବିଲି ମୁଁ ମଧ୍ୟ ଲେଖାଟିଏ ଦେବି । ବହି ଶେଷରେ ସଂପାଦକଙ୍କ ଫୋନ ନମ୍ବର ପାଇ ଯୋଗାଯୋଗ କଲି । ସେ ଅତି ଆଗ୍ରହର ସହିତ ମୋ ଲେଖାକୁ ଆମନ୍ତ୍ରଣ କଲେ ।

ମୋର ଦୁଇଟି ପୁଅ, ବଡ଼ପୁଅ ଜନ୍ମବେଳେ ଇଚ୍ଛା କରିଥିଲି, ପ୍ରଥମ ସନ୍ତାନ ଝିଅଟିଏ ହେଉ, କିନ୍ତୁ ଜଗନ୍ନାଥଙ୍କର ଇଚ୍ଛା ଥିଲା ଭିନ୍ନ । ସେ ମତେ ସୁସ୍ଥ ସବଳ ସୁନ୍ଦର ପୁଅଟିଏ ଦେଲେ । ଦ୍ୱିତୀୟ ସନ୍ତାନ ଜନ୍ମବେଳେ ମୋ ସ୍ୱାମୀ ଜଗନ୍ନାଥଙ୍କୁ ଡାକିଥିଲେ, 'ପ୍ରଭୁ ଯାହା ଦିଅ, କିନ୍ତୁ ଭଗବତ୍ ବିଶ୍ୱାସୀ ପିଲାଟିଏ ଦିଅ', ସାନପୁଅ ଜନ୍ମବେଳେ ତା'ର ମୁଣ୍ଡର ମଝି ଭାଗ ଚନ୍ଦା ଥିବାରୁ ମୋ ମାମୁଁ ରହସ୍ୟ କରି କହିଥିଲେ, 'ଶଳା ମନ୍ଦିର ଭିତରେ ଅବଢ଼ା ବୋହୁଥିଲା ବୋଧେ, ମୁଣ୍ଡଟା ଚନ୍ଦା ହୋଇଯାଇଛି ।' ସେ ଯାହାବି ହେଉ ଖୁବ୍ ସୁନ୍ଦର ପୁଅଟିଏ ପାଇ ଜଗନ୍ନାଥଙ୍କୁ ପ୍ରଣାମ କଲି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ପୁଅ ମୋର ସର୍ବଗୁଣସଂପନ୍ନ ହୋଇ ବାହାରିଲା । ସବୁଠୁ ଆଶ୍ଚର୍ଯ୍ୟ କଥା, ମୁଁ କେବେ ନ କହିଥିଲେ ବି ଜନ୍ମରୁ ସେ ଥିଲା ଜଗନ୍ନାଥ ବିଶ୍ୱାସୀ । ମୁଁ ଜାଣେନି ସେ ଜଗନ୍ନାଥଙ୍କୁ ଭୟ କରେ କି ଭକ୍ତି କରେ, ମାତ୍ର ଏତିକି ଜାଣିଛି, ସେ ତାଙ୍କୁ ଭଲ ପାଏ । ତାଙ୍କୁ ମନକଥା କହେ । ତାଙ୍କ ସଙ୍ଗେ କଥା ହୁଏ । ରାଗିଲେ ଗାଳିଦିଏ, ଅଭିମାନ କରେ । ଆଉ କେବେ ଡାକିବିନି ବୋଲି ମୁହଁ ବୁଲାଇ ଠାକୁର ଘରୁ ଚାଲିଆସେ, ପୁଣି ସଂଧ୍ୟାବେଳେ ଯାଇ ପ୍ରଣାମ କରେ ।

ମୁଁ ଯେବେକାର କଥା କହୁଛି, ସେତେବେଳେ ବୋଧହୁଏ ତାକୁ ସାତ-ଆଠ ବର୍ଷ ହୋଇଥିବ । ସେଦିନ ଜଗନ୍ନାଥଙ୍କର ପଦ୍ମବେଶ ଥାଏ । ସେ କୋଉଠୁ ଶୁଣି ଆସି ତା' ନନା (ବାପା)ଙ୍କୁ କହିଲା, 'ନନା ମୋତେ ଟିକେ ଠାକୁରଙ୍କ ପଦ୍ମବେଶ ଦେଖେଇ

ନିଅନ୍ତନି ?' ମୋର ସ୍ୱାମୀ ଭୁବନେଶ୍ୱରରେ ଚାକରି କରୁଥିବାରୁ ପ୍ରତ୍ୟେକ ଦିନ ଭୁବନେଶ୍ୱରରୁ ପୁରୀ ଯିବା ଆସିବା କରି କ୍ଲାନ୍ତ ହୋଇଯାଉଥିଲେ । ତେଣୁ ସେ ତାକୁ ବିରକ୍ତ ହେଲେ, 'ହେ ! ମୁଁ ନେଇ ପାରିବିନି, ତୁ ବଡ଼ ହୋଇଯା, ନିଜେ ନିଜେ ଯିବୁ । ସବୁ ବେଶ ଦେଖିବୁ ।' ଠାକୁରଙ୍କୁ ନ ଦେଖିପାରିବା ଦୁଃଖରେ ସେ ବହୁତ କାନ୍ଦି କାନ୍ଦି ଶୋଇଲା । ସକାଳୁ ଉଠି ସେ ମୋତେ କହିଲା, ବୋଉ ମୁଁ କାଲି ରାତିରେ ଜଗନ୍ନାଥଙ୍କର ପଦ୍ମବେଶ ଦେଖିଲି ଏବଂ ଯାହା ବର୍ଣ୍ଣନା କଲା ମୁଁ ଶୁଣି ଆଶ୍ଚର୍ଯ୍ୟ ହୋଇଗଲି । ଜଗନ୍ନାଥଙ୍କୁ ଭଲଭାବେ ନ ଦେଖିଥିବା ଛୋଟ ଛୁଆଟା ପଦ୍ମ ବେଶ ବିଷୟରେ ଏତେକଥା ଜାଣିଲା କେମିତି ?

ଆଉ ଗୋଟିଏ କଥା, ପ୍ରତିବର୍ଷ ରଥଯାତ୍ରା ସମୟରେ ତା'ର ଜଣେ ସାଙ୍ଗର ବାପା (ଜଗନ୍ନାଥଙ୍କ ସେବକ) ତାକୁ ରଥରେ ନେଇଯାଆନ୍ତି । ୨୦୧୪ ମସିହା ରଥଯାତ୍ରା ବେଳେ ନିୟମ ହେଲା ବାହାର ଲୋକ ଯାଇପାରିବେ ନାହିଁ । ମୋ ପୁଅ ରଥଯାତ୍ରା ଦିନ ଠାକୁର ଘରେ ବହୁତ କାନ୍ଦିଲା, ଅଭିମାନ କଲା, 'ହଉ ପ୍ରଭୁ ! ଏଥର ତମ ସାଙ୍ଗରେ ତା'ହେଲେ ମୋତେ ନବନି ?' ମୁଁ ତା' ଉପରେ ବିରକ୍ତ ହେଲି । 'ଯେଉଁଠି କେହି ଯାଇପାରିବେନି ସେଠି ତୁ କେମିତି ଯିବୁ ?' ଆଶ୍ଚର୍ଯ୍ୟ କଥା, ତା' ସାଙ୍ଗର ବାପା କିଛି ସମୟ ପରେ ଫୋନ କଲେ - 'ଭାଉଜ ପୁଅକୁ ମଠାମକୁଟା ପିନ୍ଧାଇ ପଠାଇଦିଅ, ତାକୁ କାଳିଆ ଡାକିଲାଣି ।' ଅତି ଆଗ୍ରହରେ ସେ ବାହାରିଲା । ସତରେ ଜଗନ୍ନାଥଙ୍କ କରୁଣାରୁ ତାକୁ ନା ପୋଲିସ ନା ସେବାୟତ କେହିବି ଅଟକାଇ ନଥିଲେ ଏବଂ ସବୁଠୁ ଆଶ୍ଚର୍ଯ୍ୟର କଥା ବଳଭଦ୍ର ଏବଂ ସୁଭଦ୍ରାଙ୍କର ଚାରମାଳ ଖୋଲା ସରିଥିଲା ପରେ ବି ଜଗନ୍ନାଥଙ୍କର ଚାରମାଳ ଖୋଲା ହୋଇନଥିଲା । ବୋଧେ ପ୍ରଭୁ ଭାବୁଥିଲେ 'ଛୋଟ ପିଲା ବିନା ଚାରମାଳରେ କାଳେ ଚଢ଼ି ନ ପାରିବ ।' ଅତି ଆଗ୍ରହରେ ସେ ରଥରେ ଚଢ଼ି କାଳିଆକୁ କୁଣ୍ଢେଇ ଧରିଥିଲା । ଘରକୁ ଫେରିଲା ପରେ ତା' ଦେହରୁ ଖାଲି ମହ ମହ ବାସ୍ନା ଆସୁଥିଲା, ଯାହାଥିଲା ତୁଳସୀ ଆଉ ଚନ୍ଦନର ବାସ୍ନା ।

ପ୍ରଭୁଙ୍କ ସହ ମୋ ପୁଅର ସଂପର୍କ ଏମିତି । ଅନୁଭୂତି ତ ଅନେକ ଅଛି, ଲେଖି ବସିଲେ ସରିବନି । ଜଗନ୍ନାଥଙ୍କର ମୋ ଉପରେ ଅପାର କରୁଣା । ଦୁଇଟିଯାକ ପୁଅ ମୋର ଶାନ୍ତ, ଭଦ୍ର ଓ ଭଗବଦ୍ ବିଶ୍ୱାସୀ । ତାଙ୍କ କରୁଣାରୁ ବଡ଼ପୁଅ ପଢ଼ାସାରି ବ୍ୟାଙ୍କରେ ଚାକିରି କରୁଛି । ସାନପୁଅ ବିଜେବିରେ ପଢୁଛି । ପ୍ରଭୁ ଶ୍ରୀଜଗନ୍ନାଥ ସେମାନଙ୍କ ଭବିଷ୍ୟତ ଚଲାପଥ କୁସୁମିତ କରନ୍ତୁ । ସେମାନଙ୍କୁ ଭଲ ମଣିଷ କରନ୍ତୁ । ସବୁବେଳେ ତାଙ୍କ ପାଦପଦ୍ମରେ ତାଙ୍କ ମନ ଥାଉ ।

ମାର୍ଫତ୍ - କାଞ୍ଚନ ରଥ
୭୩୬, ରାମେଶ୍ୱର ପାଟଣା, ବାରିକ ସାହି
ପୁରୁଣା ଭୁବନେଶ୍ୱର
ଭ୍ରାମ୍ୟଭାଷ : ୮୭୬୩୩୧୦୦୭୮



# ଅମୃତ ଅନୁଭବ

## ମମତା ପାଣି

ଆଜିକୁ ପ୍ରାୟ ଏକ ମାସ ତଳର ସଂଧ୍ୟା । ହଠାତ୍ ମୋବାଇଲ ଫୋନଟି ବାଜି ଉଠିଲା, 'ହାଲୋ' ! ଅପର ପଟରୁ କେହି ଜଣେ ଭଦ୍ର ବ୍ୟକ୍ତି କହୁଥିଲେ 'ମମତା ମାଡାମ୍ କହୁଛନ୍ତି ତ' ? ମୁଁ ହଁ ଭରିଲି ଏବଂ କହିଲି 'ଚିହ୍ନି ପାରିଲିନି ଆଜ୍ଞା ! କିଏ କହୁଥିଲେ' ? ମୋ ପ୍ରଶ୍ନର ଉତ୍ତର ନ ଦେଇ ସେ କହିଲେ 'ପୁରୀରୁ ଜଗନ୍ନାଥଙ୍କ ଉପରେ ବହିଟିଏ ବାହାରୁଛି ଲେଖାଟିଏ ଦେଇ ପାରିବେ କି' ? ମୁଁ କହିଲି କ'ଣ କବିତା ? ଉତ୍ତର ଥିଲା, ନା, ନିଜ ଅନୁଭୂତିକୁ ନେଇ ଲେଖାଟିଏ । ହେଲେ କେଉଁ ଠିକଣାରେ ? ଏତକ ଶୁଣିବା ପରେ ସେ ଖୁବ୍ ଶୀଘ୍ର ଠିକଣାଟି କହିଦେଇ ଫୋନ କାଟିଦେଲେ । ମୁଁ ହତବାକ୍ । କାରଣ ସମସ୍ତ କଥୋପକଥନ ଏତେ ଶୀଘ୍ର ହୋଇଥିଲା ଯେ ତାହା ଭାବି ହେଉନଥିଲା ।

ଭାବି ହେଉନଥିଲା ଏମିତି ଅମୃତ ଅନୁଭବଟିଏ ମୁଁ ପାଇବି କେଉଁଠୁ ? ମୁଁ ଭାବି ଭାବି ଠାକୁର ଘରକୁ ଆସିଲି । ସେଇଠି ଠିଆ ହୋଇ ଜଗନ୍ନାଥଙ୍କ ଫଟୋକୁ ଚାହିଁ ମନେ ମନେ କହିଥିଲି, 'ପ୍ରଭୁ ! ମୁଁ ଜାଣିପାରୁନି । ହଠାତ୍ ମୋ ଠାରୁ ତୁମ ବାବଦରେ ଲେଖାଟିଏ କାହିଁକି ମଗାଗଲା । ମୁଁ ତ ତୁମର ସେମିତି କିଛି ଖାସ୍ ଭକ୍ତ ନୁହେଁ । ତୁମକୁ ନେଇ ମୋର ତ କୌଣସି ଅନୁଭୂତି ମନେ ପଡୁନି । ହେଉ ତୁମେ ଯଦି ମତେ କିଛି ମନେ ପକାଇବ ତେବେ ମୁଁ ଲେଖିବି ।'

ମୁଁ ଲେଖିବି । ମୁଁ ଲେଖିବି । ଏମିତି ହେଇ ହେଇ ୫-୭ ଦିନ ବିତିଗଲା । ହେଲେ କିଛି ମଧ ମନେ ପଡୁନି । କ'ଣ କରିବି, ମୁଁ ପୁଣି ଥରେ ଠାକୁର ଘରକୁ ଯାଇ ଜଗନ୍ନାଥଙ୍କ ଫଟୋକୁ ଚାହିଁ ସେହି ଏକାକଥାର ପୁନରାବୃତ୍ତି କଲି ଏବଂ ଚାଲି ଆସିଲି ।

ଚାଲି ଆସିଲି ସିନା, ହେଲେ ଦିନ ପରେ ଦିନ ଗଡ଼ି ଯାଉଥାଏ । ମତେ ମାଡ଼ି ମାଡ଼ି ପଡୁଥାଏ, କିନ୍ତୁ ଫଳ କିଛି ହେଉ ନଥାଏ । ମୁଁ ଭାବୁଥାଏ ସେହି ଭଦ୍ରଲୋକ ଜଣକ ମୋତେ କ'ଣ ଭାବୁଥିବେ ? ଦିନେ ମୁଁ ପୁଣିଥରେ ଠାକୁର ଘରକୁ ଗଲି ଏବଂ ଜଗନ୍ନାଥଙ୍କ ଫଟୋକୁ ଚାହିଁ କହିଲି, 'ତୁମେ ଏମିତି କାହିଁକି କରୁଛ ? ତୁମର ଯଦି ମତେ କିଛି ମନେ ପକାଇବାର ନଥିଲା, ତେବେ ସେ ଭଦ୍ରଲୋକଙ୍କୁ କାହିଁକି କହିଲ, ମତେ ଫୋନ କରି ଲେଖାଟିଏ ମାଗିବାକୁ ?' ହଠାତ୍ ମୋ ଭିତରେ ବିଜୁଳିର ତଡ଼ିତ୍ ପ୍ରବାହଟିଏ ଅନୁଭୂତ ହେଲା ଆଉ ମୁଁ ଫେରି ଯାଉଥିଲି ଅନେକ ଦିନ ପ୍ରାୟ ୩୧-୩୨ ବର୍ଷ ତଳକୁ ।

୩୧-୩୨ ବର୍ଷ ତଳର କଥା ହିଁ ଲେଖୁଛି । ସେ ଦିନର ବାର ତାରିଖ ମୋର ମନେ ନାହିଁ, କିନ୍ତୁ ସମୟ ଥିଲା ସଂଧ୍ୟା । କୌଣସି ଏକ ଜରୁରୀ କାର୍ଯ୍ୟ ପାଇଁ ମୁଁ ଆମ ଗାଁ ବାସୁଦେବପୁରରୁ ଭୁବନେଶ୍ୱର ଆସିବାକୁ ବାଧ ହୋଇଥାଏ । ଯଦିଓ କାର୍ଯ୍ୟଟି ତା'ପରଦିନ ସକାଳେ ହିଁ ଥିଲା ତଥାପି କାଳେ କିଛି ଅସୁବିଧା ହେବ ତାହା ଭାବି ମୁଁ ପୂର୍ବଦିନ ସଂଧ୍ୟାରେ ହିଁ ବାହାରିଲି । ଘରେ ଅବଶ୍ୟ ସଂଧ୍ୟାରେ ଆସିବା କଥାରେ ମାମା ଅମଙ୍ଗ ହେଉଥିଲା, ତାକୁ କୌଣସି ମତେ ବୁଝାଇ ସୁଝାଇ ମୁଁ ସାନଭାଇ ସହିତ ବସ୍‌ଷ୍ଟାଣ୍ଡକୁ ଆସିଲି । ଆମ ଘରଠାରୁ ବସ୍‌ଷ୍ଟାଣ୍ଡ (ଢାରକା) ପ୍ରାୟ ଆଠ କିଲୋମିଟର । ସେତେବେଳେ ସେତିକି ବାଟ ଆମେ ପ୍ରାୟ ରିକ୍‌ସାରେ ଆସୁଥିଲୁ । ପ୍ରାୟ ୫.୩୦/ ୬ଟା ବେଳକୁ ସାନଭାଇ ମତେ ଢାରକା ବସ୍‌ଷ୍ଟାଣ୍ଡରେ ବସ୍‌ରେ ବସାଇଦେଲା ।

ବସ୍‌ରେ ବସାଇ ଦେଲା ସିନା, ହେଲେ ତା' ପରବର୍ତ୍ତୀ ଭୟଙ୍କର ଅବସ୍ଥା ବିଷୟରେ ସେ ବା ମୁଁ ସଂପୂର୍ଣ୍ଣ ଅନଭିଜ୍ଞ ଥିଲୁ । ହଠାତ୍ ଚଣ୍ଡିଖୋଲ ଓ ଛତିଆ ମଝିରେ ବସ୍ ଖରାପ ହେଲା । ପ୍ରଥମେ ଲାଗୁଥିଲା ବସ୍ ସଜଡ଼ା ହୋଇଯିବ । କିନ୍ତୁ ରାତି ପ୍ରାୟ ୮ଟା ବେଳକୁ ଜଣାପଡ଼ିଲା ବସ୍ ଆଜି ରାତିରେ କୌଣସି ମତେ ସଜଡ଼ା ହୋଇପାରିବ ନାହିଁ । ମୁଁ ଚମକି ପଡ଼ିଲି । ରାତିରେ କୁଆଡ଼େ ଯିବି ? ତହିଁକୁ ମୋ କାନ୍ଧରେ ପଡ଼ିଥିବା ଶାନ୍ତି ନିକେତନ ବ୍ୟାଗରେ ଗୋଟିଏ ଡବାରେ ମୋ ଭାଉଜଙ୍କ କିଛି ଗହଣା, ଯାହାକୁ ଭୁବନେଶ୍ୱରରେ ସଜାଡ଼ିବାକୁ ନେଇ ଆସିଥିଲି । ମୁଁ ମୋ ଚାରିପାଖକୁ ବୁଲି ବୁଲି ଚାହୁଁଥିଲି । ଆଉ ମନେ ମନେ ଭାବୁଥିଲି ମାମା ମନା କରିବା ସତ୍ତ୍ୱେ ମୁଁ କାହିଁକି ଆସିଲି ? ସେତେବେଳେ ଆମ ଗାଁକୁ ଫୋନ ଲାଇନ୍ ଯାଇନଥାଏ । ତେଣୁ ଘରକୁ ଜଣାଇବା ମଧ୍ୟ ସମ୍ଭବ ନୁହେଁ । ବସ୍‌ର କିଛି ଲୋକ ତଳେ ବୁଲାବୁଲି କରୁଥିଲେ । ମୁଁ ମଧ୍ୟ ତଳକୁ ଓହ୍ଲାଇ ଆସିଲି । ଦେଖିଲି ଆମ ବସ୍‌ର ଡ୍ରାଇଭର ଓ କଣ୍ଡକ୍ଟର ସେଇବାଟ ଦେଇ ଯାଉଥିବା ଅନ୍ୟ ବସ୍ ଗୁଡ଼ିକରେ ଏ ବସ୍‌ର କିଛି କିଛି ଲୋକଙ୍କୁ ଆଡ଼ଜଷ୍ଟ କରି ପଠାଇବାର ଯୋଜନା କରୁଛନ୍ତି ।

ଯୋଜନାଟି ସଫଳ ହେଲା । କିଛି କିଛି ଲୋକ ଗୋଟିଏ ଗୋଟିଏ ବସ୍‌ରେ ଆଡ଼ଜଷ୍ଟ ହୋଇ ଯାଉଥା'ନ୍ତି । ମତେ ମଧ୍ୟ ଗୋଟିଏ ଭୁବନେଶ୍ୱର ବସ୍‌ରେ ସେମାନେ ବସାଇଦେଲେ । ପ୍ରାୟ ଟାଙ୍ଗୀ ପାଖାପାଖି ମତେ ସିଟ୍‌ଟିଏ ମିଳିଲା । ମୁଁ କେମିତି ଓ କେତେବେଳେ ଯାଇ ଭୁବନେଶ୍ୱରରେ ପହଞ୍ଚିବି, ସେହିକଥା ଭାବୁ ଭାବୁ ମୋ ଆଖି ଲାଗିଯାଇଛି, କେତେବେଳେ ।

କେତେବେଳ ହେବ କେଜାଣି ହଠାତ୍ ମୁଁ ଚମକି ଉଠିପଡ଼ିଲି । ମୁଁ ଆବାକାବା ହୋଇ ଚାରିଆଡ଼କୁ ଚାହୁଁଥାଏ । ଦେଖିଲି ବସ୍‌ଟି ଠିଆ ହୋଇଛି ଓ ବସ୍ ଭିତରେ କେହି ଲୋକ ନାହାନ୍ତି । ମୁଁ ଆଖିକୁ ଭଲକରି ମକଚି ଦେଲି, ମୁଁ ସ୍ୱପ୍ନ ଦେଖୁନି ତ ? ଏଇ କଥା

ଭାବି ଭାବି ମୁଁ ପୁଣିଥରେ ଭଲ ଭାବରେ ଚାରିଆଡ଼କୁ ଚାହିଁଲି । ଛାତି ଧଡ଼୍ ଧଡ଼୍ ହେଉଥାଏ । କିଛି ସମୟ ପରେ ମୁଁ ଜାଣିପାରିଲି ବସ୍ ବାଦାମ୍‌ବାଡ଼ି ବସଷ୍ଟାଣ୍ଡରେ ଠିଆ ହୋଇଛି । ହେଲେ ବସ୍‌ର ଯାତ୍ରୀମାନେ କୁଆଡ଼େ ଗଲେ ? ମୁଁ ବସ୍‌ର ଦ୍ୱାରଆଡ଼େ ଚାହିଁଲି ଦେଖିଲି ବସ୍‌ର ଦ୍ୱାରକୁ ଲାଗିକରି ଠିଆ ହୋଇ ୨-୩ ଜଣ ଗପୁଛନ୍ତି । ମୋର ହୃଦ୍‌ସ୍ପନ୍ଦନ ବନ୍ଦ ହୋଇଯିବା ପରି ଲାଗୁଥାଏ । ତଥାପି ଭାରି ଟାଣପଣ ଦେଖାଇ ମୁଁ ବସ୍‌ରୁ ଓହ୍ଲେଇ ପଡ଼ିଲି । ଦ୍ୱାର ପାଖରେ ଠିଆ ହୋଇଥିବା ଲୋକମାନେ ମତେ ଦେଖି ପଚାରିଲେ, 'ମାଡ଼ାମ୍ ଓହ୍ଲେଇ ପଡ଼ିଲେ କାହିଁକି ? ୨-୪ ଜଣ ଲୋକ ହେଲେ ଗାଡ଼ି ଛାଡ଼ିବ । ଅନ୍ୟ ପାସେଞ୍ଜର ସବୁ କଟକରେ ଓହ୍ଲାଇ ଗଲେ । ଆଉ ଅଳ୍ପ ସମୟ ବସ୍‌ରେ ବସନ୍ତୁ ।'

ବସ୍‌ରେ ବସିବାକୁ ଦେହ ରାଜି ନଥିଲା କିମ୍ବା ସେମାନଙ୍କୁ ବିଶ୍ୱାସ କରିବାକୁ ମନ ମଧ ପ୍ରସ୍ତୁତ ନଥିଲା । ମୁଁ ସାଙ୍ଗେ ସାଙ୍ଗେ କହିଲି, ମୋର ଖୁଡ଼ୀ ଡ଼ଗରପଡ଼ାରେ ରହନ୍ତି । ତାଙ୍କ ପାଖରେ ମୋର ଗୋଟେ କାମ ଅଛି । ମୁଁ ସାରିଦେଇ କାଲି ସକାଳୁ ଭୁବନେଶ୍ୱର ଯିବି । ସେମାନେ ସେଇ ପାଖରେ ଥିବା ଗୋଟିଏ ରିକ୍ସାବାଲାକୁ ଡାକି ମତେ ଡଗରପଡ଼ା ନେଇ ଯିବାକୁ କହିଲେ । ଅବିଶ୍ୱାସର ମଞ୍ଜିଟିଏ ଯେତେବେଳେ ମନ ଭିତରେ ପୋତା ସରିଲାଣି, ଅଙ୍କୁରୋଦ୍‌ଗମ ହବାକୁ ବା କେତେବେଳ ? ମୁଁ ଭାବୁଥାଏ ଏ ରିକ୍ସାବାଲା ଆଉ ସେମାନଙ୍କ ଲୋକ ନୁହଁ ତ ? କେମିତି ଯାଇ ଭଲରେ ଖୁଡ଼ୀ ଘରେ ପହଞ୍ଚିବି ? ସେଇ ଚିନ୍ତାରେ ମୁଁ ଅସ୍ଥିର ହେଉଥାଏ ।

ଅସ୍ଥିର ଚିତ୍ତରେ ମୁଁ ରିକ୍ସାରେ ବସିଲି । ବାଦାମବାଡ଼ିରୁ ଖୁଡ଼ୀଙ୍କ ଘରକୁ ମୋତେ ଗୋଟିଏ ବାଟ ଜଣାଥାଏ । ନଈ କୂଳେ କୂଳେ ଯାଇ ହାଇକୋର୍ଟ ପାଖରେ ପହଞ୍ଚିଲେ, ପାଖରେ ଡ଼ଗରପଡ଼ା । ମୁଁ ରିକ୍ସାବାଲାକୁ ସେଇ ବାଟରେ ଯିବା କହିଲି, ହେଲେ ସେ ମୋ କଥା ନଶୁଣି ଅନ୍ୟ କୌଣସି ରାସ୍ତାରେ ରିକ୍ସା ଗଡ଼େଇଲା ।

ରିକ୍ସା ଗଡ଼ି ଚାଲିଥାଏ । କିନ୍ତୁ ତାହା ଠିକ୍ ବାଟକି ନାହିଁ ମୁଁ ଜାଣିପାରୁନଥାଏ । ହେଲେ କଟକର ରାସ୍ତାଘାଟ ବାବଦରେ ମୁଁ ଯେ ଅଜ୍ଞ ଏକଥା ମଧ ରିକ୍ସାବାଲାକୁ ଜଣାଇବାକୁ ଚାହୁଁନଥାଏ । କିଛି ସମୟ ପରେ ରିକ୍ସା ଗୋଟିଏ ଗଳି ରାସ୍ତାରେ ପଶିଲା । ମହରଗରୁ ଆସି କାନ୍ତାରରେ ପଡ଼ିଯିବା ପରି ମତେ ଲାଗୁଥାଏ । କିନ୍ତୁ ମୁଁ ଉପାୟଶୂନ୍ୟ । ସେହି ଗଳି ରାସ୍ତାର ଦୁଇପଟେ ଛୋଟ ଛୋଟ ନୁଆଁଣିଆ ଘର । ଘର ଗୁଡ଼ିକ ଲଗାଲଗି । ସେଇ ଅଙ୍କାବଙ୍କା ସରୁ ରାସ୍ତାରେ ରିକ୍ସା ଧୀରେ ଧୀରେ ଆଗକୁ ଗଡୁଥାଏ ଆଉ ରାସ୍ତା କଡ଼ର ଦୃଶ୍ୟ ସବୁ ଆଖିରେ ପଡୁଥାଏ । କୌଣସି ଘରର ପିଣ୍ଡାରେ ଠିଆ ହୋଇ କେହି କେହି କଥା ହେଉଥା'ନ୍ତି । ଆଉ କେଉଁଠି ୪-୬ ଜଣ ଉତ୍‌କ୍ଷିପ୍ତ ବ୍ୟକ୍ତି ଅଶ୍ଳୀଳ ଭାଷାରେ ପରସ୍ପରକୁ ଗାଳିଗୁଲଜ କରୁଥା'ନ୍ତି । ମତେ ଲାଗୁଥାଏ ସେମାନେ ରାଗରେ ମୋ ଉପରକୁ ଝାମ୍ପି ପଡ଼ିବେନି ତ ! ମୋର ଚିତ୍କାର କରି କାନ୍ଦିବାକୁ ଇଚ୍ଛା ହେଉଥାଏ, ନତୁବା ରିକ୍ସାରୁ ଡ଼େଇଁପଡ଼ି ଦୌଡ଼ି ପଳେଇବି ବୋଲି ଭାବୁଥାଏ । କିନ୍ତୁ ପର ମୁହୂର୍ତ୍ତରେ ମନକୁ ଦୃଢ଼ କରିବାକୁ ଚେଷ୍ଟା କରୁଥାଏ ।

ମନକୁ ଦୃଢ଼ କରିବାକୁ ଚେଷ୍ଟା କରି ମୁଁ ବାରମ୍ବାର ବିଫଳ ହେଉଥାଏ । ପ୍ରତ୍ୟେକ ମୁହୂର୍ତ୍ତରେ ମୋତେ ଲାଗୁଥାଏ ମୋ ରିକ୍ସା ପଛରେ କେହି ଆସୁଛି ମତେ ଧରିବାପାଇଁ । ମୋର ହାତ ପାଦ ଶିଥିଳ ହୋଇ ଯାଉଥାଏ । ଯେତେବେଳେ ରିକ୍ସାର ଧକଡ଼ଚକଡ଼ରେ ବ୍ୟାଗ୍ ଭିତର ଗହଣାର ଝଣ୍ଝାଣ୍ ଶବ୍ଦ ଶୁଭିଯାଉଥାଏ ଡରରେ ମୋର ଆଖି ବନ୍ଦ ହୋଇଯାଉଥାଏ ଓ ମୁଁ ବିକଳରେ ମୋର ଓଠକୁ ଖୁବ୍ ଜୋର୍‌ରେ କାମୁଡ଼ି ଧରୁଥାଏ । କୌଣସି ଗୋଟେ ସ୍ଥାନରେ ଦୁଇଜଣ ଲୋକ ଗାଳିଗୁଲଜ ଓ ଧକ୍କା ମରାମରି ହୋଇ ରିକ୍ସା ଆଡ଼କୁ ମାଡ଼ି ଆସିଲେ । ମତେ ଲାଗୁଥାଏ ଏହାହିଁ ଜୀବନର ଅନ୍ତିମ ମୁହୂର୍ତ୍ତ । ମୁଁ ପୂରାପୂରି ସ୍ଥାଣୁ ପାଲଟି ଯାଇଥାଏ । ଭୟରେ କୌଣସି ଠାକୁରଙ୍କ ନାଁ ମନେ ପଡୁନଥାଏ । ମୋ ଭିତରର ଏହି ଉଦ୍‌ବେଳନ ନା ରିକ୍ସା ନା ରିକ୍ସାବାଲା କାହାରି ଉପରେ କିଛିବି ପ୍ରଭାବ ପକାଇ ପାରୁନଥାଏ । ରିକ୍ସା ଧୀରେ ଧୀରେ ଗଡୁଥାଏ ।

ରିକ୍ସା ଧୀରେ ଧୀରେ ଗଡୁଥିବା ଅବସ୍ଥାରେ ହିଁ ହଠାତ୍ ରାସ୍ତାକଡ଼ରେ ଆଖି ଆଗରେ ପଡ଼ିଗଲା ପ୍ରାୟ ୩ ଫୁଟ ଉଚ୍ଚତାର କୁନି ମନ୍ଦିରଟିଏ । ତା'ଭିତରେ ବଲ୍‌ବଟିଏ ଜଳୁଥିଲା ଏବଂ ସେହି ଆଲୋକରେ ପରିଷ୍କାର ଦେଖାଯାଉଥିଲା ଛୋଟିଆ ଜଗନ୍ନାଥ ମୂର୍ତ୍ତିଟିଏ । ମାତ୍ର ଗୋଟିଏ ମୁହୂର୍ତ୍ତରେ ହିଁ ଯେପରି ସବୁକିଛି ଓଲଟପାଲଟ ହୋଇଗଲା । ଅଥଳ ସମୁଦ୍ର ଭିତରେ ଦିଗହରା ନାବିକଟିଏ ବତୀଘରକୁ ପାଇଗଲା କି ? ଅମାବାସ୍ୟାର ଆକାଶକୁ ବିଦୀର୍ଣ୍ଣ କରି ପୂର୍ଣ୍ଣମୀର ଇନ୍ଦୁ ଉଇଁ ଆସିଲାକି ? ସେ ପର୍ଯ୍ୟନ୍ତ ମୋ ଆଖିରୁ ବିନ୍ଦୁଏ ହେଲେ ଲୁହ ବହି ନଥିଲା । ଅନେକ ଦୁଃଖ ପରେ ଅତି ଆପଣାର ଲୋକଟିକୁ ଦେଖିଲେ ଆଖିର ଲୁହ ଯେମିତି ବାଧାମାନେ ନାହିଁ ଠିକ୍ ସେମିତି ମୂର୍ତ୍ତିଟିକୁ ଦେଖୁ ଦେଖୁ କୋଉଠି ଥିଲା ଏ ଲୁହର ବନ୍ୟା ? ଠିକ୍ ପର ମୁହୂର୍ତ୍ତରେ ମତେ ଲାଗୁଥିଲା କେହି ଯେପରି କାନ ପାଖରେ କହୁଛି - କାନ୍ଦନିରେ ବାୟାଣି, ଡରନି । ମୁଁ ଅଛି ଯେ । ମୋର ଭୟ ନିମିଷକରେ କୁଆଡ଼େ ଉଭେଇଗଲା । ଆଉ ମୋର ଜଡ଼ ଦେହରେ ଜୀବନ ସଞ୍ଚରି ଯାଉଥିଲା । ମୋର ଯୋଡ଼ ହସ୍ତ ଆପଣାଛାଏଁ ଉପରକୁ ଉଠିଗଲା । ମୃତ କୋଷ ଗୁଡ଼ିକରେ ସତେକି ଅମୃତର ଅନୁଭବ ।

ସେହି ଅନନ୍ୟ ଅମୃତ ଅନୁଭବରେ ତଲ୍ଲୀନ ଥିବା ଅବସ୍ଥାରେ ହିଁ ରିକ୍ସାବାଲା କହିଲା, ମା' ଡ଼ଗରପଡ଼ା ଆସିଗଲା । ମୁଁ ସେମିତି ଅନ୍ୟମନସ୍କ ଅବସ୍ଥାରେ କେମିତି ଖୁଡ଼ୀ ଘରେ ପହଞ୍ଚିଥିଲି ଜାଣିନି । ପ୍ରକୃତିସ୍ଥ ହେଲାବେଳକୁ ଦେଖିଲି ଖୁଡ଼ୀ ଘରେ ସମସ୍ତେ ମତେ ବୋକା ହୋଇ ଚାହିଁଛନ୍ତି । ମୁଁ ଭାବୁଥିଲି କାହାକୁ କ'ଣ କହିବି ? କିଏ ବୁଝିବ ମୋର ଏହି ଅବର୍ଣ୍ଣନୀୟ, ଅନନ୍ୟ ଅମୃତ ଅନୁଭବକୁ ।

ପ୍ଲଟ୍ ନଂ : ୯-୧୦, ସୋକାୟିଭିଲ୍ଲା
ଝାରପଡ଼ା, ଭୁବନେଶ୍ୱର-୭୫୧୦୦୬
ଭ୍ରାମ୍ୟଭାଷ : ୯୪୩୭୪୧୩୫୫୫



# ଅନୁଭୂତିରେ ଅବତାରୀ

## ମୀନାକ୍ଷୀ ସିଂହ

**ପି**ଲାଦିନୁ ମୁଁ ଶ୍ରୀଜଗନ୍ନାଥଙ୍କୁ ପୂଜା କରୁଥିଲି । ଦିନେ ଦିନେ ଠାକୁର ଘରେ ଫୁଲ ଧୂପ ବା ଭୋଗର ଅବ୍ୟବସ୍ଥା ଦେଖି ବ୍ୟସ୍ତ ହୋଇ ପଡ଼ିଲେ ବା ବିରକ୍ତି ପ୍ରକାଶ କଲେ ଗୁରୁଜନମାନେ ସାନ୍ତ୍ୱନା ଦେଇ କହୁଥିଲେ - କାଳିଆ ସାଆନ୍ତଙ୍କର ପୂଜା ଉପଚାର ବା ନୈବେଦ୍ୟ ସମ୍ଭାରର ଲୋଡ଼ା ନାହିଁ । ଭାବ, ଭକ୍ତି ଓ ବ୍ୟାକୁଳତାର ଦୁଇଟୋପା ଲୁହ ତାଙ୍କର କୋମଳ ହୃଦୟକୁ ବିଚଳିତ କରିଦିଏ । ବଡ଼ହେଲା ପରେ ବି ସେଇ ବିଶ୍ୱାସକୁ ନେଇ ମୋ ଜୀବନରେ ଯଦି କିଛି ସମସ୍ୟା ଉପୁଜୁଥିଲା ତେବେ ଚକାଡ଼ୋଳାଙ୍କୁ ମନପ୍ରାଣ ଦେଇ ଆକୁଳ ପ୍ରାର୍ଥନା କଲେ ସମସ୍ତ ବାଧା, ବନ୍ଧନ ଓ ସମସ୍ୟା ଅଚିରେ ଅପସରି ଯାଉଥିଲା । ୧୯୬୭ ମସିହାର ଘଟଣା । ମୋ ବିବାହ ପାଇଁ ଅନେକ ଆଡୁ ଆସୁଥିବା ପ୍ରସ୍ତାବ ଗୁଡ଼ିକ କୋଷ୍ଠୀ ଅମେଳ ହେତୁ ଭାଙ୍ଗି ଯାଉଥିଲା । ଏଥିପାଇଁ ଚିନ୍ତାଗ୍ରସ୍ତ ଥିଲେ ଆମ ପରିବାର । ମୋ ପାଇଁ ସମସ୍ତଙ୍କର ଉଦ୍‌ବିଗ୍ନ ଭାବ ଦେଖି ମୁଁ ବଳିୟାରଭୁଜ କଳାଠାକୁରଙ୍କୁ ମୋ ଭବିଷ୍ୟତର ନିର୍ଣ୍ଣାୟକ ମାନିନେଇ ମୋ ଜୀବନରେ ଉପୁଜୁଥିବା ସବୁ ସମସ୍ୟାକୁ ତାଙ୍କରି ପଦକମଳରେ ଅର୍ପଣ କରିଥିଲି । ଏହାର କିଛିଦିନ ପରେ ରାଜଯୋଟକ ମେଳରେ ମୋର ବିଭାଘର ସ୍ଥିର ହୋଇ ସେଇ ମାସର ଶେଷ ଲଗ୍ନରେ ସଂପନ୍ନ ହୋଇଥିଲା ।

ମୋ ଶାଶୁଘରର ପ୍ରାୟ ଦଶ-ପନ୍ଦର ମିଟର ଦୂରରେ ଗ୍ରାମର ଅଧିଷ୍ଠାତା ଦେବ ଶ୍ରୀ ଶ୍ରୀ ନୃସିଂହ ଜୀଉଙ୍କର ପୀଠସ୍ଥଳୀ । ସକାଳ, ଓ ସଞ୍ଜରେ ମୁଁ ଦାଣ୍ଡଦ୍ୱାରରେ ଛିଡ଼ା ହୋଇ ନୃସିଂହ ମହାପ୍ରଭୁଙ୍କ ଆଳତି ଦର୍ଶନ କଲାବେଳେ ନିଜକୁ ଖୁବ୍ ଭାଗ୍ୟବତୀ ମଣୁଥିଲି । ବିଷ୍ଣୁଙ୍କର ଚତୁର୍ଥ ଅବତାର ନୃସିଂହ ମହାପ୍ରଭୁ ତ ଶ୍ରୀମନ୍ଦିରର ଅଧିଷ୍ଠାତା ଦେବ । ନବକଳେବର ସମୟରେ ଶ୍ରୀଜଗନ୍ନାଥଙ୍କ ନ୍ୟାସଦାରୁଙ୍କୁ ଷୋଡ଼ଶ ଉପଚାରରେ ନୃସିଂହ ଗାୟତ୍ରୀ ମନ୍ତ୍ରରେ ପୂଜାର୍ଚ୍ଚନା କରାଯାଏ । ଶ୍ରୀଜଗନ୍ନାଥ ତ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିର ଅଂଶବିଶେଷ । ସେଇ ଲୀଳାମୟ ତ ଯୁଗେ ଯୁଗେ ଭିନ୍ନ ଭିନ୍ନ ଅବତାର ନେଇ ପୂଜା ପାଉଛନ୍ତି । ଧନ୍ୟ ମଣୁଥିଲି ନିଜକୁ ଯେ କୋଟି ଜନ୍ମର ପୁଣ୍ୟ ଫଳରେ ମୁଁ ଜଗନ୍ନାଥ ମହାପ୍ରଭୁଙ୍କର କରୁଣାରେ ଅନୁଗୃହୀତ ।

ମୋ ଶାଶୁଘରର ସମସ୍ତେ ଥିଲେ ଭଗବଦ୍ ଉପାସକ । ସମସ୍ତେ ଅର୍ଥାତ୍ ପରିବାରରେ ଥିଲେ ଜେଜୀ ଶାଶୁ ଓ ଦୁଇ ବିଧବା ଶାଶୁ । ମୁଁ ସେ ଘରେ ପାଦଦେଲା ବେଳକୁ ମୋର ଜନ୍ମିତ ସାନ ଶ୍ୱଶୁର ଓ ପୋଷ୍ୟ କରି ନେଇଥିବା ନିଃସନ୍ତାନ ବଡ଼

ଶ୍ୱଶୁର ସ୍ୱର୍ଗବାସୀ ହୋଇ ସାରିଥିଲେ । ବିଭାଘରର ପନ୍ଦର ଦିନ ପରେ ସାନ ଶ୍ୱଶୁରଙ୍କର ପ୍ରଥମ ଶ୍ରାଦ୍ଧ ଦିବସ ପାଳନ କରାଗଲା । ଏହାପୂର୍ବରୁ ଅବିବାହିତ ପୁତ୍ର ଶ୍ରାଦ୍ଧ ଦିନରେ ଭୋଜ୍ୟ ଟେକୁଥିଲେ । ପିଣ୍ଡଦାନ ପରେ ସାତଜଣ ବ୍ରାହ୍ମଣଙ୍କୁ ଭୋଜନ ଓ ଦାନଦକ୍ଷିଣା ଦେବାର ବ୍ୟବସ୍ଥା କରାଯାଇଥିଲା । ଦକ୍ଷିଣା ଦେଇ ପ୍ରଣାମ କଲାବେଳେ ମୁଁ ଜଣେ ବ୍ରାହ୍ମଣଙ୍କ ଚେହେରା ଦେଖି ଭୟ ପାଇଗଲି । ଶାଶୁମାନେ ବିଶ୍ରାମ ନେଉଥିବା ବେଳେ ପଚାରିଲି - 'ବୋଉ ! କୁତ୍ସିତ ଚେହେରା ଦିଶୁଥିବା ସେ ନନାଙ୍କର ରୂପ କ'ଣ ଜନ୍ମରୁ ଏପରି ବିକୃତ । ବଡ଼ଶାଶୁ କହିଲେ, ନା...ରେ ମା ! ତାଙ୍କର ଚେହେରା ଖୁବ୍ ସୁନ୍ଦର ଥିଲା । ସେ ଆମ ଭାଗବତ ଗାଦି ଗୋସେଇଁଙ୍କର ପୂଜକ ନିଧି ପଣ୍ଡା । ବସନ୍ତ ରୋଗରେ ମୁହଁ ଆବଡ଼ା ଖାବଡ଼ା ହୋଇ ଦୁଇ ନାକପୁଡ଼ା ବନ୍ଦ ହୋଇଯିବାରୁ ସେ ପାଟିବାଟେ ନିଃଶ୍ୱାସ ନେଉଛନ୍ତି । ସେଥିପାଇଁ ସ୍ୱର ବି ବଦଳି ଯାଇଛି । ଆଖିଡ଼ୋଳା ପଦାକୁ ବାହାରି ପଡ଼ି ବିକୃତ ଦିଶୁଛି ଚେହେରା । ତାଙ୍କ ବାପାଙ୍କ ଅନ୍ତେ ଏବେ ସେ ଭାଗବତ ପୂଜା କରୁଛନ୍ତି । ସାନଶାଶୁ କୋହଭରା ସ୍ୱରରେ ଲୁହ ଗଡ଼େଇ କହିଲେ, ନିଧି ନନାଙ୍କ ଚେହେରା ପରି ବିକୃତ କରି ବସନ୍ତ ତୋର ଶ୍ୱଶୁରଙ୍କୁ ହେଲେ ଛାଡ଼ି ଯାଇଥା'ନ୍ତା । କିନ୍ତୁ ନା... ସେ ପ୍ରାଣଘାତକ ତାଙ୍କର ଜୀବନ ନେଲା ।

ସାନ ଶ୍ୱଶୁର ଯେ ବସନ୍ତ ରୋଗରେ ସ୍ୱର୍ଗବାସୀ ହୋଇଥିଲେ ଏକଥା ମୁଁ ଜାଣିନଥିଲି । ଆଶ୍ଚର୍ଯ୍ୟ ହୋଇ ଶାଶୁଙ୍କ ମୁହଁକୁ ଚାହିଁବାରୁ ସେ କହିଲେ, ହଁ ରେ ମା !... ଏବେ ଏ ରୋଗର ସଂପୂର୍ଣ୍ଣ ବିଲୋପ ଘଟିଛି । ଆଜିର ପିଲାମାନେ ବସନ୍ତ କହିଲେ କ'ଣ ବୋଲି ବୁଝିପାରିବେନି । ଆଗେ ବସନ୍ତରେ ବହୁତ ଲୋକ ବିକଳାଙ୍ଗ ହେବା ସହିତ ମୃତ୍ୟୁ ମୁଖରେ ପଡୁଥିଲେ । ସେତେବେଳେ ଏ ରୋଗକୁ ଠାକୁରାଣୀ କହି ପୂଜା କରୁଥିଲେ । କାହା ଦେହରେ ବସନ୍ତ ହେବାର ଲକ୍ଷଣ ଦେଖାଗଲେ ଔଷଧ ବଦଳରେ ପଣାପାଣି, ଧୂପ, ଦୀପ ଦେଇ ପୂଜା କରି ଗ୍ରାମ ଦେବତୀଙ୍କ ପାଦୁକ ପାଣି ପିଆଇଲେ ବସନ୍ତ ଠାକୁରାଣୀ ସନ୍ତୁଷ୍ଟ ହୋଇ ଶରୀର ଛାଡ଼ି ଚାଲିଯାଉଥିଲେ ବୋଲି ବିଶ୍ୱାସ କରାଯାଉଥିଲା । ଗୋଟିଏ ଗାଁରେ ବସନ୍ତ ହେବାର ଜାଣିଲେ ପାଖ ଗାଁର ଲୋକମାନେ ତାଙ୍କର ଗ୍ରାମର ଇଷ୍ଟ ଦେବୀଙ୍କୁ ସମୂହ ଭାବେ ପୂଜା କରି ସନ୍ତୁଷ୍ଟ କରିବା ସହିତ ଶକ୍ତିଶାଳୀ କରୁଥିଲେ ଯେପରି ଗ୍ରାମ ଦେବତୀ ବାହାରର ବସନ୍ତ ଠାକୁରାଣୀଙ୍କୁ ଗ୍ରାମ ଭିତରକୁ ପ୍ରବେଶ କରିବାକୁ ନଦେଇ ପ୍ରତିରୋଧ କରି ତଡ଼ିଦେବେ । ସେତେବେଳର ବିଶ୍ୱାସ ନେଇ ବହୁ ପୂଜାର୍ଚ୍ଚନା ପରେ ବି ଆମ ପରିବାର ସେ ଠାକୁରାଣୀଙ୍କ କୋପରୁ ବର୍ତ୍ତି ନଥିଲୁ । ସମୟ ବଦଳିଲା ପରେ ଅନ୍ଧ ବିଶ୍ୱାସ ଯୋଗୁଁ ବସନ୍ତ ରୋଗରେ ଆମର ଯେଉଁ ଅପୂରଣୀୟ କ୍ଷତି ହୋଇଛି ସେ କଥା ଏବେ ବି ମୋ ହୃଦୟକୁ ବିଦାରି ପକାଏ । ମୋ ଅନୁରୋଧରେ

ଆଖିରୁ ଲୁହ ଢାଳି ବହୁତ ଦୁଃଖର ସହିତ ସେ ନିଜ ଅଙ୍ଗେନିଭା ଘଟଣା ବର୍ଣ୍ଣନା କରିଥିଲେ ।

୧୯୪୬ ମସିହା ଘଟଣା । ଦିନେ ତୋ ସାନ ଶ୍ୱଶୁରଙ୍କର ଦେହ ଖୁବ୍ ବିନ୍ଧା-ଛିଟିକା ହେବାରୁ ସେ ଶୀଘ୍ର ହାଟରୁ ଫେରିଆସି ଶୋଇଲେ । ଧୀରେ ଧୀରେ ଦେହର ଉତ୍ତାପ ବଢ଼ି ଖଇ ଫୁଟିଲା ବାଲିପରି ତାତିଗଲା । ସକାଳକୁ ଦେହସାରା ବଡ଼ ବଡ଼ ଫୋଟକା ବାହାରି ପଡ଼ିଲା ଯେ ସୋରିଷ ପକାଇବାକୁ ଠାବ ନଥିଲା । ପାଟି ଭିତରେ ବସନ୍ତର ବଡ଼ ବଡ଼ ଫୋଟକା ବାହାରି ତଣ୍ଟିରେ ପାଣି ଗଳିଲାନି । ଆଖି ବନ୍ଦ କରି ଲିମ୍ବ ପତ୍ରର ବିଛଣାରେ ପଡ଼ି ଛଟପଟ ହେଉଥିବା ବେଳେ ଫୋଟକା ଫାଟି ଲସାପାଣି ନିର୍ଗତ ହେଲା । ଠାଏ ଠାଏ ଚମଡ଼ା ଛେଲି ହୋଇ ଯାଇ଼ ଲାଲ ରକ୍ତ ଚକଡ଼ା ଦିଶୁଥିଲା । ନା ଶୋଇ ପାରୁଥିଲେ କି ବସି ପାରୁଥିଲେ । ଦେହରେ ଲୁଗା ଲାଗିଲେ ଖୁବ୍ ଜ୍ୱାଳା କରୁଥିଲା । ତୋ ଜେଜେଶାଶୁ ତାଙ୍କ ପାଖେ ପାଖେ ରହି ଅଖିଆ ଅପିଆ ବିଞ୍ଚଣା କରୁଥା'ନ୍ତି, ମାଛି ଘଉଡ଼େଇବା ସହିତ ଦେହକୁ ଥଣ୍ଡା କରିବାପାଇଁ । ହେଲେ ହାତ ପଙ୍ଖାର ପବନ କ'ଣ ଦେହକୁ ଶୀତଳେଇ ପାରୁଥିଲା । ତୋ ଶ୍ୱଶୁରଙ୍କ ଦେହରେ ବସନ୍ତ ବାହାରିବାର ଦୁଇଦିନ ପରେ ଅଢ଼େଇ ବର୍ଷର ହୋଇଥିବା ଏଇ ପୁଅ ଓ ଛଅ ବର୍ଷର ଝିଅ (ତୋ ବଡ଼ ନଣନ୍ଦ)ର ଦେହସାରା ବସନ୍ତ ଫୋଟକା ବାହାରିଲା । ତୋ ବଡ଼ ଶାଶୁଙ୍କ ଦେହସାରା ଗୋଟା ଗୋଟା ଫୋଟକା ବାହାରିବାରୁ ସେ ନିଆଁ ପାଖକୁ ଗଲେ ନାହିଁ କି ନିୟମ ଦୃଷ୍ଟିରୁ ଅନ୍ୟ ରୋଗୀକୁ ଛୁଇଁଲେ ନାହିଁ । ଜ୍ୱର ବାଉଳାରେ ଏଗୁଡ଼ାକ କ'ଣ କହି ପୁଅ ମୁହଁକୁ ରାମ୍ପୁଡ଼ି ଦେବାରୁ ମୁହଁଟା ଫୁଲି ଯାଇ ଡାଲି ଆଟିକା ପରି ଦିଶୁଥାଏ । ପତଳା ଚଉତା ହୋଇଥିବା ଲୁଗାରେ ଧରିଲେ ବି ଯନ୍ତ୍ରଣାରେ ରଡ଼ି ଛାଡ଼ି ମତେ ମୋଟେ ଛାଡୁନଥାଏ । ମୁହଁଗୁଞ୍ଜି କ୍ଷୀର ଚୋଷିଲା ବେଳେ ସବୁବେଳେ ଛାତିରେ ଲଟକି ରହିଥିବାରୁ ନିତ୍ୟକର୍ମ ବି କରିପାରୁ ନଥିଲି କି ତା' ଗୋରା ଦେହର କଅଁଳ ଚମରେ ଟମ୍ ଟମ୍ ହୋଇ ଭୟାନକ ଦିଶୁଥିବା ଫୋଟକା ଫାଟିଯିବା ଭୟରେ ଜୋର କରି ବିଛଣାରେ ଶୁଆଇ ଦେଇ ପାରୁନଥିଲି । ଝିଅର ଅବସ୍ଥା ଥିଲା ତଦ୍ରୂପ । ଦୁଇଟି ରୋଗୀ ଏକ ବିଛଣାରେ ଶୋଇବେ ନାହିଁ । ନା ତା'ର ଦୁଃଖ ଦେଖି ପାରୁଥିଲି ନା ତାକୁ କୋଳକୁ ନେଇପାରୁଥିଲି । କେବଳ ହୃଦୟବିଦାରୀ ଅଶ୍ରୁ ବିସର୍ଜନ କରୁଥିଲି । ଏଇ ସମୟରେ ସାଇ ପଡ଼ିଶାରୁ ସାହାଯ୍ୟ କରିବା ପାଇଁ କେହି ଆସୁନଥିଲେ ଠାକୁରାଣୀ ବ୍ୟାପିବା ଭୟ ନେଇ । ମୋର ବିବାହିତା ନଣନ୍ଦ ତା'ର ଘରଦ୍ୱାର ଛାଡ଼ି ଆସି ଆମର ଖବର ବୁଝୁଥାଆନ୍ତି । ସିଏ ଗଣ୍ଡାଏ ଫୁଟାଉ ଥିବାରୁ ଭୋକ ବିକଳରେ କିଏ କେତେବେଳେ ଦାନା ମୁଠାଏ ପାଟିକୁ ନେଉଥିଲୁ । ଛୋଟ ଝିଅର ଫୋଟକା ଜଳାପୋଡ଼ା ହେବା ସହିତ

ଟକ୍ ମକ୍ ହୋଇ ଗଲୁ କରିବାରୁ ସେ ରାହାଧରି କାନ୍ଦୁଥାଏ । ଯେତେ ବଡ଼ ପାଟିକରି ସାନ୍ତ୍ୱନା ଦେଲେ ମଧ୍ୟ ଶୁଣୁନଥାଏ । ମୋ ନଣନ୍ଦ ଅଜ୍ଞତାବଶତଃ ଝିଅକୁ ଆରାମ ଲାଗିବ ଭାବି କନାପୁଡ଼ିଆ ଧରି ଗରମ ସେକ ଦେବାରୁ ଘାଆ ଗୁଡ଼ିକ ମାହ୍ଲେଇଗଲା । କେତେଟା ଫାଟି ଲସା ପାଣି ଦେଇ ଚମ ଛାଡ଼ିଗଲା । ଯନ୍ତ୍ରଣାରେ ପାଟିକୁ କିଛି ନ ନେଇ ଝିଅ ପଡ଼ି ରହିଥିବା ବେଳେ ସମସ୍ତେ ତା'ର ଆଶା ଛାଡ଼ି ଦେଇଥିଲେ । ଏପରି ସମୟରେ ଅତି ନିଜର ବା ପରମମିତ୍ର ମନେ କରୁଥିବା ପଡ଼ା ପଡ଼ୋଶୀ କେହି ଯଦି ଆସୁଥିଲେ ଦାଣ୍ଡ ଏରୁଣ୍ଡି ସେପଟୁ ଭଲ ମନ୍ଦ ପଚାରି ଚାଲିଯାଉଥିଲେ ଠାକୁରାଣୀଙ୍କ କୋପଦୃଷ୍ଟି ପଡ଼ିବା ଆଗରୁ । ଘରର ଏକମାତ୍ର ମୁରବୀ ଦେଢ଼ଶୁର ଅଧୈର୍ଯ୍ୟ ହୋଇ ସାନଭାଇ ଓ ପୁଅ-ଝିଅଙ୍କ ଅବସ୍ଥା ଦେଖି ଲୁହ ଗଡ଼ଉଥିଲେ ବେସାହାରା ହୋଇ ।

ଏହିପରି ଛଅଦିନ ବିତିଗଲା ପରେ ସାତଦିନ ସକାଳୁ ଶାଶୁ ଆସି କହିଲେ - 'ସାନବୋହୂ ତୋତେ ସାନପୁଅ କ'ଣ କହିବା ପାଇଁ ଡାକୁଛି ।' କହିଲି - ତମେ ଚାଲ... । ପୁଅ କ୍ଷୀର ଚୋଷିବା ଛାଡ଼ିଲାଣି । ଶୁଆଇ ଦେଇ ଯାଉଛି । କିନ୍ତୁ ଯିବା ପାଇଁ ଉଠିଲା ବେଳକୁ ଶାଶୁଙ୍କ କାନ୍ଦଣା ଶୁଭିଲା ; ଛୁଟିଯାଇ ଦେଖିଲି, ତୋ ଶ୍ୱଶୁରଙ୍କ ଦେହରେ ପ୍ରାଣ ନଥିଲା । ମୋର ଧୈର୍ଯ୍ୟ ବନ୍ଧ ଭାଙ୍ଗିଗଲା । ଶେଷ ମୁହୂର୍ତ୍ତରେ କ'ଣ କହିବାକୁ ଚାହୁଁଥିଲେ, ହେଲେ ମୁଁ ଚଣ୍ଡାଳୁଣୀ ପହଞ୍ଚିବାରେ ଡେରି କରିଦେଲି । ସେ ଅବସୋସ ଆଜି ପର୍ଯ୍ୟନ୍ତ ମତେ ଫଣୀ ହୋଇ ଦଂଶନ କରୁଛି ।

ବୟସ୍କ ମାଲଭାଇମାନେ ତୋ ଶ୍ୱଶୁରଙ୍କ ଶବକୁ ଠାକୁରାଣୀ କହି ଦାହ ନ କରି ପୋତି ଦେବାକୁ ଅଡ଼ି ବସିଲେ । କିନ୍ତୁ ଅନେକ ସ୍ଥାନରେ ବିଲୁଆ କୁକୁର ଶବକୁ ମାଟି ଖୋଳି ଖାଉଥିବାର ନଜିର ଦେଇ ଯୁବ ସଂପ୍ରଦାୟଙ୍କ ଜିଦ୍‌ରେ ଶବଦାହ କରିଥିଲେ । ଘରେ ଶବ ପଡ଼ି ରହିବାର ଦୃଶ୍ୟ ମୋ ପାଇଁ ଆହୁରି କରୁଣ ଥିଲା । ଶବଦାହ ପରେ ମାଲଭାଇମାନେ ଆମ ଘରେ ଜଳସ୍ପର୍ଶ ନକରି ପିତା ପାଇ ଚାଲିଯାଇଥିଲେ ଶୌଚ ହୋଇସାରି । ପୁଅ ଆଖି ଖୋଲୁ ନଥିବାର ଦେଖି ଅନେକ ତା'ର ଆଖି ନଷ୍ଟ ହୋଇଯାଇଥିବାର ଆଶଙ୍କା କରୁଥିଲେ । ସେମାନଙ୍କର ଆଶଙ୍କା ଠାରୁ ବଳି ପଡୁଥିଲା ମୋର ବୈଧବ୍ୟ ଯନ୍ତ୍ରଣାର ଦୁଃଖ । ଆମକୁ ଚାହିଁ ମୋ ଶାଶୁ ଆତୁରରେ ବାହୁନା ପକାଇ ରଡ଼ି ଛାଡୁଥିଲେ - 'ହେ ନୃସିଂହ ! ଆମେ ତ ଚିରକାଳ ତୋର ଆଶ୍ରିତ । ତୋ ସେବା ପୂଜାରେ କି ତ୍ରୁଟି ରଖିଲୁ ବୋଲି ତୁ ଏ ବଂଶ ପ୍ରତି ନିର୍ଦ୍ଦୟ ହେଉଛୁ । ବାପକୁ ତ ନେଲୁ । ଏ ପିଲା ବକଟକୁ ରକ୍ଷା କର । ପୁଅ-ଝିଅଙ୍କର ସୁସ୍ଥ ହୋଇ ବଞ୍ଚିବାର ଇଚ୍ଛା ନିକଟରେ ବାପର ମୃତ୍ୟୁ ଦୁଃଖ ଯେପରି କମ୍ ପଡ଼ି ଯାଇଥିଲା ସାରା ପରିବାରଙ୍କ ପାଖରେ । ସମସ୍ତେ ଏକମୁଖ ହୋଇ ନୃସିଂହ ମହାପ୍ରଭୁଙ୍କୁ ଡାକ ଛାଡୁଥିଲେ ।

ମତେ ଚାହିଁ ଶାଶୁ ପୁଣି ଆରମ୍ଭ କଲେ, ତୋ ଶ୍ୱଶୁରଙ୍କ ମୃତ୍ୟୁର ପରଦିନ ନୃସିଂହ ମହାପ୍ରଭୁଙ୍କ ସଂଧ୍ୟା ଆଳତି ସମୟରେ ତୋ ଜେଜେ ଶାଶୁ ମୃତ ପୁଅ ଗୁଣ ସୁମରି

ବାହୁନୁଥିଲେ ଠାକୁରଙ୍କୁ ଗାଳି ଦେଇ ଦେଇ ଅଭିମାନରେ । ଏପରି ସଙ୍ଗୀନ ମୁହୂର୍ତ୍ତରେ ଜଣେ ଦୀର୍ଘକାୟ ଶ୍ମଶ୍ରୁଳ ସାଧୁବାବା ଆମ ଘରେ ପହଞ୍ଚି ପୁତ୍ରହରା ଶାଶୁଙ୍କୁ ପ୍ରବୋଧନା ଦେଇ କହିଲେ - ମା ! ମୁଁ ତୁମ ଦୁଃଖ ବିଷୟରେ ସବୁ ଶୁଣିଲିଣି । ଯାହା ହେବାର ଥିଲା ହୋଇଗଲାଣି, ସେଥିକୁ ଆଉ ଅନୁଶୋଚନା କରନା । ମୁଁ ଯେତେବେଳେ ଆସିଗଲିଣି ତୁମର ଆଉ କିଛି କ୍ଷତି ହେବାକୁ ଦେବିନି । ପୁଅକୁ ଦେଖି ନିଜେ ତା ଦେହକୁ ଆଉଁସି ଦେଲେ । ମୋ କ୍ଷୀରରେ ତା'ର ଜାବୁଡ଼ି ଧରିଥିବା ଆଖିର ବକଳାକୁ ଭିଜେଇବାକୁ କହିଲେ । ଲଣ୍ଠନ ଆଲୁଅରେ ଦୁଇପତାକୁ ମେଲିଧରି କହିଲେ ଚିନ୍ତାକରନି ମା ! ତା'ର ଆଖି ନଷ୍ଟ ହୋଇନି । ପୁଅ ଝିଅଙ୍କ ଉପରେ ଆଣିଥିବା ପାଦୁକ ପାଣି ଛିଞ୍ଚି ନିର୍ଭୟ ହେବା ପାଇଁ କହିଲେ । ବାବାଙ୍କର ଅଭୟବାଣୀ ଶୁଣି ମୁଁ କାନ୍ଦି କାନ୍ଦି ତାଙ୍କ ପାଦତଳେ ପଡ଼ି କହିଲି ଆମକୁ ଏ ଦୁଃଖରୁ ଉଦ୍ଧାର କରନ୍ତୁ । ଏ ବିପଦବେଳେ ସହାୟ ହୁଅନ୍ତୁ । ପରିସ୍ଥିତିକୁ ହୃଦୟଙ୍ଗମ କରି ସାଧୁବାବାଙ୍କ ହୃଦୟ ତରଳିଗଲା । ସେ ଶୋଇବା ପାଇଁ ବିଛଣା ମାଗିବାରୁ ଦେଢ଼ଶୁର ଘରେ ରଖିଥିବା ନୂଆ ମଶିଣା (ଜୁଣ ଓ ବେରୁହାଁରେ ବୁଣା) ଦେଲେ । ସାଧୁବାବା ଦାଣ୍ଡ ବାରଣ୍ଡାରେ ମଶିଣା ବିଛେଇ ଶୋଇବାର ପ୍ରବନ୍ଧ କଲା ପରେ ନିଜ ପୁଟୁଳିରୁ ଡାଲି, ଚାଉଳ ଓ ପରିବା କାଢ଼ିଲେ । ଭଙ୍ଗାଇଟା, ପଥରର ଠେକରା ଦେଇ ପିତଳରେ ସବୁ ସାମଗ୍ରୀ ଫୁଟେଇ ପଞ୍ଚୁବନି ପ୍ରସ୍ତୁତ କଲେ । ନିଜେ ଭୋଜନ ପାଇଁ ରଖି ଆମପାଇଁ କଦଳୀ ପତ୍ରରେ କିଛି ଦେଲେ । ଅଶୌଚ ପାଳୁଥିବାରୁ ଆମେ ରାତିରେ ଘିଅ ଅନ୍ନ ଖାଇବାକୁ ମନା କରିବାରୁ କହିଲେ ଠିକ୍ ଅଛି । ତୁମେ ନିର୍ଭୟରେ କବାଟ ଦେଇ ଶୋଇଯାଅ । ମୁଁ ଏ ବାରଣ୍ଡାରେ ତୁମମାନଙ୍କୁ ଜଗିକରି ଶୋଉଛି । ବାବାଙ୍କ ଅଭୟପାଇ କାନ୍ଦି କାନ୍ଦି ନିସ୍ତେଜ ହୋଇ ପଡ଼ିଥିବା ଶରୀର ଓ ପଲକ ପଡ଼ିନଥିବା ଚକ୍ଷୁରେ ଯେପରି କାଳନିଦ୍ରା ଘୋଟିଗଲା । ସୂର୍ଯ୍ୟୋଦୟ ପରେ ନିଦ୍ରା ଭାଙ୍ଗିବାରୁ ଉଠି ଦେଖିଲୁ ଦଲ ଦଲ ହେଉଥିବା ପିଲାମାନଙ୍କ ଫୋଟକା ମଳିନ ପଡ଼ି ଆସିଛି, ପୁଅ ମିଟି ମିଟି କରି ଚାହୁଁଛି । କବାଟ ଖୋଲିଲା ବେଳକୁ ସାଧୁ ବାବା ନଥିଲେ । ଶୌଚ ହେବା ପାଇଁ ବାବା ଯାଇଛନ୍ତି ଭାବି ଯାଆ, ଦେଢ଼ଶୁର ଓ ଶାଶୁ, ପୋଖରୀ ଘାଟଠୁ ବିଲ, ବାଡ଼ି, ଶ୍ମଶାନ ପଡ଼ିଆ ଚାରିଆଡ଼େ ଖୋଜି ଆସିଲେ ହେଲେ କେଉଁଠି ତାଙ୍କ ପତ୍ତା ମିଳିଲାନି । ଦିନସାରା ନୃସିଂହ ମହାପ୍ରଭୁଙ୍କୁ ଡାକି କାନ୍ଦି କାନ୍ଦି ସନ୍ଦେହ ଭରା ମନ ନେଇ ସାଧୁବାବାଙ୍କ ଆଗମନକୁ ଅପେକ୍ଷା କରି ଦିନ କାଟିଲୁ ।

ସଂଧ୍ୟା ପରେ ଆମେ କେହି କାହାକୁ ପାଖରୁ ଛାଡୁ ନଥିଲୁ । ଅନ୍ଧାରରେ ଭୟ ଯେପରି ତା ପଞ୍ଝା ମେଲେଇ ଆମ ପାଖକୁ ଧାଇଁ ଆସୁଥିଲା । ଆଲୁଅ ଜାଳି ଭୟାର୍ତ୍ତ ହୋଇ ଏକାଠି ବସି ରହିଥିବା ବେଳେ ସାଧୁବାବାଙ୍କ ପାଟି ଶୁଭିଲା - 'ମା ! କବାଟ ଖୋଲ ।' ସାଧୁବାବାଙ୍କ ଆଗମନରେ ଆମ ମନରେ ସାହସ ସଞ୍ଚାର ହେଲା । କାକୁସ୍ଥ

ହୋଇ ତାଙ୍କ ସାମ୍ନାରେ ଛିଡ଼ା ହେବାରୁ ସେ ଆମର ଭୟାତୁର ଅବସ୍ଥାକୁ ହୃଦୟଙ୍ଗମ କରି କହିଲେ, ମା ! ଦୂରବାଟକୁ ଚାଲିଯାଇଥିଲି । ତୁମେମାନେ ଦିନସାରା ମତେ ଖୋଜୁଥିଲ, ସେଥିପାଇଁ ମନଟା ଖୁବ୍ ଅସ୍ଥିର ଲାଗିଲା ।

ପ୍ରକୃତରେ ସୂର୍ଯ୍ୟାସ୍ତ ପରେ ଆମ ମନରେ କୋକୁଆ ଭୟ ସୃଷ୍ଟି ହେଉଥିଲା । ସାଧୁ ବାବାଙ୍କ ଆଗମନ ଆମକୁ ବରାଭୟ ପ୍ରଦାନ କରିଥିଲା । ବାବା ସାନ୍ତ୍ୱନା ଦେଇ କହିଲେ, ଭୟଭୀତ ନ ହୋଇ ପରିସ୍ଥିତିକୁ ସାମ୍ନା କରିବା ଶିଖ । ନିଜର ସବୁ ଦୁଃଖକୁ ଗଭୀର ବିଶ୍ୱାସର ସହିତ ନିଜର ଇଷ୍ଟଦେବ ନୃସିଂହ ମହାପ୍ରଭୁଙ୍କୁ ସମର୍ପି ଦିଅ । ଦେଖିବ ସବୁ ଠିକ୍ ହୋଇଯିବ । ବାପ ଛେଉଣ୍ଡ ହେଲେ ବି ତୁମ ପିଲାମାନଙ୍କର କିଛି ଅସୁବିଧା ହେବନି । ସାଧୁବାବାଙ୍କ ପ୍ରତିଟି ଶବ୍ଦ ମୋ ଜଳୁଥିବା ହୃଦୟରେ ଯେପରି ଚନ୍ଦନର ପ୍ରଲେପ ବୋଳି ଦେଇଥିଲା । ଭୋଜନ ନକରି ଶୋଇବାର ଆୟୋଜନ କଲାବେଳେ ଆମେ ଅନୁରୋଧ କରିବାରୁ କହିଲେ, 'ମୋ ପାଇଁ ଚିନ୍ତା କରନାହିଁ । ମୁଁ ଭୋଜନ କରି ଆସିଛି ।'

ସୂର୍ଯ୍ୟୋଦୟ ପୂର୍ବରୁ ଉଠି ମୁଁ ସାଧୁବାବାଙ୍କୁ ଦର୍ଶନ କରିବି ଭାବି କବାଟ ଖୋଲି ଦେଖିଲି ମଶିଣା ଡ଼େରିଦେଇ ବାବା ଚାଲିଯାଇଛନ୍ତି । ଶୁଦ୍ଧକ୍ରିୟା ପରଯାଏ ପ୍ରତ୍ୟେକ ଦିନ ଆମେ ସାଧୁବାବାଙ୍କୁ ଅପେକ୍ଷା କରୁଥିଲୁ । ହେଲେ ଆଉ କେବେ ବି ତାଙ୍କର ଦର୍ଶନ ପାଇନଥିଲୁ । ଆଜି ପର୍ଯ୍ୟନ୍ତ ବି । କିନ୍ତୁ ଅନ୍ଧାରରେ ଦେଖିଥିବା ସାଧୁବାବାଙ୍କର ଅସ୍ପଷ୍ଟ ପ୍ରତିଛବି ଏବେବି ମୋ ଆଖିରେ ପ୍ରତିଫଳିତ ହୁଏ । ମୋର ପୂର୍ଣ୍ଣ ବିଶ୍ୱାସ ନିଜେ ନୃସିଂହ ମହାପ୍ରଭୁ ସାଧୁବାବାଙ୍କ ରୂପରେ ଦୁଇଦିନ ଧରି ଆମକୁ ଜଗି ଶୋଇଥିଲେ ଆମ ମନରୁ ଭୟ ଦୂର କରିବା ପାଇଁ । ଶାଶୁଙ୍କ ଆଖିରେ ଲୁହ ଦେଖି ମୋ ହୃଦୟ ଭକ୍ତିରେ ଦ୍ରବୀଭୂତ ହୋଇ ଯାଇଥିଲା । ଦେବଦୂତ ସାଜି ଆସିଥିବା ସାଧୁବାବାଙ୍କୁ ପ୍ରଣାମ କଲି । ଶୁଦ୍ଧପୂତ ହୋଇ ନୃସିଂହ ମହାପ୍ରଭୁଙ୍କ ସମ୍ମୁଖରେ ପ୍ରଦୀପଟିଏ ଜାଳି ପ୍ରଣିପାତ କଲାବେଳେ ସେ ଆଲୋକରେ ଦାରୁବ୍ରହ୍ମ ଜଗନ୍ନାଥଙ୍କର ଚନ୍ଦ୍ର-ସୂର୍ଯ୍ୟ ସମ ଦୁଇ ଚକାଡ଼ୋଳା ଉଦ୍‌ଭାସିତ ହେଉଥିଲା ଏବଂ ମୋ କର୍ଣ୍ଣରେ ଝଙ୍କୃତ ହେଉଥିଲା -

'ତବ କର-କମଳବରେ ନଖମ୍‌ଭୁତ-ଶୃଙ୍ଗମ୍

ଦଳିତ-ହିରଣ୍ୟକଶିପୁ-ତନୁ-ଭୃଙ୍ଗମ୍ ।

କେଶବ ଧୃତ ନରହରିରୂପ ଜୟ ଜଗଦୀଶ ହରେ ।'

୩୪୫୬୯ଏ, କପିଳେଶ୍ୱର ବିହାର, ପଳାଶୁଣି

ଜି.ଜି.ପି, ରସୁଲଗଡ଼

ଭୁବନେଶ୍ୱର - ୭୫୧୦୨୫

ଦୂରଭାଷ : ୯୪୩୭୨୭୮୨୧୮



# କୋଟି ଜୁହାର ତୁମକୁ

ବିଜୟଲକ୍ଷ୍ମୀ ଦୀକ୍ଷିତ

ହେ ନୀଳାଦ୍ରି ବିହାରୀ, ମର୍ତ୍ତ୍ୟ ବୈକୁଣ୍ଠର ଅଧୀଶ୍ୱର, ବିଶ୍ୱବ୍ରହ୍ମାଣ୍ଡ ଠାକୁର ଜଗତର ନାଥ ଜଗନ୍ନାଥ ! ତୁମ ଚରଣ ତଳେ ମୋର କୋଟି କୋଟି ଦଣ୍ଡବତ । ଇଚ୍ଛାମୟ ! ତୁମରି ଇଚ୍ଛାରେ ଏ ସଂସାର ଆତଯାତ । ହେ କରୁଣା ସାଗର ! ଜୀବନର ସମସ୍ତ ସୁଖ-ଦୁଃଖ, ହସ-କାନ୍ଦ, ମାନ-ଅଭିମାନ ସବୁକିଛି ତୁମ ପାଦତଳେ ସମର୍ପି ଦେଇ ବାହି ଚାଲିଛି ମୋ ଜୀବନ ନଉକା ତବ ଭାବ ସମୁଦ୍ରରେ । ପିଲାଦିନରୁ ନନା ବୋଉଙ୍କ ଠାରୁ ଶୁଣୁଥିଲି ଜଗନ୍ନାଥଙ୍କୁ... କାଳିଆ ଠାକୁରଙ୍କୁ ମନପ୍ରାଣ ଦେଇ ଡାକିଲେ ସେ ତୋ ସୁଖ ଦୁଃଖରେ ସାହା ହେବେ । ହେ ପରମବ୍ରହ୍ମ ! ତୁମରି କରୁଣାରୁ ମୁଁ ଯେତେବେଳେ ପୁରୀ ବଡ଼ଦାଣ୍ଡରୁ କେନ୍ଦୁଝର ବଡ଼ଦାଣ୍ଡରେ ଶାଶୁଘରେ ପାଦ ଦେଲି ଆନନ୍ଦରେ ତଲ୍ଲୀନ ହୋଇଗଲି । ଘର ଆଗରେ ବଳଦେବଜୀଉ ମନ୍ଦିର ଯହିଁରେ ଉଡୁଥାଏ ନୀଳଚକ୍ର ବାନା ଆଉ ବର୍ଷକ ଯାକ ଠିଆ ହୋଇଥାଏ ଗୋଟିଏ ରଥ - ନନ୍ଦିଘୋଷ ରଥ । ଆଉ କ'ଣ ପାଇଥା'ନ୍ତି ପ୍ରଭୁ ! ଶାଶୁ ଘରର ଆଧ୍ୟାତ୍ମିକ ବାତାବରଣରେ ସକାଳେ ସଞ୍ଜରେ ତୁମ ଚକାଆଖିକୁ ଥରେ ମନଭରି ଦେଖିନେଲେ ପ୍ରାଣଟା ପୂରି ଉଠେ । ପିଲାମାନଙ୍କୁ ସବୁବେଳେ କହେ ସୁଖରେ ଦୁଃଖରେ ପ୍ରଭୁଙ୍କ ପାଖରେ ନିଜକୁ ସମର୍ପି ଦେଲେ, ତାଙ୍କ ଶରଣ ପଶିଲେ ସେ ତୁମ କଥା ଶୁଣିବେ । ତୁମେ ମନଭରି ଭଲ ପାଇଲେ ସେ ତୁମମାନଙ୍କୁ ଭଲ ପାଇବେ ।

ଜୀବନର ସାୟାହ୍ନରେ ପହଞ୍ଚିଲିଣି... । ହେ କରୁଣା ସାଗର ତମକୁ ଯେଉଁଠି ଖୋଜିଛି ସେଇଠି ପାଇଛି । ବିଭିନ୍ନ କାରଣରୁ ତିନି ଚାରିବର୍ଷ ହେଲା ପୁରୀ ଯାଇପାରି ନଥିଲି । ମନ୍ଦିରରେ ତୁମର ଦର୍ଶନ ପାଇନଥିବାରୁ ମନରେ ଖୁବ୍ ଅବସୋସ ଥାଏ । ମନେ ମନେ ତମକୁ ଆକୁଳ ପ୍ରାର୍ଥନା କରେ । ନିଜକୁ ନିଜେ କୁହେ ମୁଁ ବୋଧେ ତୁମର ପରମ ଭକ୍ତ ନୁହେଁ ନ ହେଲେ କ'ଣ ତୁମ ଡ଼ୋରି ମୋ ପାଇଁ ଲାଗନ୍ତାନି ? ଏମିତି ଥରେ ଡ଼ୋରି ବାନ୍ଧିଥିଲ ବୋଲି ସେଦିନ ସକାଳୁ ସକାଳୁ ତମ ମନ୍ଦିରରେ ପହଞ୍ଚିଲା ବେଳକୁ ପ୍ରବଳ ଭିଡ଼ । ଭିଡ଼ର କାରଣ ଜାଣିବାବେଳକୁ ଆମେ ଲାଇନ୍‌ରେ ଠିଆ ହୋଇ ଠେଲାପେଲାରେ ତମ ରତ୍ନ ସିଂହାସନ ପାଖରେ ପହଞ୍ଚିଯାଇଛୁ । ସେଦିନ ଥିଲା ତମର ପଦ୍ମ ବେଶ । ତିନିଶହ ବର୍ଷ ପରେ ସଜ ପଦ୍ମ ଫୁଲରେ ସଜ୍ଜିତ ହୋଇ ଅପୂର୍ବ ସୁନ୍ଦର ଦିଶୁଥାଅ । ଧନ୍ୟ ହୋଇଗଲା ମୋ ଜୀବନ । ଆଗରୁ କେବେ ଦେଖିନଥିବା ଏ ଦିବ୍ୟ ଦୃଶ୍ୟ ଦେଖି ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ । ଘରେ ପହଞ୍ଚି ଭାଇ ଭାଉଜ ଭଉଣୀ

ମାନଙ୍କୁ ଏକଥା କହିବାରୁ ସେମାନେ କହିଲେ ଆମେ ପୁରୀରେ ଥାଇ ଏ ବେଶ ଦେଖି ପାରିଲୁନି, ତୁ କେନ୍ଦୁଝରରୁ ଆସି ଏ ଅପୂର୍ବ ଦୃଶ୍ୟ ଦେଖିପାରିଲୁ ? ସତ କୁହ ପ୍ରଭୁ ତମ ଆଶୀର୍ବାଦ ନଥିଲେ ମୁଁ କ'ଣ ଦେଖିପାରିଥା'ନ୍ତି ପଦ୍ମ ବେଶ । ହଁ ପ୍ରଭୁ ମୋ ମନକଥା ମନର ବ୍ୟଥା ଜଣେଇବି ବୋଲି ଛଟପଟ ହେଉଥାଏ । ନବକଳେବର ହେବ । ହେ ଦାରୁବ୍ରହ୍ମ, ତୁମ ନୂତନ ବିଗ୍ରହ ସ୍ଥାପନ ହେବ । ଉଣେଇଶ ବର୍ଷ ଧରି ତୁମ ସହ ଜଡ଼ିତ ଥିବା ସୁଖ ଦୁଃଖର ସାଥୀ କାଳିଆ ସାଆନ୍ତଙ୍କୁ ଦେଖିବା ପାଇଁ ଦୂର ଦୂରାନ୍ତରୁ ଭକ୍ତମାନଙ୍କ ଧାଡ଼ି ଛୁଟୁଥାଏ । ଯା'ହେଉ ତମ ଡ଼ୋରି ଲାଗିଲା... । ତାଙ୍କର କ'ଣ ମନ ହେଲା କହିଲେ ଚାଲ ଯାଇ କାଳିଆ ଠାକୁରଙ୍କୁ ଦର୍ଶନ କରି ଆସିବା । ଗୋଡ଼ ଆନନ୍ଦରେ ତଳେ ପଡୁନଥାଏ । ତା'ଆରଦିନ ମାର୍ଚ୍ଚ ୨୫ ତାରିଖ ସକାଳୁ ବାହାରି ପୁରୀରେ ସମୁଦିଙ୍କ ଘରେ ପହଞ୍ଚିଲା ବେଳକୁ ସଂଧ୍ୟା ସାତଟା । ସେଠାରେ ଶୁଣିଲି ଭାଇ କହିଲା ଏବେ ଠାକୁରଙ୍କ ବଡ଼ସିଂହାର ବେଶ ରାତି ସାଢ଼େ ଆଠଟାରୁ ରାତି ନଅଟା ଭିତରେ ହେଉଛି । ବଡ଼ସିଂହାର ବେଶ ଏତେ ଶୀଘ୍ର ହେଉଛି ଶୁଣି ମନ ଅଥୟ ଧରିଲାଣି । ସଙ୍ଗେ ସଙ୍ଗେ ଗାଧୋଇ ପାଧୋଇ ମନ୍ଦିର ଗଲୁ । ମନ୍ଦିର ବେଢ଼ା ବୁଲି ଦୀପ ଜାଳି ତୁମ ପାଖରେ ପହଞ୍ଚିଲା ବେଳକୁ ତୁମର ବଡ଼ସିଂହାର ବେଶ ଚାଲିଛି । ଆଃ କି ଅପୂର୍ବ ସେ ଦୃଶ୍ୟ ! ବୋଝ ବୋଝ ଫୁଲମାଳ, ତୁଳସୀମାଳ ବୁହା ହୋଇ ଯାଉଥାଏ ତୁମ ରତ୍ନ ସିଂହାସନ ପାଖକୁ । ଫୁଲମାଳ, ତୁଳସୀମାଳ ଭିତରେ ତମ ଚକାଆଖି, ଜୟ ଜଗନ୍ନାଥ, ଜୟ ଜଗନ୍ନାଥ ଧ୍ୱନିର କମ୍ପନ ଭିତରେ ଶିହରିତ ହୋଇ ଉଠୁଥାଏ ତନୁମନ । ଆଗରୁ ଯେତେଥର ମନ୍ଦିର ଯାଇଛି ତମ ବଡ଼ସିଂହାର ବେଶ କେବେ ଦେଖିନଥିଲି, କାରଣ ରାତି ୧୧ କିମ୍ବା ୧୨ ଘଣ୍ଟାରେ ତୁମର ବଡ଼ସିଂହାର ବେଶ ଅନୁଷ୍ଠିତ ହୁଏ । ତେଣୁ ଏତେ ରାତିଯାଏ ପିଲାମାନଙ୍କୁ ନେଇ ରହିପାରେନି । ଏଥର ଏ ସୁବର୍ଣ୍ଣ ସୁଯୋଗ ହାତଛଡ଼ା ନ କରି ମନଭରି ଉପଭୋଗ କରୁଥାଏ । ସେପଟୁ ଭାସି ଆସୁଥାଏ ତୁମ 'ଦଶାବତାର' ଗୀତର ସୁର । ପଛଆଡୁ ଭାସି ଆସୁଥାଏ -

ସତେ କି ଏ ଜୀବ ଯିବ, ବୃନ୍ଦାବନେ ଯାଇ ସ୍ଥାନ ପାଇବ
ହେ ରାଧା ଗୋବିନ୍ଦ, ଏହି ସୁଦୟା ମୋ ଠାରେ ଥିବ
ହେ ରାଧା ଗୋବିନ୍ଦ... ।

ସେମାନଙ୍କ ସୁଲଳିତ ସୁରର ମୂର୍ଚ୍ଛନାରେ ମନପ୍ରାଣ ମୋର ପୁଲକିତ ହୋଇ ଉଠିଲା ବେଳେ ସମୁଦିଙ୍କ ଡାକରେ ପ୍ରକୃତିସ୍ଥ ହେଲି । ସତରେ... ହେ ମୋର କାଳିଆ ଠାକୁର ତୁମକୁ ଛାଡ଼ି ଆସିବାକୁ ଜମାରୁ ଇଚ୍ଛା ହେଉନଥାଏ । ତା'ପରଦିନ ସାନଭାଇ ଭାଉଜଙ୍କ ସହ ମନ୍ଦିର ଗଲି । ମନ୍ଦିର ବେଢ଼ା ବୁଲି ଦୀପ ଜାଳି ତୁମର ସଂପୂର୍ଣ୍ଣ ବଡ଼ସିଂହାର

ବେଶକୁ ଦେଖୁଥାଉ । ହଠାତ୍ ଘଣ୍ଟ ହୁଳହୁଳି ଧ୍ୱନିରେ କିଛି ଗହଳ ଚହଳ ଭିତରେ ଜୟ ଜଗନ୍ନାଥ ଜୟ ଜଗନ୍ନାଥ, ହରିବୋଲ, ହୁଳହୁଳି ଧ୍ୱନି ଶୁଣି ଚମକିପଡ଼ି ପଛକୁ ଚାହିଁଲା ବେଳକୁ ସେବକଙ୍କ କାନ୍ଧରେ ବସି ତୁମେ ରତ୍ନ ସିଂହାସନ ଆଡ଼କୁ ଆସୁଛ ହେ ମଦନମୋହନ... ତମର ମୋର ମୁହାଁମୁହିଁ ଭେଟ । ମୁଁ ଭାବବିହ୍ୱଳ ହୋଇ ତୁମ ପାଦତଳେ ଠିଆରେ ଠିଆରେ ମୁଣ୍ଡିଆ ମାରିଲି । ତଳେ ମୁଣ୍ଡିଆ ମାରିବାକୁ ଇଞ୍ଚେ ବି ଜାଗା ନଥାଏ । ମୋତେ କେବଳ ଶୁଭୁଥାଏ, ତୁ ମନଦୁଃଖ କରୁଥିଲୁ ପରା... ଆ ମୋ ପାଖକୁ ଲାଗିଆ । ଆଖିରୁ ଲୁହ ବହି ଯାଉଥାଏ । ବେତମାଡ଼ ଖାଇ ଟିକିଏ ଘୁଞ୍ଚିଗଲା ବେଳକୁ ତମ ପଛରେ ମାଆ ଲକ୍ଷ୍ମୀ ଠାକୁରାଣୀ ଆସୁଛନ୍ତି । ହୁଳହୁଳି ଧ୍ୱନିରେ ମୁଣ୍ଡରେ ଓଢ଼ଣା ପକାଇ ମା' ଜଗତ୍‌ଜନନୀ ତୁମକୁ ଜଗତରନାଥ ତାଙ୍କର ପ୍ରାଣନାଥଙ୍କୁ ରତ୍ନ ସିଂହାସନ ଆଡ଼କୁ ବାଟୋଇ ଦେବାକୁ ଆସୁଥା'ନ୍ତି । ତରତର ହୋଇ ମୁଣ୍ଡିଆଟିଏ ମାରି ଦେଇ ଚାହିଁ ରହିଥାଏ ଲକ୍ଷ୍ମୀ-ନାରାୟଣ ଭେଟର ଅପୂର୍ବ ଦୃଶ୍ୟକୁ । ଏ ଅଭାଗିନୀ କେବେ ଦେଖିନଥିଲା ଏ ଦୃଶ୍ୟ... । ହୃଦୟତନ୍ତ୍ରୀରେ କମ୍ପନ, ଶରୀରରେ କମ୍ପିତ ଶିହରଣ, ଜୀବନର ଶେଷ ନିଃଶ୍ୱାସ ଥିଲା ପର୍ଯ୍ୟନ୍ତ ଭୁଲିବିନି... । ମାଆ ଲକ୍ଷ୍ମୀ ଠାକୁରାଣୀ ତୁମକୁ ବାଟେଇ ଦେଇ ଚାଲିଗଲେ ନିଜ ମନ୍ଦିରକୁ, ତୁମେ ଚାଲିଗଲ ରତ୍ନ ସିଂହାସନ ଉପରକୁ । ସତରେ ତୁମ ମନ୍ଦିର ଭିତରେ ଜୀବନରେ ଦେଖିନଥିବା ଲକ୍ଷ୍ମୀ-ନାରାୟଣଙ୍କ ଭେଟ ରତ୍ନ ସିଂହାସନ ପାଖରେ ଦେଖିବି ବୋଲି ଆଶା କରିନଥିଲି । ସତରେ ମା'ଙ୍କ ସହ ଆପଣଙ୍କ ଭେଟ ପାଇଁ କେତେ ନୀତି ନିୟମ । କୃଷ୍ଣପକ୍ଷ ଗୁରୁବାର ହୋଇଥିବ, ସେଦିନ ଏକାଦଶୀ ତିଥି ପଡ଼ିନଥିବ । କୌଣସି ପୂଜା ପର୍ବପର୍ବାଣି ନଥିବ । ଯା'ହେଉ ମୋ ଜୀବନ ଧନ୍ୟ ହୋଇଗଲା ତୁମରି ପରଶ ପାଇ । ବହୁଦିନରୁ ଖାଇନଥିବା ମହାପ୍ରସାଦ, କ୍ଷୀରୀ ଖାଇବାକୁ ଖୁବ୍ ଇଚ୍ଛା ଥିଲେ ମଧ ରାତି ବେଶୀ ହୋଇଥିବାରୁ ଚୁପ୍ ଚାପ୍ ଘରକୁ ଫେରିଲି । ହେ ମନୋବାଞ୍ଛା କଳ୍ପତରୁ ! ମୋ ମନକଥା କେମିତି ଜାଣିଲ ? ଘରେ ପହଞ୍ଚି ଦେଖିଲି ଭାଉଜ କଦଳୀପତ୍ରରେ ବାଢୁଛି ଗରମ ଗରମ ଅବଢ଼ା, ଡାଲି, ବେସର, ମହୁର, ଶାଗ ଆଉ ମୋ ପ୍ରିୟ କ୍ଷୀରୀ... ଆଃ ମନଭରି ଖାଇଦେଇ ପଚାରିଲି ଭାଇକୁ ଆରେ ଆମେ ତ କିଣି ନଥିଲେ କିଏ ମହାପ୍ରସାଦ ଆଣିଲା ? ହସି ହସି କହିଲା, ତୋ ପାଇଁ କାଳିଆ ଠାକୁର ପଠାଇଛନ୍ତି ମୋ ସାଙ୍ଗ ହାତରେ । ଏ ଅକିଞ୍ଚନ ନାରୀ ଉପରେ ଏତିକି କରୁଣା ଥାଉ ମହାବାହୁ... ।

ହେ ଜଗଦୀଶ୍ୱର, ତମକୁ ଯେଉଁଠି ଖୋଜିଛି ସେଇଠି ପାଇଛି... ଘରେ, ବାହାରେ ଦେଶରେ, ବିଦେଶରେ । ଭାରତର ଦିଲ୍ଲୀ, ବାଙ୍ଗାଲୋର, ବନାରସ, ଗୟା, ହରଦ୍ୱାର, ଋଷିକେଶ, ସିମ୍‌ଲା, କଲିକତା ଇତ୍ୟାଦି ବିଭିନ୍ନ ଜାଗାକୁ ଯାଇଛି । ଅନେକ ଜାଗାରେ

ତମର ଲୋଭନୀୟ ରୂପରେ ମୁଁ ହଜାଇଦିଏ ନିଜକୁ । ହେ ପରଂବ୍ରହ୍ମ, ତୁମ ଆଶୀର୍ବାଦରୁ ୨୦୦୯ ମସିହାରେ କାଲିଫର୍ଣ୍ଣିଆର ସାନ ଫ୍ରାନ୍‌ସିସ୍‌କୋ ସହର ନିକଟସ୍ଥ ସନିଭେଲ୍ ସହରକୁ ବଡ଼ ପୁଅ ବୋହୂଙ୍କ ପାଖକୁ ଯାଇଥିଲୁ । ପହଞ୍ଚିବାର ତିନି ଚାରିଦିନ ପରେ ବଡ଼ ପୁଅ ସାଙ୍ଗରେ ଗଲୁ ଫ୍ରିମଣ୍ଟ । ଚକାଆଖି ମେଲାଇ ଭାଇ ଭଉଣୀଙ୍କ ସାଙ୍ଗରେ ବସିଥାଅ । ମୁରୁକି ମୁରୁକି ହସୁଥାଅ । ତମକୁ ଚାହିଁ ଭାବୁଥିଲି ସତରେ ମୁଁ କେତେ ଭାଗ୍ୟବତୀ ! ମୋ କାଳିଆ ଠାକୁର ବିଦେଶରେ ସବୁ ଦେଶୀ ବିଦେଶୀ ଭକ୍ତଙ୍କୁ କୋଳେଇ ନେଉଛନ୍ତି... କେତେ ଆତ୍ମୀୟତା ! ସେଠାରେ ପ୍ରସାଦ ପାଇ ଶୁଣିଲି ରଥଯାତ୍ରାରେ ୩୪ ପ୍ରକାରର ଭୋଗ ଲାଗି ହୁଏ । ସେଠାରେ ଆଷାଢ଼ ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ରଥଯାତ୍ରା ହୁଏ ନାହିଁ । ରଥଯାତ୍ରା ପାଖାପାଖି କୌଣସି ଶନିବାର କିମ୍ବା ରବିବାର ଦିନ ଛୁଟି ଦିନରେ ସମସ୍ତେ ଏକାଠି ହୋଇ ମହା ଆନନ୍ଦରେ ରଥ ଟାଣନ୍ତି । ହେ କରୁଣା ସାଗର, ତୁମରି କରୁଣାରୁ ଏପ୍ରିଲ ୨୭, ୨୦୧୫ରେ ସାନ ପୁଅ ବୋହୂଙ୍କ ପାଖକୁ ନିଉଜର୍ସି ଆସିଲୁ । ମନରେ ବିଶ୍ୱାସ ନଥିଲା ବୟସର ସାୟାହ୍ନରେ ଏତେ ବଡ଼ ଲମ୍ବାଯାତ୍ରା କରିପାରିବି ବୋଲି । ଯା'ହେଉ ତୁମ ଆଶୀର୍ବାଦରୁ ନିର୍ବିଘ୍ନରେ ପହଞ୍ଚିଗଲୁ । ମନରେ ସାମାନ୍ୟ ଅବସୋସ... ନବକଳେବର ଯାତ୍ରା ଦେଖିପାରିଲି ନାହିଁ, କେନ୍ଦୁଝର ବଡ଼ଦାଣ୍ଡରେ ପ୍ରତିବର୍ଷ ଦେଉଥିବା ଧାରା ବିବରଣୀ ଦେଇପାରିଲି ନାହିଁ । ସେଦିନ ନବକଳେବର ଉପଲକ୍ଷେ ଲେଖାଟିଏ ପଠାଇବି ବୋଲି ପ୍ରସ୍ତୁତି କରୁଥାଏ । ଲେଖୁ ଲେଖୁ ଅଭିମାନରେ ମୋ ଆଖିରୁ ଝର ଝର ହୋଇ ଲୁହ ଝରିଯାଉଥାଏ । କାନ୍ଦି କାନ୍ଦି ତମକୁ କହୁଥାଏ ହେ ପ୍ରଭୁ ! ଜାଣେ ମୁଁ ତୁମର ପରମ ଭକ୍ତ ନୁହେଁ, ସମସ୍ତଙ୍କୁ ସ୍ୱପ୍ନରେ ଦେଖାଦେଉଛ ମୋତେ ତ କାହିଁ ଥରେ ହେଲେ ଦେଖା ଦେଉନାହଁ ? କେତେବେଳେ ଛାଇ ନିଦ ହୋଇ ଯାଇଛି ଖାତା ଉପରେ ମୁଣ୍ଡ ରଖି ଢୁଳେଇ ପଡ଼ିଛି... ସ୍ୱପ୍ନ ଦେଖୁଛି... ବିରାଟ ମିଟିଙ୍ଗ୍ ହଲ । କେହିଜଣେ ମେଞ୍ଚାଏ ଲେଖା କାଗଜ ଆଣି ମୋତେ ଧରାଇ ଦେଇ କହୁଛନ୍ତି ଯାଆନ୍ତୁ ଜଗନ୍ନାଥଙ୍କ ବିଷୟରେ ଅଳ୍ପ କିଛି କହିବେ । ମୁଁ କହୁଛି ସେ କାଗଜରେ କ'ଣ ଲେଖାଅଛି ମୁଁ ପଢ଼ିନାହିଁ, ସେ କାଗଜରୁ ମୁଁ କ'ଣ କହିବି ? ମୁଁ ଯାହା ଜାଣିଛି ତାହାହିଁ କହିବି ମୋ ପ୍ରାଣର ଠାକୁରଙ୍କ ବିଷୟରେ । ମାଇକ୍ ଆଡ଼କୁ ଆଗେଇ ଗଲାବେଳେ ମୁଁ ଦେଖୁଛି ଛୋଟିଆ ରଥ, ରଥ ଚାରିପଟେ ନାଲି ହଳଦିଆ କନା ଗୁଡ଼ା ହୋଇଛି । ରଥ ଉପରେ ନାଲି ପତାକା ଫର ଫର ହୋଇ ଉଡୁଛି । ଚାରୋଟି ଚକ । ଆଗରେ ଗୋଟିଏ ଦଉଡ଼ି ବନ୍ଧା ହୋଇଛି । ରଥ ଉପରେ ଛୋଟ ସିଂହାସନରେ ତୁମେ ତିନି ଭାଇ ଭଉଣୀ ବସିଛ । ତମର ନାଲିଆ ଅଧରରୁ ଝରିଆସୁଛି ହସ । ଦଉଡ଼ିକୁ ଧରି ଘିଡ଼ି ଘିଡ଼ି କରି ଟାଣି ଆଣୁଛନ୍ତି ତୁମମାନଙ୍କୁ, ତୁମେ

ରଥକୁ । ଆଃ ତୁମ ଗୋଲ ଗୋଲ ଆଖିର ଚମକ ଦେଖୁ ଦେଖୁ ଶୁଣି ପାରୁଥିଲି ଡାକୁଥିଲୁ ପରା ! ନିଦ ଭାଙ୍ଗିଗଲା । ଘର ଠାକୁରଙ୍କୁ ତନ୍ମୟ ହୋଇ ଚାହିଁ ରହି ଭାବୁଥିଲି ସତରେ କାଳିଆ ତୁ ମୋ ଅଭିମାନ ଭାଙ୍ଗିଦେଲୁ । ୟାଙ୍କୁ, ପୁଅ ବୋହୂଙ୍କୁ ସମସ୍ତଙ୍କୁ ଖୁସିରେ ଗଦ ଗଦ ହୋଇ ମୋ ସ୍ୱପ୍ନ କଥା କହିଗଲି । ତା'ପରଦିନ ଆମେ ସମସ୍ତେ ଗଲୁ ଆଟ୍‌ଲାଣ୍ଟିକ୍ ସି-ବିଚ୍... ପୃଥିବୀର ଦ୍ୱିତୀୟ ମହାସାଗର ଆଟଲାଣ୍ଟିକ୍ ମହାସାଗର କୂଳ ଠାରୁ କିଛି ଦୂରରେ ବାଲୁକା ରାଶିର ବହୁ ଉଚ୍ଚରେ ତିଆରି ହୋଇଛି ଲମ୍ବା ବୋର୍ଡ଼ ୱାକ୍ (କାଠ ପଟାର ରାସ୍ତା) । ସେହି ରାସ୍ତାର ଗୋଟିଏ ପାର୍ଶ୍ୱରେ ଖୁବ୍ ଉଚ୍ଚ ୨୦-୩୦ ମହଲା ବିଶିଷ୍ଟ ଅନେକ କ୍ୟାସିନୋ - ବିରାଟ ବିରାଟ ହୋଟେଲ । ଅନେକ ଦୋକାନ ବଜାର । ଅପର ପାର୍ଶ୍ୱରେ ଲଡଡ଼ି ଭାଙ୍ଗୁଛି ସମୁଦ୍ର କୂଳ । ଆମେ ସେଠାରେ ପହଞ୍ଚିଲା ବେଳକୁ ଦିନ ୨ ଘଣ୍ଟା । ଖୁବ୍ ଖରା ହେଉଥାଏ । ଗାଡ଼ି ପାର୍କିଙ୍ଗ୍ କରି ବୋର୍ଡ଼ ୱାକକୁ ପାହାଚରେ ଚଢ଼ି ଉଠିଗଲା ବେଳକୁ ସାନପୁଅ ଚିତ୍କାର କଲା, ବୋଉ ! ଦେଖ୍ ଦେଖ୍ ଜଗନ୍ନାଥ ରଥରେ ବସି ଆସୁଛନ୍ତି... ଆଃ କି ଅପୂର୍ବ ସେ ଦୃଶ୍ୟ ! କ'ଣ ନ ଦେଖିଲି ମୁଁ ? ସ୍ୱପ୍ନରେ ଦେଖିଥିବା ସେମିତି ରଥ, ସାମାନ୍ୟ ବଡ଼ । ଫର ଫର ହୋଇ ଉଡୁଥାଏ ରଥ ଉପରେ ପତିତପାବନ ବାନା । ଦେଶୀ ବିଦେଶୀ ଭକ୍ତଙ୍କ ଖୋଳ ତାଳ ଝାଞ୍ଜ ସଂକୀର୍ତ୍ତନ, ହରିବୋଲ, ହରେକୃଷ୍ଣ ହରେ ରାମ, ରାମ ରାମ ହରେ ହରେ, ଧ୍ୱନିରେ ଗହଳ ଚହଳ ଭିତରେ ଧୂମ୍ ଖରାରେ ସେଇ କାଠ ପୋଲ ଉପରେ ଗଡ଼ିଆସୁଛ... ମତେ ଯେମିତି କହୁଥିଲ ଅଭିମାନ କରିଥିଲୁ ପରା ତୋତେ ସ୍ୱପ୍ନରେ ଦେଖାଦେଲି ନାହିଁ ବୋଲି ଦେଖ୍ କାଲି ତୋତେ ସ୍ୱପ୍ନରେ ଦେଖାଦେଇ ଆଜି ତୋ ପାଖକୁ ଆସିଛି । ମୋତେ ମନ ଭରି ଛୁଇଁନେ... ଆଃ ଆନନ୍ଦରେ ଅଧିରା ହୋଇଗଲି ଅଶ୍ରୁପୂର୍ଣ୍ଣ ଆଖିରେ ଚାହିଁ ରହିଥାଏ... ପାଖକୁ ଆସିଲ... ମନ ଭରି ଛୁଇଁଲି, ତଳେ ମୁଣ୍ଡିଆ ମାରି କହିଲି, ହେ ଅନ୍ତର୍ଯ୍ୟାମୀ ! ମୋ ମନକଥା ଜାଣି ସତରେ ତୁମେ ଦିନ ଦ୍ୱିପ୍ରହରରେ ଧୁ ଧୁ ଖରାରେ ଚାଲିଆସିଲ ମୋ ଅଭିମାନ ଭାଙ୍ଗିବା ପାଇଁ । ତାହାଥିଲା ଇସ୍କନ ଭକ୍ତମାନଙ୍କ ରଥଯାତ୍ରା, ଯାହାକି ମୋ ପାଇଁ ଏକ ଦିବ୍ୟ ଅନୁଭୂତି । ରଥଯାତ୍ରା ଦିନ ନବକଳେବରର ଧାରା ବିବରଣୀ ଟିଭିରେ ଦେଖୁଥାଏ । ପୁଅକୁ କହିଲି, ଏଠାରେ ଥିବା ଜଗନ୍ନାଥ ମନ୍ଦିରକୁ ଯିବା । ରଥ ଉପରେ ଠାକୁରଙ୍କୁ ମୁଣ୍ଡିଆ ମାରିବା । ଆମେ ସମସ୍ତେ ବାହାରିଲୁ ନିଉଜର୍ସି ଠାରୁ ୩୦ ମାଇଲ ଦୂରରେ ଥିବା ୱେନେ ଟାଉନ୍‌କୁ । ସେଠାରେ ଇଣ୍ଡିଆ କଲଚରାଲ ସୋସାଇଟ୍ ଅଫ୍ ନିଉଜର୍ସି ନାମକ ଏକ ବିରାଟ କମ୍ୟୁନିଟି ସେଣ୍ଟର ନିକଟରେ ହିନ୍ଦୁ ମନ୍ଦିର ଅବସ୍ଥିତ । ଏଠାରେ ସମସ୍ତ ଦେବଦେବୀଙ୍କୁ ଏକାପ୍ରକାରର ଜରିରେ କାମ ହୋଇଥିବା ସୁନ୍ଦର ପୋଷାକରେ ସଜ୍ଜିତ କରାଯାଇଥାଏ । ଆଗଧାଡ଼ିରେ ବସିଥା'ନ୍ତି ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା, ଶ୍ରୀସୁଦର୍ଶନ ଏବଂ ମଦନମୋହନ ଠାକୁର । ପଛ ଧାଡ଼ିରେ ଲକ୍ଷ୍ମୀ-ନାରାୟଣ ରାମ-ସୀତା, ଶିବ-ପାର୍ବତୀ, ହନୁମାନ, ଗଣେଶ, ସିରିଡ଼ି ସାଇ ଠାକୁରଙ୍କ ମୂର୍ତ୍ତି ଗୋଟିଏ କୋଣରେ ପୂଜା ପାଉଥା'ନ୍ତି । ପ୍ରାୟ ୭୦୦-୮୦୦ ଭକ୍ତ ଆଖପାଖ

ଅଞ୍ଚଳରୁ ଆସି ହଲ୍‌ରେ ଭଜନ କୀର୍ତ୍ତନରେ ଭାଗ ନେଇଥା'ନ୍ତି । ସଂଧ୍ୟା ୫ଟା ବେଳକୁ ଗୋଟିଏ ପିତଳ ଦୋଳାରେ ବଡ଼ ତକିଆ ପକାଇ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଧାଡ଼ି ପହଣ୍ଡିରେ ଆଣି ହଲ୍ ବାହାରେ ତକିଆ ଗଦି ଉପରେ ରଖି ରଥ ଉପରକୁ ନେଲେ । ଛୋଟ ରଥ, ଅପୂର୍ବ ଉନ୍ମାଦନା । ଜୟ ଜଗନ୍ନାଥ, ହରିବୋଲ ଧ୍ୱନିରେ ସବୁ ଠାକୁର, ମଦନମୋହନ ରଥାରୂଢ଼ ହେଲା ପରେ କିଛି ବାଟ ଭକ୍ତମାନେ ମହା ଆନନ୍ଦରେ ଟାଣିନେଲେ । ଏଠାରେ ରାତି ସାଢ଼େ ଆଠଟାରେ ସଂଧ୍ୟା । ସଂଧ୍ୟା ପୂର୍ବରୁ ରଥଟଣା ସରିଲା । ସମସ୍ତ ଠାକୁରମାନଙ୍କୁ ମନ୍ଦିର ଭିତରେ ରଖି ସବୁ ଭକ୍ତ ପ୍ରସାଦ ସେବନ କରି ଏକ ନୂତନ ଅନୁଭୂତି ନେଇ ଘରକୁ ଫେରିଲେ । ଏହି ରଥଯାତ୍ରାରେ ପ୍ରାୟ ସମସ୍ତ ଭକ୍ତ ଭାରତୀୟ ଥିଲେ । ବିଦେଶୀ ଭକ୍ତ ଖୁବ୍ ଅଳ୍ପ ଥିଲେ । ନିଉଜର୍ସି ଅଞ୍ଚଳରେ ବହୁ ସଂଖ୍ୟାରେ ଭାରତୀୟ ବାସ କରୁଥିବାରୁ ଏଠାରେ ଖୁବ୍ ବଡ଼ ଇଣ୍ଡିଆନ୍ ମାର୍କେଟ ଅଛି । ଆମେ ରହୁଥିବା କମ୍ୟୁନିଟିରେ ୬୭୮ଟି ଆପାର୍ଟମେଣ୍ଟ ମଧ୍ୟରୁ ପ୍ରାୟ ୫୭୫ଟି ଆପାର୍ଟମେଣ୍ଟରେ ଭାରତୀୟମାନେ ରହନ୍ତି । ଏ ରଥଯାତ୍ରାରେ ପ୍ରଭୁ ଆପଣଙ୍କୁ ଦେଖିବି, ପ୍ରସାଦ ପାଇବି ବୋଲି କଳ୍ପନା କରିନଥିଲି । ସବୁ ତୁମର ଆଶୀର୍ବାଦ । ଆମେରିକାର ବହୁ ସ୍ଥାନରେ ତୁମ ରଥଯାତ୍ରା ପାଳନ କରାଯାଉଛି । ଜୁଲାଇ ୩ ଓ ୪ ତାରିଖରେ ଓ୍ୱାସିଂଟନ ଡି.ସି ଠାରେ ଏକ ହୋଟେଲ କୂଳରେ ଓଡ଼ିଶା ସୋସାଇଟି ଅଫ୍ ଆମେରିକା ଉତ୍ସବ ପାଳନ କରାଯାଉଥିଲା । ଓଡ଼ିଶାରୁ ବହୁ କଳାକାରଙ୍କୁ ନିମନ୍ତ୍ରଣ କରାଯାଇଥିଲା । ଆମେରିକାର କୋଣ ଅନୁକୋଣରୁ ଅନେକ ଓଡ଼ିଆ ସମବେତ ହୋଇଥିଲେ ।

ଏବେ ଆସିଛି ଆପଣଙ୍କ ଆଶୀର୍ବାଦରୁ ଆଟଲାଣ୍ଟା - ସାନ ଝିଅ କ୍ୱାଇଁଙ୍କ ପାଖକୁ । ଏଠାରେ ମଧ୍ୟ ତୁମେ ବାହୁ ମେଲାଇ ବସିଛ । ହନୁମାନ ମନ୍ଦିର, ହିନ୍ଦୁ ମନ୍ଦିରରେ ଜର୍ଜିଆ ସହରର ଦକ୍ଷିଣରେ ଥିବା ଫୋରସିଥ-ଫୁଲଟନ ସ୍ଥାନରେ ଏହି ମନ୍ଦିର ଅବସ୍ଥିତ । ଏଠାରେ ଓଡ଼ିଆ ବ୍ରାହ୍ମଣ ପୂଜକ ଅଛନ୍ତି । ମନ୍ଦିରରେ ରାମ-ସୀତା, ହନୁମାନ, ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ସବୁ ଠାକୁର ପୂଜା ପାଉଛନ୍ତି । ଧନ୍ୟ ହୋଇଗଲା ମୋ ଜୀବନ... । ବିଭିନ୍ନ ସ୍ଥାନରେ ହିନ୍ଦୁ ମନ୍ଦିର ତୋଳି ଜଗନ୍ନାଥ ସଂସ୍କୃତିକୁ ଆପଣେଇ ନେବା ହିନ୍ଦୁ ଧର୍ମର ତାତ୍ପର୍ଯ୍ୟ ବିଷୟରେ ଜାଣିବା ଏବଂ ଆଗାମୀ ପିଢ଼ିଙ୍କୁ ଜଣାଇବା ହିଁ ମୂଳଲକ୍ଷ୍ୟ । ହେ ପ୍ରଭୁ ! ତୁମକୁ ଦର୍ଶନ କରିବାରେ ମୋର ଯେତିକି ଅନୁଭୂତି ତୁମ ନାମ ନେଇ ଅନେକ ବିପଦରୁ ରକ୍ଷା ପାଇଥିବାରେ ମୋର ଅନେକ ଅନୁଭୂତି । ସବୁ ଅନୁଭୂତିର ଫୁଲକୁ ନେଇ ଲମ୍ବା ମାଳଟିଏ ତୁମ୍ଭ ପାଦତଳେ ଦେଇ ପାରିବିନି ପ୍ରଭୁ ! କେତୋଟି ଅନୁଭୂତିର କୁସୁମ ତବ ଚରଣ ତଳେ ସମର୍ପି ଦେଇ ଏତିକି ମାଗୁଣି ପ୍ରଭୁ ସମସ୍ତଙ୍କର ମଙ୍ଗଳ କର । ଜୟ ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ... ।

ମାର୍ଫତ୍ - ଡା. ସଞ୍ଜୀବ କୁମାର ଦୀକ୍ଷିତ
ପୁରୁଣା ବଜାର, କେନ୍ଦୁଝର-୭୫୮୦୦୨
ଭ୍ରାମ୍ୟଭାଷ : ୯୪୩୭୨୫୨୭୭୨

⊙ ⊙

# ଚକାଆଖି

## ପ୍ରଭାତୀ ଦାସ

ଶ୍ରୀକ୍ଷେତ୍ର ଧାମର ରତ୍ନ ସିଂହାସନ ଉପରେ ବିରାଜମାନ ଶ୍ରୀ ଶ୍ରୀ ଜଗନ୍ନାଥ ମହାପ୍ରଭୁ । ତାଙ୍କର ବହୁତ ନାମ । ତା'ରି ଭିତରୁ ଗୋଟିଏ ନାମ ଚକାଆଖି । ସେ ଚକାଆଖି ପଲକହୀନ । ତେଣୁ ସେ ସମସ୍ତଙ୍କୁ ଦେଖୁଥା'ନ୍ତି । ସମସ୍ତଙ୍କ ଦୁଃଖରେ ଯାଇ ପାଖରେ ଠିଆ ହୁଅନ୍ତି । ଯିଏ ଯେମିତି ଭାବରେ ଯେଉଁ ରୂପରେ ତାଙ୍କୁ ଡାକିଲା, ସିଏ ସେମିତି ଭାବରେ ତା' ପାଖରେ ଠିଆ ହୁଅନ୍ତି । ଭାରି ଦୟାଳୁ ଠାକୁର ସିଏ । ଭାବର ଠାକୁର । ଯାହାଠାରୁ ସିଏ ଭାବ ଓ ଭକ୍ତି ପାଇଲେ ସିଏ ତା'ର ହୋଇଯା'ନ୍ତି । ସେଇ ଯୋଗୁ ତାଙ୍କ ନାମ ଭାବଗ୍ରାହୀ, ଭାବବିନୋଦିଆ ଠାକୁର ସିଏ ।

ଏ ଲେଖାରେ ମୁଁ ଲେଖୁଛି ମୋ ପିଲା ଦିନର କଥା । କେମିତି ଜାଣିଲି ମୁଁ ଚକାଆଖିଙ୍କୁ ? କେମିତି ଚକାଆଖି ମୋର ଏତେ ନିଜର ହେଲେ । କେମିତି ଚକାଆଖିଙ୍କୁ ଏତେ ପାଖରୁ ପାଇଲି । ଆରମ୍ଭ କରୁଛି ମୋ ବାପଘର ଠାରୁ । ମୋ ବାପଘର ପୁରୀ ନରେନ୍ଦ୍ର କୋଣରେ । ମୋ ବାପା ବୋଉ ଥିଲେ ଜଗନ୍ନାଥଧର୍ମୀ । ସବୁ ପ୍ରକାର ପୂଜାପାର୍ବଣ ଆମ ଘରେ ପାଳନ କରାଯାଉଥିଲା । ପୁରୀରେ ଯେତେ ପ୍ରକାର ପୂଜାପର୍ବ ଓ ନୀତିନିୟମ ଅଛି ଆଉ କେଉଁଠାରେ ତାହା ଦେଖିବାକୁ ପାଇବେନି । ସବୁ କିଛି ଆମ ଘରେ ପାଳନ ହୁଏ । ଏପରିକି କାର୍ତ୍ତିକ ମାସରେ ବାପା-ବୋଉ କାର୍ତ୍ତିକ ବ୍ରତ କରନ୍ତି । ସେ ମାସକ ଯାକ ଆମେ ସମସ୍ତେ ଅବଢ଼ା ଖାଉ । ଆମ ଦୁଆରେ ସଞ୍ଜବେଳେ ରାମାୟଣ, ମହାଭାରତ ପଢ଼ାଯାଏ । ସବୁ ହବିଷ୍ୟାଳି ବୁଢ଼ୀମାନେ ଆସି ପୁରାଣ ଶୁଣନ୍ତି । ମାସକ ଯାକ ଏପରି ଚାଲେ । କାର୍ତ୍ତିକ ପୂର୍ଣ୍ଣିମା ଦିନ ଏହା ବଢ଼େ । ଆମ ସାହିର ସମସ୍ତ ଲୋକ ଓ ହବିଷ୍ୟାଳି ବୁଢ଼ୀ ଆମଘରେ ଅବଢ଼ା ଖାଆନ୍ତି । ହବିଷ୍ୟାଳି ବୁଢ଼ୀମାନଙ୍କୁ ନୂଆ ଲୁଗା ବଣ୍ଟାଯାଏ । କାର୍ତ୍ତିକ ମାସରେ ବୋଉ ଆମର ପ୍ରତିଦିନ ମନ୍ଦିର ଯାଏ, ତା'ସାଙ୍ଗରେ ମୁଁ ଯାଏ । ଆମେ ସାତ ଭାଇଭଉଣୀ, ଚାରି ଭଉଣୀ ଓ ତିନି ଭାଇ । ବୋଉ ସମସ୍ତଙ୍କୁ ଭଲପାଏ, ହେଲେ ବେଶୀ ଭଲପାଏ ମତେ । ମତେ ନେଇ ସେ ପ୍ରତିଦିନ ରାତିରେ ମନ୍ଦିର ଯାଏ । ମତେ କିନ୍ତୁ ଭାରି କଷ୍ଟ ହୁଏ ଚାଲିଚାଲି ମନ୍ଦିର ଯିବାକୁ । ହେଲେ ବୋଉ କେବେ ରିକ୍ସାରେ ଯାଏନି ମନ୍ଦିରକୁ । ଚାଲିକରି ମନ୍ଦିର ଯାଏ କାରଣ ସେ ଭାରି ଧର୍ମଭୀରୁ । ଫେରିଲାବେଳେ ମୋ ଜିଦ୍ ଯୋଗୁଁ ରିକ୍ସାରେ ଫେରେ । ମୁଁ ଗୋଟିଏ ଲୋଭରେ ବୋଉ ସାଙ୍ଗରେ ମନ୍ଦିର ଯାଏ ଯେ ବୋଉ ମତେ ଫେରିଲାବେଳେ ଛେନାଖଇ କିଣିଦେବ ଖାଇବା ପାଇଁ । ମୁଁ ଭାରି ଭଲପାଏ ଛେନାଖଇକୁ । ମନ୍ଦିରରେ

ପହଞ୍ଚି ଚାରିଆଡ଼େ ଦୀପ ଦେଇ ବେଢ଼ା ବୁଲି ପହଞ୍ଚୁ ଜଗନ୍ନାଥଙ୍କ ପାଖରେ । ଆମେ ଗରୁଡ଼ ସ୍ତମ୍ଭ ପାଖରେ ଦୀପ ଦେଉ । ସେଠି ଦୀପ ଦେଇ ବୋଉ ଗରୁଡ଼ ସ୍ତମ୍ଭ ପଛରେ ଠିଆହୁଏ ହାତ ଯୋଡ଼ି । ଜଗନ୍ନାଥଙ୍କୁ ଚାହିଁ ଆଖିରୁ ତା'ର ଧାର ଧାର ହୋଇ ଲୁହ ବୋହୁଥାଏ । କ'ଣ ସବୁ ଗୁଣୁ ଗୁଣୁ ହୋଇ କହି ଚାଲିଥାଏ ଜଗନ୍ନାଥଙ୍କ ଆଡ଼େ ଚାହିଁ । ମତେ କିନ୍ତୁ ଭଲ ଲାଗେନି ବୋଉର ଏ କାନ୍ଦ ଦେଖି । ମୁଁ ଦୂରକୁ ଚାଲିଯାଏ, କାନ୍ଥମାନଙ୍କରେ ଥିବା ଚିତ୍ରକୁ ଦେଖେ, ପୁଣି ଜଗନ୍ନାଥଙ୍କୁ ଚାହେଁ, ମନେ ମନେ ଭାବେ, କାହିଁକି ବୋଉ ଏମିତି କାନ୍ଦୁଛି । ଜଗନ୍ନାଥଙ୍କୁ ଦେଖି ମତେ ତ ଟିକେ ବି କାନ୍ଦ ଲାଗୁନି ! ସେତେବେଳେ ପିଲାମନରେ ବହୁତ କଥା ଆସେ । ବୋଉକୁ ଆସି କହେ, ବୋଉ ଚାଲନା ଯିବା ଘରକୁ, ଆଉ କେତେ ସମୟ ରହିବୁ ଯେ ମନ୍ଦିରରେ । ହଁ ଯିବା କହି ବୋଉ ମୋର ସେମିତି ଚାହିଁରହେ ଜଗନ୍ନାଥଙ୍କ ଆଡ଼େ । ଆଖିରୁ ତା'ର ସେମିତି ଲୁହ ବୋହିବାରେ ଲାଗିଥାଏ । ମୁଁ କହେ ତୁ ଏମିତି କାନ୍ଦିଲେ ମୁଁ ଆଉ ଦିନେ ତୋ ସାଙ୍ଗରେ ମନ୍ଦିର ଆସିବିନି । ଲୋକମାନେ ଦେଖିଲେ କ'ଣ ଭାବୁଥିବେ ? ସେମାନେ ଭାବିବେ ଯେ ବାପା ତୋତେ ଖାଇବାକୁ ଦେଉନାହାନ୍ତି, ସେଇଯୋଗୁଁ ତୁ ଏମିତି କାନ୍ଦୁଛୁ ଜଗନ୍ନାଥଙ୍କ ପାଖରେ । ମୋ କଥା ଶୁଣି ବୋଉ ହସିଦିଏ । ହସଟା ତା ମୁହଁରେ ବହୁତ ମାନେ, କହେ ଲୋକମାନେ କାହିଁକି କ'ଣ ଭାବିବେ ? ମତେ କହେ, ଶୁଣ୍ ପାଗଳି, ତୁ ଯେତେବେଳେ ମୋ ପରି ହୋଇଯିବୁ, ଚକାଆଖିଙ୍କୁ ଆସି ଦେଖିବୁ, ସେତେବେଳେ ଜାଣିବୁ ମୋ କଥା, ସେତେବେଳେ ଭାବିବୁ, ବୋଉ ମୋର ଜଗନ୍ନାଥଙ୍କୁ ସଦାବେଳେ 'ଚକାଆଖି' ନାମରେ ଡାକେ, ପ୍ରତିବେଳେ ମୁଁ ତା' ପାଟିରୁ ଶୁଣେ ଆହେ ପ୍ରଭୁ ଚକାଆଖି, ଆହେ ପ୍ରଭୁ ଚକାଆଖି । ବୋଉ ମୋର ସଦାବେଳେ କୁହେ ତୋର ଯାହାସବୁ କଥା ତୁ ଚକାଆଖିଙ୍କୁ କହିବୁ, ସିଏ ସବୁ କଥା ତୋର ବୁଝିବେ । ତୁ ତାଙ୍କୁ ସବୁବେଳେ ମନେ ମନେ ଡାକିବୁ, ମନକଥା ସେ ନିଶ୍ଚେ ଶୁଣିବେ । ଦେହ ଖରାପ ହେଲେ ସେ ଭଲ କରିଦେବେ । ତେଣୁ ପିଲାବେଳୁ ସେଇ ଚକାଆଖି, ଚକାନୟନ ମୋର ଅତି ନିଜର ହୋଇଯାଇଥିଲେ । ବୋଉ ଶୋଇଲାବେଳେ ସବୁଦିନ ଗପ କୁହେ - ଭକ୍ତ ପ୍ରହ୍ଲାଦ, ଦାସିଆ ବାଉରୀଠାରୁ ଆରମ୍ଭ କରି ବନ୍ଧୁ ମହାନ୍ତି, ଭକ୍ତ ସାଲବେଗ ସମସ୍ତ ଭକ୍ତଗଣଙ୍କ କଥା କୁହେ । ଗପ ସବୁ ଶୁଣିଲାବେଳେ ମନେ ମନେ ଭାବେ ପ୍ରଭୁ ମୋର କ'ଣ ସେତିକି ଭାଗ୍ୟ ନାହିଁ ମୁଁ ଆପଣଙ୍କର ଭକ୍ତ ହୋଇପାରିବି । ମନ ସେତେବେଳେ ବହୁତ ବ୍ୟାକୁଳ ହୋଇଉଠେ । ପ୍ରଭୁଙ୍କ ଉପରେ ବହୁତ ଅଭିମାନ କରେ, ହେଲେ ମୁଁ କି ଜାଣିଥିଲି ପ୍ରଭୁ ମୋତେ ଦର୍ଶନ ଦେବାପାଇଁ କି ପ୍ରକାର ଅଲୌକିକ ଲୀଳା ରଚନା କରିବେ ।

ସେଦିନ ଥିଲା ଜାଗରର ପରଦିନ । ପ୍ରଭୁ ଶ୍ରୀ ଲୋକନାଥଙ୍କ ଭୋଗଡ଼ାଲା ବିସର୍ଜନ ପାଇଁ ମୁଁ ଆସିଥାଏ ନରେନ୍ଦ୍ର ପୋଖରୀ । ବୋଉ ବାରମ୍ବାର କରି ବାରଣ କରିଥାଏ ପୋଖରୀ ଭିତରକୁ ନଯିବା ପାଇଁ, କାରଣ ପାହାଚ ଗୁଡ଼ିକ ଶିଉଳି ହୋଇ ଅତି ଖସଡ଼ା, ତେଣୁ ଭେଗଡ଼ାଲାକୁ ବାହାରୁ ପୋଖରୀ ଭିତରକୁ ଫିଙ୍ଗି ଦେବାପାଇଁ ମତେ କହିଥାଏ । ମୁଁ ମଧ୍ୟ ବୋଉର କହିବା ଅନୁସାରେ ଭୋଗଡ଼ାଲାକୁ ପୋଖରୀ ଭିତରକୁ ଫିଙ୍ଗିଦେଲି ହେଲେ ପୋଖରୀର ନିର୍ମଳ ପାଣି ମୋତେ ଯେମିତି ଖୁବ୍ ଆକର୍ଷିତ କରୁଥିଲା । ବୋଉର ବାରଣ ସତ୍ତ୍ୱେ ମୁଁ ଗୋଡ଼ ଧୋଇବା ପାଇଁ ପୋଖରୀ ଭିତରେ ପ୍ରବେଶ କଲି, ହେଲେ ସେ ଶିଉଳି ପାହାଚ ଉପରେ ପାଦ ରଖୁ ରଖୁ ହଠାତ୍ ମୋ ଗୋଡ଼ ଖସିଗଲା, ଲାଗୁଥିଲା ସତେ ଯେପରି ମୋର ଜୀବନ ଦୀପଟି ଏଇଠି ଲିଭିଯିବ । ମନେ ମନେ ଭାବିଲି ପ୍ରଭୁଙ୍କର କ'ଣ ଏଇ ଇଚ୍ଛା ? ପୁଣି ମନେ ମନେ ପଡ଼ିଯାଇଥିଲା ବୋଉର ସେଇ କେଇପଦ କଥା - ଜୀବନରେ ଯେତେ ବଡ଼ ଅସୁବିଧା, ଯେତେବଡ଼ ବିପତ୍ତି ଆସିଲେ ସେଇ ଚକାଆଖିକୁ ମନେ ପକାଇବୁ, ସେ ସବୁ ଠିକ୍ କରିଦେବେ । ଧୀରେ ଧୀରେ ହାତ ଗୋଡ଼ ସବୁ ଶିଥିଳ ହେବାରେ ଲାଗିଥିଲା । ମୁଁ ସେତେବେଳକୁ ଚାରି ପାଞ୍ଚ ଢୋକ ପାଣି ପିଇସାରିଲିଣି । ଜୀବନରେ ଏମିତି ଅସହାୟତା ମୁଁ ଆଗରୁ କେବେ ମଧ୍ୟ ଅନୁଭବ କରିନଥିଲି । ଆଉ ଭୟମିଶା ଭକ୍ତିଭାବରେ ମୋ ପାଟିରୁ ବାହାରିଥିଲା 'ହେ ଚକାଆଖି ରକ୍ଷାକର' । ବାସ୍, ତା'ପରେ ଅନୁଭବ କରିଥିଲି, କେହି ଜଣେ ଯେମିତି ମୋ ହାତକୁ ଧରି ପାଣି ଭିତରୁ ବାହାର କରୁଛି, ମନେ ପଡ଼ିଯାଉଥିଲା ତୁମର ସେହି 'ଗଜ ଉଦ୍ଧାରଣ' କଥା । ଜୀବନରେ ପ୍ରଥମ ଥର ଅନୁଭବ କଲି ତୁମ ସତ୍ତାକୁ, ଲାଗୁଥିଲା ବୋଉଠାରୁ ତୁମ ବିଷୟରେ ଯେତିକି ଶୁଣିଛି, ପ୍ରକୃତରେ ତୁମ ଦୟାର ପରିସୀମା ତା'ଠାରୁ ଆହୁରି ଅସୀମ । ଘରେ ପହଞ୍ଚିଲା ପରେ ଆରମ୍ଭ ହୋଇଯାଇଥିଲା ଗାଳିର ବର୍ଷା । କିନ୍ତୁ ମୁଁ ମନେ ମନେ ଭାବି ଚାଲିଥିଲି ଆଜି ମୁଁ ମଧ୍ୟ ଭକ୍ତ ପ୍ରହ୍ଲାଦ ଠାରୁ କମ୍ ନୁହେଁ । ପ୍ରକୃତରେ ପ୍ରଭୁ ତୁମେ ଭାବଗ୍ରାହୀ । ବୋଉ ପାଖରୁ ଗପ ଶୁଣୁ ଶୁଣୁ ମନରେ ଆସିଥିବା ଅଭିମାନକୁ ଦୂର କରିବା ପାଇଁ କେବଳ ତୁମେ ହିଁ ଏପରି ଲୀଳା କରିପାର 'ଲୀଳାମୟ' ।

ସେ ଦିନର ଘଟଣା ପରଠାରୁ ମୋର ମନ ଯେମିତି ଆହୁରି ବ୍ୟାକୁଳ ହୋଇଉଠିଥିଲା । ସବୁ ସମୟରେ ସବୁ ଜିନିଷରେ ମୋତେ ଯେମିତି ତୁମରି ପ୍ରତିଛବି ଦିଶୁଥିଲା । ପ୍ରତିବର୍ଷ ପରି ପୁଣି ରଥଯାତ୍ରାରେ ଆମେ ସପରିବାର ବାହାରି ପଡୁଥିଲୁ ରଥଟାଣିବା ପାଇଁ, କିନ୍ତୁ ଏଥର ମନରେ ଥିଲା ଏକ ଅଦ୍ଭୁତ ଉନ୍ମାଦନା । ଅଦ୍ଭୁତ ବ୍ୟାକୁଳତା । ସେଇ ଦୀନବନ୍ଧୁ ଚକାଆଖି ଚକାନୟନଙ୍କୁ ରଥ ଉପରେ ଦେଖିବାର ଉନ୍ମାଦନା । ତାଙ୍କ ରଥ ଦଉଡ଼ିକୁ ସ୍ପର୍ଶ କରିବାର ବ୍ୟାକୁଳତା । ଆମେ ଯାଇ ପହଞ୍ଚିଗଲୁ

ବଡ଼ଦାଣ୍ଡରେ, କିନ୍ତୁ ବଡ଼ଦାଣ୍ଡରେ ଲକ୍ଷ ଲକ୍ଷ ଭକ୍ତଙ୍କର ଜନସମୁଦ୍ର ଦେଖି ମନରେ ପ୍ରଶ୍ନ ଉଠିଥିଲା ପ୍ରକୃତରେ ମୁଁ କ'ଣ ଆଜି ତୁମ କଳାଶ୍ରୀମୁଖର ଦର୍ଶନ କରିପାରିବି ! ସାମ୍ନାରେ ଥିଲା ପୀତ ଲୋହିତ ବର୍ଣ୍ଣର କାରୁକାର୍ଯ୍ୟମୟ ରଥ । ତାଙ୍କୁ ଦେଖି ମନରେ ଆସିଯାଇଥିଲା ଅପୂର୍ବ ସାହସ ଓ ଆତ୍ମବିଶ୍ୱାସ । ଏ ବିଶାଳ ଜନସମୁଦ୍ରକୁ ଭ୍ରୂକ୍ଷେପ ନ କରି ବୀରଦର୍ପରେ ଆଗେଇ ଚାଲିଥିଲି । ଶେଷରେ ଯାଇ ପହଞ୍ଚିଲି ପ୍ରଭୁ ଜଗନ୍ନାଥଙ୍କ ରଥ ପାଖରେ । ଚତୁଃପାର୍ଶ୍ୱରେ ଶୁଭୁଥିଲା ଘଣ୍ଟୁଆଙ୍କ ଭକ୍ତିପୂତ ଘଣ୍ଟର ନାଦ । ସମସ୍ତଙ୍କ ମନରେ ଥିଲା ଅଦ୍ଭୁତ ଆନନ୍ଦ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଆଜି ସମସ୍ତେ ସେଇ ଜଗନ୍ନାଥଙ୍କ ଭକ୍ତିରେ ଏକାକାର । ମୁଁ ମଧ୍ୟ ସେମାନଙ୍କ ସହ ମିଶି ରଥ ଟାଣିବାରେ ଲାଗିପଡ଼ିଥିଲି । ପ୍ରଭୁଙ୍କର ରଥ ଦଉଡ଼ିକୁ ଧରି ରଥ ଟାଣିବାର ଆନନ୍ଦ ପ୍ରକୃତରେ ଅବର୍ଣ୍ଣନୀୟ । କିଛି ସମୟ ପାଇଁ ସ୍ଥାନ କାଳ ପାତ୍ର ସବୁ କିଛି ଭୁଲି ସେଇ ଭାବଗ୍ରାହୀ ଦୀନବନ୍ଧୁ ଚକାଆଖିଙ୍କୁ ଭକ୍ତିରେ ନିଜକୁ ସଂପୂର୍ଣ୍ଣ ରୂପେ ସମର୍ପଣ କରିଦେଇଥିଲି । କିନ୍ତୁ ଏ କ'ଣ ! ଚାରିପାଖକୁ ଆଖି ବୁଲେଇ ଦେଖେତ ନା ଅଛି ରଥ ଦଉଡ଼ି, ନା ଅଛି ଘଣ୍ଟୁଆଙ୍କର ଘଣ୍ଟ ବାଦନର ନାଦ । ମୁଁ ନିଜକୁ ଆବିଷ୍କାର କଲି ରଥଚକ ମାନଙ୍କର ଭିତରେ । ଅର୍ଥାତ୍ ମୁଁ ଥିଲି ଜଗନ୍ନାଥଙ୍କ ରଥର ଠିକ୍ ତଳେ । ଲାଗୁଥିଲା ଏଇ ବୋଧେ ମୋ ଜୀବନର ଶେଷ ସମୟ । କିଛି ସମୟ ପାଇଁ ଭାବିଲି, ସତରେ କେତେ ଭାଗ୍ୟ ମୋର, ପବିତ୍ର ରଥଯାତ୍ରାରେ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥ ତଳେ ଆଜି ମୋର ଜୀବନ ଯିବ, ଯାଠୁ ବଡ଼ ଭାଗ୍ୟର କଥା ଆଉ କ'ଣ ହୋଇପାରେ ? ପ୍ରଭୁ ତୁମ ଶରଣରେ ମୋତେ ଆଶ୍ରିତା କର । କିନ୍ତୁ ସେ ଲୀଳାମୟଙ୍କର ଲୀଳା ତ ଅତି ଅଲୌକିକ । ହଠାତ୍ କେଉଁଆଡୁ ଜଣେ ପଣ୍ଡା ଆସି ମୋ ହାତଧରି ଟାଣିଆଣିଲେ । ତାଙ୍କ ଚେହେରାରେ ଥିଲା ଏକ ଅପୂର୍ବ ତେଜ । ଅତି କୌଶଳରେ ମୋତେ ରଥ ପାଖରୁ ଉଦ୍ଧାର କଲେ । ବୋଉ ମୋତେ ଭିଡ଼ ଭିତରେ ନପାଇ ବିକଳରେ କାନ୍ଦୁଥାଏ । ମୋତେ ଦେଖି ତାଙ୍କର କୋହ ଆହୁରି ବଢ଼ି ଯାଇଥିଲା । ମୋ ଠାରୁ ସବୁକଥା ଶୁଣି ସେ ପଣ୍ଡାଜଣଙ୍କୁ ଧନ୍ୟବାଦ ଦେବାପାଇଁ ଯେତେ ଖୋଜିଲେ ମଧ୍ୟ ସେ ଭିଡ଼ ମଧ୍ୟରେ ଲୀନ ହୋଇଯାଇଥିଲେ । କିନ୍ତୁ ମୁଁ ଜାଣିଥିଲି ଏପରି ଅଲୌକିକ ଲୀଳା କେବଳ ଜଣେ କରିପାରନ୍ତି, ସେଇ କରୁଣାମୟ, ଭାବଗ୍ରାହୀ, ଚକାଆଖି, କାଳିଆ ଠାକୁର । ସେଇ ମୋର ଶେଷ ରଥଟଣା । ସେଦିନ ଠାରୁ ଆଜି ପର୍ଯ୍ୟନ୍ତ ମୁଁ ଆଉ ଜଗନ୍ନାଥଙ୍କ ରଥ ଦଉଡ଼ି ଟାଣି ପାରୁନାହିଁ ।

ସମୟ ତ କାହାକୁ ଅପେକ୍ଷା କରେନା । ସମୟର ଚକରେ ସବୁ କିଛି ପରିବର୍ତ୍ତନ ହେଇଛି । ମୁଁ ଛୋଟରୁ ବଡ଼ ହେଲି । ବୋଉ ମୋର ଖୁବ୍ କମ୍ ବୟସରୁ ଆରପାରିକୁ ଚାଲିଗଲେ । ମୋର କଟକରେ ବାହାଘର ହୋଇଗଲା । ଝିଅରୁ ବୋହୂ ହେଲି । ବୋହୂରୁ

ମା’ ହେଲି । ହେଲେ ଚକାଆଖି ମୋର ପାଖେ ପାଖେ ସେମିତି ରହି ଆସିଛନ୍ତି । ମୁଁ କେବେ କିଛି ମାଗେନି ତାଙ୍କୁ । ସିଏତ ଅନ୍ତର୍ଯ୍ୟାମୀ, ଅନ୍ତରର କଥା ସିଏ ଠିକ୍ ଜାଣନ୍ତି । କ’ଣ ବା ମାଗିବି ତାଙ୍କୁ ? ପ୍ରଭୁ ତ ମତେ ସବୁ ଦେଇଛନ୍ତି । ମାସେ, ଦି’ମାସରେ ଜଗନ୍ନାଥଙ୍କୁ ପାଖକୁ ଯାଇ ଦର୍ଶନ କରିବା ପାଇଁ ଇଚ୍ଛା ହୁଏ । ମନେ ମନେ କୁହେ, ପ୍ରଭୁ କେବେ ଆପଣଙ୍କ ଡୋରି ଲାଗିବ, ମୁଁ ଯାଇ ଆପଣଙ୍କ ଦର୍ଶନ ପାଇବି ? ଠିକ୍ ଡାକିବାର ଦି-ଚାରି ଦିନ ଭିତରେ ଠାକୁର ଯେମିତି ଭାବରେ ନିଅନ୍ତି ତାହା ମୁଁ ପ୍ରତ୍ୟକ୍ଷ ଅନୁଭବ କରିଛି । ତାଙ୍କ ପାଖରେ ପହଞ୍ଚିଗଲା ପରେ ତାଙ୍କର ସେ ଚକାଆଖିକୁ ଦେଖିଦେଲେ ମନତଳେ ଚାପି ହୋଇ ରହିଥିବା କୋହ ଲୁହ ହୋଇ ବୋହିବାରେ ଲାଗେ । ସେ ଲୁହ ଦୁଃଖର ନୁହେଁ, ସେ ଲୁହ ଅଭିମାନର ଲୁହ । ସେ ଲୁହ ଖୁସିର ଲୁହ । ମନେ ମନେ କୁହେ ଚକାଆଖି ଏତେ ଦିନ ପରେ ଇଚ୍ଛା ହେଲା ଆପଣଙ୍କର ଦର୍ଶନ ଦେବାଲାଗି । ଆପଣଙ୍କର ଡୋରି ନ ଲାଗିଲେ କିଏ ବା ଆପଣଙ୍କ ଦର୍ଶନ ପାଇବ ! ଆପଣ ଯାହାକୁ ଚାହିଁବେ ତାକୁଇ ତ ଦର୍ଶନ ଦେବେ । ହାତଯୋଡ଼ି ମୁଁ ଚକାଆଖିଙ୍କୁ ଚାହିଁ ରହିଥାଏ । ମତେ ଲାଗେ ଠାକୁର ଯେମିତି ମତେ କହୁଛନ୍ତି ତୁ ଛୁଆଦିନେ ତୋ ବୋଉକୁ ମନା କରୁଥିଲୁ କାନ୍ଦନା ବୋଲି, ଏଇନେ ତୁ କ’ଣ କରୁଛୁ ? ସେତେବେଳେ ମୋର ବୋଉ କଥା ମନେପଡ଼େ । ବୋଉ ମତେ କହିଥିଲା, ତୁ ଯେତେବେଳେ ମୋ ପରି ହୋଇଯିବୁ, ସେତେବେଳେ ଜାଣିବୁ । ଏଇନେ ବୁଝିପାରୁଛି ସେ ଲୁହର ମୂଲ୍ୟ । ମୁଁ ଚକାଆଖିକୁ ଚାହିଁ କହେ ପ୍ରଭୁ ହେ ! ଏମିତି ଦୟା ମୋ ଉପରେ ରହିଥାଉ । ମୁଁ ଯେତେବେଳେ ଚାହୁଁଥିବି ଆପଣ ମୋତେ ଡ଼ୋରି ଲଗେଇ ଆଣି ଦେଖା ଦେଉଥିବେ ।

‘ଜୀବଗଲା ବେଳେ ତୋ ନାମ କାଳିଆ ତୁଣ୍ଡରେ ଥିବଟି ମୋର
ମୋ ନେତ୍ର ଦେଖୁଥିବ ତୋ ଚକାଆଖି ଜୀବନଟି ଯିବ ମୋର ।
ଏ ପିଣ୍ଡରୁ ଯିବ ତୋ ପାଶେ ରହିବ, ଏତେ ଭାଗ୍ୟ ଦବୁ ମୋତେ
ଏତିକି କରୁଣା କରିବୁ କାଳିଆ ମୋ ଋଣ ରହିଲା ତୋତେ ।।’

ମାର୍ଫତ : ଦେବୀପ୍ରସାଦ ଦାସ
‘ଦାସ ଭିଲ୍ଲା’
ଯୋବ୍ରା, ମଝି ସାହି
କଟକ - ୭୫୩୦୦୩
ଭ୍ରାମ୍ୟଭାଷ : ୯୪୩୭୪୯୬୯୨୯



# କିଞ୍ଚିତ୍ ଉପଲବ୍ଧି

## ଡ. ପ୍ରେମଲତା ଦେବୀ

ଶ୍ରୀଜଗନ୍ନାଥ ପରମ ବିସ୍ମୟ । କିଛି ଦୃଶ୍ୟ କିଛି ଅଦୃଶ୍ୟ, କିଛି ବ୍ୟକ୍ତ କିଛି ଅବ୍ୟକ୍ତର ଅପୂର୍ବ ସମାହାର ଶ୍ରୀଜଗନ୍ନାଥ, ନିଜକୁ ନିଜେ ଗଢ଼ନ୍ତି, ନିଜକୁ ପାତାଳି କରାଇ ପୁଣି ନୂତନ ବିଗ୍ରହ ପରିଗ୍ରହ ଧାରଣ କରି ଭକ୍ତଙ୍କୁ ଦର୍ଶନ ଦିଅନ୍ତି । ସେ ଦେବତା, ବିଶ୍ୱାସର, ଭକ୍ତିର, ଭାବର ଏବଂ ଆବେଗର ଠାକୁର । ଏମିତି ଠାକୁର କେଉଁଠାରେ ଦେଖିବାକୁ ମିଳନ୍ତି ନାହିଁ, ଯାହା ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ଧାମରେ ଦୃଶ୍ୟ ହୁଏ । ରତ୍ନବେଦୀ, ରତ୍ନ ସିଂହାସନ ଓ ମହାଶ୍ମଶାନ ଉଭୟେ ଏକା ପାଖରେ ରହିଛନ୍ତି । ମର୍ତ୍ତ୍ୟର ଅମରାବତୀ କୋଇଲି ବୈକୁଣ୍ଠ ଯାହା ପୁଣି ସ୍ୱର୍ଗଲୋକର ଅବଧାରଣା ଜନ୍ମାଇଥାଏ । କାନ ନାହିଁ ଶୁଣିପାରନ୍ତି, ପାଦ ନାହିଁ ଦଉଡ଼ି ପାରନ୍ତି ଆଉ ହାତ ନାହିଁ ଅବଶ୍ୟକ ପଡ଼ିଲେ ଭକ୍ତକୁ ବିପୁଳ ଭୁଜ ପ୍ରସାରି କୋଳେଇ ନେଇଥା'ନ୍ତି । ଧନ୍ୟ ସେ ଦେବତା, ଧନ୍ୟ ତାଙ୍କ ଲୀଳା, ତାଙ୍କ କୃପା ଯିଏ ଉପଲବ୍ଧି କରିଛି ସେ ମଧ ଧନ୍ୟ ।

ସେ ମାଗିଲେ ଦିଅନ୍ତି ନାହିଁ, ମାତ୍ର ତାଙ୍କ କୃପାଲାଭ ହେଲେ ସବୁକିଛି ସମସ୍ୟା ଅକ୍ଳେଶରେ ଦୂରୀଭୂତ ହୋଇଯାଇଥାଏ । ପ୍ରତ୍ୟେକଙ୍କ ଜୀବନରେ ଏମିତି କେତେ ଅନୁଭୂତି ଥିବ, ମୋ ଜୀବନରେ ମଧ । ବହୁବାର ବହୁତ ଛୋଟ ବଡ଼ ସମସ୍ୟାରୁ ମୁଁ ଉଦ୍ଧାର ପାଇଯାଇଛି, ପ୍ରଭୁଙ୍କ ଅହେତୁକ କୃପା ହେତୁ ଏମିତିରେ ସମସ୍ତେ ପୁରୀ ଯାଇଛନ୍ତି, ମୁଁ ବି ଯାଏ । ତଥାପି ତାଙ୍କ ଡୋରି ନ ଲାଗିଲେ ଚେଷ୍ଟା କରିବି ଯାଇ ହୁଏ ନାହିଁ । ଏବେ କିଛି ବର୍ଷ ହେବ ଯାତ୍ରୀମାନଙ୍କୁ ଦର୍ଶନ କରାଇ ଦେଉଥିବା ସୁଦର୍ଶନ ଜେନାଙ୍କ ସହ ଆମର ପାରିବାରିକ ସଂପର୍କରୁ ଚିହ୍ନା ପରିଚୟ ଅଛି । ପୁରୀ ଯିବା ପୂର୍ବରୁ ଆମେ ତାଙ୍କୁ ଫୋନ ଯୋଗେ ଜଣାଇ ଦେଲେ ସେ ଆଗରୁ ଟିକେଟ କରି ରଖିଥା'ନ୍ତି । ଭଲରେ ଭଲରେ ଦର୍ଶନ, ଗର୍ଭଗୃହ ମଧକୁ ନେଇ କରାଇ ଦେଇଥା'ନ୍ତି । ପ୍ରାୟ ବର୍ଷେ ପୂର୍ବରୁ ମୋର ଜଗନ୍ନାଥଙ୍କୁ ନେଇ ଲେଖିଥିବା ପୁସ୍ତକଟିଏ ପ୍ରକାଶ ପାଇଥିଲା । ସେ ବହିର ଉନ୍ମୋଚନ ପାଇଁ ଗୋଟିଏ ସାରସ୍ୱତ ସଂସ୍ଥା ସହ ମୋର ପ୍ରକାଶକ ଯୋଗାଯୋଗ କରିଥିଲେ । ଉନ୍ମୋଚନ ଦିନ ଧାର୍ଯ୍ୟ ହୋଇଗଲା । ମନରେ ଭାବିଲି ଯଦି ଉନ୍ମୋଚନ ପୂର୍ବରୁ ମୁଁ ଜଗନ୍ନାଥଙ୍କୁ ଛୁଆଁଇ ଆଣନ୍ତି, ତେବେ ଭଲ ହୁଅନ୍ତା । ପାଖେଇ ଆସୁଥାଏ ସେଦିନ, ହେଲେ ପୁରୀ ଯିବା ପାଇଁ କୌଣସି ସୁଯୋଗ ଜୁଟୁ ନଥାଏ । ମୁଁ ଏକୁଟିଆ ମୋ ଗୋଡ଼ ଯୋଗୁଁ ଯାଇପାରେ ନାହିଁ । ଘରୁ କିଏ ଗଲେ ମୁଁ ତାଙ୍କ ସଙ୍ଗରେ ଯାଏ । ଆଉ ମାତ୍ର ଦି' ତିନି ଦିନ ଅଛି, କେମିତି ଯିବି ? ଉନ୍ମୋଚନ ଶନିବାର । ପ୍ରଭୁଙ୍କୁ

ଡାକିଲି, କେମିତି କ'ଣ କରିବି ପ୍ରଭୁ ! ମୋ ଗୋଡ଼ ଭଲ ଥିଲେ, କାହା ସଙ୍ଗେ ହେଲେ ପଳାଇ ଯାଆନ୍ତି । ଘରେ କେଉଁ ନାତିର ପରୀକ୍ଷା ତ ଆଉ କାହାର କ'ଣ ଅସୁବିଧା । ହଠାତ୍ ଗୁରୁବାର ଦିନ ପୁଅ ଗାଡ଼ିଟେ ନେଇ ଆସିଲା, କହିଲା, ମା' ମୁଁ ପୁରୀ ଯିବି ପରା, ଆମର ଗାଡ଼ି ଯାଉଛି, ଶୀଘ୍ର ବାହାର, ମୁଁ ପୁଣି ଫେରିଆସିବି । ତା'ର କିଏ ସବୁ ଅଫିସର ଯାଉଥିଲେ । କିଛି ନ ଭାବି ସଙ୍ଗେ ସଙ୍ଗେ ଲୁଗା ବଦଳାଇ ବହି ଦି'ଟା ବ୍ୟାଗ୍ ଭିତରେ ପୂରାଇ ତା' ସାଙ୍ଗରେ ବାହାରିପଡ଼ିଲି । ପୁଅ ସୁଦର୍ଶନ ବାବୁଙ୍କୁ ଖବର ଦେଇ ଦେଇଥିଲା । ସେ ବିମଳାଙ୍କ ମନ୍ଦିର ପାଖରେ ଅପେକ୍ଷା କରିଥିଲେ । ତିନିଟା ବେଳେ ସେ ଦର୍ଶନ ଥିଲା । ପହଞ୍ଚିବାରେ ବିଳମ୍ବ ଯୋଗୁଁ ଅପେକ୍ଷା କରିବାକୁ ପଡ଼ିଲା । ପାଞ୍ଚଟା ପରେ ଗୋଟାଏ ଦର୍ଶନ ଅଛି ବୋଲି ସୁଦର୍ଶନ ବାବୁ କହିଲେ । ବହୁତ ଭିଡ଼ ହୋଇଥାଏ । ତଥାପି ଲାଇନ୍‌ରେ ଯାଇ ରତ୍ନ ସିଂହାସନ ପାଖରେ ପହଞ୍ଚି ଶ୍ରୀଜୀଉଙ୍କ ରତ୍ନ ସିଂହାସନରେ ମୁଣ୍ଡିଆ ମାରିଲି । ପଛରୁ ଭିଡ଼ ବଢୁଥାଏ । ବହିଟା ବ୍ୟାଗ୍ ଭିତରେ ରହିଛି । ବ୍ୟାଗ୍‌ଟା ଖୋଲି ହେଉନାହିଁ । ପଛକୁ ଟିକିଏ ଫେରି ବହିଟା ବାହାର କରି ପୁଣି ରତ୍ନ ସିଂହାସନ ପାଖକୁ ଯାଇ ଜଣେ ସେବକଙ୍କ ହାତକୁ ବଢ଼ାଇ ଦେଲି । ସେ ନେଇଗଲେ । ଗର୍ଭଗୃହରେ ସୋରିଷ ପକାଇବାକୁ ଜାଗା ନଥାଏ । ଫେରି ଆସିବା ବେଳକୁ ଯେତେ ଜୋର୍‌ରେ କହିଲି ସେ ସେବକ ଆଉ ଶୁଣିପାରିଲେ ନାହିଁ । ଆଉ ଜଣେ ସେବକ କହିଲେ ଥାଉ ବହିଟା, ସେ ଏଇଠି ରଖିଛନ୍ତି ଉପାୟ ନ ପାଇ ଆମେ ଫେରି ଆସିଲୁ । ଦର୍ଶନ କଲି, ଆଉ ବହିଟିଏ ଭେଟିଦେଲି, ତାଙ୍କରି ପାଇଁ ତ ଲେଖିଛି, ଭାବି ମନକୁ ସାନ୍ତ୍ୱନା ଦେଲି । ଘରକୁ ଫେରିଲୁ । ଶନିବାର ଦିନ ବହି ଲୋକାର୍ପିତ ହେଲା । ଖୁବ୍ ଭଲ ଭାବରେ ସବୁ ହୋଇପାରିଲା । ମନେ ମନେ ତାଙ୍କୁ ହିଁ ଚିନ୍ତା କଲି, ପ୍ରଭୁ ! ସବୁ ତୁମର ଇଚ୍ଛା, ଆମେ ନିମିତ୍ତ ମାତ୍ର ।

ଆମ ଘରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରାଙ୍କ କାଷ୍ଠ ମୂର୍ତ୍ତି ରଖି ମୁଁ ପୂଜା କରେ, ସିଂହାସନ ତଳକୁ ଗୋଟିଏ ଖଟୁଲିରେ ଶାଳଗ୍ରାମଙ୍କୁ ମଧ୍ୟ ରଖିଛି । ଶାଶୁଙ୍କ ଅମଳରୁ ଶାଳଗ୍ରାମଙ୍କୁ କ୍ଷୀରି ପୂଜା ହୁଏ, ମଧ୍ୟାହ୍ନ ସମୟରେ । ଶାଶୁ ଗଲା ପରେ ମୁଁ ଆଣି ପୂଜା ଦିଏ । ଜଣେ ବ୍ରାହ୍ମଣ ଆସି ସକାଳେ ଠାକୁର ପୂଜା କରି କ୍ଷୀରି କରି ଦେଇଯା'ନ୍ତି । ଦ୍ୱିପ୍ରହରେ ସେ ଅନ୍ୟାନ୍ୟ ମନ୍ଦିର ପୂଜା କରୁଥିବାରୁ କ୍ଷୀରି ଭୋଗ ଦେବାପାଇଁ ଆସିପାରନ୍ତି ନାହିଁ । ତେଣୁ ଦ୍ୱିପ୍ରହର ଭୋଗ କାମ ମୋର । ସବୁଦିନେ ଭୋଗ ଥୋଇ ଦିଏ, ପାଣି ଛଡ଼େଇ କାଢ଼ି ଆଣି ପହଡ଼ ପକାଇଦିଏ । କ୍ଷୀରିରେ ସେ ବ୍ରାହ୍ମଣ ନନା ବହୁତ ଚିନି ପକାଉଥିବାରୁ, ସେ ଭୋଗ ବି ମୁଁ ପ୍ରାୟ ପାଇପାରେ ନାହିଁ । ଭୋଗକୁ ପ୍ରତିଦିନ ପାଣିରେ ଭସାଇ ଦିଏ । ବ୍ରାହ୍ମଣ କହିଲେ, ଭୋଗ କରି ପକାଇ ଦେବା ଭଲ

ନୁହେଁ । ମୁଁ କହିଥିଲି, ଆପଣ ତ ଏତେ ଚିନି ପକାଉଛନ୍ତି, ମୋର ତ ସିଭିଅର ଡାଇବେଟିସ୍, କେମିତି କ'ଣ କରିବି ଯେ । ଦିନେ ଭାରି ବ୍ୟସ୍ତ ଲାଗିଲା । ଅଳ୍ପଦିନ ପୂର୍ବର କଥା । ମନେ ମନେ କହିଲି, ପ୍ରଭୁ ! ତୁମେ ଯଦି ଟିକିଏ ବି ନ ଖାଇବ, ସେମିତି ତୁଳସୀ ପତ୍ର ପଡ଼ି ଫିଙ୍ଗା ହେଉଛି, ମୁଁ ଟିକେ ଖାଇ ଦେଖିବି । ଆଜିକାଲିକା ପିଲା ନାତି ନାତୁଣୀ ସେମାନେ ଫାଷ୍ଟ-ଫୁଡ୍ ପ୍ରିୟ, ଭୋଗ ପାଇବାକୁ କହିଲେ ନାକ ଟେକୁଛନ୍ତି । କ'ଣ ଆଉ କରିବି ? ଭୋଗ ତ କରିବାକୁ ହେବ । ସେଦିନ ମନକୁ ମନ ଏମିତି କହି ଭୋଗ କରି ସାରି ପହଡ଼ ପକାଇ ଦେଇ ଆସିଲି । ଭୋଗ ସେମିତି ତଳକୁ କାଢ଼ି ଦେଇଥିଲି ।

ସବୁ କାମ ସାରି କ'ଣ ଦରକାର ପଡ଼ିବାରୁ ଠାକୁର ଘର ଖୋଲିଲି । ଭୋଗ ପଥୁରିଟା ଖାଲି ପଡ଼ିଛି । ପଥୁରି କଡ଼ରେ ଟିକେ ଟିକେ ଯାହା ଚାଉଳ ଦାନା କ୍ଷୀର ଲାଗିଛି । ଭାବିଲି ବିଲେଇ କି କିଏ ଖାଇଥିବ । ନା' ତ ଝରକା ବନ୍ଦ ଅଛି । ଯାହାବି ହେଉ କେହି ତ ଭୋଗ ଖାଇ ଦେଇଛି । ସାକ୍ଷାତ୍ ବିଷ୍ଣୁ ପ୍ରତିମା ସେ । ମଣିଷକୁ ଦୁଃଖ କହିଲେ ବଢ଼ିଯାଏ, ମାତ୍ର ତାଙ୍କ ପାଖରେ ବସି ଦି'ଅସରା ଲୁହ ନିଗାଡ଼ି ଦେଲେ ସାନ୍ତ୍ୱନା ମିଳେ । କିଏ କହେ ସେ ଶୁଣନ୍ତିନି, ସବୁରି ମୂଳରେ ବିଶ୍ୱାସଟିଏ ଲୋଡ଼ା । ବିଶ୍ୱାସରେ ବଶ ସେ ଠାକୁର । କେବଳ ଅକପଟ, ନିର୍ମଳ, ଶୁଦ୍ଧ ଭାବାବେଗଟିଏ ହିଁ ଲୋଡ଼ା । ତାଙ୍କ ବ୍ୟତୀତ କାହାକୁ କହିହେବ, ଯିଏ ସାମାନ୍ୟ ତୁଳସୀ ପତ୍ରଟିଏ, କି ଗଣ୍ଡୁଷ ମାତ୍ର ଜଳରେ ଭକ୍ତ ପାଖରେ ନିଜକୁ ବିକି ଦେଇଥାଆନ୍ତି । ସେଥିପାଇଁ ତାଙ୍କରି ଉଦ୍ଦେଶ୍ୟରେ ତ କୁହାଯାଇଛି -

'ତୁଳସୀ-ଦଳ-ମାତ୍ରେଣ ଜଳସ୍ୟ ଚଳୁକେନ ବା
ବିକ୍ରୀଣୀତେ ସ୍ୱମାତ୍ମାନଂ ଭକ୍ତେଭ୍ୟୋ ଭକ୍ତ ବତ୍ସଳଃ ।'


ଅବସରପ୍ରାପ୍ତ ପ୍ରଧାପିକା
ପ୍ଲଟ୍ ନଂ - ୨୮୩୯
ଶାନ୍ତି ନଗର, ଝାରପଡ଼ା
ଭୁବନେଶ୍ୱର - ୭୫୧୦୦୬
ଭ୍ରାମ୍ୟଭାଷ ୯୮୬୧୦୧୦୮୨୬




# ଅନୁଭବର ଝଲକ

## ଡା. ସନ୍ଧ୍ୟାରାଣୀ ଶତପଥୀ

ଏକ ସୂକ୍ଷ୍ମାତିସୂକ୍ଷ୍ମ ଅନୁଭବର ଝଲକ ନେଇ ମନ ମୁକୁରରେ ପ୍ରତିଭାତ ହେଲା ଦୟଣା-ଅନେକ ଜଗନ୍ନାଥ ପ୍ରେମୀଙ୍କ ପରି ମୁଁ ମଧ୍ୟ ନିହାତି ଅଜ୍ଞ, ଅନେକ ତତ୍ତ୍ୱ, ଜ୍ଞାନ ଓ ସାଧାରଣ ବୁଦ୍ଧିରେ । ଆଜି ପର୍ଯ୍ୟନ୍ତ ପ୍ରଭୁଙ୍କର ପ୍ରିୟ ଦୟଣାକୁ ମୁଁ ଗ୍ରହଣ କରିନେଇଥିଲି ମରୁଆ ବା କର୍ପୂର କାନ୍ତି ବୋଲି ଅତି ସହଜରେ । ପ୍ରତି ମୁହୂର୍ତ୍ତରେ ଶ୍ରୀଜଗନ୍ନାଥଙ୍କୁ ମୋ ଠାକୁର କହିବାର ଗର୍ବକୁ ଆଧାର କରି ମୋର ଅଜ୍ଞତାର ଧୃଷ୍ଟତାକୁ ମଧ୍ୟ ଗ୍ରହଣ କରିନିଏ ଅତି ମାମୁଲି ଢଙ୍ଗରେ ।

କିନ୍ତୁ ଦୟଣା, ସେ କେମିତି କାହିଁକି ଓ କେଉଁ ମୁହୂର୍ତ୍ତରେ ମୋ ମନ ଭିତରେ ଧସେଇ ହୋଇ ପଶିଗଲା ସେକଥା ଦିନ, ବାର, ତାରିଖ ନେଇ କହିପାରୁନି ।

ହେଲେ, ମନର ଅଦମ୍ୟ ଇଚ୍ଛା ଆଉ ଅନ୍ୱେଷା । ନିପଟ ଖରାବେଳଟାରେ ଯାଉଥାଉ ପୁରୀ ଜଗନ୍ନାଥଙ୍କ ଦର୍ଶନ ପାଇଁ । ଦର୍ଶନ ସାରି ଫେରି ଆସିବାକୁ ପଡ଼ିବ । ବାଇଶି ପାହାଚରେ ତୁଳସୀ ମାଳା ବିକ୍ରି ପାଖରେ ନିଠେଇ ଅନେଇ ଦେଖିଲି, ଦୟଣା ଥିବ ହୁଏତ । ନାଁ ହେଲାନି । ଆଗରୁ ତ ଅନେକ ଥର ଦେଖିଛି କେବଳ ତୁଳସୀର ମାଳା ଥାଏ ପସରା ଭିତରେ । ଭିଡ଼ ଠେଲି ଗଲୁ ମନ୍ଦିର ଭିତରକୁ । ଚତୁର୍ଦ୍ଧା ମୂରତିଙ୍କର ସାହାଣମେଲା ଦର୍ଶନ । ଅନ୍ତରର କଥା ତ ନିଜେ ବୁଝନ୍ତି ପ୍ରଭୁ ଅନ୍ତର୍ଯ୍ୟାମୀ, ନିଜେ ହିଁ ବରଷି ଯାଆନ୍ତି କୃପା କରୁଣାର ବାରି । ସେତକ ପାଥେୟ କରି ଫେରିଲୁ ବଡ଼ ଠାକୁରଙ୍କ ପାଖରୁ ଲକ୍ଷ୍ମୀ ଠାକୁରାଣୀଙ୍କ ଦର୍ଶନ ପାଇଁ । ବେଢ଼ା ଭିତରର ବଟ ଗଣେଶ, ପଞ୍ଚ ଲିଙ୍ଗେଶ୍ୱର, ମା' ମଙ୍ଗଳା, ପତିତପାବନ ବାନା ଦର୍ଶନ ପରେ ଐଶାନେଶ୍ୱରଙ୍କୁ ମୁଣ୍ଡିଆ ମାରି ଆମେ ଫେରିବା କଥା । ଜଗନ୍ନାଥଙ୍କୁ ଦୀପ ଲଗେଇବା ଜାଗାରେ ଦୀପ ବିକାଳୀମାନଙ୍କ ଦୋକାନରେ ଝୁଲୁଥାଏ ଠାକୁରଙ୍କ ଛଡ଼ା ଫୁଲରେ ଗୁନ୍ଥା ନାକୁଆସି । ନିରେଖି କରି ଅନେଇଲି, ଦୟଣା କେମିତି, ଦେଖିପାରିବି କାଳେ । ପଚାରିଲି, ଦୟଣାରୁ ସାମାନ୍ୟ ଟିକେ ଦେବେକି ବୋଲି । ଆଗରୁ ଅନେକ ବର୍ଷ ତଳେ ଥରେ ମୋ ପାଇଁ ପ୍ରଭୁ ବରାଦ କରିଥିଲେ ତାଙ୍କ ଛଡ଼ା ଫୁଲର ନାକୁଆସି । ହେଲେ ପ୍ରଭୁଙ୍କ ଦୟଣାକୁ ଖୋଜିବାର ବା ଆଘ୍ରାଣ କରିବାର ଉତ୍କଣ୍ଠା ନଥିଲା ସେଦିନ । ହୃଦୟରେ ଚାପି ଧରି ସାଙ୍ଗରେ ନେଇ ଫେରିଥିଲି ସେଦିନ । ଅନେକ ଦିନ ଧରି ଟଙ୍ଗେଇ ରଖିଥିଲି ଆଖି ସାମ୍ନାରେ । ଏଥର ନଖରେ ଛିଣ୍ଡେଇଲା ପରି ବକଟେ ଆସିଥିଲା ସେ ମହାଶୟଙ୍କ ଦୟାରୁ ଠାକୁରଙ୍କ ନାକୁଆସିରୁ ଅନେକ କୁଣ୍ଠାବୋଧ ସହ । ରୁମାଲରେ ଗଣ୍ଠି ପକେଇ

ବାନ୍ଧି ଆଣିଥିଲି ସାଙ୍ଗରେ । ମନରେ କିଏ ଯେମିତି ଭରି ଦେଇଥାଏ ତା'ର ମହକ, ଆଖିରେ ନାଚୁଥାଏ ତା'ର ସଦ୍ୟ ସତେଜ ରୂପକାନ୍ତି । ପୁଣି ଫେରିଲି, ମୋ ନିଜ ରାଜ୍ୟ ଭିତରକୁ ସେଇ ଅତି ପ୍ରିୟ ଦୟଣା ।

ଥରକୁ ଥର ବାରମ୍ବାର ପଢ଼ିଥିଲି ଲେଖକ ଅସିତ ମହାନ୍ତିଙ୍କର 'ତୁମ୍ଭ ଶ୍ରୀଭୁଜେ ଦୟଣା କେରି କେରି' ଉପରେ ଆଧାରିତ ପ୍ରବନ୍ଧଟିକୁ । ମନେ ମନେ ଗୁଣ ଗୁଣଉଥିଲି ସାଲବେଗଙ୍କ ସେଇ ପ୍ରାର୍ଥନା ଦି'ପଦକୁ ।

ପୁରୀରୁ ଫେରିବା ପରଦିନ ଯାଇଥାଏ ଦିବ୍ୟପ୍ରଭା ଆପାର୍ଟମେଣ୍ଟକୁ । ମୋର ଜଣେ ଆତ୍ମୀୟାଙ୍କ ଘରକୁ । ମନକୁ ଆସିଲା ଦୟଣା । ପଚାରିଲି ତାଙ୍କୁ ଦୟଣା ବିଷୟରେ । ସାଙ୍ଗେ ସାଙ୍ଗେ ଝରକା ସେପଟ ଛୋଟ କୁଣ୍ଡରେ ବଞ୍ଚେଇ ରଖିଥିବା ଗଛରୁ ପତ୍ର କିଛି ତୋଳି ଆଣି ବଢ଼େଇ ଦେଲେ ମୋତେ ।

ସେଇ ସୁବାସ, ସେଇ ରଙ୍ଗ, ସେଇ ରୂପ । ଏଇତ ଦୟଣା । ସାଙ୍ଗରେ ଆଣି ଘରେ ଠାକୁରଙ୍କ ପାଦତଳେ ରଖିଲି । ସେଇତକ ପୂଜା ନୈବେଦ୍ୟ ମୋର । ତା' ପର କଥା, ଆମେ ବାହାରିବୁ ଶ୍ରୀଲଙ୍କା ଆଠଦିନିଆ ଟ୍ରିପ୍‌ରେ । ପୂଜା ସ୍ଥାନରୁ ଉଠି ଆସିଲେ ପ୍ରଭୁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କର ଛୋଟ ଦୁଇ ଇଞ୍ଚିଆ ପ୍ଲାଷ୍ଟିକ ଫଟୋ ଫ୍ରେମ୍‌ଟି । ଯତ୍ନରେ ଆଡ଼େଇ ଅଲଗା କଲି ଶୁଖି ଆସିଥିବା ଦୟଣା କେରିକୁ ପ୍ରଭୁଙ୍କ ଶ୍ରୀଅଙ୍ଗରୁ । ପ୍ରଭୁ ରହିଲେ ସଫା ଛୋଟ ରୁମାଲ ଭିତରେ ଗୁଡ଼ାଗୁଡ଼ି ହୋଇ ମୋରି କାନ୍ଧରେ ଭ୍ୟାନିଟି ବ୍ୟାଗ୍ ଭିତରେ । ଅନେକ ଆପଦ ବିପଦରେ ସାହା ମୋରି ପ୍ରଭୁ ସେଇ ଢ଼ଙ୍ଗରେ ଘୋଷଡ଼ା ହୋଇ ଚାଲିଲେ ମୋରି ସାଙ୍ଗରେ । ଉଡ଼ାଜାହାଜରୁ ବସ୍ । ବସ୍‌ରୁ ହୋଟେଲ । ଏମିତି ଏମିତି ହୋଇ ଫେରିବା ଦିନ ପର୍ଯ୍ୟନ୍ତ ।

ସେଦିନ ଆମେ ଥାଉ ନିଉଓ୍ୱାରା ଏଲିଆ ହୋଟେଲରେ । ଭୋରରୁ ନିଦ ଭାଙ୍ଗିଲା । ନିତ୍ୟକର୍ମ ସାରି ବାହାରିବାକୁ ପଡ଼ିବ । ହୋଟେଲ ରୁମ୍ ଭିତରୁ ବଡ଼ କାଚ ଝରକାବାଟେ ଆଖିରେ ପଡୁଥାଏ ପ୍ରକୃତିର ବିଚିତ୍ର ରୂପ । ସୁଉଚ୍ଚ ପର୍ବତ ଶିଖର ପର୍ଯ୍ୟନ୍ତ ଲମ୍ବି ଯାଇଥାଏ ବିଚିତ୍ରବର୍ଣ୍ଣା ଛୋଟ ବଡ଼ ସାହେବୀ ଢ଼ଙ୍ଗର ବଙ୍ଗଳା ସବୁ । ସାମ୍‌ନା ରାସ୍ତା, ବିଶେଷ ଓସାରିଆ ନ ଥିଲେ ବି ଥାଏ ଅସମ୍ଭବ ଭାବରେ ପରିଷ୍କାର ଓ  ନିଖୁଣ ଏବଂ ମସୃଣ । ଧୂଳି ମଳିର ଚିହ୍ନବର୍ଣ୍ଣ ବି ନଥାଏ । ବୁଝିଥିଲୁ, ଗତ ରାତିରୁ ସଫେଇ କାମ ଚାଲେ । ସଫା ହୁଏ ଏଠିକାର ରାସ୍ତାଘାଟ, ସୂର୍ଯ୍ୟୋଦୟରୁ ବହୁ ପୂର୍ବରୁ । ଏକ କ୍ଲିନ୍ କଣ୍ଟ୍ରିର ଉଦାହରଣ ଶ୍ରୀଲଙ୍କା । ଯା' ଆଗରୁ ଏମିତି ମନକୁ ଛୁଇଁ ସାରିଥିଲା ସାଉଥ୍ ଆଫ୍ରିକାର

ରାସ୍ତାଘାଟ । ବ୍ରିଟିଶ ଅମଳର ଘରଦ୍ୱାର ସୁଦୃଶ୍ୟ ବଙ୍ଗଳା ଏବଂ ଫୁଲବଗିଚା ପରେ ସୁଦୃଶ୍ୟ ସମୁଦ୍ରତଟ ।

ହୋଟେଲ ସାମନା ବିସ୍ତୀର୍ଣ୍ଣ ଘାସ ପଡ଼ିଆରେ ରେସିଂ ଘୋଡ଼ା ମାନଙ୍କର ପଟୁଆର । ସେ ମଧ ଥିଲା ଚମତ୍କାର । ରାସ୍ତା କଡ଼ରେ ଚାଲିଥାଉ ଆମେ ଦି'ଜଣ । କାକର ଭିଜା ଘାସ ପଡ଼ିଆ ଭିତରେ ପାଦ ଓଦା ଓଦା ଲାଗୁଥାଏ । ମନ ଭିତରର ନିଭୃତ କୋଣରେ ପ୍ରତିବିମ୍ବିତ ହେଉଥାଏ ସେଇ ଦୟଣା ।

ଆରେ ଏ କ'ଣ ? ଏ ତ ଠାକୁରଙ୍କର ପ୍ରିୟ ଦୟଣା ଗଛ ନିଶ୍ଚୟ । ହାତ ବଢ଼େଇ ଛିଣ୍ଡେଇ ଆଣିଥିଲି ଦୁଇ-ଚାରିଟା ଅଗିଲା ଡାଳ । ମକଚି ଧରି ଆଘ୍ରାଣ କରିଥିଲି ସେଇ ସୁବାସକୁ । ଆରେ ମୋ ଜଗନ୍ନାଥଙ୍କ ପାଇଁ ନେବା ଦୟଣାକୁ କ'ଣ ମୁଁ ଶୁଙ୍ଘି ଦେଲି - ମନରେ କ୍ଷୋଭ ଆସିଲା, ଛାଆଁକୁ ଛାଏଁ । ହଉ, ସବୁ ତମରି ଇଚ୍ଛା, ଅନ୍ୟ ଅଗି ଡାଳଟିକୁ ସାଇତି ରଖିଲି ପ୍ରଭୁଙ୍କୁ ସମର୍ପଣ କରି, କାନ୍ଧ ଓହଳା ବ୍ୟାଗ୍ ଭିତରେ ।

ଦେଖିଲ ତ ? ଏଇଠି ଏତେ ଦୂରରେ ପରଦେଶରେ ଜଙ୍ଗଲି ପରିବେଶରେ ପାହାଡ଼ ତଳିରେ ଅଛି ଦୟଣା, ଭରପୁର ଦୟଣାର ସମ୍ଭାର, ସେଇ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ପ୍ରିୟ ଦୟଣା । ସୂର୍ଯ୍ୟୋଦୟର ପ୍ରଥମ ପରଶ ସାଙ୍ଗକୁ ଦୟଣାର ସୁବାସ, ଏସବୁ ଥିଲା ମୋ ପାଇଁ ଏକ ଅନବଦ୍ୟ ଆମୋଦଭରା ଅନନ୍ୟ ଅନୁଭୂତିଟିଏ ।

ସେ'ଠୁ ଫେରିବୁ । ପୁଣି ଥରେ ସଯତ୍ନରେ ସାଇତି ରଖିଲି, ସେଇ ଦୟଣା ପତ୍ରକୁ ପ୍ରଭୁ ଚକାଡ଼ୋଳାଙ୍କ ମୂର୍ତ୍ତି ସହିତେ ମୋରି କାନ୍ଧ ଓହଳା ବ୍ୟାଗ୍ ଭିତରେ ।

ବସ୍‌ଯାତ୍ରା ଆରମ୍ଭ ହେଲା ଆମର । ବାଟସାରା ଜଗନ୍ନାଥଙ୍କର ମହାର୍ଘ ସାନ୍ନିଧ ଓ ସାହଚର୍ଯ୍ୟ ଥିଲା ମୋ ପାଇଁ ଅତି ଅନ୍ତରଙ୍ଗ । ସାଙ୍ଗରେ ଥିଲା ପ୍ରଭୁଙ୍କର ସେଇ ଅତିପ୍ରିୟ ଦୟଣା । ମଝିରେ ମଝିରେ ବ୍ୟାଗ୍‌ର ଜିପ୍ ଖୋଲି ମୁଁ ଦେଖୁଥିଲି ମୋ ପ୍ରିୟ ପ୍ରଭୁଙ୍କୁ । ଆଉ ପୁଲକିତ ମଧ ହେଉଥିଲି ସେଇ ଦୟଣାର ଦିଗ ଚହଟା ସୁବାସ ଓ ମହକରେ ।

ଫେରିବା ଦିନ ମାଡ୍ରାସ ଏୟାରପୋର୍ଟରୁ ସିଧା ହୋଟେଲକୁ । ଆଗରୁ କହି ରଖିଥିଲି ଏ ପ୍ରୋଗ୍ରାମ୍‌ଟା ପହଞ୍ଚିଲା ପରେ ରୁମ୍‌ରେ ଜିନିଷ ରଖିବା ଛଡ଼ା ଆଉ କିଛି ବି କରିବାକୁ ମନ ହେଉ ନଥାଏ । ଲବିରେ ବସି ଅପେକ୍ଷା କଲୁ ଆମ ସାଙ୍ଗରେ ବାହାରିବା ପାଇଁ ପ୍ରସ୍ତୁତ ହେଉଥିବା ମୋ ଭାଉଜ, ଡ. ସାହୁ, ମିସେସ୍ ସାହୁ ଓ ଜୟସିଂହ ଦମ୍ପତିଙ୍କୁ । ଆମେ ୭ ଜଣ ବାହାରିଲୁ ଚେନ୍ନାଇ ଜଗନ୍ନାଥ ମନ୍ଦିର ଅଭିମୁଖେ । ମୋ ପାଖରେ ଥିବା ଜଗନ୍ନାଥଙ୍କ ଫଟୋ ଥାଇ ଏସ୍.ବି.ଆଇ.ର ଛୋଟ ପକେଟ କ୍ୟାଲେଣ୍ଡରଟାକୁ ଦେଇଦେଲି ଡ୍ରାଇଭରଙ୍କ ହାତକୁ । ବାଟ ପଚାରି ପଚାରି ଯିବାକୁ ପଡ଼ିଲା । ପହଞ୍ଚିଗଲୁ ମନ୍ଦିର ସାମ୍ନାରେ । ସେଇ ପୁଲକ, ସେଇ ଅନୁଭୂତି ସେଇ କୃପା ଆଉ କରୁଣାର ହାତ

ବଢ଼େଇଦେଲେ ମୋ ପ୍ରଭୁ ଶ୍ରୀଜଗନ୍ନାଥ । ପୂଜାର୍ଚ୍ଚନା ପରେ ଫେରି ଆସିଲୁ ହୋଟେଲକୁ । ବାଟରେ ମୋ ପାଖରେ ବସିଥିବା ଶ୍ରୀମତୀ ଇନ୍ଦିରାଙ୍କୁ ଖୋଲି ଦେଖାଇଲି ଶ୍ରୀଲଙ୍କାରୁ ଆସିଥିବା ଛୋଟ ଦୟଣା ଗୋଛାଟିକୁ । ପରଦିନ ଫେରିଲୁ ଭୁବନେଶ୍ୱର । ଗାଧୁଆ ପାଧୁଆ ପରେ ଜଗନ୍ନାଥ ଫେରିଲେ ସ୍ୱସ୍ଥାନକୁ । ସେଇଠି ସେମିତି ଅପେକ୍ଷା କରିଥିଲା ପୂର୍ବ ସଂଗୃହୀତ ଶୁଖି ଆସିଥିବା ଦୟଣାପତ୍ର କିଛି ।

ସେଇ ଦୟଣାର ସୁବାସଭରା ଭୂତ ଆଛନ୍ନ କରି ରଖିଥିଲା ମୋ ମନକୁ । ଫେରିଲା ପରେ କେଇଟା ଦିନ ପରେ ଧୂମ୍ ଖରାରେ ଆମେ ଯାଇଥାଉ ଜଗନ୍ନାଥ ଦର୍ଶନ ପାଇଁ । ଦର୍ଶନ ସରିଲା । ମନ କହୁଥିଲା ଫେରନ୍ତା ବାଟରେ ଜଗନ୍ନାଥ ବଲ୍ଲଭ ମଠ କେଉଁଠି ପଚାରି ବୁଝି ସେଇବାଟେ ଫେରିଲେ ଦେଖି ଆସିବି ପ୍ରଭୁଙ୍କର ଦୟଣା ବଗିଚା । ସେ ସୁବିଧା ହେଲାନି, ଭାବୁଥିଲି ଆଗକୁ ଆସିବ ଦୟଣା ଚୈତ୍ର ଶୁକ୍ଳ ଚତୁର୍ଦ୍ଦଶୀ । ଜଗନ୍ନାଥଙ୍କର ଦୟଣାଚୋରି ପର୍ବ ପାଳନ । ମନକୁ ଛୁଇଁଗଲା । ସେ ବି ବିତିଗଲା ।

ଏଥର ଜଗନ୍ନାଥ ଅନୁଭୂତି ଓ ସାନ୍ନିଧ ଥିଲା ଅଲଗା । ପ୍ରଭୁଙ୍କ ଡ଼ୋ଼ରି ନ ଲାଗିଲେ ଦର୍ଶନ ସମ୍ଭବ ନୁହେଁ । ବାହାରି ପଡ଼ିଲୁ ତରବରିଆ ଉପରଓଳି ପୁରୀ ଅଭିମୁଖେ । ଭାବିଲି ଖରା ଗଡ଼େଇ ବାହାରିଲେ ଜଗନ୍ନାଥଙ୍କ ଦର୍ଶନ ସାରି ଫେରି ଆସିବୁ ସଞ୍ଜ ହଉ ହଉ, ସେଇଆ ହେଲା । ଦର୍ଶନ ଦେଲେ ପ୍ରଭୁ । ବେଢ଼ା ବୁଲା ବି ସରିଲା ।

ଠାକୁରଙ୍କ ଫୁଲଗୁନ୍ଥା ସ୍ଥାନରେ ବସି ଫୁଲ ଗୁନ୍ଥୁଥିଲେ ଜଣେ ବୟସ୍କ ଭଦ୍ରଲୋକ । ଟିକେ ଅଟକିଗଲି ସେଠି । ଆଜ୍ଞା, ପ୍ରଭୁଙ୍କ ମାଳା ପାଇଁ ଦୟଣା ରଖିଥିବେ ମୋତେ ଟିକେ ଦେଖାନ୍ତେନି । ସାଙ୍ଗେ ସାଙ୍ଗେ ହାତ ବଢ଼େଇ ଦେଇ ପୂରା ଚାଖଣ୍ଡେ ଲମ୍ବର ଅଗିଲା ଦୟଣା ଯୁବକଟିଏ ଉଠେଇ ଆଣି ମୋତେ ଦେଖେଇଦେଲେ ସେ । ମନ ମୋର ପୂରିଗଲା ।

ପରେ ପରେ ଆନନ୍ଦ ବଜାରରେ ଅବଢ଼ା ଅନ୍ନ, ଡାଲମା, ତରକାରୀର ଦିବ୍ୟ ଭୋଜନ, ସେ ପୁଣି ମନ୍ଦିର ବେଢ଼ାରେ । ସବୁକିଛି ଥିଲା ମୋ ପାଇଁ ଅନନ୍ୟ ଓ ଅନବଦ୍ୟ । ଫେରନ୍ତା ରାସ୍ତାରେ ଗାଡ଼ି ଅଟକି ରହିଲା ବେଶ୍ କିଛି ସମୟ । ଅସହାୟ ଲାଗୁଥିଲା ଆମ ସମସ୍ତଙ୍କୁ । ହେଲେ ସେଇ କୃପା, ସେଇ କରୁଣା ବାଟ ଦେଖେଇଲା । ସବୁ ସୁବିଧା ଯେମିତି ଆମ ପାଇଁ ଖଞ୍ଜି ରଖିଥିଲେ ପ୍ରଭୁ । ତାଙ୍କରି ଅପାର କୃପା । ସବୁ ସୁବିଧାରେ ଘରେ ଆସି ପହଞ୍ଚିଗଲୁ ।

ଏ ଥିଲା ଗତ ଏପ୍ରିଲ ମାସ ୫ ତାରିଖର ଘଟଣା । ସେଦିନ ମୋର ପୂର୍ବ ନିର୍ଦ୍ଧାରିତ ପ୍ରୋଗ୍ରାମ ଅନୁସାରେ ଥିଲା ଶ୍ରୀଜଗନ୍ନାଥ ସଂସ୍କୃତି ପରିଷଦର ମିଟିଂରେ ଯୋ଼ଗ ଦେବାପାଇଁ ବାୟାବାବା ମଠରେ । ଏକୁଟିଆ ଯିବାକୁ ପଡ଼ିବ ମୋତେ । ବାଟଘାଟ ପଚାରି ବୁଝି

ନେଲି ଆଗରୁ । ମନରେ ପଶୁଥାଏ ସାମାନ୍ୟ ଶଙ୍କା । ଏକା ଏକା ଗାଡ଼ି ଚଳେଇ ଯିବି । ଫେରୁ ଫେରୁ ଡ଼େରି ହେବାର ସମ୍ଭାବନା ତ ଅଛି । ମନରେ ରୁଦ୍ଧ ଗୋଟେ ଅଭିମାନ ପାଇଁ ମନ ଭିତରେ ଚାପି ରଖିଥିଲି ସବୁ ପ୍ରକାର ଦ୍ୱନ୍ଦ୍ୱକୁ । ସେଇ ଚକାଆଖି ନିର୍ଦ୍ଦେଶ ଦେଲେ ମୋତେ । ଆମେ ବାହାରିପଡ଼ିଲୁ ପୁରୀ ଜଗନ୍ନାଥ ଦର୍ଶନ ଅଭିପ୍ରାୟରେ । ଗ୍ରହଣ କରି ନେଇଥିଲି ପ୍ରଭୁଙ୍କର ନିର୍ଦ୍ଦେଶକୁ, ଅଦୃଶ୍ୟ ଇଙ୍ଗିତକୁ ।

ଦେଖିଲ ! ଏଠି ଭୁବନେଶ୍ୱରରେ ଜଗନ୍ନାଥ କୃପା ପାଇଁ ମିଟିଙ୍ଗ୍ ସିନା ଆଟେଣ୍ଡ କରିପାରିଲିନି ହେଲେ ଆଗକୁ କେମିତି ଟାଣି ଆଣିଲେ ସ୍ୱୟଂ ନୀଳାଚଳ ଶ୍ରୀକ୍ଷେତ୍ର ନିବାସୀ ବଡ଼ ଠାକୁର ବଡ଼ ଦେଉଳକୁ ତାଙ୍କର ।

ସେଇ ନିର୍ଦ୍ଦେଶ, ସେଇ କୃପା, ସେଇ କରୁଣା ଆମକୁ ସେଦିନ ରକ୍ଷା କବଚ ହୋଇ ଆସନ୍ନ ଗୋଟେ ବିପଦରୁ ରକ୍ଷା କରିପାରିଥିଲା, ଏକଥା ଏବେବି ମୋତେ ବିସ୍ମିତ କରି ରଖିଛି ।

ଠିକ୍ ସେଇ ମୁହୂର୍ତ୍ତ । ଧସେଇ ହୋଇ ପୁଣି ପଶି ଆସିଲେ ପ୍ରଭୁ ଶ୍ରୀଜଗନ୍ନାଥ ମୋ ହୃଦୟର ନିଭୃତ କୋଣକୁ । ମନେ ମନେ ଗୁଣି ହେଉଥିଲି ସେଇ ଦି'ପଦ ଜଗନ୍ନାଥ ବନ୍ଦନା ।

'ଜଗନ୍ନାଥ ଜଗନ୍ନାଥ ଜଗନ୍ନାଥ ତ୍ରାହି ମାଂ
ଜଗନ୍ନାଥ ଜଗନ୍ନାଥ ଜଗନ୍ନାଥ ରକ୍ଷ ମାଂ ।'

ସେଦିନ ସେଇ ବଳିୟାର ଭୁଜଙ୍କ ରକ୍ଷା କବଚ, ଲମ୍ବି ଆସିଥିଲା ଆମ ସମସ୍ତଙ୍କ ପାଇଁ । ଧନ୍ୟ ପ୍ରଭୁ, ଧନ୍ୟ ତୁମ ମହିମା । ତୁମ ମହିମା ଗାନରେ ଭରି ରଖ ଅଧମ ଅକିଞ୍ଚନକୁ । ଏତିକି ମାତ୍ର ପ୍ରାର୍ଥନା ଶ୍ରୀପଦରେ... ।

୪୭, ଜୟଦେବ ନଗର
ନାଗେଶ୍ୱର ଟାଙ୍ଗୀ, ହାଉସିଂ କଲୋନୀ
ଭୁବନେଶ୍ୱର - ୭୫୧୦୦୨
ଭ୍ରାମ୍ୟଭାଷ : ୯୪୩୭୬୩୩୬୭୨



# ଅନୁଭବର ଠାକୁର

## ଜୟଶ୍ରୀ ମହାନ୍ତି

'ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳ-କମଳେ
ରତ୍ନ-ସିଂହାସନସ୍ଥମ୍,
ସର୍ବାଳଙ୍କାରଯୁକ୍ତଂ ନବଘନରୁଚିରଂ
ସଂଯୁତଂ ଚାଗ୍ରଜେନ ।
ଭଦ୍ରାୟା ବାମଭାଗେ ରଥ-ଚରଣଯୁତଂ
ବ୍ରହ୍ମରୁଦ୍ରେନ୍ଦ୍ର-ବନ୍ଦ୍ୟମ୍,
ବେଦାନାଂ ସାରମୀଶଂ ସ୍ୱଜନ-ପରିବୃତଂ
ବ୍ରହ୍ମଦାରୁଂ ଭଜେଽହମ୍ ।'

ଶଙ୍ଖାକୃତି ନୀଳାଦ୍ରି କ୍ଷେତ୍ର ମଧ୍ୟରେ ଶତଦଳ କମଳ ପାଖୁଡ଼ା ପରିବେଷ୍ଟିତ ରତ୍ନ ସିଂହାସନରେ ସର୍ବ ଅଳଙ୍କାରଯୁକ୍ତ ଅଗ୍ରଜ ବଳଭଦ୍ର, ସୁଭଦ୍ରା ବାମଭାଗରେ ସୁଦର୍ଶନ ସଂଯୁକ୍ତ ହୋଇ ସ୍ୱଜନଙ୍କ ଦ୍ୱାରା ପରିବୃତ ବ୍ରହ୍ମା, ରୁଦ୍ର, ଇନ୍ଦ୍ରଙ୍କ ଦ୍ୱାରା ବନ୍ଦିତ, ବେଦମାନଙ୍କ ସାର ସେହି ବ୍ରହ୍ମଦାରୁଙ୍କୁ ସର୍ବଦା ଭଜନ କରୁଅଛି ।

ସେହି ବ୍ରହ୍ମଦାରୁଙ୍କୁ କୋଟି କୋଟି ଜୁହାର ।

ଜଗତର ନାଥ ଜଗନ୍ନାଥ, ଆମର କାଳିଆ ଠାକୁର ଯେମିତି ବିଚିତ୍ର, ସେମିତି ବିସ୍ମୟ, ରହସ୍ୟମୟ ତାଙ୍କର ପ୍ରତିଟି ଲୀଳା । ଆମ ଓଡ଼ିଆଙ୍କର, ସାରା ବିଶ୍ୱ ବ୍ରହ୍ମାଣ୍ଡର ଦେବତା, ଯାହାଙ୍କୁ ପ୍ରତିଟି ମୁହୂର୍ତ୍ତରେ ଅନୁଭବ କରିହୁଏ, ପରିପ୍ରକାଶ କରିହୁଏ ନାହିଁ ।

ବିଶ୍ୱରୂପ ପରଂବ୍ରହ୍ମ, ହେ ଅନନ୍ତ ରୂପଧାରୀ, ଆଦିଦେବ ଅନାଦି ପୁରୁଷ, ଧନ୍ୟ ତୁମର ଇଚ୍ଛା, ବିଚିତ୍ର ଲୀଳା ତୁମର ।

'ହେ ସର୍ବେଶ୍ୱର ସର୍ବମୟ, ସର୍ବଲୋକୈକନାଥ
ତୁମେ ନିରାକାର, ପୁଣି ସାକାର ରୂପ ଧରିଛ
ତୁମେ ଏକ, ପୁଣି ଅନେକ ରୂପ
ତୁମେ ଆଦି, ତୁମେ ପୁଣି ଅନାଦି
ତୁମେ ଗୁଣାତୀତ, ତୁମେ ପୁଣି ଗୁଣମୟ ।'

ତୁମର ନୂତନ ଶରୀର ଧାରଣ, ନୂତନ କଳେବର, ନବକଳେବର ପରଂବ୍ରହ୍ମ, ଦାରୁବ୍ରହ୍ମଙ୍କର । ସେହି ଦାରୁବ୍ରହ୍ମଙ୍କୁ ନେଇ ମୋ ଜୀବନର ଅନୁଭବ । ମୋ ଜୀବନରେ ଏହା ଚତୁର୍ଥ ଥର ପାଇଁ ମହାପ୍ରଭୁଙ୍କ ନବକଳେବର । ଏହାପୂର୍ବରୁ ୧୯୬୯, ୧୯୭୭,

୧୯୯୬ ମସିହାର ନବକଳେବର ଯାଇଛି । ଆଜି ପର୍ଯ୍ୟନ୍ତ ନବକଳେବର କହିଲେ ଏତିକି ଜାଣୁଥିଲୁ ଯୋଡ଼ା ଆଷାଢ଼ ପଡ଼ିଲେ ମହାପ୍ରଭୁଙ୍କର ନବକଳେବର ହୁଏ । ସ୍ନାନ ପୂର୍ଣ୍ଣିମା ଠାରୁ ଦେଢ଼ମାସ ପର୍ଯ୍ୟନ୍ତ ଶ୍ରୀଚତୁର୍ଦ୍ଧା ମୂର୍ତ୍ତିଙ୍କର ଦର୍ଶନ ମିଳେନାହିଁ । ନୂତନ ବିଗ୍ରହ ନିର୍ମାଣ ପାଇଁ ଦଇତାପତିମାନେ ଶ୍ରୀଜଗନ୍ନାଥଙ୍କ ଆଜ୍ଞାମାଳ ନେଇ କାକଟପୁରର ମା' ମଙ୍ଗଳାଙ୍କ ନିକଟକୁ ଯାଆନ୍ତି । ସେଠାରୁ ମା'ଙ୍କର ସ୍ୱପ୍ନାଦେଶ ପାଇ ଦାରୁଛେଦନ କରି ଶ୍ରୀମନ୍ଦିରକୁ ମହାଦାରୁଙ୍କୁ ନେଇ ଫେରନ୍ତି । କିନ୍ତୁ ଏସବୁ କାର୍ଯ୍ୟ ଏତେ ଗୋପନରେ କରାଯାଏ ଯେ ପ୍ରଭୁଙ୍କ ସେବକଙ୍କ ବ୍ୟତୀତ ଲୋକଲୋଚନକୁ ପ୍ରାୟ ଆସେ ନାହିଁ । ନୂତନ ବିଗ୍ରହ ନିର୍ମାଣ ପରେ କୃଷ୍ଣ ଚତୁର୍ଦ୍ଦଶୀ ମଧ୍ୟରାତ୍ରିରେ ବୟୋଜ୍ୟେଷ୍ଠ ଦଇତାପତି ଆଖିରେ ଅନ୍ଧ ପୁଟୁଳି ବାନ୍ଧି, ହାତରେ ପାଟବସ୍ତ୍ର ଗୁଡ଼ାଇ ନୂତନ ବିଗ୍ରହରେ ବ୍ରହ୍ମ ସଂସ୍ଥାପନ କରନ୍ତି । ଏସବୁ କାର୍ଯ୍ୟ ଅତ୍ୟନ୍ତ ଗୁପ୍ତରେ କରାଯାଏ । ସେଥିପାଇଁ ମଧ୍ୟରାତ୍ରିରେ ଶ୍ରୀକ୍ଷେତ୍ରକୁ ସଂପୂର୍ଣ୍ଣ ଅନ୍ଧକାର କରି ଦିଆଯାଏ । ପୁରାତନ ବିଗ୍ରହଙ୍କୁ କୋଇଲି ବୈକୁଣ୍ଠରେ ପାତାଳି କରାଯାଏ । କଥିତ ଅଛି - ପୁରୁଣା ବିଗ୍ରହଙ୍କୁ ପାତାଳି ପାଇଁ ନେବାବେଳେ ଦେବଦେବୀମାନେ ରାସ୍ତା ଅଟକା'ନ୍ତି । କ୍ରନ୍ଦନ କରନ୍ତି । ଭୈରବୀ ଡାକଦିଏ । କିନ୍ତୁ ସବୁକଥା ଲୋକଲୋଚନକୁ ଆସିପାରେ ନାହିଁ । ଏତିକି ଅନୁଭବ ଆସେ, ପୁରୀ ସହର ଯେମିତି ନିଃଶବ୍ଦ, ନିସ୍ତବ୍ଧ ହୋଇଯାଇଛି । ସବୁଆଡ଼େ ଦୁଃଖଦ, ଭୟାତୁର ବାତାବରଣ । ସୂର୍ଯ୍ୟୋଦୟ ପରେ ଦଇତାପତି ମାନେ ଦୁଃଖରେ ମ୍ରିୟମାଣ ହୋଇ ମାର୍କଣ୍ଡ ପୁଷ୍କରିଣୀକୁ ସ୍ନାନ ପାଇଁ ଯାଆନ୍ତି ।

କିନ୍ତୁ ଏ ବର୍ଷର ନବକଳେବରର ପ୍ରତ୍ୟେକଟି ଘଟଣା ଲୋକଲୋଚନରେ ଅଛପା ହୋଇନାହିଁ । ବନଯାଗ ଯାତ୍ରା ପରେ ଶ୍ରୀସୁଦର୍ଶନଙ୍କ ଦାରୁଚୟନ । ଦାରୁ ଦର୍ଶନ ପାଇଁ ପ୍ରବଳ ଜନସମାଗମ । ଶ୍ରୀସୁଦର୍ଶନଙ୍କ ଦାରୁଦର୍ଶନ ପାଇଁ ଇଚ୍ଛା ଯଦିଓ ଥିଲା, ତଥାପି ନିଜର ଇଚ୍ଛାକୁ ପ୍ରକାଶ ନ କରି ଚୁପ୍ ରହିଥିଲି । ତା'ପରେ ପରେ ଶ୍ରୀବଳଭଦ୍ରଙ୍କ ଦାରୁ ଓ ମା' ସୁଭଦ୍ରାଙ୍କ ଦାରୁ ଚୟନ । ଦାରୁ ଦର୍ଶନ ପାଇଁ ଲୋକଙ୍କ ମନରେ ପ୍ରବଳ ଆଗ୍ରହ ଓ ଆବେଗ । ଜନଗହଳି ରଥଯାତ୍ରା ଠାରୁ ବି କମ୍ ନୁହେଁ । ଲୋକମାନେ ରାତ୍ରି ଉଜାଗର ରହି ଧାଡ଼ିରେ ଘଣ୍ଟା ଘଣ୍ଟା ଧରି ଅପେକ୍ଷା କରିଥା'ନ୍ତି ଦାରୁ ଦର୍ଶନ କରିବାପାଇଁ । ସବୁରି ମୁହଁରେ ଦାରୁ ଦର୍ଶନର ଚର୍ଚ୍ଚା । ମନରେ ଅନେକ ଉତ୍କଣ୍ଠା ଥିଲେ ମଧ୍ୟ କାହା ଆଗରେ ମନର କଥା ପ୍ରକାଶ କରିପାରୁ ନଥିଲି । ହୁଏତ ଘର ଲୋକଙ୍କ ଠାରୁ ନାସ୍ତିବଚନ ଶୁଣିଲେ ମନରେ ଅଧିକ ଦୁଃଖ ଆସିବ । ମନ ଭିତରେ ପ୍ରଭୁଙ୍କୁ ଡାକୁଥାଏ, ହେ କରୁଣାମୟ ! ହେ ଅନ୍ତର୍ଯ୍ୟାମୀ ! ତୁ ଯଦି ଚାହିଁବୁ, ତୋରି ଦାରୁଙ୍କୁ ସ୍ପର୍ଶ କରିବାର ସୌଭାଗ୍ୟ ହିଁ ମିଳିବ । ଶ୍ରୀ ସୁଦର୍ଶନ, ଶ୍ରୀ ବଳଭଦ୍ର ଓ ମା' ସୁଭଦ୍ରାଙ୍କ ଦାରୁ ଶ୍ରୀମନ୍ଦିର

ଭିତରେ ପ୍ରବେଶ କରି ସାରିଥାଏ । ଶ୍ରୀଜଗନ୍ନାଥଙ୍କ ଦାରୁ ଆସି ଭୁବନେଶ୍ୱର ଉପକଣ୍ଠ ସାଇ ମନ୍ଦିର ନିକଟରେ ଅବସ୍ଥାନ କରିଥାଆନ୍ତି । ଦର୍ଶନ ପାଇଁ ଲୋକମାନେ ଛୁଟୁଥାଆନ୍ତି । ମୁଁ କିନ୍ତୁ ମନ ଭିତରେ ଦୁଃଖ ଆଉ ଅଭିମାନରେ ଥାଏ । କାଳିଆ ନ ଚାହିଁଲେ ମୁଁ କ'ଣ ଦର୍ଶନ କରିପାରିବି । ଏମିତି ଭାବନା ଭିତରେ ଥାଏ । ପୁରୀରୁ ସାନଭାଇ ଫୋନ କଲା, ନାନୀ, ଶ୍ରୀଜଗନ୍ନାଥଙ୍କ ଦାରୁଦର୍ଶନ କରିବା ପାଇଁ ଯିବ କି ? ମୁଁ ଏମିତି ସୁଯୋଗର ଅପେକ୍ଷାରେ ଥିଲି । କହିଲି, ତୁ ଶୀଘ୍ର ଆସି ପହଞ୍ଚିଲେ ସାଙ୍ଗ ହୋଇ ଯିବା । ଘରେ ସମସ୍ତେ କହିଲେ ଗାଡ଼ି ବହୁତ ଦୂରରେ ରହିବ, ଲମ୍ବା ଧାଡ଼ି ଲାଗିଛି । ଏତେ ଖରାରେ ଏ ଭିଡ଼ ଭିତରେ କେମିତି ଦର୍ଶନ କରିବ ? ତଥାପି କାହାରି କଥା ନ ଶୁଣି ଗାଡ଼ିରେ ବାହାରି ପଡ଼ିଲି । ରାସ୍ତା ମଝିରେ କେହି କେହି ଫୋନରେ କହୁଥା'ନ୍ତି ଖରା ଭୀଷଣକୁ ଭିଡ଼ ପ୍ରବଳ, ଗାଡ଼ି ତିନି କିଲୋମିଟର ଦୂରରେ ରହିବ । ଏମିତି ହଁ ନାହିଁ ଭିତରେ ଗାଡ଼ିରେ ଯାଉ ଯାଉ ଶ୍ରୀଜଗନ୍ନାଥଙ୍କ ଦାରୁ ନିକଟରେ ପହଞ୍ଚିଗଲୁ । ରାସ୍ତାରେ କେହି ବି ଗାଡ଼ି ଅଟକେଇ ନାହାନ୍ତି । ଗାଡ଼ିରୁ ବାହାରିଛୁ ଚିହ୍ନାଜଣା ଦଇତା ସେବକଟିଏ ହାତ ହଲେଇ ଡାକଦେଲା, ସିଧା ଦାରୁ ନିକଟକୁ ଚାଲି ଆସନ୍ତୁ । ଏତେ ସୁବିଧାରେ ଏମିତି ଦର୍ଶନ ପାଇବା ମୋର ବିଶ୍ୱାସ ବାହାରେ । କେବଳ ସେହି କୃପାମୟଙ୍କ କୃପା । ଶ୍ରୀଦାରୁଙ୍କୁ ସ୍ପର୍ଶ କରିବାର ଯେଉଁ ଆନନ୍ଦ, ଯେଉଁ ଅନନ୍ୟ ଅନୁଭୂତି, ଶରୀରରେ ଯେଉଁ ଶିହରଣ, ଅନୁଭବୀ ହିଁ ଜାଣେ । ସେ ଅନୁଭୂତି ଭାଷାରେ ପରିପ୍ରକାଶ କରି ହୁଏନା । ସେ ସ୍ମୃତି, ସେ ଅନୁଭୂତି ଅବିସ୍ମରଣୀୟ । କୃପାମୟ, ତୁମର କୃପା ଅପାର, ପ୍ରଭୁ ତୁମରି କରୁଣା ଅସୀମ । ଜୀବନର ପ୍ରତିଟି ମୁହୂର୍ତ୍ତରେ ଦୁଃଖରେ, ସୁଖରେ ତୁମର ସାନ୍ନିଧ୍ୟ ପାଇଛି ପ୍ରଭୁ । ତୁମ ନିକଟରେ ଏତିକି ନିବେଦନ ହେ ଦୟାମୟ, କରୁଣା ସାଗର, ହୃଦୟର ଠାକୁର, ଜୀବନର ଅନ୍ତିମ ସମୟ ପର୍ଯ୍ୟନ୍ତ ତୁମରି ରୂପଲାବଣ୍ୟ ନୟନରେ ଉଦ୍‌ଭାସିତ ହେଉଥାଉ, ତୁଣ୍ଡରେ ତୁମରି ନାମର ଉଚ୍ଚାରଣ ହେଉଥାଉ । ଶ୍ରୀଜଗନ୍ନାଥ ଜଗତର ମଙ୍ଗଳ କରନ୍ତୁ ।

'ପ୍ରତୀକ୍ଷା'
ଏନ୍ - ୧/୪୭, ଆଇ.ଆର୍.ସି ଭିଲେଜ
ଭୁବନେଶ୍ୱର - ୭୫୧୦୧୫
ଭ୍ରାମ୍ୟଭାଷ : ୯୮୬୧୦୭୯୭୫୮



# ବିଶ୍ୱାସେ ମିଳଇ ହରି

## ସୁଲୋଚନା ମହାପାତ୍ର

ପରଂବ୍ରହ୍ମ, ପରମାତ୍ମା ପ୍ରଭୁ ଶ୍ରୀଜଗନ୍ନାଥ କେବଳ ଅନୁଭବର ଠାକୁର । ଯେପରି ପବନ ଅଦୃଶ୍ୟମାନ ମାତ୍ର ପ୍ରତି ତନ୍ତ୍ରୀରେ ପ୍ରବାହିତ ହୋଇ ଜୀବନୀଶକ୍ତି ପ୍ରଦାନ କରେ, ସେହିପରି ପ୍ରଭୁ ଶ୍ରୀଜଗନ୍ନାଥ, ଅତ୍ର ତତ୍ର ସର୍ବତ୍ର ବିରାଜମାନ ଅଟନ୍ତି । ସେ ଅନ୍ତର୍ଯ୍ୟାମୀ, ସେ ଭାବଗ୍ରାହୀ । ଭାବର ଠାକୁର ସେ ଅଭାବକୁ ଦୂର । ଯେ ତାଙ୍କୁ ହୃଦୟ ଦେଇ ଡାକେ ତା'ର ଗୁହାରି ସେ ଶୁଣନ୍ତି । ତର୍କ ବିତର୍କର ଊର୍ଦ୍ଧ୍ୱରେ ସେ । ଯେ ତାଙ୍କ ମହିମା ଓ ଉପସ୍ଥିତିକୁ ନେଇ ଯୁକ୍ତି ବାଢ଼ନ୍ତି ସେ ସେଠାରୁ ପଳାୟନ କରନ୍ତି ସତ, ମାତ୍ର ବାସ୍ତବ ସତ୍ୟକୁ ଅନୁଭୂତି ମାଧ୍ୟମରେ ପରିପ୍ରକାଶ କରନ୍ତି ।

୨୦୧୫ ମାର୍ଚ୍ଚ ମାସ ୧୮ ତାରିଖ । ପ୍ରଚଣ୍ଡ ରୌଦ୍ରରେ ସାରା ପୁରୀ ସହର ଜଳୁଥିବା ସମୟରେ ସରକାରୀ ବାଳିକା ଉଚ୍ଚ ବିଦ୍ୟାଳୟର ଏକ ପ୍ରକୋଷ୍ଠ ମଧ୍ୟରେ ହାଇସ୍କୁଲ ସାର୍ଟିଫିକେଟ୍ ପରୀକ୍ଷା ଖାତା ମୂଲ୍ୟାୟନ ଚାଲିଥାଏ । ପରୀକ୍ଷା ଖାତା ମୂଲ୍ୟାୟନ ପାଇଁ ବିଭିନ୍ନ ବିଦ୍ୟାଳୟରୁ ଶିକ୍ଷକ ଶିକ୍ଷୟିତ୍ରୀ ସବୁ ଆସିଥା'ନ୍ତି । ତିନି ଦଳ ହୋଇ ଏ-ବି-ସି ସେଟ୍ ପ୍ରଶ୍ନର ଓଡ଼ିଆ ଖାତା ଆମେ ଦେଖୁଥାଉ । ମଧ୍ୟାହ୍ନ ବିରତିରେ ଜଳଖିଆ ଖାଇସାରି ସମସ୍ତେ ବସିଥା'ନ୍ତି । ଜଣେ ଗୁରୁମା ହଠାତ୍ କହିଲେ ଯେ, ମୁଁ ଭୁବନେଶ୍ୱରରୁ ପୁରୀ ସବୁଦିନ ଆସୁଛି ମାତ୍ର କାଳିଆକୁ ଦେଖିବାକୁ ଯାଇପାରୁନାହିଁ, ଆଜି ନିଶ୍ଚୟ ଦେଖିବାକୁ ଯିବି । ସେହି ସମୟରେ ଜଣେ ଶିକ୍ଷକ କହିଲେ, ଗୁରୁମା କାଳିଆର କୃପା ନ ହେଲେ ଦେଖିପାରିବେ ନାହିଁ । ମୁଁ ଆଜି ଯାଇଥିଲି ସକାଳୁ ଶ୍ରୀମନ୍ଦିର, ମାତ୍ର ଦେଖିପାରିଲି ନାହିଁ । ଗୁରୁମା ଜଣକ କହିଲେ ଦେଖାପାଏ ବା ନପାଏ ଫୁଲ ତୁଳସୀ ଟିକେ ପାଇବି ଓ ଫୁଲମାଳ ଓ ଦୀପଦାନ କରି ଫେରିବି । ଆଉ ଜଣେ ଗୁରୁମା ସଙ୍ଗେ ସଙ୍ଗେ କହିଲେ, ଗୁରୁମା ଜଗନ୍ନାଥ ଗୋଲାପ ଫୁଲ ପିନ୍ଧନ୍ତି କି ନାହିଁ ଜାଣିଛନ୍ତି । ମୋ ଶାଶୁ ମନା କରିଛନ୍ତି ଜଗନ୍ନାଥଙ୍କୁ କେବେ ଗୋଲାପ ଫୁଲ ପିନ୍ଧାଇବୁ ନାହିଁ । ସେ ପିନ୍ଧନ୍ତି ନାହିଁ ଗୋଲାପ । ମୁଁ ସେହିଠାରେ ବସି ସମସ୍ତଙ୍କ ଯୁକ୍ତିତର୍କ ଓ ଆଲୋଚନା ଶୁଣୁଥାଏ ଓ ହୃଦୟ ମଧ୍ୟରେ ପ୍ରଭୁଙ୍କ ଗୋଲାପ ପିନ୍ଧା ନାକୁଆସି ଓ ଗେଣ୍ଡୁ ମଧ୍ୟରେ ଲାଲ ଗୋଲାପ ମାଳ କଥା ଭାବୁଥାଏ ।

ହଠାତ୍ ମୋ ପାଟିରୁ ବାହାରି ପଡ଼ିଲା ଗୁରୁମା ମୁଁ ନିଜେ ମନ୍ଦିରକୁ ଗୀତ ଗୋବିନ୍ଦ ଲେଖିବାକୁ ଯାଏ ଓ ଫୁଲ ଗୁନ୍ଥାଘରେ ନିଜେ ଶ୍ରୀମନ୍ଦିର ଉପବନରେ ଗୋଲାପ ଫୁଲ ଗୁନ୍ଥିଛି । ସେ ରସିକିଆ ଠାକୁର । ଗୋଲାପ ଫୁଲ ତାଙ୍କର ପ୍ରିୟ । ସେ ମୋତେ ବିରକ୍ତି

ପ୍ରକାଶ କରି କହିଲେ, ତୁମେ ଚୁପ୍ ହୁଅ ମୁଁ ବଡ଼ । ତୁମଠାରୁ ମୋର ଅନୁଭୂତି ଅଧିକ । ମୁଁ ଯୁକ୍ତି ଶୁଣି ଚୁପ୍ ରହିଲି । ମାତ୍ର ମନ ମଧ୍ୟରେ ମୋର ଆନ୍ଦୋଳନ ଚାଲିଥାଏ ।

ସେହି ତର୍କ ସବୁ ଭାବି ଭାବି ଘରକୁ ଆସିଲି । ସଂଧ୍ୟାବେଳେ ମନ୍ଦିର ଗଲି । ସାହାଣ ମେଲା ଚାଲିଥାଏ । ମୁଁ ସିଧା ପ୍ରଭୁଙ୍କ ସିଂହାସନ ତଳକୁ ଗଲି । ସେ ଚକା ଚକା ଦୁଇ ନୟନ ମଧ୍ୟରେ ନିଜକୁ ହଜାଇ ଦେଇଥାଏ । ଆଖିରୁ ଅଶ୍ରୁଧାର ବହୁଥାଏ । ଜଣେ ପଣ୍ଡା ମୋ ହାତରେ ମୁଠାଏ ଫୁଲ ତୁଳସୀ ଧରାଇ ଦେଇ କହିଲେ ନେ ଫୁଲ, ଯା' ଘରକୁ । ମୁଁ ଫୁଲ ଧରିବାବେଳକୁ ସେଥିରୁ ଗୋଲାପ ଫୁଲର ଭୁରୁଭୁରୁ ବାସ୍ନା ବାହାରି ଆସୁଥାଏ ଓ ଲାଲ ଗୋଲାପର ପାଖୁଡ଼ା ସହ ସେଥିରେ କିଛି ତୁଳସୀ ମଧ୍ୟ ଅଛି । ମୁଁ ମୁଣ୍ଡିଆ ମାରି ଫୁଲ ତୁଳସୀ ଧରି ଘରକୁ ଆସିଲାବେଳକୁ ବାଇଶି ପାହାଚରେ ସକାଳର ଗୋଲାପ ଫୁଲର ଯୁକ୍ତି କଥା ମନେ ପଡ଼ିଲା । ସେତକ ସାଇତି ରଖି ତତ୍ ପରଦିନ ବିଦ୍ୟାଳୟକୁ ନେଇ ଗୋଲାପ ଫୁଲ ପାଖୁଡ଼ା ସମସ୍ତଙ୍କୁ ଦେଖାଇଲି । ସେ ଗୋଲାପ ଫୁଲରୁ ତୁଳସୀ ଓ କର୍ପୂରର ବାସ୍ନା ମଧ୍ୟ ଆସୁଥାଏ । ସମସ୍ତ ଶିକ୍ଷକ-ଶିକ୍ଷୟିତ୍ରୀ ଦେଖି ବହୁତ ଖୁସି ହେଲେ । ସମସ୍ତେ ମଧ୍ୟ ସେଥିରୁ କିଛି କିଛି ତୁଳସୀ ଓ ଫୁଲ ପାଖୁଡ଼ା ନେଲେ । ଯେଉଁ ଗୁରୁମା' ଜଣଙ୍କ ଯୁକ୍ତି କରୁଥିଲେ ଜଗନ୍ନାଥ ଗୋଲାପ ଫୁଲ ପିନ୍ଧନ୍ତିନି ସେ ଏହି ଅମୃତ ଅନୁଭବରେ ନିଜେ ଅନୁଭବ କଲେ ବାସ୍ତବିକ୍ ପ୍ରଭୁ ଜଗନ୍ନାଥ ଗୋଲାପ ପିନ୍ଧନ୍ତି । ସେ କହିଲେ, ସୁଲୋଚନା ମୁଁ ଆଜି ପ୍ରଭୁଙ୍କ ପାଖରେ ହାର୍ ମାନିଛି । ମାନୁଛି ସେ ଅନୁଭବର ଠାକୁର । ସେ ତୋ ହାତରେ ଗୋଲାପ ଫୁଲ ଓ ତୁଳସୀ ପଠାଇ ପ୍ରମାଣିତ କରି ଦେଇଛନ୍ତି ସେ ଗୋଲାପ ପ୍ରିୟ । ମୁଁ ଗୁରୁମା'ଙ୍କ କଥା ଶୁଣି ତାଙ୍କୁ କେବଳ ଗୋଟିଏ ଧାଡ଼ି କହିଥିଲି -

'ବିଶ୍ୱାସେ ମିଳଇ ହରି, ତର୍କେ ବହୁ ଦୂର ।'


ସହକାରୀ ଶିକ୍ଷୟିତ୍ରୀ

କାତ୍ୟାୟନୀ ଉଚ୍ଚ ବିଦ୍ୟାଳୟ

ଚାଳିଶବାଟିଆ, ପୁରୀ

ଭ୍ରାମ୍ୟଭାଷ : ୯୮୫୩୩୩୬୮୧୨




# ମୋ ଅନୁଭୂତିରୁ ପଦେ

## ବାସନ୍ତୀ ଦାସ

ଜୀବନରେ ଅନେକ ଝଡ଼ଝଞ୍ଜା ଦେଇ ଗତିକଲା ବେଳେ କେବେ ମଧ୍ଯ 'କୃଷ୍ଣ'ଙ୍କୁ ମୋ ହୃଦୟରୁ ଦୂର କରିନି । ଯେବେ ଛୋଟ ଥିଲି ବୋଉ ଭାଗବତ ପଢ଼ି କୃଷ୍ଣଙ୍କ କଥା ବୁଝେଇ ଦେଉଥିଲା, ସେତେବେଳେ ମତେ କୃଷ୍ଣ ମୋର ବାଲ୍ୟସାଙ୍ଗ ଭଳି ମନେ ହେଉଥିଲେ । ଯେବେ ଯୌବନରେ ପାଦ ଦେଲି କୃଷ୍ଣ ମୋର ପରମ ପ୍ରେମିକ ପରି ମନେହେଲେ ଏବଂ ଏଇ ଭାବକୁ ମୁଁ ପ୍ରତି ମୁହୂର୍ତ୍ତରେ ଅନୁଭବ କଲି । ତା'ପରେ ମୋର ଧାରଣା ହେଲା କୃଷ୍ଣ ହିଁ ମୋର ସବୁ । ତେଣୁ ମୋର ଆଉ ବିବାହ କରିବା ଅନାବଶ୍ୟକ । କିନ୍ତୁ ଏକ ମଫସଲ ଗାଁରେ ପୁତ୍ର ନଥିବା ଗୋଟିଏ ବାପା ବୋଉଙ୍କର ଦ୍ଵିତୀୟ ଝିଅ ହୋଇଥିବାରୁ ସେମାନେ ଝିଅ ବିଭା କରି ଦାୟିତ୍ଵ ମୁକ୍ତ ହେବାକୁ ଚାହୁଁଥିଲେ । ବାପା ବୋଉଙ୍କୁ ଅଧିକ ଚିନ୍ତାଗ୍ରସ୍ତ ନ କରିବାକୁ ବାହା ହେଲି । ହେଲେ ୩ଟି ପୁଅଙ୍କର ମା' ହେଲା ପରେ ମୋର ଦାମ୍ପତ୍ୟ ଜୀବନରେ ବିଶୃଙ୍ଖଳା ଦେଖାଦେଲା ଅନ୍ୟ ଜଣେ ନାରୀ ପାଇଁ । ତେଣୁ ପୁଅମାନଙ୍କୁ ନେଇ ଏକା ରହିବାକୁ ପସନ୍ଦ କଲି । ନିଜେ ବଞ୍ଚି ସେମାନଙ୍କୁ ବଞ୍ଚେଇବାକୁ ସିଲେଇ ଦୋକାନଟିଏ କରି ଚଳିଲି ।

୧୯୯୪ ମସିହାରୁ ଆଜିଯାଏ ମୁଁ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି । କିନ୍ତୁ ନିଜର କର୍ମ ଆଉ ଭଗବାନଙ୍କ ନିକଟରେ ଶରଣାଗତ ହେତୁ ଅଚାନକ ସବୁଠାରେ ଉଦ୍ଧାର ପାଇଯାଇଛି । ପ୍ରତି ମୁହୂର୍ତ୍ତରେ ଭଗବାନ ଏବେ ମୋର ସଖା ପରି ମୋ ନିକଟରେ ଠିଆ ହୋଇଛନ୍ତି । ଏଇ ଅନୁଭବ ଭାଷାରେ ବର୍ଣ୍ଣନା କରିବା ଯଦିଓ ଅସମ୍ଭବ ତଥାପି ଚେଷ୍ଟା କରୁଛି କିଛି ଲେଖିବାକୁ ।

୨୦୦୪ ମସିହା । ମୋ ବଡ଼ ପୁଅ ଯୁକ୍ତ ୩ ପାସ୍ କଲା । ମୋ ସିଲେଇ ଦୋକାନରୁ ଯାହା ଆୟ ହେଉଥିଲା ଘରଭଡ଼ା ଦେଇ ମା' ପୁଅ କୌଣସି ମତେ ଚଳି ଯାଉଥିଲୁ । ମଝିଆଁ ପୁଅ ଖୋର୍ଦ୍ଧା ପ୍ରାଣନାଥ କଲେଜରେ ଯୁକ୍ତ ୨ କମର୍ସ ପଢୁଥାଏ । ତା'ର ପାଠପଢ଼ା ଖର୍ଚ୍ଚ ତୁଲେଇବାକୁ ତା' ପାଇଁ କିଛି ପିଲା ଟିଉସନ୍ ପାଇଁ ଯୋଗାଡ଼ କରିଦେଇଥାଏ ଏବଂ ଏକ ଖବରକାଗଜ ହକର ପାଖରେ ସେ ସକାଳୁ କିଛି ପେପର ବାଣ୍ଟି ଯାହା ପଇସା ପାଏ ସେଥିରେ ପଢୁଥାଏ । ସାନ ପୁଅ ଦଶମରେ ୭ମ ବାଟାଲିୟନ ସ୍କୁଲରେ ପଢୁଥାଏ । ଏତିକିବେଳେ ଶହୀଦ ନଗରରେ 'ଶିଶୁ କଲମ'ର ସଂପାଦକ ଜନ୍ମେଜୟ ପ୍ରଧାନଙ୍କୁ ପୁଅ ପାଇଁ କିଛି କାମ ଯୋଗାଡ଼ କରିଦେବାକୁ ଅନୁରୋଧ କଲି । ସେ ଗୋଟିଏ କୋରିୟର ସଂସ୍ଥା 'ସ୍କାଇଲାର୍କ'ରେ କାମ ବୁଝିଦେଲେ । ପୁଅ ପଟିଆ ଓ

କିଟ୍‌ରେ ଚିଠି ବାଣ୍ଟିବ ଆଉ ଏକ ହଜାର ଟଙ୍କା ଦରମା ପାଇବ । ଏକ ହଜାର ଟଙ୍କା ମୋ ପାଇଁ ବହୁତ ଥିଲା । ମୁଁ ତାଙ୍କୁ ହଁ କହିଲି ଏବଂ ପୁଅକୁ ପଠାଇଲି । ସେ ସାଇକେଲ ନେଇ ଶହୀଦ ନଗରରୁ କିଟ୍ ଯାଏ । ସେ ଏରିଆର ଚିଠି ବାଣ୍ଟି ସଂଧ୍ୟାରେ ଘରକୁ ଫେରେ । ସକାଳ ବେଳା ବିଜୁ ପଟ୍ଟନାୟକ କଲେଜ ଯାଏ । ବଞ୍ଚିବା ପାଇଁ କଷ୍ଟ ତ କରିବାକୁ ପଡ଼ିବ । କିଛିଦିନ କାମ କଲାପରେ ଥରେ ସଂଧ୍ୟାରେ ସେ କିଟ୍‌ର ଗୋଟିଏ ଝିଅର ଚିଠି ନେଇ ଯାଇଥିଲା । ସେ ନ ଥିଲା, ତେଣୁ ସେଠାରେ ଥିବା ସିକ୍ୟୁରିଟି ଗାର୍ଡ଼ କହିଲା, ଚିଠି ବାକ୍ସରେ ରଖିଦେଇ ଆସିବାକୁ । ସେ ସେଠାରେ ରଖି ଚାଲିଆସିଲା । କିନ୍ତୁ କୋରିଅର ଚିଠି ଦସ୍ତଖତ କରି ଦେବା କଥା, ସେ ତାହା କରିନଥିଲା ।

ତା'ପରଦିନ କୋରିଅର ସଂସ୍ଥାର ମାଲିକ ତାକୁ ଡାକି କରି କହିଲେ, ସେ ଯୋଉ ଚିଠି କାଲି ଦେଇଥିଲା ତାହା ସେ ଝିଅ ପାଇନାହିଁ । ସେଥିରେ ତା' ବାପା ତା' ନିକଟକୁ ପାଞ୍ଚ ହଜାର ଟଙ୍କାର ଚେକ୍ ପଠାଇଥିଲେ । ଚିଠି ନ ମିଳିଲେ ସେ ଟଙ୍କା ଆମକୁ ଦେବାକୁ ପଡ଼ିବ । ନ ଦେଲେ ସେ ଥାନାରେ ଏଫ୍.ଆଇ.ଆର୍ ଦେବେ । ପୁଅକୁ କହିଲେ, ତମେ ଭୁଲ୍ କରିଚ ତମେ ସେ ଟଙ୍କା ଦେବ ।

ସେଇଠୁ ମୋ ପୁଅ ପୁରା ଛାନିଆଁ ହୋଇଗଲା, ସେଇଠାରୁ ଆଉଥରେ କିଟ୍ ଗଲା, ସେ ସିକ୍ୟୁରିଟିକୁ ପଚାରିଲା, ସେ କହିଲା ଚିଠି ବାକ୍ସରୁ ଯିଏ ଯାହା ଚିଠି ନେଇଥିବ ମୁଁ କ'ଣ କରିବି ? ତା'ପରେ ପୁଅ ଘରକୁ ଆସି ମତେ ଏସବୁ କହିଲା । ମୁଁ ମଧ୍ୟ ଭୟଭୀତ ହୋଇଗଲି । ଯିଏ ହଜାର ଟଙ୍କା ପାଇଁ ଶହୀଦ ନଗରରୁ ଚନ୍ଦ୍ରଶେଖରପୁର ଚିଠି ଦେବାକୁ ଯାଉଛି ସେ ପାଞ୍ଚ ହଜାର ଟଙ୍କା କୋଉଠୁ ଆଣି ଦେବ । ମୋର ସଖା ପ୍ରିୟ କୃଷ୍ଣଙ୍କୁ ମୁଣ୍ଡିଆ ମାରି ମୋ ଦୁଃଖ ଜଣାଇଲି ।

ତା'ପରଦିନ ପୁଅକୁ ଭୟରେ ଭୀଷଣ ଜ୍ୱର । ତାକୁ ବୁଝାବୁଝି କରି ମୁଁ ଶହୀଦ ନଗର ଗଲି ଏବଂ ଜନ୍ମେଜୟ ପ୍ରଧାନଙ୍କୁ ଏକଥା କହିଲି । ସେ କହିଲେ, ଆପଣ ସେ କୋରିଅର ଅଫିସ୍ ଯାଇ ସେ ମାଲିକ ସହ କଥା ହୁଅନ୍ତୁ ହୁଏତ ସେ କିଛି ସାହାଯ୍ୟ କରିପାରେ । କିନ୍ତୁ କୋରିଅର ବାଲା ତ ପୁଅକୁ ଏମିତି ଡରେଇ ଦେଇଥାଏ, ତମେ ଟଙ୍କା ନଦେଲେ ତମକୁ ଆରେଷ୍ଟ କରିବ । ମିଛ କେଶ୍ ବନେଇ ଜେଲ୍ ପଠେଇ ଦେବ । ସେ ଭୟରେ ଜ୍ୱରରେ କମ୍ପୁଥାଏ । ମୁଁ ତାକୁ ବୁଝାସୁଝା କରି ଡାକ୍ତର ପାଖରୁ ଔଷଧ ନେଇ ଭଗବାନଙ୍କୁ ଅତି ବିକଳରେ ଡାକୁଥାଏ ଏତେବଡ଼ ବିପଦରୁ ରକ୍ଷା କରିବାକୁ ଏବଂ କହୁଥାଏ ପ୍ରଭୁ ! ଏତେ ଦୁଃଖ ଜୀବନରେ ଦେଲ । ତୁମ ନାଁ ନେଇ ଏତେ ସଂଘର୍ଷ କରି ମୁଁ ମୋ ପିଲାଙ୍କୁ ପାଳୁଛି । ପିଲାମାନଙ୍କୁ ମଧ୍ୟ ନିଜେ ରୋଜଗାର କରି ପାଠ ପଢ଼ିବାକୁ ଚେଷ୍ଟା କରୁଥିଲି ତେବେ ଏଠାରେ ମୋର କ'ଣ ଏମିତି ଭୁଲ୍ ରହିଲା ଯେ

ଏମିତି ଗୋଟିଏ ବିପଦ ମୋ ପାଇଁ ସୃଷ୍ଟି କଲ । ଏବେ ମତେ କିଏ ସାହାଯ୍ୟ କରିବ ତୁମ ବିନା ? ତାଙ୍କ କଥା ମାନି ପୁଅକୁ ସାଙ୍ଗରେ ନେଇ 'ସ୍କାଇଲାର୍କ' ଅଫିସ୍ ଗଲି । ତାଙ୍କ ମାଲିକ ସହ କଥାବାର୍ତ୍ତା କରିବାରେ ସେ କହିଲେ, ମାଡାମ୍ ମୁଁ କ'ଣ କରିପାରିବି ? ସେ ଝିଅର ବାପା ସେକ୍ରେଟେରିଏଟ୍‌ର ଏକ ପଦସ୍ଥ ଅଫିସର । ମତେ ଫୋନ କରି ପାଞ୍ଚ ହଜାର ଟଙ୍କା ମାଗୁଛନ୍ତି ନଚେତ୍ ଥାନାରେ ଏଫ.ଆଇ.ଆର୍ ଦେଇଦେବେ । ମୁଁ ଭାବୁଛି ଆପଣ ଅଧା ଦେଇ ଦିଅନ୍ତୁ ମୁଁ ଅଧା ଟଙ୍କା ଦେଇଦେବି । ପିଲାଟା ତ ଭୁଲ୍ କରିଛି ବିନା ଦସ୍ତଖତରେ ଚିଠି ଦେଇ, ଯା'ଛଡ଼ା ଆଉ କିଛି ଉପାୟ ନାହିଁ । ସେ ମତେ ୩ ଦିନ ସମୟ ଦେଇଛନ୍ତି । ମୁଁ ଦୁଃଖରେ ଭାଙ୍ଗିପଡ଼ିଲି, କାରଣ ୨୫୦୦ ଟଙ୍କା ମୋ ପାଇଁ ପାହାଡ଼ ପରି ଉଚ୍ଚ । ଏତେ ଟଙ୍କା ମୁଁ କୋଉଠୁ ଆଣିବି ? ମାଗିଲେ ବା ମତେ କିଏ ଦେବ ? ଜିନିଷପତ୍ର ବି ମୋର କିଛି ନାହିଁ ବିକିଦେବା ପାଇଁ । ଠାକୁରଙ୍କୁ ଡାକୁଥାଏ ଏବଂ ଉପାୟ ଚିନ୍ତା କରୁଥାଏ । ପୁଅ ଡରରେ ଜ୍ୱରରେ କମ୍ପୁଥାଏ, ତାକୁ ବୁଝେଇ ଘରକୁ ଆଣିଲି ଏବଂ ଟଙ୍କା କିଏ ଦେବ ଚିନ୍ତା କଲି ?

ଯଦିଓ କାହାକୁ ମାଗିବାକୁ ସାହସ ନଥାଏ ତଥାପି ଅସୁବିଧା ହେତୁ ମାଗିବାକୁ ପଡ଼ିଲା । ପ୍ରଥମେ ମୋ ଭଉଣୀ ଜ୍ୱାଇଁଙ୍କୁ ଫୋନ କରି ଅସୁବିଧା କଥା କହି ୨୫୦୦ ଟଙ୍କା ଦେଲେ, ମୁଁ ପରେ ଫେରେଇ ଦେବି କହିଲି, ସେ ମନା କଲା । ମୋ ଦୋକାନ ପାଖରେ କିଛି ଜଣାଶୁଣା ଲୋକ ଯେଉଁମାନେ ଚାକିରି କରିଥିଲେ ପୁଅ ଦ୍ୱାରା ତାଙ୍କୁ ଡାକି ମୋ ଅସୁବିଧା କହି ଟଙ୍କା ମାଗିଲି । ମୁହଁରେ କେହି ମନା ନ କଲେ ମଧ୍ୟ ହଁ ହାଁ କରି ଆଉ ଧରାଛୁଆଁ ଦେଲେନି । ରାତିରେ ଘରକୁ ଆସିଲି, ତା'ପରଦିନ ଟଙ୍କା ଦେବାକୁ ପଡ଼ିବ । ଏମିତି ବ୍ୟସ୍ତ ହେଉଥାଏ । ମଝିଆଁ ପୁଅ ଯେଉଁ ହକର ପାଖେ କାମ କରୁଥିଲା ମତେ କହିଲା, ମମି, ତାକୁ ମାଗେ କାଲେ ଦେବ । ତା ନାଁ ପ୍ରମୋଦ । ସେ ଅଧିକାଂଶ ସମୟ ମୋ ଦୋକାନ ନିକଟରେ ଠିଆ ହୋଇ ମୋ ସହ ଦୁଃଖସୁଖ ହୁଏ । ତାକୁ ଫୋନ କରି ଅସୁବିଧା କଥା କହିଲି । ସେ କହିଲା, ମାଡାମ୍ ମୋ ପାଖରେ ଟଙ୍କା ନାହିଁ । ମୋ ବାପାଙ୍କ ଠାରୁ ନେଇ ଦେଇପାରିବି, ହେଲେ ସେ ଏଗ୍ରିମେଣ୍ଟ କରି ଦେବେ । ମୁଁ କହିଲି ହଉ ମୁଁ କରିବି, ମତେ କାଲି ସକାଳେ ଟଙ୍କା ଦରକାର । ସେ ସକାଳ ୭ଟାରେ ଟଙ୍କା ଆଣି ଦେବ କହିଲା । ଟଙ୍କା ଯୋଗାଡ଼ ହୋଇଯିବା ଖୁସିରେ କୃଷ୍ଣଙ୍କୁ ମୁଣ୍ଡିଆଟିଏ ମାରି ପୁଅକୁ ବୁଝାସୁଝା କରି ଟିକେ ଶାନ୍ତିରେ ଶୋଇଲି ଆସନ୍ତାକାଲିର ପ୍ରତୀକ୍ଷାରେ ।

ଏମିତିରେ ରାତି ସରିଲା । କାଉ କା' ସହିତ ନୂତନ ସୂର୍ଯ୍ୟୋଦୟ ମଧ୍ୟ ହେଲା । ମୁଁ ସକାଳୁ ଉଠି ମୋର ନିତ୍ୟକର୍ମ ସାରିବା ପାଇଁ ପ୍ରସ୍ତୁତ ହେଉଥାଏ, କୋରିଅର ବାଲା

ଫୋନ କଲା ମାଡାମ୍ ମୁଁ ୨୫୦୦ ଟଙ୍କା ନେଇ ଦେଉଛି, ଆପଣଙ୍କୁ ସେ ଲୋକର ଠିକଣା ଦେଇ ଦେଉଛି ଆପଣ ଯାଇ ଅବଶିଷ୍ଟ ଟଙ୍କା ଦେଇଦେବେ । ତା'ପରେ ସେ ତାଙ୍କ ନାମ ଏବଂ କୋଉ ସେକ୍ସନରେ ଅଛନ୍ତି ସବୁ କହିଲା । ଠିକ୍ ୭.୩୦ ବେଳକୁ ଆମ ଘରକୁ ଜଣେ ଲେଖକ ବନ୍ଧୁ ଆସିଲେ । ତାଙ୍କ ନାଁ ସନ୍ତୋଷ ଦାସ । ମୋର ୨୦୧୨ ଫେବୃଆରୀ ମାସରେ 'ବିଧ୍ୱସ୍ତା ନାରୀ' ନାମରେ ଏକ ବହି ୭ମ ବାଟାଲିୟନ ସ୍କୁଲ କ୍ୟାମ୍ପସରେ ଉନ୍ମୋଚନ ହୋଇଥିଲା । ସେଠାରେ ପ୍ରଫେସର ସଂଘମିତ୍ରା ମିଶ୍ର, ସାବିତ୍ରୀ ସାହୁ ଓ ୭ମ ବାଟାଲିୟନ କମାଣ୍ଡାଣ୍ଟ ରାଜକିଶୋର ଦାଶ ଅତିଥି ଥିଲେ । ମୋର କବିବନ୍ଧୁ ମାନେ ଆସିଥିଲେ ସେମାନଙ୍କ ଭିତରେ ଏ ଭଦ୍ରବ୍ୟକ୍ତି ଥିଲେ, ସେଇଠାରେ ମୁଁ ତାଙ୍କୁ ଚିହ୍ନିଥିଲି ଏବଂ ମୁଁ ଗଜପତି ନଗରରେ ରହୁଛି କହୁଥିଲି । ପ୍ରାୟ ଦୁଇମାସ ହୋଇଯିବ ଯା'ମଧ୍ୟରେ କିଛି ଯୋଗାଯୋଗ ହୋଇନି । ମୋ ଘର ନଦେଖି ହଠାତ୍ ସକାଳୁ ଆସି ପହଞ୍ଚିଥିବାରୁ ମୁଁ ଆଶ୍ଚର୍ଯ୍ୟ ହେଲି । ସେ କହିଲେ, ମୁଁ ଓମଫେଡ୍ ଛକ ବିଡ଼ିଏ କଲୋନୀରେ ରହେ । ପଚାରି ପଚାରି ଚାଲି ଆସିଲି । ଆପଣଙ୍କୁ ତ ଏଠାରେ ସମସ୍ତେ ଚିହ୍ନନ୍ତି ।

ତା'ପରେ ତାଙ୍କୁ ଚା' ଦେଇସାରିବା ମଧ୍ୟରେ କିଛି ସାହିତ୍ୟ ଆଲୋଚନା ହେଲା । ମୁଁ କେବେଠାରୁ ଲେଖାଲେଖି କରେ ପଚାରି ବୁଝିଲେ । ଏହା ମଧ୍ୟରେ ମୁଁ ପୁଅକୁ ତରତର କରୁଥାଏ ଯିବାପାଇଁ ପ୍ରସ୍ତୁତ ହେବାକୁ । ସେ ମତେ ପଚାରିଲେ ସକାଳୁ ସକାଳୁ କୁଆଡ଼େ ଯିବେ ? ମୁଁ କହିଲି ସେକ୍ରେଟେରିଏଟ୍ । ସେ କହିଲେ କାହିଁକି ? ତା'ପରେ ମୁଁ ସବୁ ଘଟଣା ଆମୁଳଚୂଳ ବର୍ଣ୍ଣନା କଲି । ଯା'ଭିତରେ ସେ ଆମ ପରିବାର ସଂପର୍କରେ ପଚାରି ବୁଝି ଦେଇଥିଲେ । ମୁଁ ମଧ କୌଣସି କଥା ଲୁଚେଇ ରଖିପାରେନି । ସେ କହିଲେ, ମୁଁ ପରା ସେକ୍ରେଟେରିଏଟ୍‌ରେ ଚାକିରି କରିଛି ଆଉ ଦୁଇବର୍ଷ ପରେ ରିଟାୟାଡ୍ କରିବି । ମୁଁ ଜଳସଂପଦ ବିଭାଗରେ ଅଛି । ସେ ଯେଉଁ ଭଦ୍ରବ୍ୟକ୍ତିଙ୍କୁ ଆପଣ ଟଙ୍କା ଦେବେ ତାଙ୍କ ନାଁ କୁହନ୍ତୁ । ମୁଁ କହିଲି ପାଢ଼ୀ ବାବୁ । ସେ କହିଲେ ମୁଁ ତାଙ୍କୁ ଜାଣିଛି । ଖୁବ୍ ଭଦ୍ରଲୋକ ସିଏ । ଆପଣ ନିଜେ ନ ଯାଇ ମତେ ଟଙ୍କା ଦେଇ ଦିଅନ୍ତୁ । ମୁଁ ଅଫିସ ଗଲେ ତାଙ୍କୁ ନେଇ ଦେବି । ଯଦି ଦରକାର ପଡ଼େ ଆପଣଙ୍କୁ ଫୋନ କଲେ ଆପଣ ଯିବେ । ମୁଁ ତାଙ୍କ ଉପରେ ବିଶ୍ୱାସ କରି ୨୫୦୦ ଟଙ୍କା ତାଙ୍କୁ ଦେଇଦେଲି । ସେ ଚାଲିଗଲା ପରେ ଦୋକାନକୁ ଗଲି । ପୁଅକୁ କହିଲି ଦରକାର ହେଲେ ଆମେ ଯିବା ।

ଠିକ୍ ୧୧.୩୦ ବେଳକୁ ସେ ମୋତେ ଫୋନ କଲେ ଏବଂ ପାଢ଼ୀ ବାବୁଙ୍କୁ ଯାଇ ତାଙ୍କ ଅଫିସରେ ଦେଖା କରିବାକୁ କହିଲେ । ମୁଁ ପୁଅକୁ ନେଇ ଯାଇ ପହଞ୍ଚିଲି । ଯେଉଁ ଅଫିସରେ ପହଞ୍ଚିଲି ତା' ପାଢ଼ୀ ବାବୁଙ୍କର । ତାଙ୍କ ପିଅନ ମତେ ବସିବାକୁ କହି ପାଢ଼ୀ

ବାବୁଙ୍କୁ ଡାକିଲା । ସେ ଆସିଲେ ଏବଂ ମତେ ପଚାରିଲେ ମାଡାମ୍ ଆପଣ ବାସନ୍ତୀ ଦାସ ? ମୁଁ କହିଲି ହଁ । ମତେ ପଚାରିଲେ ଏଇ ପୁଅ କାମ କରୁଥିଲା, ମୁଁ କହିଲି ହଁ । ସେ ସାଙ୍ଗେ ସାଙ୍ଗେ ଆଲମିରା ଖୋଲିଲେ ଏବଂ ଯେଉଁ ଟଙ୍କା ମୁଁ ସନ୍ତୋଷ ଦାସଙ୍କ ହାତରେ ପଠାଇଥିଲି ସେଇ ଟଙ୍କା ଆଣି ମତେ ଦେଇ କହିଲେ ମାଡ଼ାମ୍, ସନ୍ତୋଷ ବାବୁଙ୍କ ଠାରୁ ମୁଁ ସବୁ ଶୁଣିଛି । ଆପଣ ପିଲାମାନଙ୍କ ପାଇଁ କେତେ ପରିଶ୍ରମ କରୁଛନ୍ତି, ପିଲାମାନେ ମଧ୍ୟ ପରିଶ୍ରମ କରୁଛନ୍ତି । ଅଜାଣତରେ ଗୋଟିଏ ଭୁଲ୍ ହୋଇଯାଇଛି । ତେଣୁ ମୁଁ ଏ ଟଙ୍କା ନେବି ନାହିଁ । ଆପଣଙ୍କ ଟଙ୍କା ଫେରେଇ ନିଅନ୍ତୁ । ଏମିତି ଏକ ସମୟରେ ମୁଁ ଭାବବିହ୍ୱଳ ହୋଇଗଲି । ଏ କଥା ସତ ନାଁ ମିଛ ବିଶ୍ୱାସ କରପାରିଲି ନାହିଁ । ତାଙ୍କ ମୁହଁକୁ ଚାହିଁଲି । ମୋ ଆଖି ଛଳ ଛଳ ହୋଇଗଲା । ଏହି ସମସ୍ୟା ପାଇଁ ଆଠ ଦିନ ହେଲା ଆମ ବଞ୍ଚିବା ଦୁଃସହ ହୋଇଗଲାଣି । ୨୫୦୦ ଟଙ୍କା ଯୋଗାଡ଼ କରିବାକୁ ମୁଁ କେତେ ଲୋକଙ୍କୁ ଅନୁନୟ ବିନୟ ହୋଇଛି ଏବଂ କେତେ କଷ୍ଟରେ ଯୋଗାଡ଼ କରିଛି ୧୦% ସୁଧରେ, ପୁଣି ସେ ଟଙ୍କା ସେ ନେବେ ନାହିଁ, ହେ ଭଗବାନ ଏ ତୁମର କି ପ୍ରକାର ପରୀକ୍ଷା ?

କିଛି ସମୟ ପରେ ପାଢ଼ୀ ବାବୁ ମତେ କହିଲେ, ମାଡାମ୍ ଆପଣ ଯା'ନ୍ତୁ, ଯଦି ବିଶ୍ୱାସ ନ ହେଉଛି ମୁଁ ଟଙ୍କା ନେଇଛି ବୋଲି ଲେଖି ଦେଉଛି । ମୁଁ କହିଲି ନା ନା ଆପଣ ମତେ ବିଶ୍ୱାସ କଲେ ମୁଁ ଆପଣଙ୍କୁ କ'ଣ ଅବିଶ୍ୱାସ କରିପାରିବି ? ଏ ଅସମୟରେ ମୋତେ ନିଜ ଲୋକବି ସାହାଯ୍ୟ କରିନାହାନ୍ତି, ହେଲେ ଭଗବାନ କେତେ ଦୟାଳୁ । ଅଚାନକ କାହା ମାଧ୍ୟରେ ମୋ ସମସ୍ୟାର ସମାଧାନ କରିଦେଲେ । ଯେଉଁ ବିପଦ ମତେ ପାହାଡ଼ ପରି ଲାଗୁଥିଲା, ତା' ଫୁଲ ପରି ହୋଇଗଲା । ପାଢ଼ୀବାବୁଙ୍କୁ ଧନ୍ୟବାଦ ଜଣାଇ ଘରକୁ ଆସିଲି ଏବଂ ଏଇ ଦେବଦୂତ ସନ୍ତୋଷ ବାବୁଙ୍କୁ ମଧ୍ୟ ଅନେକ ଧନ୍ୟବାଦ ଜଣାଇଲି ।

ପ୍ଲଟ୍ ନଂ - ୨୩୮୦
ଭୀମଟାଙ୍ଗୀ, ଫେଜ୍ - ୧
ଭୁବନେଶ୍ୱର - ୨
ଭ୍ରାମ୍ୟଭାଷ : ୯୮୫୩୯୯୩୯୯୩



# ଦୟାମୟ ଶ୍ରୀଜଗନ୍ନାଥ

## ଲକ୍ଷ୍ମୀପ୍ରିୟା ଦାସ

ଶ୍ରୀଜଗନ୍ନାଥଙ୍କ କରୁଣା ଜଗତ୍ ପ୍ରତି ପ୍ରାଣୀ ପାଇଁ ଅନବରତ ବର୍ଷି ଚାଲିଛି । ତାଙ୍କର କରୁଣା ପାଇବା ପାଇଁ ମନ୍ତ୍ର ଶିଖିବାର ଆବଶ୍ୟକତା ବି ନାହିଁ । ଯେଉଁଠି, ଯେଉଁ ଅବସ୍ଥାରେ ଥିଲେ ମଧ୍ୟ ତାଙ୍କୁ ମନେ ପକାଇଲେ ଛୋଟ ବଡ଼ ସବୁ ବିପତ୍ତି ଦୂର ହୋଇଯାଏ । ଏହି କଥାର ସତ୍ୟତାକୁ ପ୍ରତିପାଦିତ କରୁଥିବା ଅନୁଭୂତିଟିଏ ଲେଖୁଛି ।

ଦୁଇହଜାର ଚଉଦ ମସିହା ମଇ ମାସ ତେର ତାରିଖରେ ସପରିବାର ପଣ୍ଡିଚେରୀ ଯାଇଥିଲି । ସେଠାରୁ ଆମର ପନ୍ଦର ତାରିଖରେ ଫେରିବା ଟିକେଟ ହୋଇଥାଏ । କେତେକ ଅସୁବିଧା ଯୋଗୁଁ ଫେରିବା ଟିକେଟ୍ ଚେନ୍ନାଇରୁ ହୋଇଥାଏ । ଯିବା ପୂର୍ବରୁ ଶ୍ରୀଜଗନ୍ନାଥଙ୍କୁ ଜଣାଇଥିଲୁ । ପଣ୍ଡିଚେରୀରେ ପହଞ୍ଚିବା ପରଠୁ ରହିବା, ଖାଇବା ଓ ବୁଲିବା କେଉଁଥିରେ କୌଣସି ପ୍ରକାର ଅସୁବିଧା ଆମର ହୋଇନଥିଲା । ଫେରିବା ଦିନ ଆମେ ପଣ୍ଡିଚେରୀରୁ ବିଲ୍ଲୁପୁରମ୍ ଆସି ଟ୍ରେନ୍‌କୁ ଅପେକ୍ଷା କଲୁ । ମୋ ସ୍ୱାମୀଙ୍କ ମତରେ ଆମେ ଆମ ପାଇଁ ଉଦ୍ଦିଷ୍ଟ ବଗିରେ ହିଁ ବିଲ୍ଲୁପୁରମ୍‌ରୁ ଉଠିଯିବା । କିନ୍ତୁ ଆମ ଟିକେଟ୍ ଚେନ୍ନାଇରୁ ହୋଇଥିବାରୁ ଚେନ୍ନାଇ ପର୍ଯ୍ୟନ୍ତ ସାଧାରଣ ବଗିରେ ଯାଇ ସେଠାରୁ ରିଭର୍ଭେସନ ବଗିକୁ ଯିବା ପାଇଁ ମୁଁ କହିଲି । ଅପରାହ୍ଣ ଚାରିଟା ତିରିଶରେ ବିଲ୍ଲୁପୁରମ୍‌ରୁ ଚେନ୍ନାଇ ଯିବା ପାଇଁ ଏକ ଲୋକାଲ୍ ଟ୍ରେନ୍ ଥାଏ ଯାହା ରାତି ସାଢ଼େ ଆଠଟାରେ ଚେନ୍ନାଇରେ ପହଞ୍ଚିବ । ସେଠାରୁ ଆମ ଟ୍ରେନ୍ ଛାଡ଼ିବା ସମୟ ରାତି ସାଢ଼େ ଦଶଟା । ହଠାତ୍ ମୋ ସ୍ୱାମୀ କହିଲେ, 'ଚାଲ ଏଇ ଟ୍ରେନ୍‌ରେ ଚେନ୍ନାଇ ପଳାଇବା । ଏକ୍ସପ୍ରେସ୍ ଟ୍ରେନ୍‌ରେ ସାଧାରଣ ବଗି ଗୁଡ଼ିକ ଭାରି ଗହଳି ହୋଇଥିବ । ତେଣୁ ଏବେ ଚେନ୍ନାଇ ପଳାଇଲେ ସେଠୁ ଆମ ପାଇଁ ଉଦ୍ଦିଷ୍ଟ ବଗିରେ ଆରାମରେ ବସିକି ଯିବା ।' ସମସ୍ତେ ଟ୍ରେନ୍‌ରେ ବସିଲୁ । ବିଲ୍ଲୁପୁରମ୍‌ର ପରବର୍ତ୍ତୀ ଷ୍ଟେସନରେ ହିଁ କୌଣସି କାରଣବଶତଃ ଟ୍ରେନ୍‌ଟି ପ୍ରାୟ ପଞ୍ଚଚାଳିଶ ମିନିଟ୍ ଅଟକି ରହିଲା । ଟ୍ରେନ୍‌ର ଚାଳକ କହିଲେ ସେଦିନ ଟ୍ରେନ୍‌ଟି ଦୁଇ ଘଣ୍ଟା ବିଳମ୍ବରେ ପହଞ୍ଚିବ । ତେଣୁ ଆମେ ଆମ ଟ୍ରେନ୍ ଆଉ ପାଇପାରିବୁ ନାହିଁ । ସେଇଠୁ ବିଲ୍ଲୁପୁରମ୍ ଫେରିଯିବାକୁ ମଧ୍ୟ କୌଣସି ବ୍ୟବସ୍ଥା ନଥାଏ । ଅସୁବିଧା ଉପସ୍ଥିତ ହେବାରୁ ବିବ୍ରତ ହୋଇ ସ୍ୱାମୀ କହିଲେ, 'ତୋରି ପାଇଁ ଏମିତି ଅସୁବିଧା ହେଲା । ତୁ କହିବାରୁ ମୁଁ ଚେନ୍ନାଇ ଆସିବାକୁ ଚିନ୍ତା କଲି ।' ଅନ୍ୟ ଏକ ଷ୍ଟେସନରେ ମଧ୍ୟ ଟ୍ରେନ୍‌ଟି ପ୍ରାୟ ଅଧ ଘଣ୍ଟା ଅଟକି ରହିଲା ଆମ ହାଓଡ଼ା ପାସେଞ୍ଜର (ସିକ୍ସ-ଅପ୍) ପରି । ସେତେବେଳେ ପରସ୍ପରକୁ ଦୋଷ ଦେବା ବ୍ୟତୀତ ଆଉ ଏକମାତ୍ର ଉପାୟ ଥିଲା ଶ୍ରୀଜଗନ୍ନାଥଙ୍କୁ

ପ୍ରାର୍ଥନା କରିବା । ମନେ ମନେ ଶ୍ରୀଜଗନ୍ନାଥାଷ୍ଟକ ଗାଇ ଗାଇ ବିକଳରେ ପ୍ରାର୍ଥନା କରି ଚାଲୁଥାଏ । ବୁଲିବାକୁ ଆସି ମନ ଖୁସି କରିବା ପରିବର୍ତ୍ତେ ଆମେ ଅଶାନ୍ତିରେ ଘରକୁ ଫେରିବୁ ଭାବି ଭାବି ମୁଁ ବ୍ୟସ୍ତ ହେଉଥାଏ । ଏବେ ବି ଭାବିଲେ ଆଶ୍ଚର୍ଯ୍ୟ ଲାଗୁଛି ଯେ ଟ୍ରେନ୍ ରାତି ନଅଟା ପଞ୍ଚଚାଳିଶ ମିନିଟ୍‌ରେ ଚେନ୍ନାଇରେ ପହଞ୍ଚିଗଲା ଏବଂ ଯେଉଁ ଟ୍ରେନ୍‌ରେ ଆମେ ଆସିବା କଥା ସେଦିନ ଦଶ ମିନିଟ୍ ବିଳମ୍ବରେ ପହଞ୍ଚିଲା । ତେଣୁ ସଂପୂର୍ଣ୍ଣ ସୁରକ୍ଷିତ ଭାବେ ଆମେ ଟ୍ରେନ୍‌ରେ ଚଢ଼ିବା ପରେ ଶାନ୍ତିରେ ନିଃଶ୍ୱାସ ଛାଡ଼ି ଶ୍ରୀଜଗନ୍ନାଥଙ୍କୁ ଧନ୍ୟବାଦ ଜଣାଇଲି ।

ସବୁ ସମୟରେ ଶ୍ରୀଜଗନ୍ନାଥଙ୍କୁ ମନେ ପକାଇବାକୁ ସେ ମତେ ଯୋଗ୍ୟ କରନ୍ତୁ, ମୋର ଏତିକି ପ୍ରାର୍ଥନା ।

ସୁଦର୍ଶନ ନଗର, ପୁରୀ - ୨
ଭ୍ରାମ୍ୟଭାଷ : ୯୨୩୭୦୫୨୧୯୮



# ଯାହାକୁ ରଖିବେ ଅନନ୍ତ

## ଗୀତାଞ୍ଜଳି ପଣ୍ଡା

ସତରେ ବହୁତ ସହଜରେ କାଳିଆଙ୍କ କୃପା ମିଳେ, ଯଦି ତାଙ୍କ ଉପରେ ସଂପୂର୍ଣ୍ଣ ଭରସା, ବିଶ୍ୱାସ ଓ ସମର୍ପଣର ଭାବ ରଖିଥାଉ । ତାଙ୍କୁ ଦେଖିବାକୁ ଇଛାକଲେ ସେ ଦେଖାଦିଅନ୍ତି । ହାତଟେକି ଦୀପଟିଏ ଜାଳିଦେଲେ ସେ ନିବେଦନ ବୁଝନ୍ତି, ଶୁଣନ୍ତି । ପ୍ରତିଦିନ, ପ୍ରତି ମୁହୂର୍ତ୍ତରେ ପାଖେ ପାଖେ ଥାଆନ୍ତି ସେ । ହୃଦୟର ସ୍ପନ୍ଦନ, ଓଠର ଶବ୍ଦ, ହାତର ଲେଖନୀ, ଦୃଷ୍ଟିଶକ୍ତି ସିଏ, ଭାବନା ସିଏ, ପ୍ରେରଣା ସିଏ । ସିଏ ମଧ୍ୟ ଅମୃତର ସ୍ୱାଦ, ସୁଖୀର ସଂପଦ, ଦୁଃଖୀର ଯନ୍ତ୍ରଣା । ସବୁ ତାଙ୍କରି ଇଛାରେ ଘଟିଛି, ଘଟୁଛି, ଘଟି ଚାଲିଥିବ ମଧ୍ୟ । କାଳର କରାଳ ଗତିରେ ଆମେ ସବୁ କ୍ରୀଡ଼ନକ ।

ଘଟଣାଟି ଅନୁଭବ ଯେତିକି, ସେତିକି ହୃଦୟ ବିଦାରକ ଦୃଶ୍ୟରୁ ବଞ୍ଚିଯାଇଥିବା ଆମେ ନଅଟି ଗ୍ରହରୂପୀ ମଣିଷ ! ବାରମ୍ବାର ମୃତ୍ୟୁମୁଖରୁ ବଞ୍ଚି ଯାଉଥିବା କଥା । ୟାକୁ ହିଁ କହନ୍ତି ଘଟଣା-ଦୁର୍ଘଟଣା । କେଉଁ ସାଧୁ-ଯୋଗୀ ତପସ୍ୟାରତ ବାବା ନୁହଁନ୍ତି । ଆଜିକାଲିକା ଭଣ୍ଡବାବା ବି ନୁହଁନ୍ତି । କେଉଁ ପଣ୍ଡିତ ବା ଜ୍ୟୋତିଷ ଶାସ୍ତ୍ର ବିଶାରଦ ନୁହଁନ୍ତି । ଜଣେ ଭକ୍ତରୂପୀ ମଣିଷ ତୁଣ୍ଡରେ ସତର୍କ କରାଇଥିଲେ ପ୍ରଭୁ । ମୋ କାଳିଆ ଠାକୁର ।

ସେଦିନ ଥାଏ ରବିବାର । ମାହାର୍ଦ୍ଦିଆ ସୂର୍ଯ୍ୟବନ୍ଧୁ । ବନ୍ଧୁ ପତ୍ନୀଙ୍କର ବାପାଙ୍କର ଇହଲୀଳାର ପ୍ରଥମ ବାର୍ଷିକ ପାଳନ ଉଦ୍ଦେଶ୍ୟରେ ତାଳଚେରକୁ ଯାତ୍ରା । ସକାଳୁ ଇଣ୍ଟରସିଟି ଟ୍ରେନ୍‌ରେ ବସି ପହଞ୍ଚି ଯାଇଥିଲୁ ଦଶଟା ଭିତରେ । ତାଙ୍କ ଘରେ ଟିକେ ବିଶ୍ରାମ ନେଉ ନେଉ ଡାହାଣପଟ ଆଖିଟା ଘନ ଘନ ଡେଇଁଲା, ସହଜେ ଓଡ଼ିଆ, ଅନ୍ଧବିଶ୍ୱାସୀ, ଡର ଭୟ ବେଶୀ । ଡାହାଣ ଆଖିଟା ଡେଇଁଲେ କିଛି ଅଘଟଣ ଘଟେ ବୋଲି ମନରେ ଛନକା ଆସେ । ହେଉ, ଡେଉଁ ଥାଉ । ନାନୀଙ୍କ ପାଖେ ବସି ଲଡ୍ଡୁ, କଦଳୀ, ଜିଲାପି, ବୁନ୍ଦି ସବୁ ପଲିଥିନ୍ ପ୍ୟାକ୍ କରି ବାଟରୁ ଆସିଥିବା ସାଇଭାଇଙ୍କୁ ବଢ଼ାଉଥିଲି । ତା'ପରେ କେତେବେଳେ ଯେ ମୋ ଗାଲରେ ହାତରଖି ଅନ୍ୟମନସ୍କ ଭାବେ ବସିପଡ଼ିଛି କେହି ନଜର ନଦେଲେ ବି ତାଙ୍କ ଘରକୁ ଆସିଥିବା ଜଣେ ଅଶୀ ବର୍ଷ ବୟସର ବୃଦ୍ଧଙ୍କର ମୋ ଉପରେ ନଜର ପଡ଼ିଛି । ହଠାତ୍ ମାଉସୀ ତାଙ୍କୁ ଦେଖି ଜୋର୍‌ରେ ବାହୁନିଲେ । ସେଇ ବୃଦ୍ଧ ତାଙ୍କୁ ବୁଝାଉଥା'ନ୍ତି, 'ଜାତସ୍ୟ ହିଁ ଧ୍ରୁବ ମୃତ୍ୟୁ' । କିଏ ଆଗ, କିଏ ପଛ ଯିବ, ଏଥିରେ ଆମ ହାତ ନାହିଁ । ଏବେ ତୁମେ ନିଜକୁ ଦେଖ, ସବୁ ଖେଳଘର ତ ସରିଯାଇଛି । ପ୍ରଭୁଙ୍କ ନାମ ନେଲେ ଦୁନିଆରୁ ତ୍ରାହି ପାଇବ ।

ହଇଲୋ ଝିଅ, ଏଠିକି ମୋ ପାଖକୁ ଆସିଲୁ । କ'ଣ ଏତେ ଭାବୁଛୁ ? ତୁ ଯାହା ଚିନ୍ତା କରୁଛୁ ମୁଁ ଜାଣିପାରୁଛି । ଆ--ମୋ ମୁହଁକୁ ଟିକେ ଚାହିଁଲୁ । ମତେ ଲାଜ ଲାଗୁଥିଲା, ଆଉ ସଙ୍କୋଚ ବି ଲାଗୁଥିଲା । ହଇଲୋ ମା', ତୋର ତ କେଉଁଥିରେ ଅଭାବ ନାହିଁ । ଘରଦ୍ୱାର, ବର, ପିଲାଝିଲା ସବୁତ ଠିକ୍ । ବହୁତ ଥର ଦେହ ଖରାପ ଆଉ ଆକ୍ସିଡ଼େଣ୍ଟରୁ ବଞ୍ଚିଯାଇଛୁ । ଆଉ ଗୋଟିଏ ଅଛି, ତାକୁ ଏଡ଼ାଇଦେଲେ ବୟାଅଶୀ ବର୍ଷ ବଞ୍ଚିବୁ । ହନୁମାନ, ଶନି ଆଉ କାଳିଆକୁ ମନେ ମନେ ଧ୍ୟାନରେ ଆଣୁଥିବୁ । ଏଇ ଦେଖ୍ ମୋ ବେକରେ ଏପଟେ ହନୁମାନ ସେପଟେ କାଳିଆ ଗୋଟେ ଲକେଟ । ଏମାନେ ମୋ ମାଲିକ୍ । ହୁଁ ! ସମସ୍ତଙ୍କର ମାଲିକ ତ ସିଏ । ଇଏ ଆଉ ଅଧିକ କଥା କ'ଣ କହିଲେ । ତେଲି ତ ଆମେ ହନୁମାନ ଚାଳିଶା, ଶନିବାର ଶନିପୂଜା କରୁଛୁ । ତଥାପି ତାଙ୍କୁ ପ୍ରଣାମଟିଏ କଲି । କହିଲି, ଅଜା ମତେ ଆଶୀର୍ବାଦ ଦିଅନ୍ତୁ । ମତେ ଟିକେ ଆଉଁଷି ଦେଲେ । ଆଲୋ ଝିଅ, ମୁଁ ସିଦ୍ଧି ଅଜା । ମନର କଥା ସମସ୍ତଙ୍କୁ କହେନାହିଁ, ଟିକେ ଝଟ୍‌କା ଲାଗିଲେ ସାବଧାନ କରାଇଦିଏନା । ମତେ କ'ଣ କିଛି ଜଣା ନା, ମୁଁ କିଛି ସିଦ୍ଧି ସାଧନ ତନ୍ତ୍ରମନ୍ତ୍ର ଜାଣିଛି । କେତେ ଇଆଡୁ ସିଆଡୁ କହିଲେ, ସେଥିରେ ମୋତେ ଅଧାଅଧି ସତ ଲାଗୁଥିଲା । ଏ ଅଜା ଆମକୁ ଟିକେ କହ । ଅନ୍ୟମାନେ ତାଙ୍କ ପାଖକୁ ମାଡ଼ି ଆସୁଥିଲେ । ନା... ନା... ସମସ୍ତଙ୍କୁ କହିବାଟା ଠିକ୍ ନୁହେଁ । ମୁଁ କ'ଣ ଦେବତା ଯେ ସତ କହିଦେବି । ତା'ପରେ ପାଞ୍ଚଟା ବାଜିଲା । ନାନୀ କହିଲେ ଝିଅ, ଟ୍ରାଭେରା ଗାଡ଼ି ରେଡ଼ି ହୋଇଛି । ଝିଆରୀ, ଝିଆରୀ ଜୋଇଁ, ପୁତୁରା ବୋହୂ ମିଶିକି ନଅଜଣ । ତମେ ସବୁ ପଳେଇଯାଅ । ଟ୍ରେନ୍‌ରେ କାହିଁକି ଯିବ ।

ହଉ ନାନୀ ଗାଡ଼ିରେ ମିଶିକି ଯିବୁ । ସମସ୍ତେ ଗାଡ଼ିରେ ବସିଲୁ । ତଥାପି ଡାହାଣ ଆଖିଟା ତେଉଁଛି । ବନ୍ଦ ହେଉନି । ଛେପ ମାରିଲି । ପାଦଧୂଳି ନେଇ ମାରିଲି । ତଥାପି... । 'ଜୟ ଜଗନ୍ନାଥ' ସମସ୍ତେ କହିଲୁ । ଗାଡ଼ି ଚାଲିଲା । ଢେଙ୍କାନାଳ ପାଖାପାଖି ହେଲା, ସମସ୍ତେ ଗାଡ଼ିରଖି ଚା, ବରା ଖାଇଲୁ । ଡ୍ରାଇଭର ମୁହଁ ଆଖି ଧୋଇଲା । କହିଲା, ଜଲ୍‌ଦି ଜଲ୍‌ଦି ସଂଧ୍ୟା ନ ହେବା ପୂର୍ବରୁ ଚୌଦ୍ୱାର ହୋଇଗଲେ ଭଲ । ଆମେ କହିଲୁ, 'ଭାଇନା ଷାଠିଏ ସ୍ପିଡ୍‌ରୁ ଅଧିକ ନେବନି । ଛୋଟ ଛୋଟ ପିଲା ତିନିଟା ଅଛନ୍ତି । ଗାଡ଼ି ଷ୍ଟାର୍ଟ ହେଲା । ମୁଁ ଡାହାଣପଟ ସାଇଡ୍‌ରେ ବସିଥାଏ । ଏସି ଲାଗିଛି । ମନେ ମନେ ହନୁମାନ ଚାଳିଶା ପଢୁଥାଏ । ଦୁଇଥର ସାରି ସାରିଲାଣି । ଅନ୍ଧାର ଟିକେ ଟିକେ ଆସିଲାଣି । ଡିପର ନ ମାରି ହେଡ୍ ଲାଇଟ୍‌ରେ ଟ୍ରକ୍‌ଗୁଡ଼ାକ ମାଡ଼ି ଚାଲିଛନ୍ତି । ହାଇୱେରେ ଗାଡ଼ି ୭୦-୮୦ ସ୍ପିଡ୍‌ରେ ଚାଲୁଥାଏ । ମଝିରେ ମଝିରେ ମିଟର କଣ୍ଟାକୁ ଅନାଉଥାଏ । ଠିକ୍ ଏହି ସମୟରେ ଆଗରୁ ଗୋଟାଏ ବୋଲେରୋ ମଝି ରାସ୍ତାକୁ ମାଡ଼ି ଆସିଲା ।

ସେପଟେ ସାଇଡ୍‌ରେ ଟ୍ରକ ମଝିରେ ବୋଲେରୋ ଆମକୁ ଧକ୍‌କା ଦେବା ପୂର୍ବରୁ ଆଗ ଗାଡ଼ିର ଷ୍ଟିୟରିଂଟା ବୁଲିଗଲା ବାଁ ପଟକୁ ପୁଣି ଥରେ ଡାହାଣ କଡ଼ ବୁଲି ବାଁ ପଟକୁ ଆସି ଏକ ବିରାଟକାୟ ଗଛରେ ପିଟିବା ପୂର୍ବରୁ ଗର୍ଜନ କରି ଅଟକିଗଲା । ସମସ୍ତେ ଆଗପଛ ହୋଇ କିଏ କାହା ଦେହରେ ପିଟି ହେଇଛୁ ଜାଣିନୁ । ଦୁଇ ବା ତିନି ସେକେଣ୍ଡର ଏ ଘଟଣା । ସଂପୂର୍ଣ୍ଣ ଅନ୍ଧକାର ଭିତରେ ଆଲୋକର ସଞ୍ଚାର । ମାନେ ପୁନର୍ଜନ୍ମ । ହେ କାଳିଆ, ମା ଦକ୍ଷିଣକାଳୀ, ହେ ସଙ୍କଟମୋଚନ... ମା...ମା... ରକ୍ଷା କର ପ୍ରଭୁ । ଭୋ, ଭୋ ହୋଇ କାନ୍ଦିବାଲିଛି ମୁଁ । ସମସ୍ତେ ସମସ୍ତଙ୍କ ମୁହଁକୁ ଦେଖୁଛୁ, ଅଣ୍ଡାଳୁଛୁ ସବୁ ଠିକ୍ ଅଛନ୍ତି ତ । ଡ୍ରାଇଭରକୁ ଅନାଇଲୁ । ସେ ମୁଣ୍ଡରେ ହାତ ମାରି ମାରି କହୁଛି, ପ୍ରଭୁ ଆମକୁ ରକ୍ଷା କଲେ । ନଅଜଣ ଗାଡ଼ିରେ ବସିଥିଲେ । କାହା ଗ୍ରହ ବୋଧେ ଖରାପ ଥିଲା । ଆମ ସମସ୍ତଙ୍କ ସାଥୀରେ ଭାଗୀ ହୋଇଗଲା । ଛୋଟ ଛୁଆ ଦୁଇଟା ଶୋଇ ପଡ଼ିଛନ୍ତି । ତାଙ୍କୁ କିଛି ଜଣାପଡ଼ିନି । ଡ୍ରାଇଭର କହିଲା, ଆଜ୍ଞା ମୋତେ ଲାଗିଲା ଆକ୍ସିଡ଼େଣ୍ଟ ପୂର୍ବରୁ ମୋ ଷ୍ଟିୟରିଂଟାକୁ କିଏ ମୋଡ଼ି ଦେଲା, ଏତେ ପାଓ୍ୱାର ତା' ହାତରେ... । ତା'ପରେ ମୋର ମନେପଡ଼ିଲା ଶ୍ରୀଧର (ସିଦ୍ଧି) ଅଜାଙ୍କ କଥା । ସାବଧାନ କରିଥିଲେ । ତେବେ ପ୍ରଭୁ କ'ଣ ସୂଚନା ଦେଇ ମଧ ବଞ୍ଚାଇଥିଲେ ସମସ୍ତଙ୍କୁ । ମୁଁ ତ ଟ୍ରେନ୍‌ରେ ଯିବା ଲୋକ । ମୋତେ ଗାଡ଼ିରେ ପଠେଇ ମୋ ଜୀବନ, ସମସ୍ତଙ୍କ ଜୀବନକୁ ବଞ୍ଚେଇଲେ କାହିଁକି ? ତା' ଉତ୍ତର ମୋ ପାଖେ ନାହିଁ । ଗ୍ରହରୂପୀ ଜନାର୍ଦ୍ଦନ ସେହି, ତାଙ୍କ ପାଖରେ କୋଟି କୋଟି ପ୍ରଣାମ ଓ ନତମସ୍ତକ ତାଙ୍କର ଶ୍ରୀଚରଣ ତଳେ ଏ ଅଧମର ।

ଦୋଳମଣ୍ଡପ ସାହି, ପୁରୀ
ଭ୍ରାମ୍ୟଭାଷ : ୯୪୩୭୫୨୨୨୮୩



# ମନ ଜାଣେ କାଳିଆ

## ସରୋଜିନୀ ମହାନ୍ତି

ମହାପ୍ରଭୁ ଶ୍ରୀଜଗନ୍ନାଥ ଜଗତର ଠାକୁର । ଶ୍ରୀଜଗନ୍ନାଥ ବଳିଆର ଭୁଜ ପ୍ରସାରଣ କରି ବିରାଜିତ ହୋଇଛନ୍ତି ଶ୍ରୀକ୍ଷେତ୍ରର ଶ୍ରୀମନ୍ଦିର ରତ୍ନ ସିଂହାସନ ଉପରେ । ଭକ୍ତମାନଙ୍କୁ ଅଭୟ ପ୍ରଦାନ କରୁଛନ୍ତି । ତାଙ୍କର କରୁଣା ଲାଭ କରି ଭକ୍ତମାନେ ମହା ମହା ବିପତ୍ତିରୁ ଉଦ୍ଧାର ଲାଭ କରୁଛନ୍ତି । ସେ ସର୍ବଦା ପ୍ରାଣୀର ମଙ୍ଗଳକାରୀ । ପ୍ରଭୁଙ୍କୁ ଭକ୍ତ ଯେତେବେଳେ ଯେପରି ଭାବେ ଡାକିଛନ୍ତି ପ୍ରଭୁ ଶୁଣିଛନ୍ତି । ସେ ଅନ୍ତର୍ଯ୍ୟାମୀ, ଜଗତର ସିଏ ନାଥ, ଭାବର ଈଶ୍ୱର, ଅନୁଭବର ଠାକୁର, ଯାହାଙ୍କୁ ଉପଲବ୍‌ଧି ବିନା ଜାଣି ହୁଏନି । ତାଙ୍କ ବିଷୟରେ ଲେଖିବା ପାଇଁ ମୋର ବା ଭାଷା କାହିଁ ! ତାଙ୍କ ଗୁଣ କୀର୍ତ୍ତନ କରିବା ପାଇଁ ମୋ ଲେଖନୀରେ ବା ଶକ୍ତି କାହିଁ ? ସିଏ ତ ଭାବଗ୍ରାହୀ । ଇଚ୍ଛାମୟ ଲୀଳାମୟ ଅନନ୍ତ ଅବ୍ୟକ୍ତ ସର୍ବବ୍ୟାପକ । ସେଇ ପରଂବ୍ରହ୍ମ ପରମାତ୍ମାଙ୍କୁ ମୁଁ ମୋ ନିକଟରେ ସବୁ ସମୟରେ ଉପଲବ୍ଧ କରି ଆସିଛି । ପ୍ରତିଟି ମୁହୂର୍ତ୍ତ ମୋ ପାଇଁ ଅନୁଭବର ମୁହୂର୍ତ୍ତ । ତାଙ୍କ ଇଚ୍ଛାବିନା ମୁଁ ଯେମିତି ନୀରବ ନିଶ୍ଚଳ ନିର୍ବାକ ନିସ୍ପନ୍ଦ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ମୁଁ ପ୍ରିୟ ଭକ୍ତ ନ ହେଲେ ମଧ୍ୟ ମୁଁ ପ୍ରଭୁଙ୍କୁ ମୋର ନିଜର ବୋଲି ଭାବେ । ଆମେ ପରସ୍ପର ଅଙ୍ଗାଙ୍ଗୀ ଭାବେ ଜଡ଼ିତ । ଆମ ପରସ୍ପର ଭିତରେ ଯେପରି ରାଗରୁଷା ଲାଗି ରହିଥାଏ । ମୁଁ ରାଗିଗଲେ ଭାବେ ଆଉ ତାଙ୍କୁ ଡାକିବିନି, ମାତ୍ର ଆଶ୍ଚର୍ଯ୍ୟର କଥା ମୁଁ ଏମିତି ଜିନିଷ ଅନୁଭବ କରେ ସଙ୍ଗେ ସଙ୍ଗେ ଇତସ୍ତତଃ ହୋଇଯାଏ, ମୋ ଭୁଲ୍ ବୁଝିପାରେ । ସଙ୍ଗେ ସଙ୍ଗେ ତାଙ୍କ ଫଟୋ ପାଖରେ ମୁଣ୍ଡିଆଟିଏ ମାରି କାନ୍ଦି ପକାଏ । ପୁଣି ବେଳେ ବେଳେ ହସେ, ଭାବେ ମୁଁ କେଡ଼େ ମୂର୍ଖ, ଏ ଦୁନିଆରେ ଯାହାର ଆଜ୍ଞା ନ ହେଲେ ଗଛରୁ ପତ୍ରଟିଏ ହଲିବନି, ତାଙ୍କ ସାଙ୍ଗରେ ପ୍ରତିଦ୍ୱନ୍ଦ୍ୱୀ । ଯାହାର ଏ ଦୁନିଆ ଯିଏ ଜଗତମୟ ପରଂବ୍ରହ୍ମ, ଜଗନ୍ନାଥ ଯାହା ବିନା ଜଗତ ଅନାଥ ମୁଁ ତ ନିମିତ୍ତ ମାତ୍ର, ତାଙ୍କ ଅନୁଭବ କ'ଣ ମୁଁ ବର୍ଣ୍ଣନା କରିପାରିବି ?

ଏ ଅଲୌକିକ ଘଟଣାଟି ମୋ ସ୍ମୃତିପଟରେ ଚିରଦିନ ଅବିସ୍ମରଣୀୟ ହୋଇ ରହିଥିବ । ଶୁଣିଥିଲି ଓ ବହିରେ ମଧ୍ୟ ପଢ଼ିଥିଲି ଯେ, ଯେଉଁ ଲୋକ ଯେପରି ରୂପରେ ଆଶା କରେ ସେ ରୂପରେ ତାଙ୍କ ଦେଖାପାଏ । ତଥାପି ଲେଖୁଛି ମୋର ଏ ଘଟଣାଟି ଏକାନ୍ତ ନିଜସ୍ୱ । ଗୋଟେ ବିଭାଘରରେ ଆମେସବୁ ୨-୩ ଦିନ ପାଇଁ ବାହାରକୁ ଯିବାର ଥାଏ । ଗୋଟେ ଜାଗାକୁ ଯିବାକୁ ହେବ ମାନେ ସବୁ ଜିନିଷପତ୍ର ସଜଡ଼ା ସଜଡ଼ି, ଘରଦ୍ୱାର ଚାବିପତ୍ର ଦେଖାରଖା କରିବାକୁ ପଡୁଥାଏ । ସବୁ ଠିକ୍ ଠାକ୍ କରି ନିର୍ଦ୍ଦିଷ୍ଟ ସମୟରେ ଯାଇ ପହଞ୍ଚିଲୁ । ବିଭାଘରରେ ଯୋଗ ଦେଇ କାମ ସାରି ୨-୩ ଦିନ ପରେ ଫେରି ଆସିଲୁ । ଯିବା ପୂର୍ବରୁ ଘରର କୌଣସି ସଉଦାପତ୍ର ମୁଁ ରଖିନଥିଲି । ୨-୩

ଦିନ ପରେ ତ ଆସିବୁ ଏତେ ବ୍ୟସ୍ତ କାହିଁକି ? ଯାହା ଯେମିତି ଅଛି ଚାଲିଯିବ । ଆସି ପହଞ୍ଚିଲୁ । ପିଲାମାନଙ୍କ ପାଇଁ କେବଳ ଭାତ ଡାଲମା ଟିକିଏ କରି ଦେଇ ସେମାନଙ୍କୁ ଖାଇବାକୁ ଦେଲି । ତା'ପରେ ମୁଁ ଟିକିଏ ବିଶ୍ରାମ ନେଲି । ବସ୍‌ରେ ଆସିଥିବାରୁ ମୁଣ୍ଡ ବୁଲାଉଥିଲା । ଟିକିଏ ବିଶ୍ରାମ ନେବାପରେ ଭଲ ଲାଗିଲା । ଉଠିଲି । ସେ ପର୍ଯ୍ୟନ୍ତ ମୁଁ ଆଉ ମୋ ନିଜ ବିଷୟରେ ଧ୍ୟାନ ଦେଇ ନଥାଏ । ମୋର ସେଦିନ ଉପବାସ ଥାଏ । ତା'ପରେ ଚିନ୍ତା କଲି, ଦେଖିବା କ'ଣ ଜଳଖିଆ ପତ୍ର ଖାଇଦେବା । ଦେଖିଲା ବେଳକୁ କୌଣସି ଜାଗାରେ କିଛି ନାହିଁ, କାରଣ ଯିବା ପୂର୍ବରୁ ମୁଁ କିଛି ରଖି କରି ଯାଇ ନଥିଲି । ଟିକିଏ ତରତର ଥିଲି ଏକୁଟିଆ ଲୋକ ତ । ତେବେ ଏତେଗୁଡ଼ିଏ ବେଳ ହେଲାଣି କ'ଣ କରିବି । କାହାକୁ କିଛି ନ କହି ଚୁପ୍‌ଚାପ୍ ରହିଲି । ପ୍ରଭୁଙ୍କ ଦୟାରୁ ମୁଁ ଦିନେ ଦୁଇ ଦିନ ନିର୍ଦ୍ୱନ୍ଦ୍ୱରେ ଉପାସ ରହିପାରେ । କେବଳ ଏତିକି ମନରେ ଭାବିଲି, ଆଉ ଟିକିଏ ଜୋର୍‌ରେ ଭୋକ ଲାଗୁ । ଜୋର୍‌ରେ ଭୋକ ଲାଗିଲେ ଜଗନ୍ନାଥ ଖାଇବା ପଠାଇବେ । ଏ କଥାଟି କଥା ପ୍ରସଙ୍ଗରେ ଭାବି ଦେଇ ମୁଁ ଅନ୍ୟ କାମରେ ଲାଗିପଡ଼ିଲି । କିଛି ସମୟ ଗଲା, ସଂଧ୍ୟା ଆଗତ ପ୍ରାୟ । ଝିଅଟିକୁ କହିଲି, ମା' ଚାଲ୍ ଯିବା ସଂଧ୍ୟା ସଳିତା ଦେବା । ଯାଉଛି, ଏହି ସମୟରେ ଜଣେ ପଡ଼ୋଶୀ ଗ୍ରୀଲ୍ ବାଡ଼େଇ ଡାକିଲେ । ମୁଁ ସଂଧ୍ୟା ଥୋଇ ଦେଇ ତରତରରେ ଗଲି ଗ୍ରୀଲ୍‌ଟି ଖୋଲିଲି । ପଡ଼ୋଶୀଙ୍କୁ ଦେଖିଲି ମାତ୍ର ସେ ଯାହା କହିଲେ ମୁଁ ଆଚମ୍ବିତ ହୋଇଗଲି । ଯେମିତି ଆକାଶରୁ ଖସିଲା ଭଳି ଘଟଣାଟି ମୋତେ ଲାଗିଲା । ସେ ଜଣେ ଦୁଇଜଣ ଖାଇଲା ଭଳି ଅବଢ଼ା ଧରି ମୋ ହାତକୁ ବଢ଼ାଇ ଦେଇ କହିଲେ, ନିଅ କାଲି ଜଣଙ୍କର ଘର ପ୍ରତିଷ୍ଠା ହୋଇଥିଲା, ସେ ଆମକୁ ଦେଇଥିଲେ । ମୁଁ ତୁମ ପାଇଁ ନେଇ ଆସିଲି । ଯାଅ, ଖାଇଦେବ ତମର ଉପାସ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି ମୋର ଉପାସ ବୋଲି ସେ କେମିତି ଜାଣିଲେ । ଅବଢ଼ା ଧରି ଆସିଲି, କିନ୍ତୁ ମୋ ନିଜ ଆଖିକୁ ମୁଁ ବିଶ୍ୱାସ କରିପାରୁନଥାଏ । ଏହା ସତ୍ୟ ନା କଳ୍ପନା । ପ୍ରଭୁ ମୁଁ କେତେ ଭୁଲ୍ କରୁଛି କହୁ କହୁ କ'ଣ କହିହେଇ ଯାଉଛି । ମୋ ଭୁଲ୍ ପାଇଁ ମୋତେ କ୍ଷମା କରିବ । ପୁନରାୟ କଥାଟିକୁ ଦୋହରାଇଲି, ପ୍ରଭୁ ମୁଁ କହିଲି ଖାଇବା ଜଗନ୍ନାଥ ପଠାଇବେ ବୋଲି । ସତକୁ ସତ ଠାକୁର ତମେ ପଠାଇଦେଲ । ମୁଁ ଶୁଣିଥିଲି ଠାକୁର ମନକଥା ବୁଝନ୍ତି । କିନ୍ତୁ ଏ ଘଟଣାଟି ମୋ ନିଜ ଅଙ୍ଗେ ଲିଭାଇବା ଘଟଣା । ଭାବବିହ୍ୱଳ ଛଳ ଛଳ ଆଖିରେ ଜଗନ୍ନାଥଙ୍କୁ ସ୍ମରଣ କରି ହାତ ଯୋଡ଼ିଲି, ଅନ୍ତର୍ଯ୍ୟାମୀ ପ୍ରକୃତରେ ମନ କଥା ଜାଣନ୍ତି । ରାତିସାରା ମୁଁ ଭାବୁଥାଏ, ସେ ଲୋକ କେଉଁଠି ମୁଁ କେଉଁଠି ଖାଇବା କେମିତି ମିଳିଲା । କ'ଣ ସବୁ ଘଟିଲା ଘଟଣା । ଅନ୍ୟମାନଙ୍କୁ ହୁଏତ ଏହା ବିଶ୍ୱାସ ଲାଗି ନପାରେ, ଏହା କିନ୍ତୁ ମୋ ଅଙ୍ଗେ ଲିଭାଇବା ଅନୁଭବ । ଏ ଘଟଣାଟିକୁ ମୁଁ ବାରମ୍ବାର ଦୋହରାଏ, ଏହା କିପରି ସମ୍ଭବ ହେଲା ଆଶ୍ଚର୍ଯ୍ୟ ମଧ୍ୟ ହୁଏ ।

**ସୁଦର୍ଶନ ନଗର, ବଡ଼ଶଙ୍ଖ, ପୁରୀ - ୨**

**ଭ୍ରାମ୍ୟଭାଷ : ୯୬୫୮୯୮୫୧୨୦**



# ସେ ପରା ଅନ୍ତର୍ଯ୍ୟାମୀ

## ସୁଚିତ୍ରା ରାୟ

ମୁଁ ଭାବୁଛି ପ୍ରଭୁ କୃପାର ଅନୁଭବ ପ୍ରତ୍ୟେକଙ୍କ ଜୀବନରେ ଅଳ୍ପେ ବହୁତେ ଅବଶ୍ୟ ଥିବ । ଏମିତି କେହି ନାହିଁ, ଯିଏ ସଂସାର ଭିତରେ ରହି, ଜୀବନକାଳ ଭିତରେ ସୁଖ, ଦୁଃଖର ସମ୍ମୁଖୀନ ନ ହୋଇଛି । ସୁଖବେଳେ ଈଶ୍ୱରଙ୍କୁ ପାସୋରି ପକାଇବା ଆଉ ଦୁଃଖ ବେଳେ ତାଙ୍କୁ ଡାକ ଛାଡ଼ିବା ଅବା ଆତ୍ମୀୟତାର ଅଧିକାର ନେଇ ତାଙ୍କ ଉପରେ ରାଗ, ଅଭିମାନ କରିବା ସତେ ଯେମିତି ସଂସାରୀ ମଣିଷର ଏକ ସହଜାତ ପ୍ରବୃତ୍ତି । ମୁଁ ବା ସେଥିରୁ ବାଦ୍ ଯିବି କେମିତି ? ହେଲେ ଅପ୍ରତ୍ୟାଶିତ ଭାବରେ ଯେତେବେଳେ ଏମିତି କିଛି ଘଟଣା ଘଟେ, ଆଉ ମଣିଷ ଈଶ୍ୱରଙ୍କର ଅସ୍ତିତ୍ୱକୁ ଅନୁଭବ କରେ, ତାଙ୍କ କରୁଣାକୁ ଉପଲବ୍ଧ କରେ ଅବା ତା'ର ବିଶ୍ୱାସର ଦୃଢ଼ତା ଆଗରେ ଏକ ଅଦୃଷ୍ଟ ଶକ୍ତି କାର୍ଯ୍ୟ କରିବାର ଅପୂର୍ବ ଅନୁଭୂତି ଲାଭ କରେ, ସେତେବେଳେ ସେ ଆତ୍ମବିଭୋର ହୁଏ, କ୍ଷଣିକ ପାଇଁ ହେଲେବି ନିଜକୁ ତାଙ୍କ ପାଦପଦ୍ମରେ ସମର୍ପଣ କରିଦିଏ ।

ମୋ ଜୀବନରେ ଏମିତି କେତୋଟି ଘଟଣା ଘଟିଛି, ହେଲେ ଏ ଯେଉଁ ଅନୁଭବଟି ମୁଁ ଲେଖିବାକୁ ଯାଉଛି ତା' ପଛରେ ଥିବା କାରଣ ମୁଁ ଶେଷରେ ଉଲ୍ଲେଖ କରିବି । ଯଦି ସୁଯୋଗ ଆସେ ଅବା ସେଇ ଈଶ୍ୱରଙ୍କର ନିର୍ଦ୍ଦେଶ ହୁଏ ତେବେ ମୋର ଅନ୍ୟ ଅନୁଭବ ମଧ୍ୟ କେବେ ନା କେବେ ପ୍ରକାଶିତ ହେବ ।

ମୋର ଧାରଣା ଯେ, ଏଭଳି ଅନୁଭବକୁ ଅନ୍ୟ କାହା ଆଗରେ କହିବା ଠିକ୍ ନୁହେଁ, କାରଣ ମନରେ ଅହଂକାର ଆସିବ (ମୁଁ ଜଣେ ବଡ଼ ଭକ୍ତ ବୋଲି) । ଯେହେତୁ ଠାକୁର କାହାରି ଗର୍ବ ସହନ୍ତିନି, ତେଣୁ କାଳେ ତାଙ୍କ କୃପାରୁ ମୁଁ ବଞ୍ଚିତ ହୋଇଯିବି ବୋଲି ମୋର ଭୟ ଥାଏ । ଏଇ ଅନୁଭବଟି ମଧ୍ୟ ପ୍ରମାଣିତ କଲା ଯେ ମୋର ଧାରଣା କେତେକାଂଶରେ ସତ୍ୟ ।

କଲେଜରେ ପଢ଼ିଲାବେଳେ ମୁଁ ପ୍ରଥମେ ଅନୁଭବ କରିଥିଲି ଜଗନ୍ନାଥଙ୍କର କରୁଣାକୁ, ହେଲେ ଏ ଯେଉଁ ଅନୁଭବ ବିଷୟରେ ମୁଁ ଲେଖୁଛି ତାହା ଏଇ ୬-୭ ବର୍ଷ ତଳର ଘଟଣା । ଠିକ୍ ମସିହାଟି ମୋର ମନେ ନାହିଁ ।

ଠାକୁର ଗୁଣ୍ଡିଚା ଘରେ ଥା'ନ୍ତି । ଗୁଣ୍ଡିଚା ଘର, ଆମ ଘର, ମଧୁବନ (ଇନ୍ଦ୍ରଦ୍ୟୁମ୍ନ ପୋଖରୀ) ଠାରୁ ମାତ୍ର ୧୦ ମିନିଟ୍‌ର ରାସ୍ତା, ତା'ଛଡ଼ା ଅଫିସ୍‌କୁ ଯିବା ଆସିବା ରାସ୍ତାରେ । ତଥାପି ମୋର ଦୁର୍ଭାଗ୍ୟ ହେଉ, ଅଳସୁଆମି ହେଉ ଅବା ଠେଲାପେଲାର ଭୟ ଯୋଗୁଁ ହେଉ, ମୁଁ ଏକୁଟିଆ ଯାଏନି ଠାକୁରଙ୍କୁ ଦର୍ଶନ କରିବାକୁ । ମନରେ ଦୁଃଖ

ହୁଏ ସତ, ଏହି କଥା ଭାବି ଯେ କେତେ କୁଆଡୁ, କେତେ ଲୋକ, ପିଲାଛୁଆଙ୍କୁ ଧରି କେତେ ଅସୁବିଧାରେ ଆସୁଛନ୍ତି ଅଥଚ ମୁଁ ଏଇଠି ଥାଇ ଟିକେ ଯାଉନି । ସତ କହିବାକୁ ଗଲେ ଶ୍ରୀମନ୍ଦିରକୁ ବି ମୁଁ ପ୍ରାୟ ଯାଏନି । କେତେବେଳେ କିଏ ଘରକୁ ଆସିଥିଲେ ତାଙ୍କ ସାଙ୍ଗରେ ଯିବାର ସୁଯୋଗ ମିଳେ । ବେଳେବେଳେ ମନକୁ ମନ କହେ 'ଏକୁଟିଆ ତମକୁ ଦେଖିବାକୁ ଯାଉନି ବୋଲି ତମେ ମତେ ସବୁଦିନ ଏକୁଟିଆ କରିଦେଲ ।'

ସେ ଯାହାହେଉ, ଦର୍ଶନ ଅପେକ୍ଷା ଅବଢ଼ା ପ୍ରତି ମୋର ଭାରି ଦୁର୍ବଳତା । ବିଶେଷକରି ଘିଅ ଅନ୍ନ, ଡାଲମା କଥା ଶୁଣିଲେ ମୋ ମନ ଉଚ୍ଛନ୍ନ ହୁଏ ଟିକେ ଖାଇବାକୁ । ମନ୍ଦିରକୁ ତ ଯାଉନି, କିଏ ସିନା ଆଣିଦେଲେ ଖାଇବି । (ଏଠାରେ ଉଲ୍ଲେଖ କରୁଛି ଯେ, ଠାକୁରଙ୍କ କରୁଣାରୁ କେମିତି କେମିତି ହେଇ ଅନ୍ତତଃ ଥରୁଟିଏ ପାଇଁ, ଅଳ୍ପ ହଉ କି ବହୁତ, ଗୁଣ୍ଡିଚା ଘର ଅବଢ଼ା ପ୍ରତିବର୍ଷ ମିଳିଯାଏ । ଆଉ ଅନ୍ତତଃ ଥରଟିଏ ପାଇଁ କାହା ସାଙ୍ଗରେ ଯାଇ ଠାକୁରଙ୍କୁ ଦର୍ଶନ କରି ଆସେ । ହେଲେ ଏ ଦର୍ଶନ ଆଉ ଭୋଜନ ଏକ ପ୍ରକାର କାହାର ସହାୟତା ନେଇ, କାହାରିକୁ ଅନୁରୋଧ କରି ହୋଇଥାଏ ।) ସେଦିନ ଥାଏ ରବିବାର । ସାନଭାଇ ଭୁବନେଶ୍ୱରରୁ ଘରକୁ ଆସିଥାଏ । ମନେ ମନେ ଭାବିଲି ଟିକି (ମୋ ସାନଭାଇ) କୁ କହିବି, ଟିକେ ଅବଢ଼ା ଆଣିଦବ । ପୁଣି ଭାବିଲି ସିଏ କାଳେ କହିବ, ଯା'କୁ ରୋଷେଇ କରିବାକୁ ପଡ଼ିବ ବୋଲି ଅବଢ଼ା ଆଣିବାକୁ କହୁଛି । କାରଣ, ତା'ର ଅବଢ଼ା ପ୍ରତି ଏତେଟା ଆଗ୍ରହ ନ ଥାଏ । ମହାପ୍ରସାଦ ବୋଲି ଖାଇବାକୁ ପଡ଼ିବ । ତେଣୁ ଇଚ୍ଛା ହେଉଥିଲେ ବି କହିଲିନି । ତା'ପରେ କେତେ ଲୋକ ଆସୁଛନ୍ତି । ପୁଅ ପିଲା, ଠେଲାପେଲାରେ ବି ତ ପଶି ଆଣିପାରନ୍ତା । ଯଦି ସିଏ ତା' ମନକୁ ନ କହୁଛି 'ଚାଲ ଠାକୁରଙ୍କୁ ଦେଖି ଆସିବୁ ବୋଲି', ମୁଁ କାହିଁକି ମୁହଁ ଖୋଲି କହିବି ।

ପୂଜାସାରି ମୁଣ୍ଡିଆ ମାରି ଉଠିଲାବେଳକୁ ମୋ ଆଖିରୁ ଲୁହ ବୋହି ଆସିଲା । ମନକୁ ମନ ଠାକୁରଙ୍କୁ କହିଲି, 'ତୁମେ ପରା ଅନ୍ତର୍ଯ୍ୟାମୀ, ତମେ ତ ମୋ ମନ କଥା ଜାଣିପାରୁଥିବ । ଆଜି ଯଦି ତମେ ମତେ ଅବଢ଼ା ଖାଇବାକୁ ଦେବ, ତେବେ ମୁଁ ତମକୁ ଅନ୍ତର୍ଯ୍ୟାମୀ ବୋଲି ଜାଣିବି ।'

ଆମ ପାଇଁ ଯେମିତି ରୋଷେଇ ବାସ କରିବା କଥା କଲି । ହେଲେ ମନଟା କେମିତି କେମିତି ଲାଗୁଥାଏ । ଅବଢ଼ା ମିଳିବ, ନ ମିଳିବ, ଏକ ଅନିଶ୍ଚିତ କଥା । ହେଲେ ପ୍ରଭୁ ଅନ୍ତର୍ଯ୍ୟାମୀ କି ନୁହେଁ, ଏକଥା ପ୍ରମାଣିତ ନ ହେଲେ, କ'ଣ ହେବ ମୋ ବିଶ୍ୱାସର ? ମୋ ସର୍ତ୍ତ ପୂରଣ ନ ହେଲେ, ପ୍ରଭୁଙ୍କୁ କ'ଣ ମୁଁ ଅନ୍ତର୍ଯ୍ୟାମୀ ବୋଲି ଆଉ ସ୍ୱୀକାର କରିବିନି ? ମନଟା ସ୍ୱତଃ କେମିତି ଭାରି ଭାରି ଲାଗୁଥାଏ । ଗୋଟାଏ ବାଜିବାକୁ

ଗଲା । ଭାରି ମନ ନେଇ ଟିକିକୁ ଖାଇବାକୁ ଡାକିଲି । ସିଏ ଖାଇସାରି ଶୋଇବାକୁ ଗଲା । ଦୁଇଟା ହେବାକୁ ବସିଲା । ମନରେ କୋହ, ଅଭିମାନ ଜମାଟ ବାନ୍ଧୁଥାଏ । ଯେମିତି ଭକ୍ତିର ପରୀକ୍ଷାରେ ହାରିଗଲି । ଭାବିଲି, ଯାଉଛି ଖାଇଦେବି । ତଥାପି, ଆଶା ମରୁନି । ରାତି ଯାଏ ଅଛି । ଅବଢ଼ା ମିଳିଯାଇପାରେ । (ବୋଧେ ତା' ପରଦିନ ନବମୀ ଦର୍ଶନ ଥିଲା ଆଉ ନବମୀରେ ଅବଢ଼ା ମିଳିବା କଷ୍ଟକର ବ୍ୟାପାର, ତେଣୁ ମୁଁ ବେଶୀ ବ୍ୟାକୁଳ ଥିଲି ସେଇଦିନ ଅନ୍ତତଃ ଅବଢ଼ା ଟିକିଏ ପାଇବା ପାଇଁ ।)

ରୋଷେଇ ଘର ଆଡ଼କୁ ଆଗଉଛି ଭାତ ବାଢ଼ିବାକୁ, କିଏ ଜଣେ କଲିଙ୍ଗ୍ ବେଲ୍ ଚିପିଲା । କିଏ ଆସିଲା ? ଅବଢ଼ାର ଆଶା, ବିଶ୍ୱାସର ପରୀକ୍ଷା । ଦୌଡ଼ି ଗଲି କବାଟ ଖୋଲିବାକୁ । ମଝିଆଁ ଭଉଣୀ, ଯିଏ ଜଗତସିଂହପୁରରେ ଶିକ୍ଷକତା କରୁଥିଲା, ଆସି ପହଞ୍ଚିଛି । ମନଟା ଖୁସି ହେବା ପରିବର୍ତ୍ତେ ଉଦାସ ହେଇଗଲା । ହେଲେ ଏ କ'ଣ ? ତା' ହାତରେ ଅବଢ଼ା କୁଡୁଆ । ସିଏ କହିଲା, 'ନେ, ନେ, ଗରମ ଗରମ ଅଦା ହେଙ୍ଗୁ ଖେଚେଡ଼ି ଆଉ ଡାଲମା ଆଣିଛି । ନେ ଖାଇଦେ, ତୁ ଭଲ ପାଉ ।' ବାହାରକୁ ପ୍ରକାଶ ନ କରି ଖୁସିରେ ଆତ୍ମହରା ହୋଇଗଲି । ପ୍ରଭୁଙ୍କ ପାଖରେ କୃତଜ୍ଞତା ଜଣେଇଲି । ହେଲେ, ମନେ ମନେ ପୁଣି ଅଭିମାନ, 'ପ୍ରଭୁ, ସିଏ ଜଗତ୍‌ସିଂହପୁରରୁ ଆସିଲା ତାକୁ ଦର୍ଶନ ଦେଲ, ହେଲେ ମୁଁ ଏଇଠି ଥାଇ ଦର୍ଶନ ଟିକେ ପାଇଲିନି ।' ଝୁନୁ (ମଝିଆଁ ଭଉଣୀ) ସେତେବେଳେ କହୁଥିଲା, 'ବୁଝିଲୁ, ଦର୍ଶନ କରିବି ବୋଲି ବସ୍‌ରୁ ଓହ୍ଲେଇ, ଘରକୁ ନ ଆସି, ସିଧା ଗୁଣ୍ଡିଚା ମନ୍ଦିରକୁ ପଶିଲି ଯୋଉବାଟେ କେତେ ଲୋକ ପଶୁଥିଲେ । ହେଲେ ପହଞ୍ଚିଲି ଆନନ୍ଦ ବଜାରରେ । ଠାକୁରଙ୍କୁ ତ ଦେଖିପାରିଲିନି, ଠେଲାପେଲାରେ ଅବଢ଼ା ନେଇ ଯାହା ଫେରିଲି । ଫେରି ଦେଖିଲା ବେଳକୁ ମୋ ଚପଲ କିଏ ନେଇ ଯାଇଛି । ମୁଁ ମନେ ମନେ କହିଲି, ଚପଲ ପଛକେ ଯାଉ, ମୁଁ ତ ଅବଢ଼ା ପାଇଲି । (ଭୁଲ୍‌ରେ ସେଦିନ ସେ ନାକଚଣା ଦ୍ୱାର ବାଟେ ମନ୍ଦିରକୁ ଗଲା ଆଉ ସେଇ ବାଟରେ ପୁଣି ଫେରି ଆସିଲା ।) କି ଶାନ୍ତି ! ଯେଉଁ ପରମତୃପ୍ତିରେ ସେଦିନ ମୁଁ ଅବଢ଼ା ଖାଇଛି, ସେକଥା ମୁଁ ଜାଣେ । ଏ ତ ଗଲା ପ୍ରଭୁଙ୍କର ଅନ୍ତର୍ଯ୍ୟାମୀ ନାମର ସାର୍ଥକତାର ଅନୁଭୂତି, ଏଇ ଅକିଞ୍ଚନ ପ୍ରତି ତାଙ୍କ କରୁଣାର ଅଙ୍ଗେଲିଭା କଥା ।

ସେ କେମିତି କାହାରି ଗର୍ବ ସହି ପାରନ୍ତିନି ସେଇ ଅନୁଭୂତି କଥା ଏବେ ଲେଖୁଛି । ମୁଁ ପୂର୍ବରୁ ଲେଖିଛି ଯେ ମୁଁ ଭାବେ କାହା ଆଗରେ ଯଦି ଈଶ୍ୱର କୃପାର ଅନୁଭବ କଥା କହିଦେବି ମୋ ମନରେ ଗର୍ବ ଆସିବ ଆଉ ପ୍ରଭୁ ତାହା ଭାଙ୍ଗିଦେଇ କୃପାରୁ ବଞ୍ଚିତ କରିବେ । ସେଇଆ ହିଁ ହେଲା । ତା' ପରବର୍ଷ ରଥଯାତ୍ରାକୁ ପିଇସା (ସିଏ ଭୁବନେଶ୍ୱରରେ ରହନ୍ତି) ଆସିଥା'ନ୍ତି । ସିଏ ପ୍ରତିବର୍ଷ ଆସନ୍ତି, କାରଣ ରଥ ଉପରେ ଚୁଡ଼ାଘଷା ଭୋଗ

କରନ୍ତି । ସେ ବର୍ଷ କଥା ପ୍ରସଙ୍ଗରେ କହୁ କହୁ ମୁଁ କହିଦେଲି କେମିତି ମତେ ଅବଢ଼ା ମିଳିଲା । ପିଇସା କହିଲେ, 'ଆମେ ଦୌଡ଼ି କରି ଆସୁଛୁ ଅବଢ଼ା ପାଇବୁ ବୋଲି, ହେଲେ ତୋ ପାଖକୁ ଠାକୁର ଅବଢ଼ା ପଠେଇ ଦଉଛନ୍ତି ।' ତାଙ୍କ କଥାରେ ଖୁସି ତ ହେଲି, ଅହଂକାର ବି ଆସିଲା । ସିଏ ଗଲା ପରେ ଅନେକ ଭାବିଲି, ଅନୁତାପ ବି କଲି କାହିଁକି କହିଲି ବୋଲି । ହେଲେ ମୋ ମନର ଅହଂକାରକୁ ଅନ୍ତର୍ଯ୍ୟାମୀ ପ୍ରଭୁଙ୍କ ଠାରୁ ଲୁଚେଇବାର ଉପାୟ ବା କାହିଁ ?

ସେବର୍ଷ ଗଲା । ତା' ପରବର୍ଷ ଠାକୁର ଗୁଣ୍ଡିଚା ମନ୍ଦିରରେ ଥା'ନ୍ତି । ଯେହେତୁ କେହି ମିଳିଲେନି ଏକାଠି ଯିବାକୁ, ଠାକୁରଙ୍କୁ ଦର୍ଶନ କରି ନଥାଏ କି ଅବଢ଼ା ଖାଇ ନଥାଏ । (ଅଫିସ୍ ଗଲା ବାଟରେ ଯାହା ରଥ ଉପରେ ଦେଖିଥିଲି) । ଅନଉ ଅନଉ ନବମୀ ଦର୍ଶନ ଆସିଗଲା । ଅଫିସରୁ ଫେରିବା ରାସ୍ତାରେ ଗୁଣ୍ଡିଚା ଘର ପାଖରେ ଲୋକଙ୍କ ଲମ୍ବା ଧାଡ଼ି ଦେଖି ମନଦୁଃଖ ହେଲା । ଭାବିଲି ଠାକୁର ତ ଆଉ ମୋ ପାଇଁ ଅବଢ଼ା ପଠେଇ ଦେବେନି, ମୁଁ କାହାରିନା କାହାକୁ ମୁହଁ ଖୋଲି ଅନୁରୋଧ କରିବି ଅବଢ଼ା ଟିକିଏ ଆଣିଦବାକୁ । କାହାକୁ କହିବି ଭାବୁ ଭାବୁ ମନକୁ ଆସିଲା ହାପି (ଦୂର ସଂପର୍କୀୟ ପାଣୁ ଭାଇଙ୍କ ସାନପୁଅ) କଥା । ମୁଖ୍ୟ ରାସ୍ତାରୁ ମଧୁବନକୁ ପ୍ରବେଶ କରୁ କରୁ ହାପି ଆସୁଥିବାର ଦେଖିଲି । ମୋ ଭାବନା ସରିନି ଅଥଚ ହାପିକୁ ପାଇଗଲି । ଯେତିକି ଆଶ୍ଚର୍ଯ୍ୟ ହେଲି, ସେତିକି ଖୁସି ହେଇଗଲି ମୋ ମନର ଇଚ୍ଛା ପୂରଣ ହେଇଯିବ ବୋଲି । ଠାକୁର ଅନ୍ତର୍ଯ୍ୟାମୀ, ତେଣୁ ମୋ ମନକଥା ଜାଣି ଯେମିତି ହାପିକୁ ପଠେଇଦେଲେ । ତାକୁ ପଚାରିଲି, 'କୁଆଡ଼େ ଯାଉଛୁ' ? ସିଏ କହିଲା ମନ୍ଦିର, ନବମୀ ଦର୍ଶନ ପାଇଁ । ଅବଢ଼ା ନିଶ୍ଚୟ ପାଇବି ବୋଲି ଆଶା ଦୃଢ଼ୀଭୂତ ହେଲା । ତାକୁ ଅନୁରୋଧ କଲି ୧୦୦ ଟଙ୍କା ଦେଇ ଯେତିକି ମିଳିବ ସେତିକି ଆଣିବୁ ବୋଲି । ସିଏ କୌଣସି ଆପତ୍ତି ନ କରି 'ହଁ ଅପା ଆଣିଦେବି' କହିଲା ।

ଅବଢ଼ା ମିଳିବ, ପୁଣି ମୋ ମନକଥା ବୁଝି ଠାକୁର ହାପିକୁ ପଠେଇଲେ ଭାବି ଯେତିକି ଖୁସି, ସେତିକି ଅହଂକାର ।

ଘରକୁ ଆସି ଶୁଣିଲି, ଗାଁରୁ ଦାଦା ପୁଅ ଭାଇ, ତା' ସ୍ତ୍ରୀ, ଝିଅ ଆସିଛନ୍ତି ଆଉ ସେମାନେ ମନ୍ଦିର ଯାଇଛନ୍ତି ବୋଲି । ଆଶା ଆହୁରି ଦୃଢ଼ ହେଲା । ସେମାନେ ଯାଇଛନ୍ତି, ପୁଣି ଗାଁରୁ ଯେତେବେଳେ ଆସିଛନ୍ତି ନିଶ୍ଚୟ ଅବଢ଼ା ଖାଇବେ ଓ ଆମ ପାଇଁ ଆଣିବେ । ମଝିଆ ଭଉଣୀ ଆଉ ତା' ସାଙ୍ଗ ଶାନ୍ତି ଅପା ବି ଆସିଥା'ନ୍ତି । ତେଣୁ ଅବଢ଼ା ଖାଇବା ନିଶ୍ଚିତ । ରୋଷେଇ ନ କରି ବସିଗଲୁ ।

କାହିଁକି କେଜାଣି ମନରେ ମୋର ଆଶଙ୍କା ହେଲା । ଅବଢ଼ା ମିଳିବ ତ ? ମୋ ମନରେ ଆଶା ଭରି ଦେଇ, ଅବ୍ୟକ୍ତ ଅହଂକାରକୁ ମୋର ଭାଙ୍ଗିଦେବା ପାଇଁ ଲୀଳାମୟଙ୍କର ଏ ଲୀଳା ନୁହେଁ ତ ? ପ୍ରଥମେ ହାପିକୁ ଫୋନ କଲି, ସେ କହିଲା, 'ଅପା, ଆଣିପାରିଲିନି', ପ୍ରବଳ ଭିଡ଼ ଯୋଗୁଁ ସମ୍ଭବ ହେଲାନି । ତଥାପି ମିଟା (ଦାଦାପୁଅ ଭାଇ) ଉପରେ ଭରସା ଅଛି । କାରଣ ପିଲାଙ୍କୁ ନେଇ ଯାଇଛି ଯେତେବେଳେ ନିଶ୍ଚୟ ଖାଇବେ । ଖାଇଲେ, ଆଣିବେ ନିଶ୍ଚୟ । ନା, ତା'ବି ହେଲାନି । ଖାଇବା ଦୂର କଥା ଦର୍ଶନ ବି ଭଲରେ କରିପାରିଲେନି ।

ରାତି ୧୦ଟାରେ ସମସ୍ତଙ୍କ ପାଇଁ ରୋଷେଇ ହେଲା । ଦୁଃଖ ତ ହେଲା, ହେଲେ ମନେ ମନେ ଠାକୁରଙ୍କୁ କହିଲି, 'ପ୍ରଭୁ ! ଭଲ କଲ, ମୋ ଅହଂକାର ଭାଙ୍ଗି ମତେ ଚେତେଇଦେଲ ।' ଠାକୁର ଯେମିତି ସୂଚେଇ ଦେଲେ, ମଣିଷ କିଛି କରିପାରିବନି । ତା' ଉପରେ ଭରସା ରଖିଲେ ଠକିଯିବାର ସମ୍ଭାବନା ଅଛି । ହେଲେ ତାଙ୍କ ଉପରେ ଭରସା ରଖିଲେ, ବିଶ୍ୱାସ କଲେ, ଆଶା ନିଶ୍ଚୟ ପୂରଣ ହେବ ।

ପ୍ରଥମରେ ଲେଖିଥିଲି କେତୋଟି ଅନୁଭୂତିରୁ ଏଇ ଅନୁଭବଟିକୁ ଲେଖିବାର କାରଣ କ'ଣ ଶେଷରେ ଜଣେଇବି ବୋଲି । ୨୦୧୨ ମସିହାରେ ଦିନେ ଅଫିସରୁ ଫେରି ଘରେ ପହଞ୍ଚି ଦେଖିଲି ପୋଷ୍ଟ କାର୍ଡ଼ଟିଏ ମୋ ନାଁରେ ଆସିଛି । ଚିଠିଟିକୁ ପଠେଇଥିବା ମହାଶୟଙ୍କର ନାଁ ଯଦିଓ ମୋର ମନେପଡୁନି ହେଲେ ତାହା ଚାଳିଶବାଟିଆ, ପୁରୀରୁ କେହି ପଠେଇଥିବାର ମନେ ଅଛି । ଜଗନ୍ନାଥଙ୍କ ସମ୍ବନ୍ଧରେ ଯଦି କୌଣସି ଅନୁଭବ ଥାଏ ତେବେ ଲେଖାଟିଏ ପଠେଇବାକୁ ସେଥିରେ ଅନୁରୋଧ ଥିଲା । ମୁଁ ସେତେବେଳେ ଏଇ ଅନୁଭବଟିକୁ (ଯଦିଓ ଏଇ ଲେଖା ନୁହେଁ) ଲେଖିଥିଲି, ହେଲେ ପଠେଇବା ପୂର୍ବରୁ ମନ ଆନ୍ଦୋଳିତ ହେଲା । ମୋ ଜୀବନର ଅନୁଭୂତିକୁ ଅନ୍ୟମାନଙ୍କୁ ଜଣେଇବାର କି ଆବଶ୍ୟକତା ଅଛି ଭାବି ଲେଖାଟି ଆଉ ପଠେଇଲିନି ।

୨୦୧୩ ମସିହା ମେ' ମାସରୁ ମୋର ଦେହ ସାଙ୍ଘାତିକ ଖରାପ ହେଲା । ବହୁଦିନ ଧରି ଛୁଟିରେ ରହି (ଭାଇ ପାଖରେ ବାହାରେ ରହୁଥିଲି) ସେପ୍ଟେମ୍ବର ୧୪ରେ ପୁରୀକୁ ଫେରିଲି । ହଠାତ୍ ଦିନେ ଭଉଣୀ କିଣିଥିବା ଏଇ ବହି 'ଅମୃତ ଅନୁଭବ' ଉପରେ ଦୃଷ୍ଟି ପଡ଼ିଲା । ପଢ଼ି ବସିଲି । ସବୁ ଲେଖକ-ଲେଖିକାଙ୍କ ଅନୁଭବର କଥା ପଢ଼ି ଆଖିରୁ ଧାର ଧାର ଲୁହ ବୋହି ଯାଉଥାଏ, ସେଇ କରୁଣାମୟ ପ୍ରଭୁଙ୍କ ଉଦ୍ଦେଶ୍ୟରେ । ମୋ ମନକୁ ଆସିଲା, ଏତେ ଜଣତ ପୁଣି ତାଙ୍କ ଅନୁଭବ କଥା ଲେଖିଛନ୍ତି, ମୁଁ ଲେଖିବାରେ ଅସୁବିଧା କ'ଣ ? ମନର ଭାବନା ମନରେ ରହିଲା ।

ସେଦିନ ଅକ୍ଟୋବର ୨୪, ୨୦୧୪ ସକାଳ ୯ଟା ୩୦ ହେବ । ପ୍ରାର୍ଥନା କରୁଛି । ମୋବାଇଲକୁ ଫୋନ ଆସିଲା । ଭୁବନେଶ୍ୱର ଯିବାର ଅଛି । ଯାହା ସାଙ୍ଗରେ ଯିବା କଥା ସିଏ ଯିବେ କି ନ ଯିବେ ଠିକ୍ କରିପାରୁ ନଥିଲେ । ତେଣୁ କାଳେ ଯିବେନି ବୋଲି କହିବେ ତେଣୁ ଅନିଚ୍ଛା ସତ୍ତ୍ୱେ ଅଧା ପ୍ରାର୍ଥନାରୁ ଉଠି ଫୋନ ଦେଖିଲି । ହେଲେ ଅଜଣା ନମ୍ବର । ଭାବିଲି ଫୋନ କାଟିଦେବି । କାଟିବାକୁ ଯାଉଥିଲି ପୁଣି କ'ଣ ଭାବି ଧରିଲି । ଶ୍ରୀକାନ୍ତ ବାବୁଙ୍କର ଫୋନ ଥିଲା । 'ଜୟ ଜଗନ୍ନାଥ' କହି ଅନୁଭବର ଲେଖାଟିଏ ଦେବା ପାଇଁ କହିଲେ । ମତେ ଲାଗିଲା ଏ ଯେମିତି ପ୍ରଭୁଙ୍କର ନିର୍ଦ୍ଦେଶ । ଆଖିରୁ ଦୁଇ ଧାର ଲୁହ ବୋହିଗଲା । କିଛିଦିନ ତଳେ ପଢ଼ିଥିବା ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କର ବାଣୀ, 'ଈଶ୍ୱରଙ୍କର କରୁଣା ଲାଭ କଲେ ତାଙ୍କର ଜୟ ଗାନ କର, ଯଶ ଗାନ କର, ତାଙ୍କୁ ମହିମାନ୍ୱିତ କର, ତାଙ୍କୁ ଗୌରବାନ୍ୱିତ କର' ମନକୁ ଆସିଲା । ଭାବିଲି ଏଇ ବୋଧେ ମାଧ୍ୟମ ପ୍ରଭୁଙ୍କର ଯଶ ଗାନ କରିବାର, ତାଙ୍କ ମହିମାକୁ ପ୍ରକାଶ କରିବାର । ଯେହେତୁ ପ୍ରଥମରେ ଏଇ ଅନୁଭବଟିକୁ ଲେଖି ପଠେଇ ନଥିଲି, ତେଣୁ ସେଇଟିକୁ ପୁନର୍ବାର ଲେଖିବାକୁ ସ୍ଥିର କଲି ।

ହେ ଦୟାମୟ, ତୁମ ଇଚ୍ଛା ବିନା ମୋର ଗତି କାହିଁ ?

୬ଷ୍ଠ ଗଳି, ମଧୁବନ
ପୁରୀ - ୨

(ଲେଖିକା ସୁଚିତ୍ରା ରାୟ ଗତ ୨୫ ଅଗଷ୍ଟ ୨୦୧୫ରେ ଇହଲୀଳା ସମ୍ବରଣ କରିଛନ୍ତି । ସ୍ୱର୍ଗାରୋହଣର ଅଳ୍ପ କେଇମାସ ପୂର୍ବରୁ ତାଙ୍କର ଏହି ଲେଖାଟି ଆମର ହସ୍ତଗତ ହୋଇଥିଲା । ସ୍ୱର୍ଗତ ଆତ୍ମାର ସଦ୍‌ଗତି କାମନା ପୂର୍ବକ ଶ୍ରୀଜଗନ୍ନାଥ ତାଙ୍କୁ ନିଜ ପାଦପଦ୍ମରେ ଶରଣ ଦେବା ନିମନ୍ତେ ସଭକ୍ତି ନିବେଦନ କରୁଅଛୁ ।)

- ସଂପାଦକ



# ସଂକଳନ ସଂପର୍କରେ ସେମାନେ ଲେଖିଛନ୍ତି...

**ଲୀ**ଳାମୟ ଶ୍ରୀଜଗନ୍ନାଥଙ୍କ ଲୀଳାକୁ ବା ଜାଣିବାକୁ କାହାର ଶକ୍ତି ଅଛି । ଅନନ୍ତ, ଅପରିସୀମ ତାଙ୍କ ମହିମା । ତାଙ୍କ କରୁଣା ବଳରେ ପଙ୍ଗୁ ଗିରି ଲଘିଂବାର ସାମର୍ଥ ରଖେ । ମୂକ ପ୍ରବୀଣ ଶାସ୍ତ୍ରଜ୍ଞ ପରି ବେଦ ଉଚ୍ଚାରଣ କରେ । ତେବେ ଏ କ୍ଷେତ୍ରରେ କେବଳ ଭକ୍ତମାନେ ହିଁ ସାଜନ୍ତି ବ୍ୟତିକ୍ରମ । କେବେ ଶବରୀ ହୋଇ ତ କେବେ ଦାସିଆ ବାଉରୀ ଆଉ କେବେ ପୁଣି ଯାଜପୁରିଆ ବନ୍ଧୁ ହୋଇ ଲୀଳାମୟଙ୍କର ଅପୂର୍ବ ଲୀଳା ଖେଳାକୁ ଅନୁଭବ କରନ୍ତି । ଜଗତର ନାଥଙ୍କ ସଂପର୍କରେ ସେହିପରି କିଛି ଅମୃତ ଅନୁଭବକୁ ସ୍ଥାନିତ କରାଯାଇଛି ଏହି ପୁସ୍ତକଟିରେ । ବିଶ୍ୱନିୟନ୍ତା ପରମ କାରୁଣିକ କାଳିଆ ସାଆନ୍ତଙ୍କର ଭକ୍ତମାନଙ୍କ ମଧ୍ୟରେ ଏହା ଆଦୃତି ଲାଭ କରିବ ବୋଲି ଆଶା ।

- ପ୍ରମେୟ

୧ ଫେବୃଆରୀ ୨୦୧୫

**ଲେଖକ** ସର୍ବଦା ଅନୁଭବର କଥା କହିଥାଏ । ସେ ଅନୁଭବ ଗୋଟିଏ ବସ୍ତୁ ସହିତ ହେଉ, ପ୍ରକୃତି ସହିତ ହେଉ କିମ୍ବା ଭଗବାନଙ୍କ ସହିତ ହେଉ, ଅନୁବର ନିବିଡ଼ତା ମଧ୍ୟରେ ଲେଖକ ହୋଇଥାଏ ପ୍ରାଣବନ୍ତ । ଉକ୍ତ ପୁସ୍ତକଟିର ଶୀର୍ଷକ ରହିଛି 'ଅମୃତ ଅନୁଭବ', ଯେଉଁଥିରେ ମହାପ୍ରଭୁ ଲୀଳାମୟ ଶ୍ରୀଜଗନ୍ନାଥଙ୍କ ଅନେକ କାହାଣୀ ସ୍ଥାନ ପାଇଛି । ପ୍ରାୟ ୮୦ଜଣ ଲେଖକ ଭାବବିନୋଦିଆ ଠାକୁରଙ୍କୁ ବିଭିନ୍ନ ଭାବରେ ଅନୁଭବ କରିଛନ୍ତି । କିଛି ଅଙ୍ଗେନିଭା ଅନୁଭୂତିକୁ ସେମାନେ ବଖାଣିଛନ୍ତି ଏହି ପୁସ୍ତକରେ । ପୁସ୍ତକର ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଭାଷାର ସାବଲୀଳ ପ୍ରକାଶଭଙ୍ଗୀ ପାଠକ ଚିତ୍ତକୁ ଆକୃଷ୍ଟ କରିଥାଏ । ପ୍ରତ୍ୟେକ ଘଟଣାଗୁଡ଼ିକ ଏପରି ହୃଦୟସ୍ପର୍ଶୀ ଯେ ଥରେ ପଢ଼ିବା ଆରମ୍ଭ କଲେ ଶେଷ ନ କରିବା ପର୍ଯ୍ୟନ୍ତ ଛାଡ଼ିହେବ ନାହିଁ । ସବୁ ବିଷୟ ଗୋଟିଏ ଗୋଟିଏ ରହସ୍ୟ ଉଦ୍‌ଘାଟନ ଭଳି ବିସ୍ମୟକର ଓ ସତ୍ୟତା ଉପରେ ଆଧାରିତ । କେଉଁଠି ଶ୍ରୀକ୍ଷେତ୍ର, ବଡ଼ଦାଣ୍ଡ, ବାଇଶି ପାହାଚ, ନବକଳେବର, ମହାପ୍ରସାଦ କଥା କୁହାଯାଇଥିଲା ବେଳେ ଅନ୍ୟ କେଉଁଠି ସେଇ ମଙ୍ଗଳମୟଙ୍କୁ ଗାଳିଖିଆ ଜଗନ୍ନାଥ, ଚକାଆଖିର ମାୟା, କାଳିଆର କରୁଣା ଇତ୍ୟାଦି ଭିନ୍ନ ଭିନ୍ନ ଭାବରେ ତାଙ୍କର ଅଲୌକିକ ମହିମା ବର୍ଣ୍ଣନା କରାଯାଇଛି ।

ପ୍ରକୃତରେ ଜଗତର ନାଥ ଜଗନ୍ନାଥ କୋଟି କୋଟି ହୃଦୟର ଆରାଧ୍ୟ ଦେବତା । ତାଙ୍କର ଆଦି ଅନ୍ତ କିଛି ନାହିଁ । ଏ ଧରାପୃଷ୍ଠରେ ଜୀବନସ୍ରୋତ ଚାଲିଥିବା ଯାଏ, ଚନ୍ଦ୍ର, ସୂର୍ଯ୍ୟ, ଆକାଶ ଥିବା ଯାଏ ତାଙ୍କ କରୁଣାର ଦ୍ୱାର ସମସ୍ତଙ୍କ ପାଇଁ ଉନ୍ମୁକ୍ତ । ସେ ସର୍ବଦା ବନ୍ଧା ଭକ୍ତର ପ୍ରଭୁ ଭାବରେ । ଦରିଦ୍ର ଶବରୁଣୀର ସେ ଯେତିକି ପ୍ରିୟ, ସେତିକି

ପ୍ରିୟ ମାଣିକ ଗଉଡୁଣୀର । ବିଶ୍ୱାବସୁ, ବିଦ୍ୟାପତି, ଦାସିଆ ବାଉରୀର ସେ ଯେତିକି ପ୍ରିୟ, ସେତିକି ପ୍ରିୟ ମଧ୍ୟ ରାଜା ଇନ୍ଦ୍ରଦ୍ୟୁମ୍ନ ଓ ଗଜପତିଙ୍କର । ଏବେ ଚାଲିଛି ସେଇ ମହାପ୍ରଭୁଙ୍କର ଅଦ୍ଭୁତ ନବକଳେବର ଲୀଳା । ଲକ୍ଷ ଲକ୍ଷ ଭକ୍ତଙ୍କ ମୁଖରେ ତାଙ୍କରି ପ୍ରଶଂସା । 'ଅମୃତ ଅନୁଭବ' ପୁସ୍ତକର ସବୁ ବିଷୟ ତାଙ୍କରି ଅମୃତ ଉପାଖ୍ୟାନର ଗୋଟିଏ ଗୋଟିଏ ପ୍ରାଣସ୍ପନ୍ଦନ । ଏହି ପୁସ୍ତକକୁ ସମ୍ପାଦନା କରିଛନ୍ତି ଶ୍ରୀକାନ୍ତ ମହାନ୍ତି । ଅନେକ କଷ୍ଟ ସ୍ୱୀକାର କରି ବଛା ବଛା ଲେଖାକୁ ସଯତ୍ନେ ସଂଗ୍ରହ କରି ଏଥିରେ ସ୍ଥାନିତ କରିଛନ୍ତି ଯାହା ଓଡ଼ିଆ ପାଠକଙ୍କ ପାଇଁ ନିଶ୍ଚୟ ପ୍ରେରଣାପ୍ରଦ ହେବ । ଏହି ସଂପାଦନା ଭଳି ଦାୟିତ୍ୱସଂପନ୍ନ କାର୍ଯ୍ୟଟି ଯେ କେତେ ଜଟିଳ ତାହା କେବଳ ଅନୁଭବୀ ହିଁ ଜାଣିପାରିଥାଏ । ପୁସ୍ତକର ପ୍ରଚ୍ଛଦପଟ ବେଶ୍ ସୁନ୍ଦର ଓ ପରିପାଟୀ ରୁଚିଶୀଳ ମନେ ହୋଇଥାଏ । ଏଥିରେ ୩୫ଜଣ ଲେଖିକା ଓ ୪୫ଜଣ ଲେଖକଙ୍କର ଅଙ୍ଗେନିଭା ଅନୁଭୂତି ସ୍ଥାନ ପାଇଛି । ପୁସ୍ତକଟି ପାଠକୀୟ ଆଦର ଲାଭ କରୁ, ଏହାହିଁ କାମନା ।

- ସମୟ

୩୧ ମଇ ୨୦୧୫

ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ର କରି ବହୁ ଶ୍ରଦ୍ଧାଳୁ ସେମାନଙ୍କ ଅନୁଭୂତି ଓ ଅଭିଜ୍ଞତାକୁ ବଖାଣିଛନ୍ତି ଏହି ସଂକଳନରେ । ଏଥିରେ ଶ୍ରୀଜଗନ୍ନାଥଙ୍କ ପ୍ରତି ସେଇ ଶ୍ରଦ୍ଧାଳୁ ମାନଙ୍କର ଐକାନ୍ତିକ ଭକ୍ତି ଓ ବିଶ୍ୱାସର କଥା କୁହାଯିବା ସହ ସେମାନଙ୍କ ଜୀବନରେ ବିପଦ ଆପଦ ସମୟରେ ଶ୍ରୀଜଗନ୍ନାଥଙ୍କ ସାହାଯ୍ୟର ହାତ କିଭଳି ଅଦୃଶ୍ୟ ଭାବେ ଲମ୍ବି ଆସିଛି, ତା'ର ରହସ୍ୟମୟ ଗାଥା ଉତ୍‌କୀର୍ଣ୍ଣ ହୋଇଛି । ସାଧାରଣ ଭକ୍ତଙ୍କ ଜୀବନରେ ମଧ୍ୟ ଶ୍ରୀଜଗନ୍ନାଥ କମ୍ ଆସ୍ଥାନ ଜମେଇ ନାହାନ୍ତି, କରୁଣା କରି ନାହାନ୍ତି । ଏମିତି କିଛି ଅଙ୍ଗେନିଭା ଘଟଣାର ବହୁ ଉପଲବ୍ଧି ଏଥିରେ ଭରି ରହିଛି । ୮୦ଜଣ ଶ୍ରଦ୍ଧାଳୁ ସେମାନଙ୍କ ଜୀବନରେ ଉପଲବ୍ଧ ଅଲୌକିକ ଘଟଣାର ଆବେଗପୂର୍ଣ୍ଣ କଥା ସବୁ ବେଶ୍ ସୁନ୍ଦର ଭାବେ ଏହି ସଂକଳନରେ ଉପସ୍ଥାପିତ କରିଛନ୍ତି । ଘଟଣା ସବୁ ସ୍ମୃତି ହେବାପରେ ତାହା ମାନସପଟରେ ରହିଯାଏ । ଅନ୍ତତଃ ସେକଥା ଏହି ପୁସ୍ତକଟି ପଢ଼ିବା ପରେ ଜଣାପଡ଼େ । ସେମିତି କିଛି ସ୍ମୃତି ବିଜଡ଼ିତ ଦିବ୍ୟ ଅନୁଭୂତିର ଏକ ଦସ୍ତାବିଜ୍ ହେଉଛି ଶ୍ରୀକାନ୍ତ ମହାନ୍ତିଙ୍କ ସଂପାଦିତ ସଂକଳନ 'ଅମୃତ ଅନୁଭବ' । ଆଶା, ପାଠକ-ପାଠିକା ମାନଙ୍କୁ ଏହା ବିମଳ ଆନନ୍ଦ ଦେବା ସହିତ ଭକ୍ତି ଭାବାମୟ କରାଇବ ।

- ଉତ୍କଳ ନକ୍ଷତ୍ର

୧-୧୫ ଜାନୁଆରୀ ୨୦୧୫



## ‘ଅମୃତ ଅନୁଭବ’ର ଲେଖକ-ଲେଖିକାଙ୍କ ପାଇଁ

‘ଅମୃତ ଅନୁଭବ’ ୨୦୦୯ ମସିହାରୁ ପ୍ରତିବର୍ଷ ଧାରାବାହିକ ଭାବରେ ପ୍ରକାଶ ପାଇ ପାଠକ ମହଲରେ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି । ସଂକଳନର ବର୍ଣ୍ଣାଢ଼୍ୟ ନବମ ସଂଖ୍ୟା ପ୍ରକାଶିତ ହେବ ଇଂରାଜୀ ନୂଆବର୍ଷ-୨୦୧୭ର ଅବ୍ୟବହିତ ପୂର୍ବରୁ । ଏହି ସଂଖ୍ୟା ସମୃଦ୍ଧ ହେବ ବହୁ ପ୍ରବୀଣ ଓ ନବୀନ ଲେଖକ-ଲେଖିକାଙ୍କ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ କେନ୍ଦ୍ର କରି ଦିବ୍ୟ ଅନୁଭୂତି ସମ୍ବଳିତ ଲେଖାରେ । ଲେଖକ-ଲେଖିକାମାନଙ୍କୁ ଅନୁରୋଧ, ସେମାନଙ୍କ ବିଚାରରେ ଉପରୋକ୍ତ ବିଷୟକୁ ଆଧାର କରି ଭଲ ଲେଖାଟିଏ ଏ-୪ ସାଇଜ୍ କାଗଜରେ ଗୋଟିଏ ପାଖରେ ସ୍ପଷ୍ଟ ଭାବେ ସୁନ୍ଦର ଅକ୍ଷରରେ ଲେଖି ଅଥବା ଡ଼ିଟିପି କରି ପଠାଇବେ । ସେଥିରେ ନିଜର ନାମ, ଠିକଣା ଓ ଫୋନ ନମ୍ବର ଲେଖିବାକୁ ଭୁଲିବେ ନାହିଁ । ଏଇ ପ୍ରସଙ୍ଗରେ ଆମେ କହି ରଖୁଛୁ ଯେ, ଲେଖାଟି ଛପା ହେଲେ ଡିମେଇ ୧/୮ ସାଇଜ୍‌ରେ ସର୍ବାଧିକ ୩ ରୁ ୪ ପୃଷ୍ଠା ଭିତରେ ରହୁଥିବା ଦରକାର । ଅସ୍ପଷ୍ଟ ଓ ଦୀର୍ଘଲେଖା ଗୁଡ଼ିକ ପ୍ରକାଶନରୁ ବଞ୍ଚିତ ହେବେ । ଅପ୍ରକାଶିତ ଲେଖା ଫେରସ୍ତ ଦେବା ସମ୍ଭବପର ନୁହେଁ । ଲେଖାସବୁ ନିମ୍ନ ଠିକଣାରେ ୩୦ ଜୁନ୍ ୨୦୧୬ ପୂର୍ବରୁ ପହଞ୍ଚିବା ଆବଶ୍ୟକ । ‘ଅମୃତ ଅନୁଭବ’ ପ୍ରକାଶ ପାଇଁ ପ୍ରସ୍ତୁତି ଯଥେଷ୍ଟ ପୂର୍ବରୁ ହେଉଥିବାରୁ ଲେଖକ-ଲେଖିକାମାନେ ଆମ ସହିତ ସହଯୋଗ କରିବେ ବୋଲି ଆଶା କରୁ ।

ଶ୍ରୀକାଂତ ମହାଂତି
ସଂପାଦକ ‘ଅମୃତ ଅନୁଭବ’
ମାର୍ଫତ - ଅନୁରାଗ
ମାର୍କଣ୍ଡେଶ୍ୱର ସାହି, ପୁରୀ-୭୫୨୦୦୧
ଭ୍ରାମ୍ୟଭାଷ : ୯୨୩୮୮୮୭୯୭୮
ଇ-ମେଲ୍ :
srikantmohanty55@gmail.com
amrutanubhav55@gmail.com

